# ଅତୀତର ବର୍ଣ୍ଣବୋଧ

(ପ୍ରାଚୀନ ଓଡ଼ିଆ ସାହିତ୍ୟ ଚର୍ଚ୍ଚା)

ସଚ୍ଚିଦାନନ୍ଦ ମିଶ୍ର

ଆର୍ଯ୍ୟ ପ୍ରକାଶନ
ବାଦାମବାଡ଼ି, କଟକ

# ଅତୀତର ବର୍ଣ୍ଣବୋଧ

*(ପ୍ରାଚୀନ ଓଡ଼ିଆ ସାହିତ୍ୟ ଚର୍ଚ୍ଚା)*

ଲେଖକ :
ସଚ୍ଚିଦାନନ୍ଦ ମିଶ୍ର

ପ୍ରକାଶକ :
ଆର୍ଯ୍ୟ ପ୍ରକାଶନ

ପ୍ରଥମ ସଂସ୍କରଣ-୨୦୦୨

ISBN:–81-7412-209-8

ମୁଦ୍ରକ :—
ଶ୍ରୀଜଗନ୍ନାଥ ଲାମିନେଟର,
ବାଦାମବାଡ଼ି, କଟକ-୧୨

ପ୍ରଚ୍ଛଦ :
ସ୍ୱାହା ମିଶ୍ର

ମୂଲ୍ୟ : ଟ୧୫୦/-

# ସୂଚୀପତ୍ର



—o—

# ଉପୋଦ୍‌ଘାତ

ଏହି ପୁସ୍ତକଟି ଓଡ଼ିଆ ସାହିତ୍ୟର ଇତିହାସ ଜିଜ୍ଞାସୁମାନଙ୍କ ପାଇଁ ଉଦ୍ଦିଷ୍ଟ। ସେହି ଜିଜ୍ଞସା ନ ଥିବା ଲୋକପାଇଁ ଏହାର ପ୍ରୟୋଜନହିଁ ନାହିଁ। ବ୍ୟକ୍ତି ନିଜ ଭିତରେ ଜିଜ୍ଞାସା ଜାଗରୁକ କରାଇବା ସାମର୍ଥ୍ୟ ବାହାରୁ ହାସଲ କରି ନ ପାରେ। ଏ ବ୍ୟାପାରରେ ଗୁରୁ କି ଗ୍ରନ୍ଥ ସାହାଯ୍ୟ କରିପାରିବେ ନାହିଁ। ସେ ଶକ୍ତି ପ୍ରତ୍ୟେକଙ୍କର ନିଜସ୍ୱ, ହୁଏତ ସହଜାତ। ହୁଏ ତ ବୋଲି ଲେଖିଲି କାହିଁକି ନା ଆଧୁନିକ ଚିକିତ୍ସା ବିଜ୍ଞାନ ମଣିଷର ମସ୍ତିଷ୍କକୁ ସଜାଡ଼ିବା ଦିଗରେ ଯେପରି ଦ୍ରୁତଗତିରେ ଆଗଉଛି, ବର୍ତ୍ତମାନ ଅନିଦ୍ରକୁ ନିଦ୍ରିତ, ଗୁଆଁରକୁ ରିରଂସୁ, ତୃଷାହୀନକୁ ତୃଷାତୁର କରାଇ ପାରିବାଭଳି, ଭବିଷ୍ୟତରେ ଅଜିଜ୍ଞାସୁକୁ ଜିଜ୍ଞାସୁ କରାଇପାରେ। ସେ ପର୍ଯ୍ୟନ୍ତ ଅଜିଜ୍ଞାସୁ ଜ୍ଞାନ ପାଇ ପାରିବ ନାହିଁ। ଅପରପକ୍ଷରେ, ଯାହାର ସହଜାତ ଜିଜ୍ଞାସା ରହିଛି, ସେ କୌଣସି ଗୁରୁ ବା ଗ୍ରନ୍ଥର ସହାୟତା ବିନା ମଧ, ସ୍ୱୀୟ ଇନ୍ଦ୍ରିୟ ଉପଯୋଗ କରି ଜଡ଼ ଜଗତରୁ ଜ୍ଞାନ ଆହରଣ କରିପାରେ। ଭାଗବତ ପୁରାଣର ୧୧ଶ ସ୍କନ୍ଦର ୭ ରୁ ୯ ଅଧ୍ୟାୟ ମଧରେ ଅବଧୂତ ବର୍ଣ୍ଣନା କରିଥିବା ୨୪ ଗୁରୁ ଆଖ୍ୟାନମାନ ଜ୍ଞାନାହରଣର ଏହି ପନ୍ଥାକୁ ସ୍ୱୀକାର କରେ। ଭାଗବତ ଅପେକ୍ଷା ପ୍ରାଚୀନତର ମହାଭାରତର ଶାନ୍ତି ପର୍ବର ୧୭୭ ଅଧ୍ୟାୟର ମଙ୍କି ସଂବାଦରେ ବୋଧ୍ୟ ଋଷି ତାଙ୍କର ଛଅଜଣ ଗୁରୁଙ୍କର କଥା କହିଛନ୍ତି; ସେମାନେ ମଧ ଏହି ପନ୍ଥାର ଗୁରୁ। ଭାଗବତକାର କୃଷ୍ଣଙ୍କ ମୁଖରେ କୁହାଇଛନ୍ତି: "ଆତ୍ମନୋ ଗୁରୁରାତ୍ମୈବ ପୁରୁଷସ୍ୟ ବିଶେଷତଃ" (ଭା.୧୧/୭/୨୦), ଅର୍ଥାତ୍ ସମସ୍ତେ, ବିଶେଷତଃ ମଣିଷମାନେ, ନିଜେ ନିଜର ଗୁରୁ। ଜିଜ୍ଞାସା ନଥିଲେ ଅବଧୂତ, ମଙ୍କି ଆଦି ଉଭବ ହେବେ ନାହିଁ, ମଣିଷ ନିଜର ଗୁରୁତ୍ୱକୁ ଜାଣି ବି ପାରିବ ନାହିଁ।

ଜଣେ ଜିଜ୍ଞାସୁ ହୋଇଥିଲେ, ସେ ଗଛ ନୁହେଁ କି ଜ୍ଞାନ ଶୂନ୍ୟପକ୍ଷୀ ନୁହେଁ ଯେ ସେ ଆପେ ଆପେ ଜ୍ଞାନଲାଭ କରିଯିବ। ଜ୍ଞାନଲାଭ ପାଇଁ ତାର ମନର ସକ୍ରିୟତା ଆବଶ୍ୟକ, ଜିଜ୍ଞାସା ସକ୍ରିୟତା ପାଇଁ ପ୍ରେରଣାମାତ୍ର ଦେଇଥାଏ। ମହାମତି କୌଟିଲ୍ୟ ତାଙ୍କର ଅର୍ଥଶାସ୍ତ୍ର (୧/୫)ରେ ଗୁରୁଙ୍କ ଠାରୁ ଜ୍ଞାନଲାଭ କରିବାର ପଦ୍ଧତି ସୂଚାଇଛନ୍ତି :- "ଶୁଶ୍ରୂଷା - ଶ୍ରବଣ - ଗ୍ରହଣ - ଧାରଣ - ବିଜ୍ଞାନ - ଉହାପୋହ -

ତତ୍ତ୍ୱାଭିନିବିଷ୍ଟ ବୁଦ୍ଧିଂ ବିଦ୍ୟା ବିନୟତି ନେତରମ୍''। ସେ ସୂଚାଇଥିବା ଜ୍ଞାନଲାଭ ପଦ୍ଧତି ଗୁରୁଙ୍କ କ୍ଷେତ୍ରରେ ଉପଯୋଗୀ ହେବାପରି ଗ୍ରନ୍ଥ କ୍ଷେତ୍ରରେ ମଧ୍ୟ ଉପଯୋଗୀ। ଜିଜ୍ଞାସୁ କ୍ରମାନ୍ୱୟରେ ଗୋଟିଏ ପରେ ଗୋଟିଏ ପାହାଚ ଚଢ଼ିଲେ ହିଁ ପ୍ରକୃତ ଜ୍ଞାନ ଲାଭ କରିପାରିବ। ଏହି ସାତ ପାହାଚ ହେଲା:-

୧. ଶୁଶ୍ରୂଷା, ଅର୍ଥାତ୍ ଶୁଣିବା ପାଇଁ ଇଚ୍ଛା। ଗ୍ରନ୍ଥ କ୍ଷେତ୍ରରେ ଏହା ହେବ ପିପଠିଷା, ପଢ଼ିବା ପାଇଁ ଇଚ୍ଛା। ଏହା ବ୍ୟକ୍ତିର ମନର ସଂକଳ୍ପରୁ ଜନ୍ମେ।

୨. ଶ୍ରବଣ। ଗ୍ରନ୍ଥ କ୍ଷେତ୍ରରେ ପଠନ। ବ୍ୟକ୍ତିର ଜ୍ଞାନେନ୍ଦ୍ରିୟର ଉପଯୋଗ ଦ୍ୱାରା ଏହା ହୁଏ।

୩. ଗ୍ରହଣ, ଅର୍ଥାତ୍ ଶୁଣିବା/ପଢ଼ିବା କଥାର ଅର୍ଥବୋଧ।

୪. ଧାରଣ, ଅର୍ଥାତ୍ ଗ୍ରହଣ କରିବା କଥାକୁ ସ୍ମୃତିରେ ସାଇତିବା, ଭୁଲି ନଯିବା।

୫. ବିଜ୍ଞାନ। ଧାରଣ କରିଥିବା ବିଷୟର ବାରଂବାର ଚିନ୍ତନ ବା ନିଦିଧ୍ୟାସନ ପ୍ରକ୍ରିୟାରେ ତାହାର ତାତ୍ପର୍ଯ୍ୟବୋଧ।

୬. ଊହାପୋହ, ଅର୍ଥାତ୍ ବିଷୟର ସବୁ ଦିଗରୁ ବିଚାର, ବିଶଦ ବିଚାର। ଊହର ଅର୍ଥ ତର୍କ ଓ ଅପୋହର ଅର୍ଥ ''ଅପରତର୍କ ନିରସାୟ କୃତୋ ବିପରୀତସ୍ତର୍କଃ''। ଜ୍ଞାନଲାଭର ଏହି ସୋପାନରେ ପହଞ୍ଚିଲେ ଶ୍ରୋତା/ପାଠକ ଗୁରୁ/ଗ୍ରନ୍ଥଠାରୁ ପୃଥକ୍ ହୋଇ ତଟସ୍ଥ ଭାବରେ ଗୁରୁ/ଗ୍ରନ୍ଥ ପରିବେଷିତ ଜ୍ଞାନର କଳନା କରେ, ନିଜର ବିବେକ ଖଟାଇ। ଏହି ଗୁରୁ/ଗ୍ରନ୍ଥ ସହିତ ଅନ୍ୟ ଗୁରୁ/ଗ୍ରନ୍ଥର ମେଳ ଅଛି ନା ଅମେଳ ଅଛି ? ତନ୍ମଧ୍ୟରୁ କିଏ ଠିକ୍ ? ଏଇଠି ଗୁରୁ/ଗ୍ରନ୍ଥଙ୍କ ଗ୍ରହଣୀୟତା ଶ୍ରୋତା/ପାଠକ ନିଜର ବିବେକ ଖଟାଇ କରେ। ଗୁରୁ/ଗ୍ରନ୍ଥଙ୍କ ଉପଯୋଗିତା ରହିଲାଣି କେତେ ପଛରେ ୨ୟ, ୩ୟ ପାହାଚରେ। ପରବର୍ତ୍ତୀ ପାହାଚଗୁଡ଼ିକ ଶ୍ରୋତା/ପାଠକର ନିଜର ମନର, ବିବେକର କାର୍ଯ୍ୟକ୍ଷେତ୍ର।

୭. ତତ୍ତ୍ୱାଭିନିବିଷ୍ଟ ବୁଦ୍ଧି। ଊହାପୋହ ପାହାଚରୁ ଉଠିଲେହିଁ ମଣିଷ ଜ୍ଞାନଲାଭର ଏହି ଶେଷ ପାହାଚରେ ପହଞ୍ଚେ। ଆପଣା ବିବେକ ଖଟାଇ ଊହାପୋହ ପାହାଚ ଚଢ଼ି ନ ପାରିଲେ, ମଣିଷ ଗୁରୁ/ଗ୍ରନ୍ଥକୁ ଗ୍ରହଣ-ଧାରଣାଦି କରିପାରେ ସିନା ଜ୍ଞାନକୁ ଆୟତ୍ତ କରିପାରେ ନାହିଁ। ଜ୍ଞାନ ଉପରେ ତାହାର 'ସ୍ୱତ୍ୱ' ରହି ପାରେ ନାହିଁ।

ଏହା ହେଲା ଆପଣା ବିବେକ-କଷଟିରେ ପରଖି ଜ୍ଞାନକୁ ଅର୍ଜନବର୍ଦ୍ଧନ କରିବାର କୌଟିଲ୍ୟ ସ୍ୱୀକୃତ ପଦ୍ଧତି। ଏଥିରେ ଯୁକ୍ତିତର୍କର ଭୂମିକା ବଡ଼ ଗୁରୁତ୍ୱପୂର୍ଣ୍ଣ। Dialecticsକୁ ଆଶ୍ରୟ କଲେହିଁ ଜ୍ଞାନର ଅଭିବୃଦ୍ଧି ହେବ, ''ବାଦେ ବାଦେ ଜାୟତେ ତତ୍ତ୍ୱବୋଧଃ''।

କିନ୍ତୁ ସାଧାରଣ ମଣିଷ ନିଜକୁ ବାଦବିବାଦ, ତର୍କବିତର୍କଠାରୁ ଦୂରରେ ରଖିବାକୁ ଚାହେଁ। ଯେଉଁ ବିଶ୍ୱାସକୁ ଆଦରି ସେ ନିଜର ଜୀବନକୁ ସଜାଇ ରଖିଛି ତର୍କ ସେହି ବିଶ୍ୱାସକୁ ଅନ୍ୟଥା କରିଦେବ କି, ଏହି ଆଶଙ୍କା ତାହାର ଥାଏ। ତେଣୁ ଗଣ (ଯେଉଁଥିରେ ସାଧାରଣ ମଣିଷ ସଂଖ୍ୟାଧିକ) ଓ ଗଣର ସବୁ ସଂଗଠନ, ସବୁ ସଂସ୍ଥା ତର୍କକୁ ନିନ୍ଦା କରନ୍ତି, ବିଶ୍ୱାସକୁ ପ୍ରଶଂସା କରନ୍ତି।

ମହାଭାରତ (ବନ ୩୧୧ ରୁ ୩୧୩ ଅଧାୟ) ଅଖ୍ୟାନରେ ବକ ଯେତେବେଳେ ଯୁଧିଷ୍ଠିରଙ୍କୁ ପ୍ରଶ୍ନକଲା 'କଃ ପନ୍ଥା' (ଠିକଣା ପନ୍ଥା କେଉଁଟି) ଯୁଧିଷ୍ଠିର ଅନ୍ୟର ମତକୁ ମାନିଯିବା ପଦ୍ଧତିକୁ ସୁପାରିସ କରି (ମହାଜନୋ ଯେନ ଗତଃ ସ ପନ୍ଥାଃ) ତର୍କବିତର୍କ ଭଲ କଥା ନୁହେଁ ବୋଲି ବୁଝାଇଲେ (ତର୍କୋଽପ୍ରତିଷ୍ଠଃ)। ଯୁଧିଷ୍ଠିର ତର୍କ ଅପ୍ରତିଷ୍ଠ ବୋଲି ଧରି ନେବାରୁ ହିଁ ଆପଣା ବିବେକ ଦ୍ୱାରା ପନ୍ଥା ନିର୍ଦ୍ଧାରଣ ସମ୍ଭବପର ନୁହେଁ ବୋଲି ବିଚାର କଲେ। ଯେଉଁ ମହାଜନଙ୍କ ପନ୍ଥାକୁ ଆଦରିବାକୁ ସେ କହିଲେ ସେହି ମହାଜନ ନିଜେ କିପରି ତାଙ୍କ ପନ୍ଥା ବାଛିଥିବେ? ସେ ମଧ ତାଙ୍କ ପୂର୍ବର ମହାଜନଙ୍କ ପନ୍ଥାରେ ଚାଲିଥିବେ ବୋଲି ଧରିଲେ କେବଳ ଗଡ୍ଡ଼ାଳିକା ସୁଅରେ ପଡ଼ି ଏ ଜଗତ୍ ଚାଲିଛି ବୋଲିବାକୁ ହେବ। ମଣିଷ ଆପଣା ବୁଦ୍ଧିବିବେକ ଖଟାଇ କିଛି ନୂଆ କଥା କରି ନପାରେ ବୋଲି ଧରିବାକୁ ହେବ; ଇତିହାସ ଏପରି ଧାରଣାକୁ ଅସିଦ୍ଧ କରୁଛି।

ତର୍କ ଅପ୍ରତିଷ୍ଠ ଏକ ଅଳୀକ ବିଚାର। ଏ ବିଚାର ହୁଏତ ତର୍କଶକ୍ତି ବିହୀନ ମୂର୍ଖଙ୍କ ପାଇଁ ଗୋଟିଏ କାମଚଳା ବ୍ୟବସ୍ଥା କିନ୍ତୁ ଯାହାର ବିବେକ ଅଛି ଅର୍ଥାତ୍ ଠିକ୍ ଭୁଲ୍ ବିବେଚନା କରିବାର ସାମର୍ଥ୍ୟ ଅଛି, ତା'ପାଇଁ ଏ ମତ ଭ୍ରମାତ୍ମକ। ମୂର୍ଖ କ୍ଷେତ୍ରରେ ମଧ ଅଡୁଆ ଅଛି। ଜଗତର ଏତେ ଏତେ ଜନ ମଧରେ ଜଣେ ମହାଜନକୁ (ଯୁଧିଷ୍ଠିର ମହାଜନକୁ ଏକବଚନରେ ହିଁ କହିଛନ୍ତି) ସେ ବିଚାରି ବାଛିବ କିପରି? ସେ ମହାଜନ ମହାଶୟ କଣ ଅଲଗା ଦିଶନ୍ତି କି? ନା, ତାଙ୍କ ଦେହର ଗନ୍ଧ ନିଆରା? ଯଦି ତାହା ନୁହେଁ, ଜଣେ ମହାଜନ କି ଦୁର୍ଜନ ଠଉରେଇବା ପାଇଁ ନିଜର ବିବେଚନା ଶକ୍ତିର ଉପଯୋଗ ଆବଶ୍ୟକ ନୁହେଁ କି? ବିବେଚନାକୁ ମାନିଲେ ମନ ଭିତରର ଉହାପୋହକୁ ମାନିବାକୁ ହିଁ ପଡ଼ିବ।

ଏକା ଭାରତର ନୁହେଁ ସବୁ ଦେଶର ପ୍ରାଚୀନ ବହୁ ଶାସ୍ତ୍ରର ମତରେ ବିଶ୍ୱାସ ପ୍ରଶଂସ୍ୟ, ତର୍କ ନିନ୍ଦ୍ୟ, ସନ୍ଦେହ ବର୍ଜ୍ୟ। ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର। ବିଶ୍ୱାସ ନ କରିବାର ପରିଣାମ ମନ୍ଦ ହେବା ଓ ବିଶ୍ୱାସ କରିବା ଯୋଗୁଁ ହିଁ ସୁଫଳ ଘଟିବା କାହାଣୀ ଏ ଦେଶର ଜନମାନସକୁ ଆଛନ୍ନ କରିଛି। ରାଣୀ ଗୁଣ୍ଡିଚା ବୁଢ଼ା ବଢ଼େଇର କଥାକୁ ବିଶ୍ୱାସ ନ କରି କଣ୍ଟଦିବସ ପୂର୍ବରୁ ଦ୍ୱାର ଖୋଲି ଦେବାରୁ

ଜଗନ୍ନାଥାଦି ବିଗ୍ରହର ଗଠନ ଚିରକାଳ ପାଇଁ ଖଣ୍ଡିଆ ହୋଇ ରହିଗଲା । ଗୋପାଳ ବିପ୍ରର ପଛେ ପଛେ ଯିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ନଦୀ ବାଲିରେ ଚାଲିବା ବେଳେ ଗୋପାଳଙ୍କ ନୂପୁରରେ ବାଲି ପଶି ତାହା ରଣିତ ନ ହେବାରୁ ବିପ୍ର ଗୋପାଳଙ୍କ କଥାକୁ ବିଶ୍ୱାସ ନ କରି ପଛକୁ ଚାହିଁଦେଲା । ଗୋପାଳ ଅଧବାଟରେ ପଥର ପାଲଟି ରହିଗଲେ । ଅଥଚ, କୋଣାର୍କ ମନ୍ଦିର ତୋଳା ହେବାବେଳେ ଗୋଟିଏ ବୁଢ଼ୀ ମନ୍ଦିରର ମୁଖ୍ୟ ସ୍ଥପତିକୁ କହିଲା ଯେ ପଥରକୁ ପାଣି ମଝିରେ ନ ପକାଇ ଚାରିକଡ଼ରୁ ବାନ୍ଧିନେଲେ ରାଘବ ପଥର ଗିଳି ପାରିବ ନାହିଁ, ମନ୍ଦିର ତୋଳା ହୋଇପାରିବ । ମନ୍ଦିର ସ୍ଥପତି ବୁଢ଼ୀକୁ ବିଶ୍ୱାସ କରିବାରୁ ମନ୍ଦିର ତୋଳା ହୋଇପାରିଲା । ବିଶ୍ୱାସର କି ମହିମା ! ଅଥଚ, ସଂଶୟାତ୍ମା ବିନଶ୍ୟତି ।

ପ୍ରାୟ ୪୫ ବର୍ଷ ତଳେ ମୁଁ ପ୍ରାଚୀନ ଓଡ଼ିଆ ସାହିତ୍ୟର ଅଧ୍ୟୟନ ଆରମ୍ଭ କରିବାବେଳେ ବିଶ୍ୱାସ ଓ ସନ୍ଦେହ ମଝିରେ ଦୋଘାଇଁରେ ପଡ଼ିଥିଲି । ସନ୍ଦେହ ଯେବେ ଆପେ ଆପେ ହେଉଛି କରିବି କଣ ? ତର୍କ ବର୍ଜ୍ୟ ନା ଗ୍ରାହ୍ୟ । ବିଶ୍ୱାସ କଲେ ଆପଣା ବିବେକ ଅକାମୀ ହେବ ନାହିଁ କି ? ମୁଁ ଛାତ୍ରାବସ୍ଥାରେ ଭାଷାସାହିତ୍ୟର ଛାତ୍ର ନଥିଲି; ଥିଲି ବିଜ୍ଞାନ ଓ ଆଇନର ଛାତ୍ର । ବିଜ୍ଞାନ ଶିକ୍ଷା ମୋତେ ବୃତ୍ତି ଦେଲାନାହିଁ ସିନା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ (ସେତେବେଳେ ବୈଜ୍ଞାନିକ ମନୋଭାବ, ମାନବବାଦ ଓ ଅନୁସନ୍ଧାନ ଓ ସଂସ୍କାରର ଚେତନାର ଅଭିବୃଦ୍ଧି ସାଧନ ପ୍ରତ୍ୟେକ ଭାରତୀୟଙ୍କର ମୌଳିକ କର୍ତ୍ତବ୍ୟ ବୋଲି ଘୋଷଣା କରୁଥିବା ଭାରତର ସଂବିଧାନର ଅନୁଚ୍ଛେଦ ୫୧କ ପ୍ରଣୀତ ହୋଇ ନଥାଏ) ପ୍ରତି ଉନ୍ମୁଖତା ଦେଲା । ଆଇନ ଶିକ୍ଷା ମୋ ଭିତରେ ପ୍ରମାଣ ସମର୍ଥିତ ନ ହେବା ଯାଏଁ କୌଣସି ସିଦ୍ଧାନ୍ତ ଗ୍ରହଣୀୟ ହୋଇ ନପାରେ ଓ ତର୍କ ସିଦ୍ଧାନ୍ତରେ ଉପନୀତ ହେବାର ଏକମାତ୍ର ନିର୍ଭରଯୋଗ୍ୟ ଉପାୟ ବୋଲି ଚେତନା ଦେଇଥିଲା । ବିଶ୍ୱାସ-ସନ୍ଦେହ ମଧ୍ୟର ଟଣାଓଟରା ବାସ୍ତବରେ ପ୍ରାଚୀନତା-ଆଧୁନିକତା ମଧ୍ୟର ଟଣାଓଟରା ବୋଲି ମୁଁ ବୁଝିଗଲି ଓ 'ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର'ର ଅର୍ଥ ମୋ ଆଗରେ ପ୍ରକଟ ହେଲା ଯେ ବିଶ୍ୱାସ ମଣିଷକୁ ଘନକୃଷ୍ଣ ଅନ୍ଧକାର ଦିଏ ଓ ତର୍କ ଅନ୍ଧକାରକୁ ଦୂର କରେ ।

ମଣିଷର ଅବବୋଧ ପ୍ରକ୍ରିୟାରେ ସନ୍ଦେହର ଭୂମିକା ବଡ଼ଗୁରୁତ୍ୱପୂର୍ଣ୍ଣ । ନିଶ୍ଚିତ ଏ କଥା ସ୍ୱୀକାର କରୁ ବା ନକରୁ ସବୁ ବିଚାରବନ୍ତର ମନର ବାସ୍ତବତା ହେଉଛି ସନ୍ଦେହ ଓ ସନ୍ଦେହକୁ ଦୂର କରିବା ପାଇଁ ତର୍କବିତର୍କର (ଉହାପୋହର) ଆଶ୍ରୟ । କେବଳ ମୋହଗ୍ରସ୍ତ ଲୋକ ଅର୍ଥାତ୍ ମୂଢ଼ ସନ୍ଦେହ କରେ ନାହିଁ । ବିଖ୍ୟାତ ଦାର୍ଶନିକ-ଲେଖକ ବର୍ଟ୍ରାଣ୍ଡ ରସେଲ୍ ତାଙ୍କର ମୁକ୍ତ ଚିନ୍ତା ଓ ପ୍ରାଧିକାରିକ ପ୍ରଚାର' (Free Thought And Official Propaganda)ପ୍ରବନ୍ଧ ମଧ୍ୟରେ ବ୍ୟକ୍ତ କରିଥିବା ମତ ମୋ ବିଚାରରେ ସମୀଚୀନ :-

"For my part, I should wish to preach the 'will to doubt.' None of our beliefs are quite true, all have at least a penumbra of vagueness and error. The methods of increasing the degree of truth in our beliefs are well known, they consists in hearing all sides, trying to ascertain all the relevant facts, controlling our own bias by discussion with people who have the opposite bias, and cultivating a readiness to discard any hypothesis which has proved inadequate. These methods are practised in science and have built up the body of scientific knowledge."
ପୁନଶ୍ଚ :

"In science, where alone something approximating to genuine knowledge is to be found, men's attitude is tentative and full of doubt".

ମୋର ପ୍ରାୟ ସବୁ ଲେଖାରେ ପୂର୍ବ ପ୍ରଚାରିତ ଓ ସାଧାରଣ ଭାବରେ ଗୃହୀତ ମତ ନେଇ ମୋର ମନ ଭିତରର ସନ୍ଦେହ ଓ ସନ୍ଦେହକୁ ନିରସନ କରି ସିଦ୍ଧାନ୍ତରେ ଉପନୀତ ହେବାପାଇଁ ବ୍ୟାକୁଳତା ଭିତରେ ଯୁକ୍ତିତର୍କର ପ୍ରକ୍ରିୟାକୁ ପ୍ରକାଶ କରେ। କିଏ କଣ କହିଥିଲା, ତାହା ଅବଶ୍ୟ ମୋ ମତରେ ବଡ଼ କଥା ନୁହେଁ, ଉପଲବ୍ଧ ତଥ୍ୟ-ପ୍ରମାଣ ଦୃଷ୍ଟିରୁ ସେ କଣ କହିବା ଯଥାର୍ଥ ହୋଇଥାନ୍ତା, ତାହାହିଁ ବଡ଼ କଥା। ଅନ୍ୟ କଥାରେ କହିଲେ, ମୁଁ ସିଦ୍ଧାନ୍ତ ଅପେକ୍ଷା ସିଦ୍ଧାନ୍ତ ଉଦ୍ରେକ କରାଉଥିବା ସନ୍ଦେହର କାରଣ ଓ ସନ୍ଦେହ ଦେଉଥିବା ମାନସିକ ଅଶାନ୍ତିରୁ ଉଦ୍ଧାର ପାଇବା ପାଇଁ ଅବଲମ୍ବିତ ଯୁକ୍ତିମାର୍ଗକୁ, ତର୍କବିତର୍କକୁ ଅଧିକ ମାନ୍ୟତା ଦିଏ। ମୋ ବିଚାରରେ ଭବିଷ୍ୟତ୍‌ରେ ଯେଉଁ ଅଦ୍ୟାବଧି ଅଜ୍ଞାତ ଅନାବିଷ୍କୃତ ତଥ୍ୟ ପ୍ରକାଶ ପାଇବ ତାହା ମୋର ସିଦ୍ଧାନ୍ତକୁ ବଦଳାଇ ପାରେ କିନ୍ତୁ ସିଦ୍ଧାନ୍ତରେ ଉପନୀତ ହେବା ପାଇଁ ଏ ପୁସ୍ତକରେ ଅବଲମ୍ବନ କରିଥିବା ପ୍ରକ୍ରିୟା ଅନ୍ୟଥା ହେବ ନାହିଁ।

ତତ୍ତ୍ୱସଂଗ୍ରହରେ ଗୌତମ ବୁଦ୍ଧଙ୍କ ବଚନର ଉଲ୍ଲେଖ ଅଛି : "ପରୀକ୍ଷ୍ୟ ଭିକ୍ଷବୋ ଗ୍ରାହ୍ୟଂ ମଦ୍‌ବଚୋ ନ ତୁ ଗୌରବାତ୍"। ମୋ କଥାକୁ ନିଜେ ପରଖି ଗ୍ରହଣ କର କିନ୍ତୁ ମୋତେ ଗୌରବ ଦେବା ପାଇଁ ସେପରି କର ନାହିଁ। ପାଠକମାନେ ଏହି ବିଚାରଧାରାରେ ମୋ ଲେଖାକୁ ତଥା ଅନ୍ୟମାନଙ୍କ ଲେଖାକୁ, ଗ୍ରହଣ କଲେ, ସ୍ୱବିବେକସିଦ୍ଧ କଳନା କଲେ, ଏକବିଂଶ ଶତାବ୍ଦୀରେ ରଚିତ ଓଡ଼ିଆ ସାହିତ୍ୟର ଇତିହାସ ଚର୍ଚ୍ଚା ପ୍ରାମାଣିକ, ଯୁକ୍ତିଯୁକ୍ତ ଓ ସୁସଂଗତ ରୂପ ଗ୍ରହଣ କରିବ, ଏହା ମୋର ଏକାନ୍ତ ଆଶା।

ପ୍ରାଚୀନ ଓଡ଼ିଆ ସାହିତ୍ୟାନୁରାଗୀ ଅନେକ ପାଠକ ମୋର ସେହି ବିଷୟକ ପ୍ରବନ୍ଧଗୁଡ଼ିକର ପ୍ରଶଂସା କରି ସେଗୁଡ଼ିକ ପୁସ୍ତକାକାରରେ ପ୍ରକାଶିତ ହେଲେ ପ୍ରାଚୀନ ସାହିତ୍ୟର ଅଧେତା ଓ ଗବେଷକମାନଙ୍କର ଉପକାର ହେବ ବୋଲି କହୁଥିଲେ। ମୋର ସେହି ବିଷୟକ ସବୁ ପ୍ରବନ୍ଧକୁ ଏକତ୍ର କଲେ ପୁସ୍ତକଟି ଅତିକାୟ ହେବ ବୋଲି ତନ୍ମଧ୍ୟରୁ ଅଳ୍ପ କେତୋଟି ମୁଖ୍ୟ ପ୍ରବନ୍ଧର ବିଷୟକୁ ପୁସ୍ତକ ପାଇଁ ବାଛିଲି ଓ ଇତିମଧ୍ୟରେ ପ୍ରକାଶିତ କେତେକ ତଥ୍ୟକୁ ଯୋଗ କରି ସେଗୁଡ଼ିକୁ ଅଦ୍ୟତନ କରାଇଲି। ବିଷୟର ଗୁରୁତ୍ୱ ଦୃଷ୍ଟିରୁ 'ପଞ୍ଚସଖା : ପ୍ରବଞ୍ଚନାର ବ୍ୟୂହଭେଦ' ଅଧ୍ୟାୟଟିକୁ ସଂପୂର୍ଣ୍ଣଭାବରେ ନୂଆ କରି ଲେଖିଲି।

ଛତ୍ରପୁର ପରି ସାହିତ୍ୟିକ ପରିବେଶହୀନ ସ୍ଥାନରେ ରହି ପୁସ୍ତକର ପ୍ରକାଶନ ବ୍ୟବସ୍ଥା କରାଇବା ମୋ ପକ୍ଷେ ସମ୍ଭବପର ହୁଅନ୍ତା ନାହିଁ। ମୋର ପରମ ସ୍ନେହଭାଜନ ଯୁବ ଅଧ୍ୟାପକ ନୂତନ ମହାନ୍ତି ଛତ୍ରପୁର କଲେଜରେ ଥିବାବେଳେ ମୋର ଅସାମର୍ଥ୍ୟ କଥା ଜାଣିଥିଲେ। ସେ ତାଙ୍କ ଗୁରୁ ରେଭେନ୍‌ସା କଲେଜର ପ୍ରାଧ୍ୟାପକ ବିଶିଷ୍ଟ ପ୍ରାବନ୍ଧିକ ଓ ସମାଲୋଚକ ଡ଼କ୍ଟର ନଟବର ଶତପଥୀଙ୍କ ଆଗରେ ଏ ବିଷୟ ପ୍ରକାଶ କରିବାରୁ ଡ଼ଃ ଶତପଥୀ ଅତ୍ୟନ୍ତ ଆଗ୍ରହର ସହିତ ଏହାର ପ୍ରକାଶନ ବ୍ୟବସ୍ଥା କରାଇବାକୁ ଇଚ୍ଛୁକ ହେଲେ ଓ ତାଙ୍କ ସୁହୃଦ୍ ଅଧ୍ୟାପକ ଗିରୀଶ ଚନ୍ଦ୍ର ମିଶ୍ରଙ୍କୁ ଏ କର୍ମରେ ପ୍ରବୃତ୍ତ କରାଇଲେ। ଏମାନେ ମୋତେ ଅକୁଣ୍ଠ ଭାବରେ ଅନୁଗୃହୀତ କରି ନଥିଲେ ଏ ପୁସ୍ତକଟି ପ୍ରକାଶପାଇ ପାରି ନଥାନ୍ତା। ସେମାନଙ୍କୁ ମୁଁ ଆନ୍ତରିକ କୃତଜ୍ଞତା ଜଣାଉଛି।

ଛତ୍ରପୁର (ଗଞ୍ଜାମଜିଲା) | *ସଚ୍ଚିଦାନନ୍ଦ ମିଶ୍ର*
ପୁରୁଣା ଡାକଘର ସାହି,
ତା ୧୫।୮।୦୨

## ପ୍ରଥମ ଅଧ୍ୟାୟ

# 'ଶିଶୁବେଦ' - ବିଚାର

ବ୍ରହ୍ମଜ୍ଞାନ/ବ୍ରହ୍ମବିଦ୍ୟା, ଶରୀର ଭେଦ ଆଦିର ଚର୍ଚ୍ଚାଥିବା ଓଡ଼ିଶାର ଧର୍ମଗ୍ରନ୍ଥ ଗୁଡ଼ିକରେ ଓ ସାରଳାଦାସଙ୍କ ମହାଭାରତ ଭଳି ବହୁଓଡ଼ିଆ ପୁରାଣାଦି ରଚନାରେ 'ଶିଶୁବେଦ' ଶବ୍ଦର ବହୁଳ ପ୍ରୟୋଗ ଦେଖାଯାଏ। ଓଡ଼ିଶାରେ ରଚିତ ହୋଇଥିବା ସଂସ୍କୃତ ଭାଷାର ବ୍ରହ୍ମଜ୍ଞାନ ଗ୍ରନ୍ଥ ଗୁଡ଼ିକରେ ମଧ୍ୟ 'ଶିଶୁବେଦ' ଶବ୍ଦର ଉଲ୍ଲେଖ ରହିଛି। ବସ୍ତୁତଃ, ଶିଶୁବେଦ ଶବ୍ଦଟି ଆଂଚଳିକ ବ୍ରହ୍ମଜ୍ଞାନର ଏକ ପାରିଭାଷିକ ଶବ୍ଦ। ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି ବ୍ରହ୍ମଜ୍ଞାନକୁ 'ଜ୍ଞାନମିଶ୍ରା ଭକ୍ତି' ନାମ ଦେଇ ବ୍ରହ୍ମଜ୍ଞାନୀଙ୍କୁ ଓଡ଼ିଶୀ ବୈଷ୍ଣବ କହିଛନ୍ତି। ଏପରି ନାମକରଣର ସମର୍ଥନ ଦିବାକର ଦାସଙ୍କ ଜଗନ୍ନାଥାମୃତ ବା ଜଗନ୍ନାଥ ଚରିତାମୃତରେ ଚୈତନ୍ୟ-ଭକ୍ତମାନଙ୍କ ମଧ୍ୟରେ ଘଟିଥିବା ବିଭାଜନ ପରିପ୍ରେକ୍ଷଣରେହିଁ ରହିଛି। ଚୈତନ୍ୟ-ଭକ୍ତ ନ ହୋଇ ଯେଉଁ ବ୍ରହ୍ମଜ୍ଞାନପନ୍ଥୀମାନେ ଓଡ଼ିଶାରେ ପୂର୍ବରୁ ଥିଲେ ସେମାନଙ୍କୁ ଓଡ଼ିଶୀ ବୈଷ୍ଣବ କହିବାର ଯଥାର୍ଥତା ନାହିଁ। ହେଲେହେଁ ସ୍ୱର୍ଗତ ମହାନ୍ତିଙ୍କ ନାମକରଣକୁ ପରବର୍ତ୍ତୀ ସମୟର ଆଲୋଚକମାନେ ସାଧାରଣ ଭାବରେ ଗ୍ରହଣ କରିନେଇଛନ୍ତି। ଓଡ଼ିଶୀ ବୈଷ୍ଣବ ନାମଟି ଚୈତନ୍ୟ-କେନ୍ଦ୍ରିତ ତଥା ଗୌଡ଼ୀୟ-ବୈଷ୍ଣବର ପ୍ରତିଯୋଗୀ ହୋଇ ପଡୁଥିବାରୁ କେତେକ ଆଲୋଚକ 'ଓଡ଼ିଶୀ ବୈଷ୍ଣବ' ନାମକୁ ସ୍ୱୀକାର କଲେହେଁ ସେମାନଙ୍କ ପ୍ରଚାରିତ ମାର୍ଗକୁ ପୃଥକ୍ ନାମରେ ଅଭିହିତ କରିଛନ୍ତି। ଡ଼ଃ କାହ୍ନୁଚରଣ ମିଶ୍ର ତାହାକୁ 'ଜଗନ୍ନାଥ ଧର୍ମ'ର ଅନ୍ତର୍ଗତ କରିଥିବାବେଳେ ଡ଼ଃ ବଂଶୀଧର ମହାନ୍ତି 'ନାଥ ଧର୍ମ' ଭୁକ୍ତ କରି ଆଲୋଚନା କରିଛନ୍ତି। ଓଡ଼ିଶାର ବିଭିନ୍ନ ଧର୍ମପନ୍ଥା ପରସ୍ପର ମଧ୍ୟରେ ଆଚାର ବ୍ୟବହାର, ବ୍ରତ, ଭେକ, ତିଳକ, ମନ୍ତ୍ର ଆଦିର ଭିନ୍ନତା ରକ୍ଷା କରୁଥିଲେ ହେଁ ଦର୍ଶନ ଭାଗଟି ପାଇଁ ମୁଖ୍ୟତଃ ବ୍ରହ୍ମଜ୍ଞାନ ଉପରେ ଆସ୍ଥା ରଖନ୍ତି। ତେଣୁ ବିଭିନ୍ନ ପନ୍ଥାର ଗ୍ରନ୍ଥରେ ବ୍ରହ୍ମଜ୍ଞାନର ଆଲୋଚନା ଦେଖିବାକୁ ମିଳେ।

କିଛି ବର୍ଷ ପୂର୍ବେ ଡ଼ଃ ବଂଶୀଧର ମହାନ୍ତି 'ଶିଶୁବେଦ' ନାମକ କେତେକ ରଚନାର ପାଣ୍ଡୁଲେଖ ସଂଗ୍ରହ କରିବା ପରେ ଶିଶୁବେଦ ସଂପର୍କରେ ସବିସ୍ତାର ଆଲୋଚନାର ସୂତ୍ରପାତ କରିଥିଲେ। ସେ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ ସେ ଉଦ୍ଧାର କରିଥିବା 'ଶିଶୁବେଦ' ଓଡ଼ିଆ ସାହିତ୍ୟର ପ୍ରାଚୀନତମ ରଚନା। ତାଙ୍କ ସିଦ୍ଧାନ୍ତ ତାଙ୍କର

ପି.ଏଚ୍.ଡି. ସନ୍ଦର୍ଭ "ଓଡ଼ିଶାର ନାଥ ସଂପ୍ରଦାୟ ଓ ନାଥ ସାହିତ୍ୟ" (ପ୍ରକାଶକ:- ଫ୍ରେଣ୍ଡସ୍ ପବ୍ଲିଶର୍ସ, ୧୯୬୮) ମଧ୍ୟରେ ପୂର୍ଣ୍ଣଭାବରେ ସନ୍ନିବେଶିତ ହୋଇଛି। ଏହି ସନ୍ଦର୍ଭର ପରିଶିଷ୍ଟ ଭାଗରେ ସେ ପାଇଥିବା 'ଶିଶୁବେଦ'ର ପାଠ ମଧ୍ୟ ରହିଛି। ଏଥିରେ ଶିଶୁବେଦ ନାମରେ ଯାହା ସ୍ଥାନ ପାଇଛି ତାହା ପ୍ରକୃତ ପକ୍ଷେ ଗୋଟିଏ ରଚନାର ଦୁଇଟି ଅଲଗା ଅଲଗା ପାଠ (recension)। ସନ୍ଦର୍ଭ ମଧ୍ୟରେ ଦ୍ୱିବିଧ ପାଠକୁ ଏକାଦିକ୍ରମେ ସ୍ଥାନ ଦେଇ ପାଠର ଭେଦ ନେଇ କିଛିହିଁ ଆଲୋଚନା କରି ନ ଥିବାରୁ ଅନୁମାନ କରାଯାଇପାରେ ଯେ ଡ଼ଃ ମହାନ୍ତି ଉଭୟ ପାଠର ମୂଳ ଏକଥିବା ଧରିପାରିନାହାନ୍ତି। ଶୁଣିବାକୁ ମିଳୁଛି, ଏହି 'ଶିଶୁବେଦ'ର ଭିନ୍ନ ଭିନ୍ନ ପାଠ ମଧ୍ୟ କାହା କାହାଠି ରହିଛି।

ଡ଼ଃ ମହାନ୍ତିଙ୍କ ସିଦ୍ଧାନ୍ତକୁ ଅନୁମୋଦନ କରି ଡ଼ଃ ଦୋଳଗୋବିନ୍ଦ ଶାସ୍ତ୍ରୀ ଆଦି କତିପୟ ଆଲୋଚକ ଓ ଗ୍ରନ୍ଥମନ୍ଦିର ପ୍ରକାଶିତ 'ଓଡ଼ିଆ ସାହିତ୍ୟର ଇତିହାସ (୧୯୬୭) ଗ୍ରନ୍ଥ ଏହି ନବାବିଷ୍କୃତ ଶିଶୁବେଦ ରଚନାଟି ସାରଳାଦାସଙ୍କ ଠାରୁ ପ୍ରାଚୀନତର ବୋଲି ମତ ଦେଉଛନ୍ତି। ଡ଼ଃ ମହାନ୍ତି ଶିଶୁବେଦର ରଚନା କାଳ ନେଇ ସନ୍ଦର୍ଭର ନାନା ସ୍ଥାନରେ ନାନା ମତ ଦେଇଛନ୍ତି। ସେ ଶିଶୁବେଦର ରଚନାକାଳ ଖ୍ରୀ-୧୩ଶ ଶତାବ୍ଦୀ ଓ ତାହା ଓଡ଼ିଆ ସାହିତ୍ୟର ପ୍ରାଚୀନତମ ରଚନା ବୋଲି ଧରି ନେଇଥିବା କଥା ସନ୍ଦର୍ଭର ମୁଖବନ୍ଧରେ ପ୍ରକାଶ କରିଛନ୍ତି:- "ଏହି ସବୁ ଦୃଷ୍ଟିରୁ ଶିଶୁବେଦକୁ ଓଡ଼ିଆ ସାହିତ୍ୟର ପ୍ରାଚୀନତମ ରଚନା (ଖ୍ରୀ.୧୩ଶ ଶତାବ୍ଦୀ) ବୋଲି ଗ୍ରହଣ କରାଯାଇଛି" (ପୃ.୧)। କିନ୍ତୁ, ସନ୍ଦର୍ଭ ମଧ୍ୟରେ ତାହା ନିଃସନ୍ଦେହରେ ଖ୍ରୀ-୧୪ଶ ଶତାବ୍ଦୀର ବୋଲି କହିଛନ୍ତି :- "ଗୋରଖନାଥଙ୍କ ସମୟକୁ ଯଦି ଖ୍ରୀ.ଦ୍ୱାଦଶ ଶତକ ଧରାଯାଏ ଏହି ଶିଶୁବେଦର ରଚନାକୁ ନିଃସନ୍ଦେହରେ ଖ୍ରୀ.୧୪ଶ ଶତାବ୍ଦୀ ବୋଲି ଧରାଯିବ" (ପୃ.୨୧୩)। ଏହି ନିଃସନ୍ଦେହ ନିର୍ଦ୍ଧାରଣର ପରବର୍ତ୍ତୀ ବାକ୍ୟରେ ସେ ଲେଖିଛନ୍ତି : "କିଏ କହିପାରେ ହୁଏତ ତାହା ବୌଦ୍ଧଗାନ ଓ ଦୋହାର ଖୁବ୍ ନିକଟବର୍ତ୍ତୀ ସାହିତ୍ୟ କିନ୍ତୁ ତାହାର ମହତ୍ତ୍ୱ ପରିବର୍ଦ୍ଧିତ ନିମିତ୍ତ କେହି ଗୋରଖନାଥଙ୍କ ନାମ ଯୋଗ କରିଥାଇ ପାରନ୍ତି" (ପୃ.୨୧୩)। ଏପରି ମତଦେବାର ଟିକିଏ ଆଗରୁ ଡ଼ଃ ମହାନ୍ତି ମନେ କରିଥିଲେ : "ମତ୍ସ୍ୟେନ୍ଦ୍ରନାଥଙ୍କ ମୁଖରେ ଶିଶୁବେଦର ପ୍ରସଙ୍ଗରୁ ମନେ ହୁଏ ଯେ ତାହା ମତ୍ସ୍ୟେନ୍ଦ୍ରନାଥଙ୍କ ପୂର୍ବର ବା ସମକାଳୀନ। ମତ୍ସ୍ୟେନ୍ଦ୍ରନାଥଙ୍କର ସମୟ ଆଲୋଚକମାନଙ୍କ ମତରେ ଖ୍ରୀ.୬ଷ୍ଠ ଶତକ ଠାରୁ ୧୦ମ ଶତକ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ହୋଇଅଛି। କାଳକ୍ରମେ ଶିଶୁବେଦ ଅପଭ୍ରଂଶ ରଚନାଟି ମାର୍ଜିତ ହୋଇ ଓଡ଼ିଆ ରୂପ ପାଇଛି। ତଥାପି ଶିଶୁବେଦର ଭାଷାରେ ବୌଦ୍ଧଗାନ ଓ ଦୋହାର ପରବର୍ତ୍ତୀ ଭାଷାର ରୂପରେଖ ପାଉଁ (ପୃ.୨୧୨)। ଡ଼ଃ ମହାନ୍ତିଙ୍କର ଏ ପ୍ରକାର ନାନାବିଧ ମତରୁ ଏତିକି ମାତ୍ର ଜଣାଯାଉଛି ଯେ ସେ ଶିଶୁବେଦ ନାମକ ରଚନାର ରଚନାକାଳ ନିରୂପଣ କରିପାରୁ

ନଥିଲେ ହେଁ ତାହା ନିଶ୍ଚିତ ଭାବରେ ସାରଳାଦାସଙ୍କ ସମୟର ଅର୍ଥାତ୍ ଖ୍ରୀ-୧୫ଶ ଶତାବ୍ଦୀର ପୂର୍ବବର୍ତ୍ତୀ କାଳର ରଚନା ବୋଲି ନିରୂପଣ କରୁଛନ୍ତି। ନିମ୍ନରେ ତାଙ୍କ ମତର ଯଥାର୍ଥତା ପରୀକ୍ଷା କରୁଛି।

ଡ଼ଃ ମହାନ୍ତି ପ୍ରାଚୀନ ସାହିତ୍ୟରେ ଲିଖିତ 'ଶିଶୁବେଦ' ଶବ୍ଦକୁ ଏକ ନିର୍ଦ୍ଦିଷ୍ଟ ରଚନା ବୋଲି ବୁଝିବା ଓ ବୁଝାଇବା ପୂର୍ବେ ତାହାର ଅର୍ଥ ପରମାତ୍ମା ନିରାକାର ବୋଲି ଡ଼ଃ କାହ୍ନୁଚରଣ ମିଶ୍ର ଆଦି ଆଲୋଚକମାନେ କହିଥିଲେ। ଖ୍ରୀ- ୧୯୬୧ରେ ପ୍ରକାଶିତ 'ଓଡ଼ିଶୀ ବୈଷ୍ଣବ ଧର୍ମ' ପୁସ୍ତକର ଶେଷକୁ ପୃ.୮୪ରେ ଡ଼ଃ ମିଶ୍ର ଶିଶୁବେଦର ଅର୍ଥ ପରମାତ୍ମା ବୋଲି ଲେଖିଛନ୍ତି। ଡ଼ଃ ମହାନ୍ତି ପରମାତ୍ମା ଅର୍ଥକୁ ଖଣ୍ଡନ କରିବା ଲାଗି କୌଣସି ଯୁକ୍ତି ଉପସ୍ଥାପନ ନ କରି ଶିଶୁବେଦର ଅର୍ଥ ଏକ ନିର୍ଦ୍ଦିଷ୍ଟ ଗ୍ରନ୍ଥ ବୋଲି ଧାରଣା ପାଠକଙ୍କୁ ଦେଉଛନ୍ତି। ଶିଶୁବେଦ ନାମଟିରୁ ଏହାର ଅର୍ଥ ଋକ୍ ଆଦି ବେଦ ଭଳି ଏକ ଗ୍ରନ୍ଥ ହୋଇଥିବ ବୋଲି ଭ୍ରମ ଜନ୍ମିବା ଅସ୍ୱାଭାବିକ ନୁହେଁ। ଡ଼ଃ ମହାନ୍ତିଙ୍କର ଠିକ୍ ସେହି ଭ୍ରମ ହୋଇଛି।

ସରାକ ଜାତିର ଗୁରୁ ଶ୍ରୀ ଦୀନବନ୍ଧୁ ଦାସ 'ଶିଶୁବେଦ' ନାମକ ଗ୍ରନ୍ଥ ବିଷୟରେ ଡ଼ଃ ମହାନ୍ତିଙ୍କୁ କହିଥିଲେ ଯେ ''ପରମ୍ପରାକ୍ରମେ ସେମାନେ (ଅର୍ଥାତ୍ ସରାକମାନେ) ଶୁଣିଆସୁଛନ୍ତି ଯେ ''ଶିଶୁବେଦ'' ଗ୍ରନ୍ଥ ସେମାନଙ୍କର ମୂଳ ବା ପ୍ରଧାନ ଗ୍ରନ୍ଥ। କିନ୍ତୁ କୌଣସିଠାରେ ସେ ଗ୍ରନ୍ଥର ସନ୍ଧାନ ମିଳୁନାହିଁ। କିନ୍ତୁ ସେମାନେ ହଜିଯାଇଥିବା ଶିଶୁବେଦ ଗ୍ରନ୍ଥର କେତେକ ଶ୍ଳୋକ ମନେ ରଖିଛନ୍ତି। ତାଙ୍କୁ ସେହି ଶିଶୁବେଦରୁ କେତେକ ଆବୃତି କରିବାକୁ କହିବାରୁ ସେ ମହାଶୟ ନିମ୍ନଲିଖିତ ମତେ କେତେକ ପଦ ଆବୃତ୍ତି କଲେ। ତାହାର ଭାଷା ଅଶୁଦ୍ଧ ଓ ବିକୃତ ସଂସ୍କୃତ ଭାଷା।

କୈଳାସ ଶିଖରରମ୍ୟଂ ଗୌରୀ ପୃଚ୍ଛନ୍ତି ଶଙ୍କର।
ଶିଶୁବେଦ କିମାଶ୍ଚର୍ଯ୍ୟଂ କଥଂଦେବ ମହେଶ୍ୱର॥
ଓଁକାର ପ୍ରଭବା ବେଦା ବେଦାନାଞ୍ଚ ଶିଶୁବେଦ।
ଶିଶୁବେଦ ମହାଜ୍ଞାନଂ ମହାଜ୍ଞାନଂ ମହେଶ୍ୱର॥''

କିନ୍ତୁ ଡ଼ଃ ମହାନ୍ତିଙ୍କ ଦ୍ୱାରା ମୁଦ୍ରିତ ଶିଶୁବେଦରେ ଏହି ସବୁ ଶ୍ଳୋକ ତ ନାହିଁ - ସଂସ୍କୃତ ଭାଷାର ବିନ୍ଦୁବିସର୍ଗ ମଧ୍ୟ ନାହିଁ। ଏହି ପ୍ରକାରେ ସରାକ ଜାତିର ଶିଶୁବେଦ ସଂପର୍କିତ ପରଂପରା ଡ଼ଃ ମହାନ୍ତିଙ୍କ ଦ୍ୱାରା ଉପସ୍ଥାପିତ ଶିଶୁବେଦକୁ ଅସ୍ୱୀକାର କରୁଛି। ଲକ୍ଷ୍ୟ କରାଯାଇପାରେ ଯେ ଶ୍ରୀ ଦୀନବନ୍ଧୁ ଦାସ ଶିଶୁବେଦକୁ ଗ୍ରନ୍ଥ ବିଶେଷ ବୋଲି କହୁଥିଲେହେଁ ସେ ଆବୃତ୍ତି କରିଥିବା ଶ୍ଳୋକଗୁଡ଼ିକରେ ଶିଶୁବେଦର ନିରାକାର ପରମାତ୍ମା ଅର୍ଥ ଅକ୍ଷତ ରହିଛି।

ପ୍ରାଚୀନ ଗ୍ରନ୍ଥଗୁଡ଼ିକରେ ଶିଶୁବେଦର ଅର୍ଥ ଯେପରି ବୁଝାଇ ଦିଆଯାଇଛି ସେଥିରେ ଭ୍ରାନ୍ତି ପାଇଁ ଅବକାଶ ନାହିଁ। ବ୍ରହ୍ମଜ୍ଞାନରେ ପରମଜ୍ଞେୟ ପରମାତ୍ମା, ସେ ଅବ୍ୟକ୍ତ ଓ ନିର୍ଗୁଣ ହେବାରୁ ଶିଶୁବେଦ ନିର୍ଗୁଣ। ବାରଙ୍ଗଦାସଙ୍କ ବ୍ରହ୍ମକୁଣ୍ଡଳୀର ଭାଷାରେ :—

ଋକ ସାମ ଯଜୁ ଅଥର୍ବ ଏ ଗୁଣ। ଅବ୍ୟକ୍ତ ଶିଶୁବେଦ ଅଟେ ପୁଣ॥
ଶିଶୁବେଦଟି ନିର୍ଗୁଣ ହୋଇଛି। ତ୍ରିବେଣୀ ନାଦେ ଏକାକାର ଥିତି॥

ଶିଶୁବେଦ ଗ୍ରନ୍ଥ ହୋଇଥିଲେ ତାହା ଅବ୍ୟକ୍ତ ହୁଅନ୍ତା ନାହିଁ। ଶିଶୁବେଦର ଉପଲବ୍ଧି ପବନ ସାଧନାରେ ବ୍ରହ୍ମ ଚିନ୍ତନ ଦ୍ୱାରା ହୁଏ, ଅଧ୍ୟୟନ ଦ୍ୱାରା ନୁହେଁ:-

୧. ''ଶିଶୁବେଦେ ଚିତ୍ତ ଦେଇ। ବ୍ରହ୍ମସ୍ୱରୂପେ ଅଛି ଧାୟି''॥

(ଅଚ୍ୟୁତାନନ୍ଦଙ୍କର 'ବ୍ରହ୍ମଶାଙ୍କୋଳି)

୨. ''ଶିଶୁବେଦ ସାଧିଲେଟି ମନ ଥିର ହୋଇ।
ମନ ଥିର ହୋଇଲେ ସେ ପବନ ରହଇ॥
ପବନ ରହିଲେ ବିନ୍ଦୁ ରହିବ ନିଶ୍ଚଳ।
ବିନ୍ଦୁ ରହିଲେଟି କାୟା ରହିବ ନିଟଳ॥'' (ଛତିଶ ଗୁପ୍ତଗୀତା)

ସାଧନା ଦ୍ୱାରା ଲଭ୍ୟ 'ଶିଶୁବେଦ' ଏକ ରଚନା/ଗ୍ରନ୍ଥ ହୋଇ ନପାରେ। ଶିଶୁବେଦ ନିରାକାର ଶୂନ୍ୟପୁରୁଷ, ସାକାର ଗ୍ରନ୍ଥବିଶେଷ ନୁହେଁ। ତେଣୁ ସବୁଠାରେ ଶୂନ୍ୟ ଉପରେ ଶିଶୁବେଦ ଥିବାର ବର୍ଣ୍ଣନା ରହିଛି :-

୧. ''ଶିଶୁବେଦଟି ଶୂନ୍ୟେ ଥାଇ'' (ବଳରାମ ଦାସଙ୍କ 'ବିରାଟଗୀତା')

୨. ''ଠୂଳ ଶୂନ୍ୟ ଉପରେ ଯେ ଶିଶୁବେଦ ଅଛି। ଅନାହୁତ ଧ୍ୱନି ସେ ଠାବରେ ହେଉଅଛି'' (ଯୋଗୀନ୍ଦ୍ର ଦାଣ୍ଡଧୁଆ)

ନିଜେ ଡ଼ଃ ମହାନ୍ତି ଦ୍ୱାରିକା ଦାସଙ୍କ ଶିବପୁରାଣର ଶିଶୁବେଦ ପ୍ରସଙ୍ଗରେ ଲେଖିଛନ୍ତି :- ''କବି କହିଛନ୍ତି ପ୍ରଳୟରେ ସବୁ ଜୀବ ସେଠାରେ ଏକତ୍ର ହୁଅନ୍ତି। ଶିଶୁବେଦ ଭିତରେ ପରମହଂସ ରହିଅଛନ୍ତି। ଶିଶୁବେଦ ଭଜନରେ ମୃତ୍ୟୁଭୟରୁ ପ୍ରାଣୀ ରକ୍ଷା ପାଇଥାଏ'' (ସନ୍ଦର୍ଭିତ ପୃ.୨୦୭)। ଶିଶୁବେଦ ଯେ ଅଦୃଶ୍ୟ ତାହା ଶିବପୁରାଣ ସ୍ପଷ୍ଟ ଭାଷାରେ କହୁଛି :-

ଶିଶୁବେଦ ବୋଲି ଯାହା ପଚାରିଲ ସଖୀ।
ଶୂନ୍ୟରେ ଲୁଚିଛି ତାଙ୍କୁ କେହି ନାହିଁ ଦେଖି॥

ଏହା ପାଠ କରିଥିବା ସତ୍ତ୍ୱେ ଡ଼ଃ ମହାନ୍ତି ଶିଶୁବେଦକୁ ସେ ପାଇଥିବା ଏକ ଗ୍ରନ୍ଥ ବୋଲି କିପରି କହି ପାରୁଛନ୍ତି? ଦ୍ୱାରିକା ଦାସ ଯାହା କହିଛନ୍ତି ଯଶୋବନ୍ତ ଦାସ ''ଲୋହିଗୀତା''ରେ ଠିକ୍ ସେହିକଥା କହିଛନ୍ତି। ଲୋହିଗୀତା ସଂପର୍କରେ ଡ଼ଃ ମହାନ୍ତି ଲେଖିଛନ୍ତି:- ''ଅନ୍ୟତ୍ର ଏହି ଗ୍ରନ୍ଥରେ କୁହାଯାଇଛି ଯେ ପ୍ରଳୟ ପରେ ସମସ୍ତେ ଶିଶୁବେଦରେ ଲୀନ ହୁଅନ୍ତି। ଶିଶୁବେଦ ପରମ ଶୂନ୍ୟ ସ୍ଥାନରେ ରହେ। ତାଙ୍କର ବର୍ଣ୍ଣ ନୀଳବର୍ଣ୍ଣ। ସେ ଶୂନ୍ୟ ଓ ପରମ ବିଷ୍ଣୁ। ତାଙ୍କ ଅଙ୍ଗରୁ ବିଶ୍ୱ ଉତ୍ପତ୍ତି ଲାଭ କରିଛି। (ସନ୍ଦର୍ଭିତ ପୃ.୨୦୫)। ମହାପ୍ରଳୟ ବା ପ୍ରାକୃତ ପ୍ରଳୟରେ ସଂପୂର୍ଣ୍ଣ ସୃଷ୍ଟି ପରମାତ୍ମାଙ୍କଠାରେ ଲୀନ ହେବା ବର୍ଣ୍ଣନା ପ୍ରାୟ ସବୁ ପୁରାଣ ଓ ସ୍ମୃତିଗ୍ରନ୍ଥରେ ରହିଛି :-

ବ୍ୟକ୍ତାବ୍ୟକ୍ତାତ୍ମିକା ତସ୍ମିନ୍ ପ୍ରକୃତି ସ୍ୱଂପ୍ରଲୀୟତେ।
ପୁରୁଷଶ୍ଚାପି ମୈତ୍ରେୟ ବ୍ୟାପିନ୍ୟବ୍ୟାହାତ୍ମନି॥ (ବିଷ୍ଣୁପୁରାଣ ୬/୪/୪୬)
ଯୁଗପତ୍ତୁ ପ୍ରଲୀୟନ୍ତେ ଯଦା ତସ୍ମିନ୍ମହାତ୍ମନି। (ମନୁସ୍ମୃତି ୧/୫୪)

ଏଥିରୁ ସ୍ପଷ୍ଟ ହେଉଛି ଯେ ଶିଶୁବେଦ ସୃଷ୍ଟିର ପରମ ଆଶ୍ରୟ ନିରାକାର ପରମାତ୍ମା। ଏପରିକି ଡ଼ଃ ମହାନ୍ତିଙ୍କ ଶିଶୁବେଦାଖ୍ୟ ରଚନାର ଦ୍ୱିବିଧ ପାଠ ଶିଶୁବେଦର ନିରାକାର ଅର୍ଥକୁ ପରସ୍ଫୁଟ କରୁଛି। ପ୍ରଥମ ପାଠରେ ଲେଖାଅଛି :- ''ଦୁଇ କର୍ଣ୍ଣରେ ତୁଳା ଦେଇ ଭଲ କରି ବୁଜିବ। ରାତ୍ର ପାହାନ୍ତା ଉଠି ତଳେ କରିବ। ଯେବଣ ଧ୍ୱନି ଶୁଭଇ ଆକାଶର ମଇଦ୍ଧ, ଯେହାକୁ ଶିଶୁବେଦ ବୋଲିଟି''(ସଂଦର୍ଭର ପୃ.୨୯୭)। ଦ୍ୱିତୀୟ ପାଠରେ ଶିଶୁବେଦ ସ୍ଥାନରେ ରହିଛି ନିରାକାର ସ୍ୱାମୀ :- 'ଦୁଇ କର୍ଣ୍ଣେ ତୁଳା ଦେଇ ବୁଝି ପରିମାଣି। ରାତ୍ରପ୍ରହରେ ଥାଉଁ ଉଠିଣ ବସିବ। କର୍ଣ୍ଣର ମୂଳକୁ ସେ ତଲଯେ କରିବ। ଯେଉଁ ଧ୍ୱନି ଆକାଶର ମଧରେ ପୁରୋଇ'' ସେ ଶ୍ରୀ ଅନ୍ତର୍ଯ୍ୟାମୀ ନିରାକାର ସ୍ୱାମୀ'' (ସଂଦର୍ଭର ପୃ.୩୦୪)। ଡ଼ଃ ମହାନ୍ତି ଉଦ୍ଧାର କରିଥିବା 'ତତ୍ୱସାରଟୀକା ସିଦ୍ଧାନ୍ତ ଚନ୍ଦ୍ରିକା' ଗ୍ରନ୍ଥର ଅଂଶ ମଧ ଶିଶୁବେଦର ଅର୍ଥ ନିରାକାର ବୋଲି ପ୍ରକାଶ କରୁଛି:- ''ଦୁଇ କର୍ଣ୍ଣରେ ତୁଳା ଦେଇ ବୁଝି ପରିମାଣି। ଯେଉଁ ଧ୍ୱନି ଆକାଶ ମଧରେ ପୁରୋଇଂ ସେ ଶ୍ରୀ ଅନ୍ତର୍ଯ୍ୟାମୀ। ନିରାକାର ସ୍ୱାମୀ। ସେ ଶିଶୁବେଦଟି (ସଂଦର୍ଭର ପୃ.୨୦୨)। ଉଲ୍ଲିଖିତ ଉଦ୍ଧୃତି ଦ୍ୱୟର 'ବୁଝି'ର ଶୁଦ୍ଧପାଠ 'ବୁଜି' ହେବ। ଡ଼ଃ ମହାନ୍ତି ଦେଇଥିବା ଶେଷୋକ୍ତ ଗ୍ରନ୍ଥର ଉଦ୍ଧୃତିରେ ମଧ 'ଶିଶୁବେଦଟି ଜ୍ୟୋତି ନିରଂଜନ' ବୋଲି ବ୍ୟାଖ୍ୟାତ ହୋଇଛି (ପୃ.୨୦୨)।

ଶବ୍ଦର ମୂଳ ଓଁକାର ବା ପ୍ରଣବ। ତାହା ପରମାତ୍ମାଙ୍କୁ ବୁଝାଏ ବୋଲି କୁହାଯାଏ :- ତସ୍ୟ ବାଚକ ପ୍ରଣବ (ପତଞ୍ଜଳି)। ପରମାତ୍ମାଙ୍କୁ ଧ୍ୱନି ଭିତରେ ଉପଲବ୍ଧି କରିବା ଲାଗି କେତେକ ସାଧନ ମାର୍ଗ ବ୍ରହ୍ମଜ୍ଞାନରେ ରହିଛି। କାନରେ ତୁଳା ଗୁଞ୍ଜି ଶୂନ୍ୟର ଶବ୍ଦକୁ ଲୟ କରିବା ଲାଗି 'ଶିଶୁବେଦ', 'ତତ୍ୱସାର ଟୀକା ସିଦ୍ଧାନ୍ତ ଚନ୍ଦ୍ରିକା' ଛଡ଼ା ଦ୍ୱାରିକା ଦାସଙ୍କ ଗୁପ୍ତଗୀତାରେ ମଧ କୁହାଯାଇଛି :-

''ବେନି କର୍ଣ୍ଣରେ ତୁଳା ଦେଇଥିବୁ। ନିର୍ବନ୍ଧ କରିଣ ଆକ୍ଷେ ମୁଦିବୁ॥
ପାହାନ୍ତି ପହରେ ଜାଗିଲେ ନିଶି। ମାସେ ଯାଏଁ ପଦ୍ମଆସନେ ବସି॥
ମନ ଥିର କରି ବସିବୁ ବୀର। ଶୁଣିବୁ ସେ ଧ୍ୱନିମାନ କର୍ଣ୍ଣର॥ (୨୫ ଅଧାୟ)

ଦୁଇ କାନକୁ ମୁଦି ବାହାରର ଶବ୍ଦଗ୍ରହଣକୁ ନିରୋଧିଲେ ମୁଣ୍ଡ ଭିତରୁ ଭ୍ରମର ଗୁଞ୍ଜନ ପ୍ରାୟ କ୍ଷୀଣ ଧ୍ୱନିରୁ ଘଣ୍ଟାରବ ପ୍ରାୟ ଅଧିକ ସୁଶ୍ରାବ୍ୟ ଧ୍ୱନି ଶୁଭି ପାରେ। ଆଖିକୁ ବନ୍ଦ କଲେ ଜ୍ୟୋତି ଦିଶିଲା ଭଳି କାନକୁ ବନ୍ଦ କଲେ ଧ୍ୱନି ଶୁଭେ। ଏହି ଧ୍ୱନିକୁ ଇଂରାଜିରେ tinnitus କୁହାଯାଏ। ଯାହା ଏକ ପ୍ରାଚୀନ ଲ୍ୟାଟିନ୍ ଶବ୍ଦ (ଅର୍ଥ-ନିକ୍ୱଣ)।

ଓଁକାର ଉଚ୍ଚାରଣର ପ୍ରାନ୍ତସ୍ୱର ଦୀର୍ଘୀକୃତ ହେବାପରି ଏହି ସ୍ୱୟଂଜାତ ଧ୍ୱନି। ଏଣୁ ଯଶୋବନ୍ତ ଦାସ ପ୍ରେମଭକ୍ତି ବ୍ରହ୍ମଗୀତାର ତୃତୀୟ ଅଧ୍ୟାୟରେ ପ୍ରଣବକୁ ଶିଶୁବେଦ ବୋଲି କହିଛନ୍ତି।

"ହୁଁକାରୁ ଓଁକାର କ୍ଷରଇ॥ ସେହି ସେ ଅଣାକ୍ଷର ଜାଣ। ତହୁଁ
ସେ ଏକାକ୍ଷର ପୁଣ॥ ସେ ଶିଶୁବେଦ ମହାଭାର। ସେହି ସେ ଅବାବି ଅକ୍ଷର॥"

ଦ୍ୱାରିକା ଦାସ ଶିବପୁରାଣରେ ଓଁକାରରୁ ଶିଶୁବେଦ ଜାତ ହେବା କଥା କହିଛନ୍ତି। "ଓଁକାର ତହିଁରୁ ସେ ଶିଶୁବେଦ ବାହାର"।

ପ୍ରଣବ ବ୍ୟାହୃତି ଗୀତାରେ ଯମେଶ୍ୱର ଦାସ ଖୁବ୍ ସ୍ପଷ୍ଟ ଭାଷାରେ କହିଛନ୍ତି ଯେ ଶିଶୁବେଦ ହିଁ ଅଧିଆତ୍ମା (ପରମାତ୍ମା) ଯାହାର ବାଚକ ଓଁକାର :- "ଓଁକାର ଯେ ଟି ସେ ଅଧିଆତ୍ମା ଶିଶୁବେଦ ଅଟନ୍ତି" (୮ମ ଅଧ୍ୟାୟ)। ପରମାତ୍ମା ଓଁକାର ଧ୍ୱନିରେ ଚିହ୍ନିତ ହେବା ହେତୁରୁ ସେହି ଧ୍ୱନିକୁ ଚିହ୍ନାଇ ଶିଶୁବେଦର ପରିଚୟ ଅନେକ ଗ୍ରନ୍ଥରେ ରହିଛି :-

୧. ଶିଶୁବେଦ ଧ୍ୱନି ଯେ ମୂଳ ଅନହତଧ୍ୱନି।
ଯେଉଁ ଧ୍ୱନି ଜାଗିଅଛନ୍ତି ସିଦ୍ଧ ମହାମୁନି॥ (ଯୋଗାନ୍ତ ସୂତ୍ର)

୨. "ଦୋମୁହାଁ ସର୍ପ ଶିଖାରେ ଗର୍ଜଇ ଶୁଭେ ଅନହତ ଧ୍ୱନି।
ସତ୍ୟ ସୁକୃତ ଏହୁଟି ଶିଶୁବେଦ ପାରୁ ଯେବେ ପାର୍ଥ ଚିହ୍ନି॥
(ବଳରାମ ଦାସଙ୍କ ବ୍ରହ୍ମଗୀତା)

ପ୍ରଣବ ବା ଓଁକାର ନାଦର ଏକ ଭେଦ, ତହିଁରୁ ଶବ୍ଦମାନେ ଜାତ ହୁଅନ୍ତି। ଚାରିଟି ଯାକ ବେଦ ଶବ୍ଦକୁ ଆଶ୍ରୟ କରନ୍ତି। ତେଣୁ ଚାରିଟି ଯାକ ବେଦ ପ୍ରଣବାତ୍ମକ ଶିଶୁବେଦରୁ ଜାତ :-

୧. "ଅକାରୁ ଋକବେଦ, ଉକାରୁ ଯଜୁର୍ବେଦ, ମକାରୁ ସାମବେଦ, ଓଁକାରୁ ଶିଶୁବେଦ ଶବ୍ଦରୁ ଅଥର୍ବଣ ବେଦ। ଏ ଚାରିବେଦ ଶିଶୁବେଦରୁ ଜନ୍ମ ହୋଉଅଛନ୍ତି।" (ପ୍ରଣବବ୍ୟାହୃତି ଗୀତା, ୮ମ ଅଧ୍ୟାୟ)।

୨. "ଚାରିବେଦ ମଧ୍ୟେ ଶିଶୁବେଦ ନାମ ଏକ। ତାହାର ଯେ ପରାକ୍ରମ ସବୁହୁଁ ଅଧିକ॥ ସେ ନାଦର ଭେଦ ବୃକ୍ଷ ଚାରିବେଦ ଫଳ। ବୀଜରୂପେ ଶିଶୁବେଦ ତହିଁର ଆଦିମୂଳ" (ଚୈତନ୍ୟଦାସଙ୍କ ବିଷ୍ଣୁଗର୍ଭ ପୁରାଣ)।

'ଶିଶୁବେଦ' ଏକ ପୃଥକ୍ ଗ୍ରନ୍ଥ ହୋଇଥିଲେ 'ଚାରିବେଦ ମଧ୍ୟେ' ଏକ ହୋଇପାରନ୍ତା ନାହିଁ। ଶିଶୁବେଦ 'ନାଦର ଭେଦ', ପ୍ରଣବରୂପୀ। ପ୍ରଣବ ପରମାତ୍ମାଙ୍କ ବାଚକ। ଶିଶୁବେଦ ପରମାତ୍ମା ସ୍ୱରୂପ।

ବ୍ରହ୍ମଜ୍ଞାନର ପିଣ୍ଡବ୍ରହ୍ମାଣ୍ଡବାଦରେ ମାନବ ଶରୀର ମଧ୍ୟରେ ବିଶ୍ୱବ୍ରହ୍ମାଣ୍ଡ ଚିହ୍ନିତ ହୁଏ। ଶରୀରରେ ପରମାତ୍ମାଙ୍କ ସ୍ଥାନ କପାଳରେ, ତ୍ରିକୂଟ ସ୍ଥାନରେ, ସୁଷୁମ୍ନା ନାଡ଼ିର ଶୀର୍ଷଭାଗରେ।

ତେଣୁ, ଶରୀର ମଧ୍ୟରେ ଶୁଣୁବେଦକୁ ଚିହ୍ନାଇଲା ବେଳେ ନାସାର ଉପର ଦୁଇ ଚକ୍ଷୁର ମଧ୍ୟବର୍ତ୍ତୀ ସ୍ଥାନକୁ ଉଲ୍ଲେଖ କରାଯାଏ :-

ସାମ ଋକ୍ ଯଜୁ ଅଥର୍ବ ମଧ୍ୟେ ଶିଶୁବେଦ।
ଶିଶୁବେଦ ମଧ୍ୟେ ଅଛି ବ୍ରହ୍ମରନ୍ଧ୍ର ଭେଦ॥
ଭ୍ରୂଲତା ମଧ୍ୟରୁ ସେ ଦ୍ୱାର ଅଛି ଫିଟି।
ସେ ଦ୍ୱାରେ ଉଜାଣି ଟେକିଲେ ଅଲେଖକୁ ଭେଟି॥ (ଚୈତନ୍ୟ ଦାସଙ୍କ ବିଷ୍ଣୁଗର୍ଭ ପୁରାଣ, ୪ର୍ଥ ଅଧ୍ୟାୟ)

ଶରୀରରେ ବ୍ରହ୍ମାଣ୍ଡର ଚିହ୍ନଟ ଯାହା ବ୍ରହ୍ମାଣ୍ଡ ସେଇୟା। ତାହା ହିଁ ପିଣ୍ଡବ୍ରହ୍ମାଣ୍ଡର ଅଭିନ୍ନତା ଜ୍ଞାପକ ତତ୍ତ୍ୱ। ଶିଶୁବେଦରୁ ଗୋରଖନାଥ ଜାତ ହୋଇଛନ୍ତି ବୋଲି ଚନ୍ଦ୍ରଶେଖର ଦାସଙ୍କ ଗୋରଖ ସଂହିତାରେ ଯେଉଁ ବର୍ଣ୍ଣନା ରହିଛି ତାହା ମଧ୍ୟ ଏହି ମର୍ମର। ସେଥିରେ ବର୍ଣ୍ଣିତ ହୋଇଛି ଯେ ନିରାଲମ୍ବ ବ୍ରହ୍ମ ଦିନେ କପାଳରୁ ଝାଳ ପୋଛିଲେ ଓ ସେହି ଝାଳରୁ ଗୋରଖ ନାଥ ଜନ୍ମିଲେ। ଏଣୁ ଗୋରଖନାଥଙ୍କ ଜନ୍ମ ଶିଶୁବେଦରୁ। ଡ଼ଃ ମହାନ୍ତି ତାଙ୍କ ସନ୍ଦର୍ଭରେ ଗୋରଖ ସଂହିତାର ବର୍ଣ୍ଣନା ଦେଇଛନ୍ତି :-

ଅରୂପଟି ରେଖ ଶିଶୁବେଦ ସେହିଠାର।
ଶିଶୁବେଦ ଭିତରୁ ଯେ ଗୋରେଖ ଅବତାର॥
ନିରାଲମ୍ବ ଲଲାଟରେ ଶିଶୁବେଦ ସ୍ଥିତି।
ଶିଶୁବେଦ ଭିତରୁ ଗୋରେଖ ଉତପତି॥ (ସନ୍ଦର୍ଭର ପୃ. ୪୫୭)

ଶିଶୁବେଦକୁ ଏକ ଗ୍ରନ୍ଥ ବୋଲି ଚିହ୍ନାଇଲେ ବ୍ରହ୍ମଜ୍ଞାନ ବୋଧ ସମ୍ଭବପର ହେବ ନାହିଁ। ଆମ୍ଭେମାନେ ସତତ ଗ୍ରହଣ କରିବା ପ୍ରଶ୍ୱାସ 'ସ' ଶବ୍ଦ ଓ ତ୍ୟାଗ କରିବା ନିଃଶ୍ୱାସ 'ହ' ଶବ୍ଦ ଜନ୍ମାଏ। ଏହି ପ୍ରକାରେ ମନୁଷ୍ୟ ନିରନ୍ତର 'ସୋହଂହଂସ' ଭଜନରେ ରତ ରହିଥାଏ। ବ୍ରହ୍ମଜ୍ଞାନର ପରିଭାଷାରେ ଏହା ହଂସଭଜନା, ଏହା ସ୍ୱୟଂ ଭଜି ହେଉଥିବାରୁ 'ଅଜପା'। 'ହଂସ'ଠାରେ ପରମାତ୍ମା ବା ପରବ୍ରହ୍ମ ଓ ଆତ୍ମା ପରମସୂତ୍ରରେ ଗୁନ୍ଥା ହୋଇଛନ୍ତି। ହଂସର ହଂ(ଅହମ) ଆତ୍ମାର ବାଚକ ଓ ସ(ତତ୍) ପରମାତ୍ମାର ବାଚକ। ଆତ୍ମା ଓ ପରମାତ୍ମାର ନିତ୍ୟ ସଂଯୋଗ ସୋହଂ (ମୁଁ ସେ) ମଧ୍ୟରେ ବ୍ୟକ୍ତ। ହଂସର ହକାର ଆତ୍ମା ପରରଜ ବୋଲାଏ। ଶତପଥ ବ୍ରାହ୍ମଣରେ ପରୋରଜଃ ଶବ୍ଦର ପ୍ରୟୋଗ ରହିଛି ଯାହାର ଅର୍ଥ ଆତ୍ମା ଯେ କି ପୃଥିବୀର ଧୂଳି (ରଜ)ର ଉର୍ଦ୍ଧ୍ୱସ୍ଥ। ପରୋରଜ ଓଡ଼ିଶାରେ ପରରଜ ଭାବରେ ଉଚ୍ଚାରିତ। ହଂସର ସକାର ପରମାତ୍ମା, ତେଣୁ ସକାର ହେଉଛି 'ସଶବଦ'। ଏଥିରୁ ହେଲା ଅବନା (ଅର୍ଥାତ୍ ଆକାରାଦି ବନାନ ହୀନ) ଆଠ ଅକ୍ଷର :- ପରରଜ ସଶବଦ। ସଶବଦକୁ ଠାରରେ ଶିଶୁବେଦ କୁହାଯାଏ ବୋଲି ପ୍ରଣବ ବ୍ୟାହୃତି ଗୀତାରେ ବାରଂବାର କୁହାଯାଇଛି :-

୧. ସ ଶବ୍ଦ ଶିଶୁବେଦଙ୍କ ହଂ ଶବ୍ଦ ପରମଂରଙ୍କ (୪ର୍ଥ ଅଧ୍ୟାୟ)।
୨. ଶିଶୁବେଦ ସଶବ୍ଦଙ୍କ (୯ମ ଅଧ୍ୟାୟ)।

ଓଡ଼ିଶାର ବ୍ରହ୍ମଜ୍ଞାନପନ୍ଥୀମାନେ ଅବନା ଆଠ ଅକ୍ଷରକୁ ଗାୟତ୍ରୀ ମନ୍ତ୍ରର ଚତୁର୍ଥପାଦ ରୂପେ ଗ୍ରହଣ କରନ୍ତି। ଗାୟତ୍ରୀ ମନ୍ତ୍ର ମୂଳତଃ ବୈଦିକ ଗାୟତ୍ରୀ ଛନ୍ଦାଶ୍ରିତ, ତେଣୁ ତ୍ରିପାଦ। ଏହା ଋଗ୍‌ବେଦର ତୃତୀୟ .ମଣ୍ଡଳର ୬୨ତମ ସୂକ୍ତର ୧୦ମ ' ମନ୍ତ୍ର। ବ୍ରହ୍ମଜ୍ଞାନପନ୍ଥୀମାନେ ଗାୟତ୍ରୀରେ ଏକ ଚତୁର୍ଥପାଦ ଯୋଗ କରିଥାନ୍ତି। ଏହି ଚତୁର୍ଥପାଦଟି ''ପରୋରଜଃ ସ୍ୱସଂବେଦ୍ୟ''। ସ୍ୱସଂବେଦ୍ୟ ଅର୍ଥ ଯାହା ନିଜକୁ ସ୍ୱତଃ ବୋଧ ହେବ, ଯାହା ବାହ୍ୟଜଗତ୍‌ରୁ ଉପଲବ୍ଧ ଜ୍ଞାନ ନୁହେଁ, ଆପଣା ଅନ୍ତରରୁ ଉପୁଜୁଥିବା ବୋଧ। ଦୁଇ କାନ ବୁଜିଲେ ଯେଉଁ ଧ୍ୱନି ଶୁଭେ, ଯାହା ଶିଶୁବେଦର ପରିଚାୟକ, ତାହା ସ୍ୱସଂବେଦ୍ୟ। ସ୍ୱସଂବେଦ୍ୟ ଭାରତର ଭିନ୍ନ ଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ରୂପରେ ଚଳେ। ଦକ୍ଷିଣ ଭାରତରେ ଚତୁଃପାଦ ଗାୟତ୍ରୀର ଶେଷ ପାଦଟି ''ପରୋରଜସି ସର୍ବଦଂ' ରୂପରେ ଚଳେ (Bhawan's Journal, dt.24-8-1980 ''The glory of Gayatri)। ଓଡ଼ିଶାରେ ତାହା ପରରଜ ସଶବଦ (ଅବନା ଆଠ ଅକ୍ଷର)। ପୀତାମ୍ବର ଦାସଙ୍କ ନୃସିଂହ ପୁରାଣ (୩ୟ ରତ୍ନାକର) ଓ ଅନ୍ୟାନ୍ୟ ବହୁଗ୍ରନ୍ଥ ଅବନା ଆଠଅକ୍ଷରକୁ ହିଁ ମାନ୍ୟତା ଦିଅନ୍ତି। ସଶବଦକୁ ଶିଶୁବେଦ କରିବା ପଛରେ ବେଦର ପ୍ରତିଷ୍ଠା ହିଁ କାରଣ ହୋଇପାରେ।

ଶିଶୁବେଦ ଶବ୍ଦାଶ୍ରିତ ହେବା କଥା ନୁହେଁ, କାରଣ ଶବ୍ଦ (word) ଗୁଡ଼ିକ ଶିଶୁବେଦରୁ ଜାତ ହୁଅନ୍ତି। ବେଦ-ପୁରାଣ-ସ୍ମୃତି ଆଦି ଶବ୍ଦାଶ୍ରିତ ହେବା ହେତୁରୁ ବ୍ରହ୍ମଜ୍ଞାନୀ ସେଗୁଡ଼ିକୁ ସର୍ବୋଚ୍ଚ ସମ୍ମାନ ନ ଦେଇ ଶବ୍ଦପ୍ରସୂ ଶିଶୁବେଦକୁ ଦିଏ। ଶବ୍ଦ ଓ ତାହାର ଅର୍ଥ ଭିତରେ ଧନ୍ଦି ନ ହୋଇ ଶବ୍ଦମାନଙ୍କୁ ଛାଡ଼ି ଯେଉଁ ଜଗତ୍‌ବ୍ୟାପୀ ଧ୍ୱନି ଶରୀର ମଧ୍ୟରେ ନାଦିତ ହୁଏ ସେ ତାହାକୁ ଲୟ କରେ। ଏହା ହୁଏ ତାହାର ବେଦ। ଭାରତରେ ଧାର୍ମିକ ପରଂପରାରେ ବେଦକୁ ଯେ ଅଗ୍ରାହ୍ୟ କରେ ସେ ନାସ୍ତିକ। ବୋଧହୁଏ ବ୍ରହ୍ମଜ୍ଞାନୀ ନାସ୍ତିକ ହେବା ଅପବାଦକୁ ଏଡ଼ିବା ପାଇଁ ତାହାର ଧ୍ୟେୟ ଧ୍ୱନିକୁ ଶିଶୁବେଦ ନାମ ଦିଏ। ଭାରତରେ ଜ୍ଞାନକୁ ବିଶେଷତଃ ତତ୍ତ୍ୱବିଷୟକ ଜ୍ଞାନକୁ, ପ୍ରକଟ ନ କରି ଗୁପ୍ତ ରଖାଯାଏ। ଗୁପ୍ତ ରଖିବାର ଏକ ଉପାୟ ପାରିଭାଷିକ ଶବ୍ଦ ଯାହାର ଅର୍ଥ ସର୍ବଜନବୋଧ୍ୟ ଅର୍ଥଠାରୁ ଭିନ୍ନ। ଶିଶୁବେଦ ସେହିପରି ଏକ ଶବ୍ଦ ଯାହାର ନାମରେ ବେଦ ଥିଲେ ହେଁ ଯାହା ଅନ୍ୟାନ୍ୟ ବେଦ ପରି ନୁହେଁ। ତାହାକୁ ପଢ଼ାଯାଏ ନାହିଁ, ଲୟ କରାଯାଏ। 'ପ୍ରଣବସାରଗୀତା'ର ଟୀକାରେ ତଲୟ ଯୋଗ ସମାଦିର ବର୍ଣ୍ଣନା ଭିତରେ ବେଦର ଏପରି ଅର୍ଥ ପ୍ରାଞ୍ଜଳ ଭାବରେ ବ୍ୟକ୍ତ ହୋଇଛି :-

''ତଲୟ ଯୋଗ ସମାଦି। ଏ ତିନି ପ୍ରକାରେ ଲୟେ କଲେ।
ତୈଳଧାରା ଗୋଟିଏ ଯେହ୍ନେ ଅବ୍ୟଛର୍ନ ହୋଇ ତାକୁ ଉପରକୁ
ଲାଗିଥାଇ। ସେହି ମତକଇ ଲୟେ କରିବ। ଦୀର୍ଘ ଘଣ୍ଟରବ
ଶବଦ ଯେମନ୍ତ ଧ୍ୱନି ଗୋଟାଏକ ବୃଣାଢ଼ ହୋଇ ବାଜଇ।
ସେହି ମତ ଧ୍ୱନିକ ତଲ୍ୟେ କରିବ। ସାଗର ଯେ ସମୋଦ୍ର।
ତହିଁର ଗର୍ଜନ ଯେମନ୍ତ ଶୁଭଇ। ଏମନ୍ତ ଶବଦକୁ ତଲ୍ୟେ
କଲେ ଏହାଦେ ବେଦମନ୍ତ୍ର ବୋଲି। ହେ ଅର୍ଜୁନ, ଏହାକଇବେଦ ଲୟେ ବୋଲି''।

ଏହି ପ୍ରକାରେ ସାରଳାଦାସ ଆଦି ଗ୍ରନ୍ଥକର୍ତ୍ତାମାନେ ଉଲ୍ଲେଖ କରିଥିବା ''ଶୁଣୁବେଦ'' ଶବ୍ଦର ଅର୍ଥ କୌଣସି ଗ୍ରନ୍ଥବିଶେଷ ନୁହେଁ, ହେବା ସମ୍ଭବପର ନୁହେଁ। ଡ଼ଃ ମହାନ୍ତି ଶିଶୁବେଦ ନାମରେ ଯେଉଁ ରଚନାର ଦ୍ୱିବିଧ ପାଠକୁ ତାଙ୍କ ସନ୍ଦର୍ଭର ପରିଶିଷ୍ଟରେ ଦେଇଛନ୍ତି ତାହାର ଲେଖନକାର ରଚନାର ନାମ ଭାବରେ 'ଶିଶୁବେଦ' ଶବ୍ଦଟିକୁ ପ୍ରକୃତରେ ଲେଖିଛନ୍ତି କି ନାହିଁ ସ୍ପଷ୍ଟ ହେଉନାହିଁ। ଡ଼ଃ ମହାନ୍ତି ଶିଶୁବେଦ ବୋଲି ଉପସ୍ଥାପନ କରୁଥିବା ରଚନାର ପୋଥି ସେ କେଉଁଠାରୁ କେବେ ପାଇଲେ ତାହା ଜମାରୁ ଲେଖିନାହାନ୍ତି। ପୋଥି ରହିଛି କେଉଁଠି ତାହା ମଧ୍ୟ କହିନାହାନ୍ତି। ପୋଥିର ଅବସ୍ଥା ଓ ଲିପିର ଆକୃତି ସମ୍ପର୍କରେ ମଧ୍ୟ ତାଙ୍କ ସନ୍ଦର୍ଭ ସନ୍ଦେହଜନକ ମୌନତା ଅବଲମ୍ବନ କରୁଛି। ପ୍ରଥମ ପାଠଟିରେ ନାମକରଣ 'ଶିଶୁବେଦ' ପୋଥିରେ ନଥିବା ସ୍ପଷ୍ଟ। ଡ଼ଃ ମହାନ୍ତି ଶିଶୁବେଦ ନାମ ଆଗରେ (୧) ସଂକେତ ଦେଇ ଟୀକାରେ (୧) ର ତାତ୍ପର୍ଯ୍ୟ ''କୋଇଲି ନ ଜାଣଇ'' ଲେଖିଛନ୍ତି। ଜଣାପଡୁଛି ପୋଥିରେ ଲେଖାଥିଲା, ''କୋଇଭି ନ ଜାଣଇ ଶିଶୁବେଦର ବିଚାର, ବୋଇଲେ ନ ଜାଣଇ, ନ ବୋଇଲେ କଳି କରଇ, କି ବୁଦ୍ଧି କରିବା ନ ଜାଣି''। ଏହାର ପାଠୋଦ୍ଧାର କରି ଡ଼ଃ ମହାନ୍ତି 'ଶିଶୁବେଦ' ନାମକରଣ ଉଦଭାବନ କଲେ ଏହିପରି :-'ଶିଶୁବେଦ। ଶିଶୁବେଦର ବିଚାର ବୋଇଲେ ନ ଜାଣଇ, ନ ବୋଇଲେ କଳି କରଇ କି ବୁଦ୍ଧି କରିବା ନ ଜାଣି''। ଏହାର ପରବର୍ତ୍ତୀ ବାକ୍ୟଟି ଆହୁରି ପ୍ରାଞ୍ଜଳ କରି ଦେଉଛି ଯେ ଶିଶୁବେଦ ଶାସ୍ତ୍ର ନୁହେଁ। ସେହି ବାକ୍ୟଟି ଏହିପରି ସନ୍ଦର୍ଭରେ ମୁଦ୍ରିତ ହୋଇଛି :- ''ବାବୁ ଶାସ୍ତ୍ର ପଢ଼ି ସମସ୍ତେ ମରିବେ। ନ ଜାଣିବେ ଶିଶୁବେଦର ବାଣୀ''। କିନ୍ତୁ, ପୋଥିରେ ପାଠଟି ଭିନ୍ନ ରୂପେ ଥିବା ଡ଼ଃ ମହାନ୍ତିଙ୍କ ଟୀକାରୁ ଜଣାଯାଉଛି। ପୋଥିର ପାଠ ଥିଲା :- ''କାବ୍ୟ ଶାସ୍ତ୍ର ପଢ଼ାପଢ଼ି ସମସ୍ତେ କରିବେ। ନ ଜାଣିବେ ଶିଶୁବେଦର ଧ୍ୱନି''। ରଚନାଟିକୁ 'ଶିଶୁବେଦ' ନାମ ଦେବାରୁ ମୂଳରେ ଥିବା (ଧ୍ୱନି)କୁ ବଦଳାଇ ଡ଼ଃ ମହାନ୍ତି ବାଣୀ ଶବ୍ଦ ଆଣିଛନ୍ତି। ଓଡ଼ିଆ ସାହିତ୍ୟର ପ୍ରାଚୀନତମ ରଚନାର ଆବିଷ୍କର୍ତ୍ତା ହେବାର ପ୍ରଲୋଭନର ଏହା ପର୍ଯ୍ୟାପ୍ତ ପ୍ରମାଣ। ଏଣୁ ଶିଶୁବେଦ ବୋଲି ନାମିତ ପ୍ରଥମ ପାଠର ନାମଟି ଯେ ଡ଼ଃ ମହାନ୍ତିଙ୍କ ଦ୍ୱାରା ପ୍ରକ୍ଷିପ୍ତ ଏହା ଧରା ପଡ଼ିଯାଉଛି।

ଦ୍ୱିତୀୟ ପାଠର ଶିଶୁବେଦ ନାମଟି ତାଳପତ୍ର ପୋଥିରେ ଥିଲା କି ନଥିଲା ଜଣାଯାଉ ନାହିଁ। କିନ୍ତୁ, ଦ୍ୱିତୀୟ ପାଠ ଶେଷକୁ ରଚନାର ନାମ ଦ୍ୱିବିଧ ଲେଖାଅଛି :- ୧. ଆମ୍ବାପରଚେ, ୨. ଶିଶୁବେଦ। ଶେଷଟି ଏହିପରି :- ''ଆମ୍ବାପରଚେ ସଦାଜୟେ ସମ୍ପୂର୍ଣ୍ଣ। ଇତି ଶ୍ରୀ ଶିଶୁବେଦ ଗୁରୁ-ଶିଷ୍ୟ ସମ୍ବାଦେ ଶ୍ରୀ ଶିଶୁବେଦ ସମ୍ପୂର୍ଣ୍ଣହୋଇଲେ''। ରଚନାଟି କୌଣସି ଠାରେ ଗୁରୁଶିଷ୍ୟ ସମ୍ବାଦ ଭାବରେ ଉକ୍ତ ହୋଇନାହିଁ ବରଂ ସେଥିରେ ''ଶ୍ରୀକୃଷ୍ଣ କହିଲେ ଯୁଦ୍ଧେଷ୍ଟି ଅଗ୍ରତେ ବୋଲି ଲେଖାଅଛି। ଏପରି ସ୍ଥଳେ ଏହାକୁ ଗୁରୁ-ଶିଷ୍ୟ ସମ୍ବାଦ ବୋଲି ଯେ ଲେଖିଛନ୍ତି ତାଙ୍କ ଦ୍ୱାରା ପ୍ରଦତ୍ତ ଶିଶୁବେଦ ନାମକୁ ବିଶେଷ ଗୁରୁତ୍ୱ ଦେବା ସମୀଚୀନ ହେବ ନାହିଁ। ତେଣୁ ଆମ୍ବାପରଚେ ହିଁ ରଚନାର ନାମ ଓ ଆମ୍ବାପରଚେ ସଦାଜୟେ ସଂପୂର୍ଣ୍ଣ ପରବର୍ତ୍ତୀ ଅଂଶ ପ୍ରକ୍ଷିପ୍ତ ବୋଲି ଅନୁମିତ ହୁଏ।

ପୂର୍ବରୁ ସୂଚାଇଛି ଯେ ଶିଶୁବେଦ ନାମରେ ଯାହା ମୁଦ୍ରିତ ହୋଇଛି ତାହା ଯେ ଗୋଟିଏ ରଚନାର ଦ୍ୱିବିଧ ପାଠ ଏହା ଡ଼ଃ ମହାନ୍ତି ଧରି ପାରିନାହାନ୍ତି। ଉଭୟ ପାଠରେ ଅଶୁଦ୍ଧତା ଆମୂଳଚୂଳ ପୂରି ରହିଛି। ଅଶୁଦ୍ଧିର ମାତ୍ରା ଏତେ ବେଶୀ ଯେ ଦ୍ୱିବିଧ ପାଠାନ୍ତରକୁ ମିଳାଇ ଶୁଦ୍ଧ ପାଠ ପ୍ରସ୍ତୁତ କରିବାକୁ ଉଦ୍ୟମ କଲେ ମଧ୍ୟ ବିଶେଷ ସଫଳତା ଲାଭ କରି ହେବନାହିଁ। ଉଦାହରଣ ସ୍ୱରୂପ ଦ୍ୱିବିଧ ପାଠ ମଧ୍ୟରେ ପାର୍ଥକ୍ୟ ଅଧିକ ନଥିବା ଦଶମ ଶ୍ଳୋକ ଓ ତାହାର ଟୀକାକୁ ବିଚାର କରାଯାଇପାରେ। ପ୍ରଥମ ପାଠର ଦଶମ ଶ୍ଳୋକ (ସଂଦର୍ଭର ପୃ.୨୯୯):-

ଶ୍ଳୋକ - ''ମନ ଭୋଳାରେ ପବନ ଭୋଳା ତା ତୁଲେ ଭାବ ନ ଯାଇଂ। ମୂଳ କମଳ ଶକତି କୁଣ୍ଡଳୀ ସଲଖି ଚାପିଲେ ପକ୍ଷେ ନିମନ ବୋଲାଇଂ''।

ବୋଲାଇଂ ଶବ୍ଦ ପରେ ପାଦଟୀକା ସଂକେତ ଦେଇ ଡ଼ଃ ମହାନ୍ତି ଜଣାଇଛନ୍ତି ଯେ ମୂଳରେ ''ପକ୍ଷେ ନିମନ'' ସ୍ଥଳେ ''ପ୍ରୁଛଇ ମଧଂ'' ଅଛି। ଏହି ଶ୍ଳୋକଟିର ପାଠାନ୍ତର ଦ୍ୱିତୀୟ ଶିଶୁବେଦରେ ନିମ୍ନଲିଖିତ ରୂପ ଗ୍ରହଣ କରିଛି। କିନ୍ତୁ, ଡ଼ଃ ମହାନ୍ତି ସେହିଠାରେ ''ପକ୍ଷେ ନିମନ'' ଢ଼ଙ୍ଗର ଅନର୍ଥକ ହସ୍ତକ୍ଷେପ କରିବାକୁ ଯାଇନାହାନ୍ତି (ପୃ.୩୦୭):-

ଶ୍ଳୋକ - ''ମନ କଲା ଚରମନ ଭୋଳା ତା ତୁଲେ ଭୀତି ନ ଯାଇ। ଶକ୍ତି ପାତ୍ର କୁଣ୍ଡଳୀ ଭାବି ମୂଳକମଳ ଚାପିଲେ ଯେ ପଛଳିପୁଲିଆ ବୋଲାଇ''।

ଡ଼କ୍ଟର ମହାନ୍ତି 'ଶିଶୁବେଦ' ଭାବରେ ଦ୍ୱିବିଧ ପାଠକୁ ତାଙ୍କ ସଂଦର୍ଭର ପରିଶିଷ୍ଟରେ (ପୃ.୨୯୭ ରୁ ୩୧୧)ମୁଦ୍ରିତ କରିଛନ୍ତି। ଜଣାଯାଉଛି ତାଙ୍କ ପାଖରେ ଅନ୍ୟ ଏକ ଶିଶୁବେଦ ମଧ୍ୟ ଥିଲା। ସେ ସନ୍ଦର୍ଭରେ ଆଲୋଚନା କରିବାବେଳେ ଏହି ଦୁଇପାଠର ଉଦ୍ଧୃତି ନ ଦେଇ ମୁଦ୍ରିତ ହୋଇନଥିବା ତୃତୀୟ ଶିଶୁବେଦର ଉଦ୍ଧୃତି ଦେଇଛନ୍ତି। ସେ ତାଙ୍କ ସନ୍ଦର୍ଭର ପୃ. ୧୨୩ରେ ଲେଖିଛନ୍ତି :- ''ଶିଶୁବେଦରେ ସହଜ ସମାଧି ବିଷୟ ବର୍ଣ୍ଣନା କରାଯାଇ କୁହାଯାଇଛି - ଡ଼ାହାଣ ବ୍ରତେକ ଯେ ଦକ୍ଷିଣ ପିଅଳା

ନାଡ଼ୀ ଉର୍ଦ୍ଧ୍ୱମୁଖ ହୋଇଲେ ଆପଚନ୍ଦ୍ରଂ ଝରଇ। ଆକାଶରୁ ଅମୃତ ଝରଇଂ। ଅମନା ପବନରେ ଚିତ୍ତ ରହଇ, ଅବାବୀ (ଇ)ଘରେ ବାବୀ (ଇ) ରହଇ। କାମଂ ମଣ୍ଡଳେ କଳୁଂ ରହଇ। ଗୁଞ୍ଜଂର ଦୃଷ୍ଟି ନ ଖସଇ, ମନ ହସ୍ତିଶାଳରୁ ବାହାର ନୁହଇ, ନ ଖସଇ ଯେତ୍ରିକ ଯାଇ ଯେହାକୁ ସହଯ ସମାଧି ବୋଲି,'' (ଶିଶୁବେଦ ପୃ.୪୬)।

''ଖିର ବହିଲେ ପବନ ବହଇ ଉର୍ଦ୍ଧେ ଛାଡ଼ଇ ଲାଭି।
ସହଜ ଯୋଗୀ ନିସୀଧମନ, ପବନ ଏକତ୍ୱରାବି।'' (ଶିଶୁବେଦ ପୃ. ୪)

ପ୍ରଥମ ଉଦ୍ଧୃତିଟି ପୃ୪୬ର ବୋଲି ଲେଖାଥିବାରୁ ଜଣାଯାଉଛି ତୃତୀୟ ଶିଶୁବେଦଟି କାଗଜ ଖାତାରେ ଲେଖାଥିଲା ଓ ତାହା ପ୍ରକାଶିତ ଦ୍ୱିବିଧ ଶିଶୁବେଦ ଅପେକ୍ଷା ବଡ଼। ଶିଶୁବେଦର ଉଦ୍ଧୃତ ଅଂଶ ପ୍ରକାଶିତ ପ୍ରଥମ ପାଠରେ ଏହିପରି ରହିଛି (ସଂଦର୍ଭର ପୃ.୩୦୨)

''ଡ଼ାହାଣ ବ୍ରତେକ ଯୋ ଯାହାକୁ ବୋଲି ସେ ଦକ୍ଷିଣ ପିଙ୍ଗଳା ନାଡ଼ି ଉର୍ଦ୍ଧ୍ୱମୁଖ ହୋଇଲେ। ଆପଚନ୍ଦ୍ର ଝରଇ। ଆକାଶରୁ ଅମୃତ ଝରଇ। ଅମନା ଗଗନରେ ଚିତ୍ତ ରହଇ। ଗୁଞ୍ଜର ଦୃଷ୍ଟି ନ ଖସଇ। ମନ ହସ୍ତୀ ଶାଳରୁ ବାହାର ନୁହଇ। ନ ଖସଇ ଯେତିକି ଯାଉ। ଯେହାକୁ ସହଜ ସମାଦି ବୋଲି''।
ଖର ବହିଲେ ପବନ ବହଇ ଉର୍ଦ୍ଧେ ଛାଡ଼ଇ ଲାଭି।
ସହଜ ଯୋଗି ନିସିଧ ମନ ପବନ୍ ଏକତ୍ୱ ଭାବି।।''

ତୃତୀୟ ପାଠର ''ଅବାବୀ'' ଠାରୁ ''କଳୁଂ ରହଇ'' ଅଂଶ ପ୍ରଥମ ପାଠରେ ନାହିଁ ଓ ପ୍ରଥମ ପାଠର ''ଯୋ ଯାହାକୁ ବୋଲି ସେ'' ଅଂଶ ତୃତୀୟ ପାଠରେ ନାହିଁ। ଅନ୍ୟାନ୍ୟ ତାରତମ୍ୟ ସମ୍ଭବତଃ ଡ଼ଃ ମହାନ୍ତିଙ୍କ ପାଠୋଦ୍ଧାର-ଭ୍ରମ।

ଏହି ଅଂଶ ମୁଦ୍ରିତ ଶିଶୁବେଦର ଦ୍ୱିତୀୟ ପାଠରେ ବିଶେଷଭାବରେ ପରିବର୍ତ୍ତିତ। ସଂଦର୍ଭର ପୃ. ୩୦୯ରେ ସଂଶିତ ଅଂଶ ଏହିପରି ଦତ୍ତ:-

''ଡାହାଣ ବ୍ରତେକ ଯେ ସେ ଦେଶ ଦକ୍ଷିଣ ପିଂଗଳି ପଡ଼ା। ଉଧମୁଖ ହୋଇଂ ଯାହା ରସ ଖାଇଲେ ଅଙ୍ଗେ ଚନ୍ଦ୍ର ରହଇଂ। ଆକାସେ ଅମୃତ ଝରଇ। ଅବନା ଗମନ ନାମଂ ନ ରହଇ। ଆନ ଘରେ ବାହାରଇଂ। କାଉଂରି ମଣ୍ଡଳେ ବିନ୍ଦୁ ରହଇ। ପିତୁଳିର ଦୃଷ୍ଟି ନ ଖସଇ ମନ ଯେ ସେ ହସ୍ତୀ ଲୁଚି ଯାଇ। ଯେହାକୁ ଅଖଣ୍ଡ ବିନ୍ଦୁ ସମାଦି ବୋଲି।

ସର ବଢ଼ିଲେ ପବନ୍ ଯେ ରହଇ ଉର୍ଦ୍ଧରେ।
ଖାଇ ନାରି ଶୋକେ ସେ ଯୋଗୀ ମହା ସିଧ।''

ପୂର୍ବୋକ୍ତ ଦ୍ୱିବିଧ ପାଠ ଯାହାକୁ ସହଜ ସମାଧି ବୋଲି ଅଭିହିତ କରିଥିଲେ ଏହି ପାଠରେ ତାହାହିଁ 'ଅଖଣ୍ଡ ବିନ୍ଦୁ ସମାଦି'। ଏହି ପାଠରେ ସହଜ ଯୋଗ ସମାଧିର ବର୍ଣ୍ଣନା ଏହି :-

"ମନ ବଗ ଯେସନ। ମାଛ ଯେ ସେ ପବନ। ନୀର ଯେସନେକ ବିନ୍ଦୁ। ମନ ପବନକୁ ଲୟେ କଲେ। ବଗ ମାଛ ନୀର ତିନିହେଁ ବିବର୍ଜିତ ହୁଅନ୍ତି। ଯେହାକୁ ସହଜ ଯୋଗ ସମାଦି ବୋଲିଂ ;"

ଡ଼ଃ ମହାନ୍ତି ସହଜ ସମାଧିକୁ ବୁଝାଇବା ପାଇଁ ଏକ ତୃତୀୟ ଶିଶୁବେଦର ଉଦ୍ଧୃତି ଲେଖିକି ଦେଲେ ଓ ସେ ମୁଦ୍ରିତ କରିଥିବା ପାଠ ଦ୍ୱୟକୁ ଛାଡ଼ିଲେ ତାହା ଜଣାପଡୁନାହିଁ। ତାଙ୍କ ପାଖରେ ଥିବା ଶିଶୁବେଦର ନାମକରଣ ପୋଥିରେ ରହିଛି କି ତାହା ତାଙ୍କ ଦ୍ୱାରା ପ୍ରଦତ୍ତ ତାହା ଜାଣିବାର ଉପାୟ ନାହିଁ।

ପ୍ରକାଶିତ ଶିଶୁବେଦ ଦ୍ୱୟରେ ଶ୍ଳୋକାଖ୍ୟ ବିଂଶାଧିକ ଗୀତ ଓ ପ୍ରତ୍ୟେକ ଶ୍ଳୋକର ଟୀକା ଲେଖାଅଛି। ଏହି ଶ୍ଳୋକ ଅଂଶଗୁଡ଼ିକ ଯେ ମୌଳିକ ଓଡ଼ିଆ ରଚନା ନୁହେଁ, ତାହା ଲୁଚାଇବା ପାଇଁ ଡ଼ଃ ମହାନ୍ତିଙ୍କର ଉଦ୍ୟମ ସତ୍ତ୍ୱେ, ବାରି ହୋଇଯାଏ। ପରିତାପର କଥା ଡ଼ଃ ମହାନ୍ତି ବହୁସ୍ଥାନରେ ମୂଳର ଅଣଓଡ଼ିଆ ଭାଷାର ସଂକେତ ବହନ କରୁଥିବା ଅଂଶକୁ ଅବିଚାରିତ ଭାବରେ ବଦଳାଇ ତାହାକୁ ଓଡ଼ିଆ କରାଇବାକୁ ପ୍ରଯତ୍ନ କରିଛନ୍ତି। ପରିବର୍ତ୍ତନର ନମୁନା ସ୍ୱରୂପ ସଂଦର୍ଭର ପୃଷ୍ଠା ସଂଖ୍ୟା ଦେଇ ମୂଳ ଶବ୍ଦ ଓ ପରିବର୍ତ୍ତିତ ଶବ୍ଦ ନିମ୍ନରେ ଦେଉଛି। ଶିଶୁବେଦର ପ୍ରଥମ ପାଠରେ ପାଦଟୀକା ଦେଇ ପୋଥିପାଠ ସୂଚାଇଥିବାରୁ ଏହା ଜଣାଯାଉଛି। କିନ୍ତୁ ଦ୍ୱିତୀୟ ପାଠର ପୋଥିପାଠ କଣ ଥିଲା ତାହା ସେ ଜଣାଇ ନାହାନ୍ତି।

| ପୃଷ୍ଠା | ମୂଳ ରୂପ | ପରିବର୍ତ୍ତିତ ରୂପ |
|---|---|---|
| ୨୯୮ | ନୟନା | ନୟନ |
| ୩୦୧ | ଅଲେକ | ଅଲେଖ |
| ୩୦୩ | ବିବର୍ଜିତ ଯେଥ ସଦଗୁରୁ କହିୟା | (ଏ ଅଂଶ ପରିତ୍ୟକ୍ତ) |

ଡ଼ଃ ମହାନ୍ତି ମାନିଛନ୍ତି ଯେ "କାଳକ୍ରମେ 'ଶିଶୁବେଦ' ଅପଭ୍ରଂଶ ରଚନାଟି ମାର୍ଜିତ ହୋଇ ଓଡ଼ିଆ ରୂପ ପାଇଛି" (ସଂଦର୍ଭର ପୃ.୨୧୨)। ଅପଭ୍ରଂଶରୁ ଓଡ଼ିଆ ହେଲା 'କାଳକ୍ରମେ', ତାହା ସାରଳାଦାସଙ୍କ ପୂର୍ବରୁ ହୋଇଛି, ପରେ ହୋଇ ନାହିଁ, ସେ କଥାର ପ୍ରମାଣ ଡ଼ଃ ମହାନ୍ତିଙ୍କ ପାଖରେ ନାହିଁ। ଏଥିରେ ଥିବା 'ଛଡ଼ା କମଳ ଫୁଟାଙ୍କେ', 'ସଡି ସଡି ଭାଷନ୍ତି', 'ଯଛଲି', 'ଆଉଠ ହାତ କଲେବର', 'ମନୁରା', 'ଡ଼ାହାଣ ବ୍ରତେକଙ୍କେ', 'ଜଡ଼ର କିୟେ', 'ଖାଇ ନାରି', 'କଚରି (୧)ଝଲମକ', 'ଖୁପକା', 'ଝିମିଝିମି ବରଷା', 'ତତ', 'ଜସୁ' 'ଯେସେ' (ଯୈସେ), 'ମହାରସ ଶୋଷିବେ ଗୁଂଜନ ନ ଖସିବେ', 'ସ ଯୋତି ପ୍ରକାଶ' ଭଳି ଶବ୍ଦାବଳୀ ଅଣଓଡ଼ିଆ (ଉତ୍ତରଭାରତୀୟ) ଭାଷାର ସଂକେତ ବହନ କରେ। ଡ଼ଃ ମହାନ୍ତି ମାନିଛନ୍ତି "ଅପଭ୍ରଂଶ ଭାଷାରେ ଲିଖିତ ଖୋରେଖବାଣୀର କେତେକ ପଦର ମଧ୍ୟ ଶିଶୁବେଦର ପଦ ସହିତ ପୂର୍ଣ୍ଣ ସାମଞ୍ଜସ୍ୟ ରହିଛି" (ସଂଦର୍ଭର ମୁଖବନ୍ଧ)। ଶିଶୁବେଦ ନାମିତ ରଚନାର

ପାଠରେ ଅଶୁଦ୍ଧି ଓ ଅବୋଧତାର ପ୍ରାବଲ୍ୟ ଦୁଷ୍ଟେ ତାହା ମୂଳତଃ ଓଡ଼ିଆ ନଥିବା ସୂଚାଉଛି। ଓଡ଼ିଆ ହୋଇଥିଲେ ଅନୁଲେଖକ ନିଜେ ବୁଝିପାରନ୍ତା ଓ ବୋଧ ପାଠ ଲେଖିପାରନ୍ତା। ତେଣୁ, ଅନୁମିତ ହୁଏ ଗୋରଖନାଥଙ୍କ ସଂପ୍ରଦାୟର କୌଣସି ଅପଭ୍ରଂଶ ରଚନାକୁ ଆଣି ଓଡ଼ିଶାରେ ଚଳାଇବା ପ୍ରଚେଷ୍ଟାରୁ ଶିଶୁବେଦାଖ୍ୟ ରଚନାର ଜନ୍ମ। ଏହି ପ୍ରକାରେ ଶିଶୁବେଦରେ ମିଶ୍ରିତ ଭାଷାର ସଂକେତ ମିଳେ ଓ ତାହାର ଭାଷାରେ କ୍ରିୟା ରୂପ ନିର୍ଦ୍ଦିଷ୍ଟ ନୁହେଁ।

ଶିଶୁବେଦର ଶ୍ଳୋକାଖ୍ୟ ଗୀତଗୁଡ଼ିକର ଭାଷାରେ ଅନିଶ୍ଚିତତା ରହିଛି। କିନ୍ତୁ, ତାହାର ଟୀକା ବା ଅର୍ଥ ରୂପେ ଥିବା ଗଦ୍ୟାଂଶ ଗୁଡ଼ିକ ଶୁଦ୍ଧ ଓଡ଼ିଆ। ପୂର୍ବୋଦ୍ଧୃତ ଦଶମ ଶ୍ଳୋକ 'ମନ ଭୋଳାରେ....''ର ଅର୍ଥ ପ୍ରଥମ ପାଠରେ ରହିଛି।

କୁଣ୍ଡଳିକୁ କାଳ ସର୍ପ ବୋଲି। ସର୍ପ ବୋଲି ପବନକୁଟି। ଗୁହିଯ ଦ୍ୱାରେ ବାମ ଗୋଇଠି ଚାପି ବସିବ। ପବନ ଇଅଁଳା ପିଅଁଳାରେ ଖଞ୍ଜିଲେ ଯେହାକୁ ରବିଚନ୍ଦ୍ର ଓଡ଼ିଆଣୀ ବୋଲି'' (ସଂଦର୍ଭର ପୃ. ୩୦୦)।

ଦ୍ୱିତୀୟ ପାଠର ସେହି ଶ୍ଳୋକର ଅର୍ଥ ଏହିପରି ରହିଛି :-

''କୁଣ୍ଡଳୀକି ସପ୍ତଫଣୀ ବୋଲି। ସର୍ପିଣୀ ପବନକୁ ବୋଲି। ଗୁହ୍ୟ ଦ୍ୱାରେ ବାମ ଗୋଇଠି ଦେଇ ବସିବ। ପବନ ଲାଗି ପିଙ୍ଗଳା ପଶିଲେ ଯେହାକୁ ରବିଚନ୍ଦ୍ର ଓଢ଼ଣ ବୋଲି'' (ସଂଦର୍ଭର ପୃ. ୩୦୭)।

ଶିଶୁବେଦରେ ତଥା ତାହାର ଅର୍ଥ ଅଂଶରେ ଏପରି କୌଣସି ଲକ୍ଷଣ ନାହିଁ ଯାହାକୁ ତାକୁ ସପ୍ତଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ସମୟର ସୃଷ୍ଟି ବୋଲି ସିଦ୍ଧ କରିବ। ସପ୍ତଦଶ ଶତାବ୍ଦୀ ଯାଏଁ ଓଡ଼ିଆରେ ବ୍ୟବହୃତ ଦ୍ୱିତୀୟା ବିଭକ୍ତିର 'କଇ' ଓ 'ନ୍ତ' ପ୍ରତ୍ୟୟ ନିଶ୍ଚିତାର୍ଥକ 'ହାନ୍ଦେ' ଅବ୍ୟୟ, ଗାବନ୍ତ, ପାବଇ ଭଳି କ୍ରିୟାରୂପ ଆଦି ପ୍ରାଚୀନତା ଜ୍ଞାପକ ସଂକେତ ଏଥିରେ ନାହିଁ। ଡ଼ଃ ମହାନ୍ତି ଶିଶୁବେଦରେ ବ୍ୟବହୃତ ୩୨ଟି ଶବ୍ଦକୁ ପ୍ରାଚୀନ ଶବ୍ଦ ଭାବରେ ଉଲ୍ଲେଖ କରିଛନ୍ତି। ତନ୍ମଧ୍ୟରୁ ଜସୁ ଅପଭ୍ରଂଶ ଶବ୍ଦ। ସାଢ଼େ ତିନି ଅର୍ଥରେ ଆହୁଟ ପ୍ରାଚୀନ ଓଡ଼ିଆ ଶବ୍ଦ। ମଇଁଧ, ଗରୁହ, ଅମନାଗମନ, ରୋବନ୍ତ, ନିନ, ବକା(ବକର ବହୁବଚନ?), ଖାୟା, ସତି ଆଦି ଶବ୍ଦର ରୂପ ପ୍ରାମାଦିକ। [illegible] ଭ୍ରମରୁ ଏ ସବୁର ଜନ୍ମ ହୋଇଥାଇପାରେ। ଶିଶୁବେଦର ଲେଖନକାର ପୋଖତ ଲୋକ ହୋଇନଥିବାରୁ ଏକା ଶବ୍ଦକୁ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଭାବରେ ବନାନ କରିଥିବା ଜଣାପଡ଼େ। ମଧ୍ୟ ଶବ୍ଦର ବନାନ ଶିଶୁବେଦରେ ଅତିକମ୍‌ରେ ପାଞ୍ଚ ପ୍ରକାର ହୋଇଛି :- ମଇନ୍ଧ, ମନ୍ଧେ, ମଧେଂ, ମୈଧ ଓ ମଧ। ଅନ୍ୟାନ୍ୟ ଶବ୍ଦ କ୍ଷେତ୍ରରେ ମଧ ବନାନର ଅନୁରୂପ ଅନିର୍ଦ୍ଦିଷ୍ଟତା ରହିଛି। ତେଣୁ, ବନାନ ଭେଦକୁ ଧରି ରଚନାଟିର ପ୍ରାଚୀନତା ନିରୂପଣ କରିବା ଅଯୁକ୍ତିକର ହେବ। ଡ଼ଃ ମହାନ୍ତି ଅଖି(ଅଛି), ଛୀର(କ୍ଷୀର), ଖାୟା(ଛାୟା)

ଭଳି ଶବ୍ଦକୁ ପ୍ରାଚୀନ ଶବ୍ଦ ବୋଲି ଦର୍ଶାଇଛନ୍ତି। କିନ୍ତୁ, 'କ୍ଷ ସ୍ଥାନରେ ଛ ଓ ଛ ସ୍ଥାନରେ କ୍ଷ ଲେଖିବା ଖୋଇ କେତେକ ଲେଖନକାରଙ୍କର ଥିଲା। ଊନବିଂଶ ଶତାବ୍ଦୀରେ ଲିଖିତ ପୋଥିରେ ମଧ୍ୟ ଏହି ରୀତି ଦେଖିବାକୁ ମିଳେ। ଡ଼ଃ ମହାନ୍ତି ଶିଶୁବେଦରେ ବ୍ୟବହୃତ ପ୍ରାଚୀନ ଶବ୍ଦ ଭାବରେ ତାଲିକାଭୁକ୍ତ କରିଥିବା ତଲେ, ଧୂନି, ଅଲଗ, ବିଲଗ, ସମ୍ଭାଇ, ତୁଳାହୁଁ, ସ୍ରିଜଇ, ସୟେଂ, ଅବାବି, ପ୍ରମହଂସ, ରେହ, ପ୍ରଚେ ଓ ଆପ ଶବ୍ଦଗୁଡ଼ିକ ସପ୍ତଦଶ ଶତକ ଓ ପରବର୍ତ୍ତୀ କାଳର ଦ୍ୱାରିକା ଦାସ, ଦେବାନନ୍ଦ ଦାସ, ହାଡ଼ୁଦାସ ଆଦି କବିଙ୍କ ରଚନାରେ ବ୍ୟବହୃତ ହୋଇଛି। ମହାରସ, ଓଡ଼ିଆଣୀ, ସୁସୁପୁତି ଆଦି ଅନ୍ୟ ଶବ୍ଦଗୁଡ଼ିକରେ ମଧ୍ୟ ପ୍ରାଚୀନତାର ଲକ୍ଷଣ ନାହିଁ। ଏହି ପ୍ରକାରେ ଭାଷାବିଚାରରୁ ଏହି ଶିଶୁବେଦାଖ୍ୟ ରଚନାକୁ ସାରଳାଦାସଙ୍କ ଠାରୁ ପ୍ରାଚୀନତର ବୋଲି ପ୍ରତିପାଦିତ କରିବା ତ ଦୂରର କଥା ତାହା ୧୭ଶ ଶତାବ୍ଦୀ ପୂର୍ବର ବୋଲି ମଧ୍ୟ କହିହେଉ ନାହିଁ।

ଏହି ଆଲୋଚନାର ସିଦ୍ଧାନ୍ତଗୁଡ଼ିକୁ ପୁଣି ଥରେ ଲେଖୁଛି :-

୧. ଡ଼ଃ ବଂଶୀଧର ମହାନ୍ତିଙ୍କ ପିଏଚ୍.ଡ଼ି ସନ୍ଦର୍ଭ 'ଓଡ଼ିଶାର ନାଥ ସଂପ୍ରଦାୟ ଓ ନାଥ ସାହିତ୍ୟ'ରେ ପ୍ରକାଶିତ ଶିଶୁବେଦ ଶୀର୍ଷକ ଲେଖା ପ୍ରକୃତରେ ଗୋଟିଏ ରଚନାର ଦ୍ୱିବିଧ ପାଠ। ତାଙ୍କ ପାଖରେ ଏହାର ଅନ୍ୟ ଏକ ପାଠାନ୍ତର ଥିଲା ଯାହାକୁ ସେ ପ୍ରକାଶ କରି ନାହାନ୍ତି।

୨. ଏହାର ପଦ୍ୟ ଅଂଶ ଗୁଡ଼ିକ ମୌଳିକ ଓଡ଼ିଆ ରଚନା ନୁହେଁ। ଗଦ୍ୟ ଅଂଶ ଗୁଡ଼ିକ ଓଡ଼ିଆ। କିନ୍ତୁ, ତାହା ସପ୍ତଦଶ ଶତାବ୍ଦୀ ପୂର୍ବରୁ ରଚିତ ହୋଇଥିବା ଜଣାଯାଉନାହିଁ।

୩. ଉତ୍ତର ଭାରତୀୟ ଭାଷାରେ ରଚିତ କୌଣସି ଗୋରଖପନ୍ଥୀ ରଚନାକୁ ପ୍ରାୟ ଖ୍ରୀ-୧୭ଶ ଶତାବ୍ଦୀରେ ଓଡ଼ିଆରେ ରୂପାନ୍ତରିତ କରିବା ପ୍ରଚେଷ୍ଟାରୁ ଏହି ତଥାକଥିତ ଶିଶୁବେଦର ଜନ୍ମ।

୪. ପ୍ରାଚୀନ ସାହିତ୍ୟରେ ଯେଉଁ ଶିଶୁବେଦ ବିଷୟ ଲେଖାଅଛି ତାହା 'ସ' ଶବ୍ଦ, ଯାହା ପରମାତ୍ମାଙ୍କ ବାଚକ ଧ୍ୱନିମାତ୍ର। ତାହା କୌଣସି ଗ୍ରନ୍ଥ ହେବା ଅସମ୍ଭବ।

୫. ପ୍ରକାଶିତ ଶିଶୁବେଦର ପାଠରେ ଅଶୁଦ୍ଧି ଭରପୂର ରହିଥିବାରୁ ତାହା ଆମୂଳଚୂଳ ଅବୋଧ୍ୟ।

୬. ଶିଶୁବେଦ ନାମରେ ପ୍ରକାଶିତ ରଚନାର ପ୍ରକୃତ ନାମ 'ଆତ୍ମାପରଚେ' ହୋଇଥିବା ସମ୍ଭବ।

ଦ୍ୱିତୀୟ ଅଧ୍ୟାୟ

# କଳସା ବିଚାର

ଓଡ଼ିଆ ସାହିତ୍ୟର ସବୁଠାରୁ ପୁରୁଣା ରଚନା କେଉଁଟି ? ଓଡ଼ିଆର ପ୍ରାଚୀନତମ କବି କିଏ ? ଏପରି ପ୍ରଶ୍ନ ଅନେକଙ୍କ ମନରେ ଉଠେ। ଯେ କୌଣସି ଭାଷାର ସାହିତ୍ୟର ଆଦିକବିଙ୍କୁ ଖୋଜିବା, ଆଦିମ କୃତିକୁ ଚିହ୍ନଟ କରିବା ବଡ଼ ଦୁରୂହ ବ୍ୟାପାର। ଏ ପ୍ରକାର ପ୍ରଶ୍ନର ଉତ୍ତର ଦେଲେ ସେହି ଭାଷାର ଲିଖିତ ସାହିତ୍ୟ ଠିକ୍ ସେହି ରଚନାଠାରୁ ଆରମ୍ଭ ହେଲା ବୋଲି କହିବାକୁ ପଡ଼ିବ ଓ ଫଳତଃ ସ୍ୱୀକାର କରିବାକୁ ହେବ ଯେ ସେହି ରଚନା-ବିଶେଷର ପୂର୍ବରୁ ସେହି ଭାଷାରେ କିଛି ଲେଖାଯାଉ ନଥିଲା। ଏପରି ସ୍ୱୀକୃତି ପକ୍ଷରେ କୌଣସି ପ୍ରମାଣ ରହିପାରିବ ନାହିଁ। ଥିବା କଥାର ପ୍ରମାଣ ରହିପାରେ, ନଥିବା କଥାର ପ୍ରମାଣ ରହିପାରିବ ନାହିଁ। ତେଣୁ, ପ୍ରକାଶିତ ରଚନାଗୁଡ଼ିକ ମଧ୍ୟରେ ପ୍ରାଚୀନତମର ସନ୍ଧାନ କରାଯାଇପାରେ। ଏତଦ୍ୱାରା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ ପ୍ରକାଶିତ ରଚନାଗୁଡ଼ିକ ଅପେକ୍ଷା ପ୍ରାଚୀନତର ରଚନା ଭବିଷ୍ୟତ୍‌ରେ ଲୋକଲୋଚନକୁ ଆସିପାରେ।

**ଚର୍ଯ୍ୟାଗୀତି ବିଚାର୍ଯ୍ୟ ନୁହେଁ**

ଅନ୍ତତଃ ତିନି ଶହ ବର୍ଷ ଆଗେ ଭାରତର ବିଭିନ୍ନ ଆଂଚଳିକ ନବ-ଭାରତୀୟ ଭାଷା 'ପ୍ରାକୃତ' ଏହି ସାଧାରଣ ନାମରେହିଁ ଆଖ୍ୟାତ ହେଉଥିଲେ। ଅନ୍ୟାନ୍ୟ ଆଂଚଳିକ ପ୍ରାକୃତ ଠାରୁ ଓଡ଼ିଶାରେ ପ୍ରଚଳିତ ପ୍ରାକୃତର ବିଚ୍ଛେଦ ହଠାତ୍ ହୋଇନାହିଁ। ଫରକ୍ ଆସିଛି ଧୀରେ, ଅତି ମନ୍ଥର ଗତିରେ। ଓଡ଼ିଆ ଭାଷାରେ ସାହିତ୍ୟ ସୃଷ୍ଟିର ଅଖଣ୍ଡିତ କ୍ରମ ସାରଳା ଦାସଙ୍କ ସମୟଠାରୁ ଏ ପର୍ଯ୍ୟନ୍ତ ରହିଆସିଛି। ସାରଳା ଦାସ ସେ ବ୍ୟବହାର କରୁଥିବା ଭାଷାକୁ ସର୍ବତ ପରାକୃତ (ପ୍ରାକୃତ) ନାମରେ ଅଭିହିତ କରିଛନ୍ତି, ଓଡ଼ିଆ ବୋଲି କହିନାହାନ୍ତି। ହେଲେ ହେଁ, ତାହା ଓଡ଼ିଆ। କାରଣ, ତାଙ୍କ ଭାଷା ଓ ପରବର୍ତ୍ତୀ ସମୟରେ ପ୍ରଚଳିତ ଉତ୍କଳ ଭାଷା ବା ଓଡ଼ିଆ ଭାଷା ମଧ୍ୟରେ ଆକୃତିଗତ ଅବିଚ୍ଛିନ୍ନତା ରହି ଆସିଛି। ସାରଳାଦାସଙ୍କଠାରୁ ପ୍ରାୟ ପାଞ୍ଚଶହ ବର୍ଷ ପ୍ରାଚୀନତର ଚର୍ଯ୍ୟାଗୀତିଗୁଡ଼ିକର ଭାଷା ଓଡ଼ିଆ ବୋଲି ଅନେକ ଆଲୋଚକ ମତ ଦେଇଛନ୍ତି। କିନ୍ତୁ ଚର୍ଯ୍ୟାଗୀତିର ଭାଷା ସେଗୁଡ଼ିକ ଲେଖାହେବା ବେଳେ ବି ଲୌକିକ ଭାଷାଥିବା ସନ୍ଦେହଜନକ। ତାହା ଲୋକରେ ପ୍ରଚଳିତ

ଭାଷା ହୋଇଥିଲେ ସଂସ୍କୃତ ଭାଷାରେ ତାହାର ଟୀକା ରଚନାର ପ୍ରୟୋଜନ ନଥାନ୍ତା। ପରବର୍ତ୍ତୀ ସମୟର ବ୍ରଜବୋଲି ପରି ଚର୍ଯ୍ୟାଗୀତିର ଭାଷା ଏକ ଧର୍ମ-ସଂପ୍ରଦାୟ ମଧ୍ୟରେ ଚଳିବା ପାଇଁ ଅଭିପ୍ରେତ ଏକ କୃତ୍ରିମ ଭାଷା ହୋଇଥାଇ ପାରେ। ସେହି ସକାଶରୁ ତାହାକୁ ବୁଝାଇବା ପାଇଁ ସଂସ୍କୃତ ଭାଷାର ଉପଯୋଗ କରାଯାଇଥିଲା। ଏହି ସଂଦେହ ଦୃଢ଼ୀଭୂତ ହୁଏ ପ୍ରକାରାନ୍ତରେ ତାମ୍ରଲେଖ ଓ ଶିଳାଲେଖ ଦ୍ୱାରା। ଶିଳାଲେଖ ଗୁଡ଼ିକରେ ପାଲି, ସଂସ୍କୃତ ଓ ଆଂଚଳିକ ଭାଷାର ପୂର୍ବରୂପ ପ୍ରାକୃତର ବ୍ୟବହାର ମିଳୁଛି କିନ୍ତୁ ଚର୍ଯ୍ୟାଗୀତିର ଭାଷାର ବ୍ୟବହୃତ ହେବା ଦେଖା ଯାଇନାହିଁ। ତାହା ଲୋକରେ ପ୍ରଚଳିତ ଭାଷା ହୋଇଥିଲେ ଶିଳାଲେଖରେ ବା ତାମ୍ରଲେଖରେ ବ୍ୟବହାର କରିବା ଆବଶ୍ୟକ ହୋଇଥାଆନ୍ତା। ପୁଣି, ଚର୍ଯ୍ୟାଗୀତିର ଭାଷାରେ ବ୍ୟାକରଣ ନିୟମର ଅନିୟମିତତା ଏତେ ଦୂର ରହିଛି ଯେ ତାହା ଅପଭ୍ରଂଶ ବୋଲି ମଧ୍ୟ କହି ହେଉନାହିଁ ଓ ତାହାର କାଳାନୁକ୍ରମିକ ବିକାଶ ଧାରାରେ ଓଡ଼ିଆ କି ବଙ୍ଗଳା କି ମୈଥିଳୀ ଆଦି ଭାଷା ଜାତ ହୋଇଥିବା କଥା ଜଣାପଡ଼େ ନାହିଁ। ଭାଷାର ଅଖଣ୍ଡ କ୍ରମ ଅଭାବରେ ଓଡ଼ିଆ ସାହିତ୍ୟର ଅତୀତ ଚର୍ଚ୍ଚା ପ୍ରସଙ୍ଗରେ ଚର୍ଯ୍ୟାଗୀତିଗୁଡ଼ିକର ବିଚାର ପ୍ରାସଙ୍ଗିକ ନୁହେଁ।

## ସାରଳା ଦାସଙ୍କ ପୂର୍ବର ରଚନା

ସାରଳା ହେଉଛନ୍ତି ଓଡ଼ିଆ ସାହିତ୍ୟର ପ୍ରାଚୀନତମ କବି ଯାହାଙ୍କର ସମୟ ସ୍ଥୂଳ ଭାବରେ ନିରୂପିତ ହୋଇପାରୁଛି। ମହାଭାରତ ଗ୍ରନ୍ଥର ଆରମ୍ଭରେ ସାରଳାଦାସ ସୂଚାଇଛନ୍ତି ଯେ ତାହା ଲେଖାହେବା ବେଳକୁ 'କପିଳେଶ୍ୱର ଦେବ ମହାରାଜା' ରାଜତ୍ୱ କରୁଥିଲେ। କପିଳେଶ୍ୱର ବା କପିଳେନ୍ଦ୍ର ଦେବ ଖ୍ରୀ-୧୪୩୫ରୁ ୧୪୬୭ ପର୍ଯ୍ୟନ୍ତ ରାଜତ୍ୱ କରୁଥିଲେ। ତେଣୁ, ସ୍ଥୂଳ ଭାବରେ ନିରୂପିତ ହୋଇ ପାରୁଛି ଯେ ସାରଳାଦାସ ଖ୍ରୀ.୧୫ଶ ଶତାବ୍ଦୀର ମଧ୍ୟ ଭାଗରେ ମହାଭାରତ ଲେଖିଥିଲେ (ଏହି ସମୟ ଖ୍ରୀ.୧୪୫୦ ପୂର୍ବବର୍ତ୍ତୀ ହେବା ସମ୍ଭାବନା ଅଧିକ, କାରଣ ସାରଳାଦାସ କପିଳେଶ୍ୱର ଦେବଙ୍କ ଗଜପତି ଉପାଧି ଉଲ୍ଲେଖ କରିନାହାନ୍ତି ଓ କପିଳେଶ୍ୱର ଦେବ ଖ୍ରୀ ୧୪୫୦ରୁ ନିଜକୁ ଗଜପତି ଭାବରେ ଆଖ୍ୟାତ କରାଇଛନ୍ତି)। ସାରଳାଦାସଙ୍କ ମହାଭାରତକୁ ନିର୍ଦ୍ଦିଷ୍ଟ ସମୟ-ଶଙ୍କୁ ରୂପେ ଧରି ତଦପେକ୍ଷା ପ୍ରାଚୀନତର କିଛି ରଚନା ଓଡ଼ିଆରେ ପ୍ରକାଶ ପାଇଛି କି ନାହିଁ ଆଲୋଚନା କରାଯାଇପାରେ।

ମହାଭାରତ ଅପେକ୍ଷା ପ୍ରାଚୀନତର ହେବାର ଦାବି ଚାରିଗୋଟି ରଚନା ସମ୍ପର୍କରେ କରାଯାଉଛି :- ୧. ଶିଶୁବେଦ ୨. ସିଦ୍ଧେଶ୍ୱର ଦାସଙ୍କ 'ବିଚିତ୍ର ରାମାୟଣ' ୩. ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି' ଓ ୪. ବତ୍ସାଦାସଙ୍କ କଳସା ଚଉତିଶା।

୧. ଡ଼ଃ ବଂଶୀଧର ମହାନ୍ତିଙ୍କ ଦ୍ୱାରା ପ୍ରକାଶିତ 'ଶିଶୁବେଦ' ସଂପର୍କରେ ଆଲୋଚନା ଶିଶୁବେଦ ବିଚାର ଅଧ୍ୟାୟରେ କରାଯାଇଛି।

୨. ସିଦ୍ଧେଶ୍ୱର ଦାସଙ୍କର ବିଚିତ୍ର ରାମାୟଣର ଅସ୍ତିତ୍ୱ ମୁଁ ତାହାକୁ ଲୋକଲୋଚନକୁ ଆଣିବା ପୂର୍ବେ ଓଡ଼ିଶାରେ ଅଜ୍ଞାତ ଥିଲା। ମୁଁ ବିଚିତ୍ର ରାମାୟଣକୁ ସଂପାଦନା କରି ପ୍ରକାଶିତ କରାଇବା ସହିତ ଗ୍ରନ୍ଥ ସଂପର୍କରେ ସବିସ୍ତାର ଆଲୋଚନା ଡଗର ସାହିତ୍ୟପତ୍ରର ଆଠୋଟି ସଂଖ୍ୟାରେ କରିଛି (ତାହା ମୋର ଅଦ୍ୟାବଧି ଅପ୍ରକାଶିତ ସାରଳାଦାସ-ଅଧ୍ୟୟନ' ଗ୍ରନ୍ଥର ଅନ୍ତର୍ଭୁକ୍ତ ହୋଇଛି ମଧ୍ୟ)। ସେଥିରେ ମୁଁ ସପ୍ରମାଣ ସିଦ୍ଧାନ୍ତ କରିଛି ଯେ ସାରଳାଦାସହିଁ ମହାଭାରତ ରଚନା ଆରମ୍ଭ କରିବା ପୂର୍ବେ ସିଦ୍ଧେଶ୍ୱର ଦାସ ନାମରେ 'ବିଚିତ୍ର ରାମାୟଣ' ରଚନା କରିଛନ୍ତି। ମହାଭାରତ ରଚନା ଆରମ୍ଭ କରିବା ବେଳକୁ କବିଙ୍କର ବୟସ 'ଅଳ୍ପ ଥିବା କଥା ସେ ଜଣାଇଥିବା ହେତୁ ବିଚିତ୍ର ରାମାୟଣର ରଚନା ମହାଭାରତର ୫/୭ ବର୍ଷ ପୂର୍ବବର୍ତ୍ତୀ ହିଁ ହୋଇପାରେ।

୩. ଜଗନ୍ନାଥ ଦାସ ନାମଧେୟ ଜଣେ କବି କେଶବକୋଇଲିର ଗୂଢ଼ ଅର୍ଥ ପ୍ରକାଶ କରିବା ପାଇଁ ଅର୍ଥକୋଇଲି (ବା କେଶବ କୋଇଲି ଅର୍ଥ) ଲେଖିଛନ୍ତି। ଏହି ଜଗନ୍ନାଥ ଦାସ ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗର ପ୍ରସିଦ୍ଧ କବି ଜଗନ୍ନାଥ ଦାସ ବୋଲି ଧରି ନେଇ କେଶବ କୋଇଲି ଲୋକରେ ପ୍ରସିଦ୍ଧି ଅର୍ଜନ କରିବାକୁ ପ୍ରାୟ ଏକ ଶତାବ୍ଦୀ ନେଇଥିବ ତେଣୁ ତାହା ଜଗନ୍ନାଥ ଦାସଙ୍କ ସମୟର ଶହେ ବର୍ଷ ପୂର୍ବର ଲେଖା ବୋଲି ସ୍ଥିର କରିବାରୁ ତାହା ସାରଳାଦାସଙ୍କ ସମୟର ପୂର୍ବବର୍ତ୍ତୀ ବୋଲି କୁହାଯାଉଛି। ଅନେକ ଜଗନ୍ନାଥ ଦାସ ଅଧ୍ୟାୟରେ ଏପରି ଦାବିର ଅମୂଳକତା ଆଲୋଚନା କରିଛି।

୪. ବତ୍ସା ଦାସଙ୍କ କଳସା ଚଉତିଶା ନାମକ ରଚନାଟି ସାରଳାଦାସଙ୍କ ମହାଭରତ ଅପେକ୍ଷା ପ୍ରାଚୀନତର କି ନୁହେଁ ତାହାର ବିଚାର ନିମ୍ନରେ କରୁଛି।

**କଳସା ଚଉତିଶାର ପ୍ରାଚୀନତା ଦାବି**

'କଳସା ଚଉତିଶା' ପ୍ରଥମେ ପ୍ରାଚୀ ସମିତି ଦ୍ୱାରା ପ୍ରକାଶ ପାଇଲା। ସାରଳାଦାସଙ୍କ ମହାଭାରତରେ ଚଳିଖିତ ପଦଟି ରହିଛି ବୋଲି କୁହାଯାଏ :-

"ବେଦମନ୍ତ୍ର ଯୁଗତେ ସେ ଯେ ପଢ଼ନ୍ତି କଳସା ।
ବଶିଷ୍ଠ ମାରକଣ୍ଡ ଆବର ଦୁର୍ବାସା ।।"

ଉଦ୍ଧୃତିର କଳସା ଶବ୍ଦଟି ବତ୍ସାଦାସଙ୍କର 'କଳସା ଚଉତିଶା'କୁ ବୁଝାଉଛି ବୋଲି ମନେକରି ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି ଚଉତିଶାର ରଚନା ସାରଳାଦାସଙ୍କ ପୂର୍ବରୁ ହୋଇଥିଲା ବୋଲି କହିଛନ୍ତି:-

"There is a reference to Kalasa in the Sarala mahabharat xxxx From this it is clear that the kalasa chautisa had grown popular in the time of Sarala Das and it must have taken

at least 100 years to have attained such celebrity. So we can safely place Vatsa Dasa in the. 14th century". (ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ'ର ଇଂରାଜି ମୁଖବନ୍ଧ)

ସାରଳାଦାସଙ୍କ ବେଳକୁ କଳସା ଚଉତିଶା ସୁବିଖ୍ୟାତ ହୋଇ ସାରିଥିଲାଣି, ତେଣୁ ତାହା ସାରଳାଦାସଙ୍କର ଅତିକମ୍‌ରେ ଶହେ ବର୍ଷ ପୂର୍ବର ରଚନା ବୋଲି ସ୍ଥିର କରି ଶ୍ରୀଯୁକ୍ତ ମହାନ୍ତି ବତ୍ସା ଦାସ ଚତୁର୍ଦ୍ଦଶ ଶତାବ୍ଦୀର କବି ବୋଲି କହିଛନ୍ତି।

**କଳସା ଚଉତିଶାର ଭାଷା ଓ ଛନ୍ଦ**

ମହାଭାରତରେ କଥିତ କଳସାକୁ ବତ୍ସା ଦାସଙ୍କ କଳସା ଚଉତିଶା ବୋଲି ଚିହ୍ନାଇଲେ ନାନା ଅସଙ୍ଗତତା ଦେଖାଦେବ। ପ୍ରଥମ କଥା ତାହାର ଭାଷା। ଭାଷାର ରୂପ କାଳକ୍ରମେ ଧୀରେ ଧୀରେ ବଦଳିବାରେ ଲାଗିଥାଏ। ଏପରି ପରିବର୍ତ୍ତନର କ୍ରମ ବିଚାରରୁ ପରଖ କଲେ କଳସା ଚଉତିଶାଟି ସାରଳାଦାସଙ୍କ ଠାରୁ ପ୍ରାଚୀନତର ବୋଲି କହିହେବ ନାହିଁ। ଦେଖାଯାଉଛି ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆରେ ଦ୍ୱିତୀୟା ବିଭକ୍ତି ସୂଚକ କହି, କଇ, କ ପ୍ରତ୍ୟୟମାନ ଚଳୁଥିଲା। ସେହିପରି ପ୍ରାକୃତ ରୀତିର ଷଷ୍ଠୀ ଓ ଚତୁର୍ଥୀ ବିଭକ୍ତି ମଧ୍ୟରେ ଅଭେଦ ଓଡ଼ିଆରେ ମଧ୍ୟ ରହିଥିଲା। ଗାବନ୍ତି, ପାବଇ, କହାବନ୍ତି, ଲଗାବନ୍ତେ ଆଦି କ୍ରିୟାରୂପରେ 'ଅ' ସ୍ଥଳେ 'ବ'ର ବ୍ୟବହାର (ସେ ଯାଏଁ ଅବର୍ଗ୍ୟ 'ବ'ର ଉଚ୍ଚାରଣ ଓଡ଼ିଆରେ ଥିବା ଏଥିରୁ ଅନୁମିତ ହୋଇପାରେ), ଗଇଇ, କହିଲଇ, ହୋଇଲଇ ଆଦି କ୍ରିୟା ପଦରେ ପ୍ରାନ୍ତ ଇକାର ମାତ୍ରା ସ୍ଥଳେ 'ଇ'ର ପ୍ରୟୋଗ ତଥା ହି, ଇ, ସେ ଆଦି ନିଶ୍ଚିତାର୍ଥକ ବା ନିରର୍ଥକ ପ୍ରତ୍ୟୟ ସେ ଯୁଗର ରଚନାରେ ଦେଖାଯାଏ। 'କଳସା ଚଉତିଶା'ରେ ଏ ସବୁର ଅବିଦ୍ୟମାନତା ବିଚାରରୁ ତାହାର ରଚନା କାଳ ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧ ପୂର୍ବର ନୁହେଁ ବୋଲି ନିରୂପଣ କରିବା ଯୁକ୍ତିଯୁକ୍ତ ହେବ। ଆଉ ମଧ୍ୟ, ଏକ ସାହିତ୍ୟିକ ଆଂଶିକ ଭାବରେ ଚଉତିଶା ଏକ ଉନ୍ନତ ସୃଷ୍ଟି। ବର୍ଣ୍ଣମାଳାନୁକ୍ରମେ ୩୪ଟି ବ୍ୟଞ୍ଜନ ବର୍ଣ୍ଣକୁ ପାଦାଦ୍ୟ ବର୍ଣ୍ଣରୂପେ ବ୍ୟବହାର କରି କବିତା ରଚିତ ହେବା ପୂର୍ବରୁ ଏପରି ବିଧିବିଧାନ ମାନୁ ନଥିବା ରଚନା ରହିବାର କଥା। ଓଡ଼ିଆରେ ସାରଳାଦାସଙ୍କ ପୂର୍ବକାଳୀନ ସାହିତ୍ୟରେ ବିଧିବିଧାନକୁ ସ୍ୱୀକାର କରୁଥିବା ସାହିତ୍ୟ ଥିଲା କିନ୍ତୁ ସାରଳାଦାସ ତାଙ୍କର ଲେଖାରେ ତାହାକୁ ପ୍ରୟୋଗ କରି ନଥିଲେ ବୋଲି ଅନୁମିତ ହୋଇ ନ ପାରେ। ଆଉ ମଧ୍ୟ କଳସା ଚଉତିଶାର ରଚନା ଶୈଳୀ ଛନ୍ଦାଶ୍ରିତ। ତାହା ସାରଳା ଦାସଙ୍କ ଛନ୍ଦହୀନ ଦାଣ୍ଡି ରୀତି ପୂର୍ବରୁ ଚଳୁଥିଲା ବୋଲି ଧରିଲେ ଓଡ଼ିଆ ଛନ୍ଦର ବିକାଶ ପଥରେ ଦାଣ୍ଡିରୀତିର ଆବିର୍ଭାବ କାହିଁକି ହେଲା ବୁଝି ହେବନାହିଁ। କିନ୍ତୁ, ଦାଣ୍ଡିକୁ ଓଡ଼ିଆ ଛନ୍ଦର ପୂର୍ବାବସ୍ଥା ବୋଲି ଧରିଲେ ଯାଇ ଓଡ଼ିଆ ରଚନା ମଧ୍ୟକୁ ଛନ୍ଦ କିପରି ଛେକ ଛେକ ହୋଇ ପଶିଛି ତାହା ବୁଝିହେବ।

କଳସା ପଢ଼ନ୍ତି–

ଯେଉଁ ପରିସ୍ଥିତିରେ ସାରଳାଦାସ କଳସା ପଢ଼ିବା କଥା ଲେଖିଛନ୍ତି ସେଠାରେ ବତ୍ସା ଦାସଙ୍କ ଚଉତିଶା ପ୍ରଶ୍ନ ଉଠି ନପାରେ। ଶାମ୍ୱ ବିବାହରେ ବଶିଷ୍ଠ ଆଦି ଋଷିମାନେ ବେଦମନ୍ତ୍ର ସହିତ ଯାହା ପଢ଼ିଲେ ତାହା ସାରଳାଦାସଙ୍କ ନିକଟ ଅତୀତର କୌଣସି ଓଡ଼ିଶାର କବିଙ୍କର ଓଡ଼ିଆ ରଚନା ହୋଇପାରେ କି? ଓଡ଼ିଆ ଭାଷାଟି ଯେ ଦ୍ୱାପର ଯୁଗରେ ଚଳୁ ନ ଥିଲା ଏହା କଣ ସେ ଜାଣି ନଥିଲେ? କେବଳ ଶାମ୍ୱ ବିବାହରେ ତ କଳସା ପଢ଼ାଯାଉ ନ ଥିଲା ଶିବ-ପାର୍ବତୀ ବିବାହ ବେଳେ ମଧ୍ୟ କଳସା ପଢ଼ିବା କଥା କଳସା ଚଉତିଶାର ଶେଷ ପଦରେ ଲେଖାଅଛି :-

କ୍ଷିତିପତି ଠାକୁର ସେ କପିଳାସେ ସ୍ଥିତି।
କ୍ଷୁଦ୍ରବୁଦ୍ଧି ବଛାଦାସ କଳସା ପଢ଼ନ୍ତି॥

ଖୋଦ୍ ବତ୍ସାଦାସ 'କଳସା ପଢ଼ନ୍ତି' ବୋଲି ଲେଖିଥିବା ହେତୁରୁ ସାରଳା ଦାସଙ୍କ କଳସା କଳସା ଚଉତିଶାର ରଚୟିତାଙ୍କ ଠାରୁ ମଧ୍ୟ ପ୍ରାଚୀନ ବୋଲି ମାନିବାକୁ ହେବ। ଅନ୍ୟ କଥାରେ, କଳସା ଚଉତିଶାର 'କଳସା ପଢ଼ନ୍ତି' ଓ ମହାଭାରତର 'ପଢ଼ନ୍ତି କଳସା' ଯାହାକୁ ବୁଝାଉଛି ତାହା କଳସା ଚଉତିଶା ହୋଇ ନ ପାରେ।

ଅନେକ 'କଳସା'

ପ୍ରାଚୀନ ଓଡ଼ିଆ ସାହିତ୍ୟ ଭଣ୍ଡାରରେ ବହୁ ସଂଖ୍ୟକ 'କଳସା' ରହିଛି। ଆର୍ତ୍ତବଲ୍ଲଭ ମହାନ୍ତି ଅନ୍ୟାନ୍ୟ କଳସାର ଅସ୍ତିତ୍ୱ ଜାଣିଥିଲେ ସାରଳାଦାସଙ୍କ କଳସାର ଅର୍ଥ କଳସା ଚଉତିଶା ବୋଲି କରିପାରନ୍ତେ ନାହିଁ।

ଓଡ଼ିଶା ମ୍ୟୁଜିଅମ୍‌ରେ କଳସା ଚଉତିଶାର ଏକ ପାଠାନ୍ତର ତାଳପତ୍ର ପୋଥି ଆକାରରେ ରହିଛି। ମ୍ୟୁଜିଅମ୍ ପୋଥିର ପାଠ ଓ ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ ପାଠ ମଧ୍ୟରେ ଅଳ୍ପ କେତେକ ପାର୍ଥକ୍ୟ ସର୍ତ୍ତେ ଉଭୟ ଯେ ଗୋଟିଏ ରଚନାର ରୂପାନ୍ତର ଏ ବିଷୟରେ ସନ୍ଦେହ ରହୁନାହିଁ। ମ୍ୟୁଜିୟମ୍ ପୋଥିରେ ଏହାର ନାମ କଳସା ଚଉତିଶା ନୁହେଁ, ତାହାର ନାମ ସେଠାରେ ଦିଆଯାଇଛି 'ଗଉରା କଳସା'। ମୁଁ ମୋର 'ଚଉତିଶା ବିଚିତ୍ରା' ପୁସ୍ତକରେ 'ଗଉରା କଳସା'ର ସଂପାଦିତ ପାଠ ପ୍ରକାଶିତ କରିଛି। ଗଉରା କଳସାର ଭଣିତି ଅଂଶଟି ଏହିପରି :-

କ୍ଷିତିପତି ଠାକୁରେ ସେ କପିଳାସବାସୀ।
କ୍ଷିତିପତି ବଂଶୀଦାସ କଳସାଗୀତ ଭାଷି॥

ଗଉରା କଳସାର ପାଠାନ୍ତର ଦୃଷ୍ଟିରୁ କବିଙ୍କର ପ୍ରକୃତ ନାମ ପ୍ରଶ୍ନାସ୍ପଦ ହୋଇ ପଡୁଛି। କବିଙ୍କର ନାମ ବତ୍ସା ନ ହୋଇ ବଂଶୀ ହେବା ଅଧିକ ସଙ୍ଗତ। ନାମ ଭାବରେ **ବତ୍ସା ଅସାଧାରଣ** - ତାହା ବତ୍ସ (ଶ୍ରୀବତ୍ସର ଡ଼ାକ ନାମ) ହୋଇଥିଲେ ସ୍ୱାଭାବିକ ହୁଅନ୍ତା।

ଆଉ ମଧ୍ୟ ବଂଶୀ (ବା ବଂଶ) ଦାସ ନାମରେ କେହି କବିଥିବା ଅନ୍ୟ ସୂତ୍ରରୁ ଜଣାଯାଏ ନାହିଁ। କିନ୍ତୁ, ବଂଶୀ ଦାସ ବିରଚିତ ଅନେକ ଚଉତିଶା ମିଳେ। ମ୍ୟୁଜିଅମ୍ ପୋଥିଭଣ୍ଡାରରେ ବଂଶୀ ଦାସଙ୍କ ଉଦ୍ଧବ ଚଉତିଶା ଓ କୋକିଳ ଚଉତିଶାର ପୋଥି ରହିଛି। ମୋ ଦୃଷ୍ଟିରେ ବଂଶୀଧର ଦାସଙ୍କ ବଉଳ ଚଉତିଶା ପଡ଼ିଛି। ବଂଶୀଧର ଭଣିତି ଥିବା ଅଦ୍‌ଭୁତ କୋଇଲି ଆଦି ଅନେକ କବିତା ମଧ୍ୟ ମିଳୁଛି। ତେଣୁ କଳସା ଚଉତିଶାର କବିଙ୍କ ନାମ ବହୁ ଚଉତିଶାର ରଚୟିତା ବଂଶୀ ଦାସ ବୋଲି ନିରୂପଣ କରାଯାଇପାରେ। ବଂଶୀ ଦାସଙ୍କ କାଳ ଅଜ୍ଞାତ କିନ୍ତୁ ଭାଷାର ରୂପ ବିଚାରରୁ ତାହା ସପ୍ତଦଶ ଶତାବ୍ଦୀ ବା ଷୋଡ଼ଶ ଶତାବ୍ଦୀର ଶେଷ ଅର୍ଥାତ୍ ସାରଳାଦାସଙ୍କର ସମୟର ଦେଢ଼ଶହ ବର୍ଷ ପରବର୍ତ୍ତୀ ହେବା ଅନୁମିତ ହୁଏ।

ଏହି 'ଗଉରା କଳସା'ରୁ ଲେଖନକାର ଅଳ୍ପବିଦ୍ୟ ଥିବା ପାଠର ଅବସ୍ଥାରୁ ଜଣାଯାଉଛି (ସେ କ୍ଷୁଦ୍ରମତି ବଂଶୀଦାସକୁ କ୍ଷିତିପତି ବଂଶୀଦାସ ଲେଖିଛି, କ୍ଷିତିପତି ପୂର୍ବ ପାଦର ପ୍ରଥମ ପଦର ପୁନରାବୃତ୍ତି ମାତ୍ର)। ତେଣୁ ମୂଳର ନାମ ଓ କବିଙ୍କ ନାମ ବଦଳାଇବା ଭଳି ଧୂର୍ତ୍ତତା ତାଠାରେ ଆଶଙ୍କା କରାଯାଇ ନ ପାରେ। ଚଉତିଶାଟିର ନାମ ଗଉରା କଳସା ବୋଲି ମିଳୁଥିବାରୁ କଳସା ଚଉତିଶା ତାହାର ମୌଳିକ ନାମ ନୁହେଁ ବୋଲି ମଧ୍ୟ ଅନୁମିତ ହୁଏ। ଯଶୋଦା କୋଇଲି, ବନବାସ ଚଉତିଶା, ଅଳଂକାର ବୋଲି, ଦଶପୋଇ, ସର୍ପଜଣାଣ, ଭାଗବତ ପଟଳ, ଗଙ୍ଗା ମାହାତ୍ମ୍ୟ ଭଳି ଦୁଇ ପଦର ସମାହାର ହୋଇଥିବା ପ୍ରାଚୀନ ରଚନାଗୁଡ଼ିକର ନାମ ସହ ଗଉରା କଳସାକୁ ବିଚାର କଲେ କୋଇଲି, ଚଉତିଶା, ବୋଲି, ପୋଇ ଆଦିଭଳି କଳସା ଏକ ପ୍ରକାର ସାହିତ୍ୟିକ ଆଂଗିକ ବୋଲି କହି ହେଉଛି। ପ୍ରକୃତରେ ଓଡ଼ିଆରେ ଅନେକ ଗୁଡ଼ିଏ କଳସା ରଚିତ ହୋଇଥିବା ପ୍ରମାଣ ମିଳୁଛି। ମ୍ୟୁଜିଅମ୍‌ର ପୋଥି ଭଣ୍ଡାରର ଗୋଟିଏ ପୋଥି (ଓ.ଏଲ୍.୫୪୭)ରେ ବିରୋଳି ମହାନାୟକଙ୍କ ପ୍ରଣୀତ ରୁକ୍ମିଣୀ କଳସା ରହିଛି। ମୁଁ ସଂପାଦନ କରିଥିବା ପ୍ରାଚୀନ 'ହାସ୍ୟ ସମୁଚ୍ଚୟ' ପୁସ୍ତକରେ "ବୁଢ଼ା କଳସା" ଓ 'ବୁଢ଼ୀ କଳସା' ନାମକ ଦୁଇଟି କଳସା ପ୍ରକାଶିତ ହୋଇଛି। ପ୍ରସିଦ୍ଧ କବି ବିଶ୍ୱନାଥ ଖୁଣ୍ଟିଆଙ୍କ ବିଚିତ୍ର ରାମାୟଣ ମଧ୍ୟରେ ଚଉଦଅକ୍ଷରୀ ବୃତ୍ତକୁ କେଉଁଠି ଦିଶକୃଷ୍ଣ କଳସା', କେଉଁଠି "କୃପା କଳସା ଦିଶ" ଓ କେଉଁଠି କଳସା ବାଣୀରେ ଗାଇବା ପାଇଁ ନିର୍ଦ୍ଦେଶ ଦିଆଯାଇଛି। କୃଷ୍ଣ କଳସା ଓ/ବା କୃପା କଳସା ଯେ ଚଉତିଶା ଠାରୁ ଭିନ୍ନ ଏକ ରଚନା ଏହା ନିଶ୍ଚିତ। ଅନ୍ୟାନ୍ୟ କଳସା ରଚନା ରହିଥିବା ସ୍ଥଳେ ସାରଳାଦାସଙ୍କ ମହାଭାରତର 'କଳସା'ର ଅର୍ଥ କଳସା ଚଉତିଶା କି ଗଉରା କଳସା ବୋଲି ଧରି ନେବା ଲାଗି ଯୁକ୍ତିଯୁକ୍ତତା ରହୁନାହିଁ।

**କଳସାର ଅର୍ଥ ମଙ୍ଗଳ ଗୀତ—**

ଓଡ଼ିଆରେ ଯେଉଁ ରାଗ ବା ବାଣୀ ବା ଦିଶରେ ଚଉତିଶା ଲେଖାଯାଏ ଚଉତିଶାଟି ସେହି ରାଗ ବା ଦିଶର ନାମକୁ ଗ୍ରହଣ କରିବା ଏକ ସାଧାରଣ କଥା। ଦାମୋଦରଙ୍କ ରସକୁଲ୍ୟା ଚଉତିଶା, ବିଷ୍ଣୁ ଦାସଙ୍କ ଚୋଖି ଚଉତିଶା, କୃଷ୍ଣ ଦାସଙ୍କ କୁମ୍ଭକାମୋଦି ଚଉତିଶା, ନୃସିଂହ ଭ୍ରମରବରଙ୍କ କାମୋଦି ଚଉତିଶା ଭଳି ଏ ପ୍ରକାର ନାମରେ ଚଉତିଶାମାନ ମିଳୁଛି। କଳସା ଚଉତିଶାଟି ଯେଉଁ ବୃତ୍ତରେ ରଚିତ ତାହା ରାଗ ବା ବାଣୀ ବା ଦିଶ କଳସା ନାମରେ ପରିଚିତ। ତେଣୁ ଗଉରା କଳସାକୁ କେହି ଅନୁଲେଖକ କଳସା ଚଉତିଶା ନାମରେ ନାମିତ କରିବାରେ ଅସ୍ୱାଭାବିକତା କିଛି ନାହିଁ।

କଳସା ଚଉତିଶାର ବୃତ୍ତଟିକୁ କେଉଁଠି ରାଗ ବାଣୀ ବା ଦିଶ କଳସା ବୋଲି ଚିହ୍ନାଇ ଦିଆଯାଇଛି ତ କେଉଁଠି ରାଗ ବା ଦିଶ ମଙ୍ଗଳ ବୋଲି ମଧ୍ୟ ଲେଖାଯାଇଛି। ଅକ୍ଷର ସଂଖ୍ୟା, ଯତି ସ୍ଥାନ କିଂବା ପାଦ ସଂଖ୍ୟା ଦୃଷ୍ଟିରୁ ମଙ୍ଗଳ ଓ କଳସା ମଧ୍ୟରେ କୌଣସି ପାର୍ଥକ୍ୟ ଥିବା ଜଣାଯାଉ ନାହିଁ। ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ "କଳସା ବାଣୀକୁ ଯେଉଁ ବୃତ୍ତରେ ପ୍ରୟୋଗ କରାଯାଏ, ସେହି ବୃତ୍ତକୁ ରାଗ ନାମରେ ମଙ୍ଗଳ ବୋଲି ସାଧାରଣତଃ କୁହାଯାଇଥାଏ" (ଓଡ଼ିଆ ସାହିତ୍ୟର କ୍ରମ ପରିଣାମ, ୨ୟ ଭାଗ, ପୃ.୨୯୮)। ଦ୍ରାବିଡ଼ ଭାଷାରେ ମଙ୍ଗଳ ଶବ୍ଦର ଅର୍ଥ ବିବାହ ଓ ବିବାହ ବାସରରେ ଗୀତ ହେଉଥିବା ସଙ୍ଗୀତର ନାମ ମଙ୍ଗଳଗୀତି ବୋଲି ସୁରେନ୍ଦ୍ର ମହାନ୍ତି ଜଣାଇଛନ୍ତି (ଓଡ଼ିଆ ସାହିତ୍ୟର ଆଦିପର୍ବ, ପୃ.୯୧)। ବିବାହ ବେଳେ କନ୍ୟାର ବେକରେ ସଧବାର ଲକ୍ଷଣ ସ୍ୱରୂପ ବର ଯେଉଁ ସୂତ୍ରଟି ବାନ୍ଧିଦିଏ ତାକୁ ଦାକ୍ଷିଣାତ୍ୟରେ ମଙ୍ଗଳସୂତ୍ରମ୍ କହନ୍ତି। ଏହି ଅର୍ଥରେ ମଙ୍ଗଳ ସୂତ୍ରମ୍ ଶବ୍ଦଟି ସଂସ୍କୃତ ଭାଷାରେ ମଧ୍ୟ ଚଳୁଛି। ଓଡ଼ିଶାରେ ବର କନ୍ୟା ହାତରେ ବାନ୍ଧିବା ଅଷାଢ଼ୁଆ ସୂତାକୁ ମଙ୍ଗଳସୂତ୍ର କହନ୍ତି। ଓଡ଼ିଆରେ ବିବାହକୁ ତ ସବୁଠି ମଙ୍ଗଳକୃତ୍ୟ କହନ୍ତି, ବିବାହ ସହିତ ସଂପୃକ୍ତ ବହୁ କଥା ମଙ୍ଗଳ ନାମ ନେଇଥାଏ। ମଙ୍ଗଳନ, ମଙ୍ଗୁଳା କନ୍ୟା, ମଙ୍ଗଳ ଧ୍ୱନି ଆଦିର ପ୍ରଚଳନ ଲୋକରେ ରହିଛି। ମଙ୍ଗଳଗାନ ନାମରେ ଅନେକ ଗୀତ ଓଡ଼ିଆରେ ରହିଛି (ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ଓ ପ୍ରମୋଦ ଅଭିଧାନ ଦ୍ରଷ୍ଟବ୍ୟ)। ଦେବଦେବୀଙ୍କ ବିବାହ ଉତ୍ସବ ବର୍ଣ୍ଣନା କରୁଥିବା ଏହି ସ୍ୱତନ୍ତ୍ର ଗୀତମାନ ବିବାହ ବେଳେ ବରକନ୍ୟାଙ୍କ ହଳଦୀ ଲଗା, କୋଇଲିବୁଡ଼ ଆଦି ବେଳେ ସମବେତ ଭାବରେ ନାରୀମାନେ ଗାନ କରିବା ପ୍ରଥା ମୋ ଜାଣିବାରେ କେତେକ ରାଜବଂଶରେ ଏବେ ବି ରହି ଆସିଛି। ପ୍ରାଚୀନ ସାହିତ୍ୟରେ ବିବାହ ବେଳେ ମଙ୍ଗଳ ଗାନ କରାଯାଉଥିବା କଥାର ବର୍ଣ୍ଣନା ବହୁଳ ଭାବରେ ମିଳେ ଓ ସାରଳାଦାସ ମଧ୍ୟ ସେପରି ବର୍ଣ୍ଣନା ଅନେକତ୍ର ଦେଇଛନ୍ତି। ମୁଁ ବିଶ୍ୱମ୍ଭର ରାଜେନ୍ଦ୍ର ଓ

ବାଲୁଂକୀଶ୍ୱରଙ୍କ ଦ୍ୱାରା ପ୍ରଣୀତ କେତୋଟି ମଙ୍ଗଳଗୀତ ଦେଖିଛି। ଓଡ଼ିଶା ମ୍ୟୁଜିଅମ୍‌ରେ ମଙ୍ଗଳଗୀତିର ଏକ ସଂଗ୍ରହ ତାଳପତ୍ର ପୋଥି (ଓ.ଏଲ.୫୪୭) ଆକାରରେ ରହିଛି। ଖୋଜିଲେ ଏ ପ୍ରକାର ମଙ୍ଗଳଗୀତ ଓଡ଼ିଶାରେ ବହୁତ ମିଳିବ। ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଦୃଷ୍ଟିରେ ଏକ ମଙ୍ଗଳ ସଂଗୀତ ପୋଥି ପଡ଼ିଥିଲା। ଓଡ଼ିଆ ଭାଷାତତ୍ତ୍ୱର ପୃ.୬୯୮ ଓ ୭୩୧ରେ ସେ ଏହାର ଦୁଇପଦ ଉଦ୍ଧାର କରିଛନ୍ତି :-

୧. ଠାକେରା ବୁଢ଼ା ନିରେଖ ନିରିମାଖି ଜନ।
ଏହାକୁ ଦୋହିତା ଦେଲେ କେମନ୍ତ ରାଜନ॥ (ମଙ୍ଗଳ ସଙ୍ଗୀତ)

୨. ବରଦାଦି ପାଚଲାବାଳିଆ ଲମ୍ବ-ଥୋଡ଼ା।
ତାଳଗଛ ପ୍ରାୟକ ଉଡ଼ଇ ନିଶ ଯୋଡ଼ା॥

ନନ୍ଦଙ୍କ ଶବ୍ଦତତ୍ତ୍ୱବୋଧ ଅଭିଧାନରେ ମଧ୍ୟ ବହୁସ୍ଥାନରେ ମଙ୍ଗଳ ସଂଗୀତର ଉଦ୍ଧୃତି ରହିଛି ; ଯଥା

୧. (ପୃ-୭୬୦) କର୍ଣ୍ଣମୂଳେ ଝୁଲପି ଝୁଲଇ ମନ୍ଦବାଏ।

୨. (ପୃ.୩୨୭) ପାହିଲା ରଜନୀ ଆଜ୍ଞା ଦେଲେକ ଜନନୀ।
ସ୍ନାହାନ କରିବେ ସୀତା ଦିଅ କୌଳିପାଣି॥

୩. (ପୃ. ୧୦୫୯) ଗଜଦନ୍ତ ହାନ୍ଦୋଳୁ ଓହ୍ଲାଇ ଚାନ୍ଦମୁହାଁ।

ମଙ୍ଗଳ ସଂଗୀତ ଗୁଡ଼ିକର ଉପଜୀବ୍ୟ କଳସା ଚଉତିଶା ପରି ଦେବଦେବୀଙ୍କ ବିବାହ ଓ ତାହା ରାଗ ମଙ୍ଗଳ ଅର୍ଥାତ୍ କଳସା ବାଣୀରେ ରଚିତ। ମଙ୍ଗଳକୃତ୍ୟ ପାଇଁ ରାଗ ମଙ୍ଗଳ ଉପଯୁକ୍ତ ବିବେଚିତ ହେବା ସ୍ୱାଭାବିକ। ଚିତାଲାଗି ଅମାବାସ୍ୟାରେ ଚିତଉପିଠା କରିବା, ପ୍ରଥମାଷ୍ଟମୀ ଦିନ ପଢ଼ୁଆଁ ପୁଅଝିଅଙ୍କୁ ବନ୍ଦାଇବା, ମଙ୍ଗଳବାରେ ମଙ୍ଗଳା ଠାକୁରାଣୀଙ୍କୁ ପୂଜିବା କି ସୁଦଶାବ୍ରତ ପାଇଁ ଦଶୋଟି ସୂତାରେ ଦଶୋଟି ଗଣ୍ଠି ପକାଇବା ଏହି ଶ୍ରେଣୀୟ ଚଳଣି। ମଙ୍ଗଳ ଓ କଳସା ମଧ୍ୟରେ ସମାନତା ହେତୁରୁ ମଙ୍ଗଳଗୀତକୁ କଳସାଗୀତ କହିବା ସଙ୍ଗତ। ମ୍ୟୁଜିଅମ୍‌ରେ ଯେଉଁ ପୋଥିରେ ମଙ୍ଗଳଗୀତ ଗୁଡ଼ିକ ସଂଗୃହୀତ ହୋଇ ରହିଛି ସେହି ପୋଥିରେ ମଙ୍ଗଳଗୀତ ମଧ୍ୟରେ ରୁକ୍ମିଣୀ କଳସା ରହିଛି।

ଗଞ୍ଜାମର ବଡ଼ କୁଶସ୍ଥଳି ଗ୍ରାମର ପୂର୍ବତନ ଏମ୍.ଏଲ.ଏ. ଶ୍ରୀ ବିଶ୍ୱନାଥ ସାହୁଙ୍କ ଘରେ ଥିବା ଜଗମୋହନ ରାମାୟଣ ପୋଥିରେ ରାମଙ୍କ ବିବାହ ବର୍ଣ୍ଣନା ଯେପରି ରହିଛି ତାହା ସ୍ପଷ୍ଟ କରିଦେଉଛି ଯେ ସାରଳା ଦାସଙ୍କ କଳସା କଳସା-ଚଉତିଶା ହୋଇ ନପାରେ। ସୀତା ରାମଙ୍କୁ ବରଣମାଳ ଦେବା ବେଳର ବର୍ଣ୍ଣନା ସେଠାରେ ରହିଛି :-

ସ୍ୱର୍ଗେ ସାଧୁ ସାଧୁ ବୋଲି ସୁଭିଲାକ ଧ୍ୱନି।
ଚାରି ବେଦ ଅଦ୍ୟନ କରନ୍ତି ଦେବ ମୁନି॥
କଳସା ରାଗେ ଗୀତ ଗାବନ୍ତି ସଞ୍ଚବାଳି।
କି ଜାଣି ସଭା ସୁଭଇ ସାହେର ଉଛୁଳି॥

କଳସା ଚଉତିଶାର 'କଳସା ପଢ଼ନ୍ତି', ଗଉରା କଳସାର କଳସା ଗୀତ ଭାଷି ଓ ଜଗମୋହନ ରାମାୟଣର 'କଳସା ରାଗେ ଗୀତ ଗାବନ୍ତି' ସହିତ ମହାଭାରତର 'ପଢ଼ନ୍ତି କଳସା' କୁ ମିଳାଇଲେ ସ୍ପଷ୍ଟ ହୁଏ ଯେ ବିବାହ ବେଳେ ବୋଲାଯିବା ଗୀତ ହିଁ କଳସା, ଯାହା କି ବହୁ ଗ୍ରନ୍ଥରେ ମଙ୍ଗଳଗୀତ ନାମରେ ଅଭିହିତ ହୋଇଛି। ତେଣୁ, ଦେଖାଯାଉଛି କଳସା ପାଠ/ଗାନ ଲେଖାଯିବା ସ୍ଥାନରେ ମଙ୍ଗଳ ଗୀତ ପଢ଼ାଯିବା କଥା ଲେଖାଯାଉ ନାହିଁ ଓ ମଙ୍ଗଳଗୀତ ଲେଖାହେବା ସ୍ଥାନରେ କଳସାର ଉଲ୍ଲେଖ ରହୁନାହିଁ। ଯଦି ମଙ୍ଗଳଗୀତ ଓ କଳସା ଭିନ୍ନ ଭିନ୍ନ କଥା ହୋଇଥାଆନ୍ତା ତେବେ ମଙ୍ଗଳଗୀତ ଓ କଳସା ଉଭୟ ଗାନ କରାଯିବା କଥା ଲେଖାଯିବାର ଅବକାଶ ଥାଆନ୍ତା, ତେଣୁ ସାରଳା ଦାସଙ୍କ କଳସାର ଅର୍ଥ ମଙ୍ଗଳଗୀତ, ତାହା 'କଳସା ଚଉତିଶା' ହୋଇ ନପାରେ।

ନୀଳାମ୍ବର ଦାସ ଜଣେ ପ୍ରାଚୀନ କବି। ସେ ମଧ୍ୟ ବିବାହକାଳୀନ ମଙ୍ଗଳଗୀତ ଅର୍ଥରେ କଳସା ଶବ୍ଦଟି ବ୍ୟବହାର କରିଥିବା ଜଣାଯାଉଛି। ତାଙ୍କର ହରିଭକ୍ତି ରତ୍ନମାଳା (ନାମାନ୍ତର ପଦ୍ମପୁରାଣ କ୍ରିୟାଯୋଗ ସାର) ଗ୍ରନ୍ଥର ଦୁଇଟି ତାଳପତ୍ର ପୋଥି ମୋ ଦୃଷ୍ଟିରେ ପଡ଼ିଛି। ଏହାର ସପ୍ତମ ଅଧ୍ୟାୟର ମାଧବ-ସୁଲୋଚନା ବିବାହ ବର୍ଣ୍ଣନା ମଧ୍ୟରେ ଗୋଟିଏ ପୋଥିରେ ଲେଖାଅଛି :-

ବେଦୀରେ ସକଳ ଥୋଇ ବ୍ରାହ୍ମଣେ ପୂଜନ୍ତି।
ଉଚିତ ବିଭାର ପାଠ ମଙ୍ଗଳ ପଢ଼ନ୍ତି॥

ଅନ୍ୟ ପୋଥିରେ ଏହି ଅଂଶର ପାଠ ରହିଛି :-

ବେଦୀରେ କଳସ ଥୋଇ ବ୍ରାହ୍ମଣେ ପୂଜନ୍ତି।
ଉଚିତ ବିଭାର ପାଠ ସକଳ ପଢ଼ନ୍ତି॥

ଏଥିରୁ ଅନୁମିତ ହୁଏ ଯେ ମୂଳରେ 'କଳସା ପଢ଼ନ୍ତି' ଥିଲା କିନ୍ତୁ ଲେଖନକାରମାନେ କଳସା କଣ ବୁଝି ନପାରି ଜଣେ ପ୍ରସଙ୍ଗର ଆବଶ୍ୟକତା ବୁଝି ମଙ୍ଗଳ ପଢ଼ନ୍ତି ବୋଲି ଲେଖିଥିବା ସ୍ଥଳେ ଅନ୍ୟ ଜଣକ ଶବ୍ଦର ଅକ୍ଷର ବିପର୍ଯ୍ୟସ୍ତ ହୋଇଛି ଭାବି 'ସକଳ ପଢ଼ନ୍ତି' ଲେଖିଛି।

**ସାରଳା ଦାସଙ୍କ କଳସା**

ସାରଳା ଦାସ 'କଳସା' ଶବ୍ଦଟି ମହାଭାରତରେ ଥରେ ମାତ୍ର ଲେଖିଥିବା କଥା ଆଲୋଚକମାନେ କହନ୍ତି। ମଧ୍ୟପର୍ବ (ପୃ. ୬୪୭)ରେ ଶାମ୍ବ ଚନ୍ଦ୍ରାବତୀ ବିବାହ ବର୍ଣ୍ଣନା ମଧ୍ୟରେ ରହିଛି :-

ବର କନ୍ୟା ଯେକ ଆସନେଣ କଲେ ଉଭା।
ଚନ୍ଦ୍ର ରୋହିଣୀ ପ୍ରାୟେ ଦିଶନ୍ତି ବେନି ଶୋଭା॥

ବିଧି ପୂର୍ବମତେ ପଢ଼ନ୍ତି କଳଶା ।
ବଶିଷ୍ଠ ମାରକଣ୍ଡ ଆବର ଦୁର୍ଭାସା ॥.
ଆବର ଜ୍ୟୋତିର ସେ ଭରଦ୍ର ଶିଶୁମୁନା ।
ଚାରିବେଦ ସଂପୂର୍ଣ୍ଣ ବ୍ରହ୍ମମୁନି ସିନା ॥
ଯେ କଳଶା ଚାରିବେଦୁ ଉତପତ୍ତି କରି ।
ଉଛବ ବଢ଼ିଲା ଭିତରକୁ ଗଲେ କୁମରକୁମାରୀ ॥
(ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ ପାଠ)

କଳସାକୁ ବେଦରୁ ଉତ୍ପନ୍ନ କରାଗଲା ବୋଲି ସାରଳାଦାସ କହୁଛନ୍ତି। ସେଠାରେ କଳସାର ଅର୍ଥ ଏକ ଓଡ଼ିଆ ଗୀତ ହୋଇ ନ ପାରେ। ମୁଁ ପାଠ କରିଥିବା ତାଳପତ୍ର ପୋଥିରେ ମଧ୍ୟ କଳସାକୁ ବେଦମନ୍ତ୍ର ସହିତ ସଂପୃକ୍ତ କରାଯାଇଛି :-

ବର କନ୍ୟାଙ୍କୁ କଲେ ଏକ ଆସନେ ଉଭା ।
ପୂର୍ଣ୍ଣଚନ୍ଦ୍ର ପ୍ରାୟେ ଦିଶନ୍ତି ଦୁହେଁ ଶୋଭା ॥
ବେଦମନ୍ତ୍ରରେ ପଢ଼ିଲେ କଳସା ।
ବଶିଷ୍ଠ ମାର୍କଣ୍ଡେୟ ଅଛନ୍ତି ଦୁର୍ବାସା ॥
ଆଉବ ଯେତେ ଥିଲେ ଯତି ମହାମୁନି ।
ଚାରିମନ୍ତ୍ରୀ ବେଦବ୍ରହ୍ମାର ତପୋଧନି ॥
ଏ କଳସା ଚାରିବର୍ଗରେ ପଢ଼ିଲେ ଉପଚାରୀ ।
ଉତ୍ସବ ବଢ଼ିଲା କୁମର-କୁମାରୀ ॥

ସାରଳାଦାସ ସୁଭଦ୍ରା ବିବାହର ବର୍ଣ୍ଣନାରେ ମଧ୍ୟ କଳସା ପଢ଼ାଯିବା କଥା କହିଛନ୍ତି :-

ଋକ ଯଜୁ ସାମ ଅଥର୍ବ ଚତୁର୍ବାଣୀ ।
ପଢ଼ିଣ ବିପ୍ରେ ଶିରେ ଅର୍ଘ୍ୟ ଦିଲେ ଆଣି ॥
କଳସା ଶିଲୋକ ପଢ଼ନ୍ତି ସର୍ବ ଲୋକ ।
ଅନେକ ବଧାଇ ଦିଅନ୍ତି ଯେ ମନସୁଖ ॥ (ମଧ୍ୟପର୍ବ.ପୃ.୩୩୨)

''ବେଦମନ୍ତ୍ରରେ ପଢ଼ିଲେ କଳସା''। ''କଳସା ଚାରିବେଦୁଁ ଉତପତ୍ତି କରି'' ଓ 'କଳସା ଶିଲୋକ' (ଶ୍ଳୋକ)ର ଅର୍ଥ ଓଡ଼ିଆ ଭାଷାରେ ରଚିତ କଳସା ଚଉତିଶା ହୋଇ ନପାରେ। ସାରଳା ଦାସଙ୍କ କହିବାର କଥା ବିବାହ ବେଳେ କଳସା ପଢ଼ିବା ରୀତି ଶାମ୍ବ ଓ ସୁଭଦ୍ରା ବିବାହ ବେଳେ ମଧ୍ୟ ଅନୁସୃତ ହେଉଥିଲା। କିନ୍ତୁ, ମଙ୍ଗଳଗାନ ଲୋକାଚାରଟି ପାଇଁ ସୁଦୂର ଅତୀତରେ କୌଣସି ରଚନା ଥିଲା କି ବୋଲି କାଳେ କିଏ ସଂଦେହ କରିବ ଏଥିପାଇଁ କବି ସ୍ପଷ୍ଟ କରି ଲେଖିଦେଇଛନ୍ତି ଯେ ସେହି ମଙ୍ଗଳଗାନ ବୈଦିକମନ୍ତ୍ର ବିଶିଷ୍ଟ ଥିଲା। ବ୍ରହ୍ମାଙ୍କର ଚାରିଟି ମୁଖ ଚାରିଟି ବେଦ ଗାନ କରନ୍ତି। ଚାରିବେଦର ମନ୍ତ୍ର ଘୋଷୁଥିବା (=ଚାରି ମନ୍ତ୍ରୀ) ବ୍ରହ୍ମାଙ୍କର ମୁଖରୁ

ବେଦ ଶିକ୍ଷା କରିଥିବା ଋଷିମାନେ ମଧ୍ୟ ଚାରିଭାଗ ହୋଇ ଚାରିଟିଯାକ ବେଦର ମନ୍ତ୍ରରେ ମଙ୍ଗଳ ଗାନ କଲେ। ତେଣୁ କବି କହିଛନ୍ତି "ଏ କଳସା ଚାରିବର୍ଗରେ ପଢ଼ିଲେ ତପଚାରୀ"। କଳସାକୁ ବିବାହକାଳୀନ ମଙ୍ଗଳଗୀତ ଅର୍ଥରେ ନ ବୁଝିଲେ ସମଗ୍ର ପ୍ରସଙ୍ଗ ନିତାନ୍ତ ଅବୋଧ୍ୟ ରହିବ। ବତ୍ସାଦାସ ବା ଅନ୍ୟ କାହାର ଏକ ଓଡ଼ିଆ ରଚନା ଅର୍ଥ ଏଠାରେ ଜମାରୁ ଖଟିବ ନାହିଁ।

ସାରଳାଦାସଙ୍କ ବେଳକୁ ମଙ୍ଗଳଗାନ ବିବାହ ବେଳର ଏକ ଚଳଣି ଥିଲା। ସେହି ମଙ୍ଗଳଗାନର ଭାଷା ଓଡ଼ିଆ ନ ଥିଲା ବୋଲି କହିହେବ ନାହିଁ। କିନ୍ତୁ ସାରଳାଦାସ ମହାଭାରତରେ ବିବାହ ପାଇଁ ସଂସ୍କୃତ (ଶ୍ଳୋକାତ୍ମକ) ମଙ୍ଗଳଗାନ କଥା ଲେଖିଛନ୍ତି। ସଂସ୍କୃତରେ ମଙ୍ଗଳଗାନ ଥିଲା। 'ମଙ୍ଗଳଗୀତ' ଶବ୍ଦ ସଂସ୍କୃତ ଅଭିଧାନରେ ସୁଲଭ। ଏହାର ପ୍ରଚଳନ ପଞ୍ଚତନ୍ତ୍ରରେ ରହିଛି। ସଂସ୍କୃତରେ ବିବାହ ସଂଗୀତକୁ 'ମଙ୍ଗଳମାଳିକା' କୁହାଯାଏ।

'କଳସା' ଶବ୍ଦଟି ସଂସ୍କୃତ ଭାଷାର ଥିବା ଜଣାଯାଉନାହିଁ। ଏହା ଓଡ଼ିଶାର ଆଞ୍ଚଳିକ ଶବ୍ଦ। ତାହା ସଂସ୍କୃତର 'କଳସ' ଶବ୍ଦରୁ ଆସିଥାଇ ପାରେ ବା କୌଣସି ପ୍ରାକୃତ ଶବ୍ଦଜାତ ହୋଇଥାଇପାରେ। ଏହାର ମୂଳ କେଉଁଠି? ଶ୍ରୀ ବଂଶୀଧର ମହାନ୍ତି କଳସାର ମୂଳ ଖୋଜିବାକୁ ଯାଇ ପ୍ରାକୃତ ଛାନ୍ଦ 'କଳସା' ଓଡ଼ିଆରେ କଳସା ହେବା ଅନୁମାନ କରିଛନ୍ତି। ପ୍ରାକୃତରେ କଳସ ଛନ୍ଦ ଅଛି, କଳସା ନାହିଁ। କଳସ ପ୍ରାକୃତର ସ୍କନ୍ଧକ ନାମକ ମାତ୍ରାବୃତ୍ତର ୨୭ଟି ଭେଦ ମଧ୍ୟରୁ ଗୋଟିଏ। ଏଥିର ପୂର୍ବାର୍ଦ୍ଧରେ ଚତୁର୍ମାତ୍ରିକ ଆଠଗଣ ଓ ଉତ୍ତରାର୍ଦ୍ଧରେ ମଧ୍ୟ ସେହିପରି। କଳସରେ ପାଞ୍ଚୋଟି ଗୁରୁବର୍ଣ୍ଣ ଓ ୫୪ଟି ଲଘୁବର୍ଣ୍ଣ। ମୋଟ ବର୍ଣ୍ଣ ସଂଖ୍ୟା ୫୯। ଓଡ଼ିଆ କଳସାରେ ଚାରିପାଦରେ ଏକ ପଦ ହେଉଥିବାରୁ ଗୁରୁଲଘୁ ବିଚାର ନଥାଇ ମୋଟ ବର୍ଣ୍ଣ ସଂଖ୍ୟା ୫୬। କିନ୍ତୁ, କଳସ ଦୁଇ ପାଦାତ୍ମକ ଅଥଚ କଳସା ଚାରି ପାଦର ହୋଇଥିବାରୁ କଳସ ଓ କଳସା ମଧ୍ୟରେ ବୈସାଦୃଶ୍ୟ ବହୁତ। ବରଂ, ସଂସ୍କୃତ କଳହଂସ ସହିତ କଳସାର ଅଧିକ ସାଦୃଶ୍ୟ ରହିଛି। କଳହଂସରେ ଚାରି ପାଦରେ ଏକ ପାଦ (କଳସା ପରି) ଓ ଏହାର ପ୍ରତ୍ୟେକ ପାଦର ବର୍ଣ୍ଣ ସଂଖ୍ୟା ଗଣନିୟମ ଥାଇ ସର୍ବଦା ୧୩। ଓଡ଼ିଆରେ ଗଣନିୟମ ନଥାଇ ବର୍ଣ୍ଣ ସଂଖ୍ୟା ପାଦକେ ୧୪। କିନ୍ତୁ ଯତିସ୍ଥାନ ଦୃଷ୍ଟିରୁ କଳସା ଓ କଳହଂସ ସଜାତୀୟ ନୁହନ୍ତି। ତେଣୁ କଳସା କଳହଂସରୁ ଜାତ ହେବା ଜଣାଯାଉନାହିଁ। କଳସାର ସଜାତୀୟତା ସଂସ୍କୃତ ଓ ପ୍ରାକୃତ ଚତୁର୍ଦ୍ଦଶାକ୍ଷରୀ ବର୍ଣ୍ଣବୃତ୍ତ ବସନ୍ତତିଳକା ସହିତ ଅଧିକ ରହିଛି।

'କଳସା' ନାମ ଓ ଛନ୍ଦର ମୂଳ ଏବେ ବି ମୁଖ୍ୟ। ବିବାହ ଉପଲକ୍ଷେ ମଙ୍ଗଳଗାନ ପାଇଁ କାହିଁକି କଳସାକୁହିଁ ବଛାଗଲା ତାହା ବି ରହସ୍ୟମୟ। ତେବେ ଜଣାଯାଉଛି ମଙ୍ଗଳଗାନ ପାଇଁ କଳସା ବୋଲାଯିବାରୁ ମଙ୍ଗଳଗାନକୁ କଳସା କୁହାଗଲା ଓ

କଳସା ବାଣୀକୁ ମଙ୍ଗଳ ରାଗ କୁହାଗଲା। ଏପରି ଶବ୍ଦାର୍ଥ ବିନିମୟ ଫଳରେ ମଙ୍ଗଳ ଓ କଳସା ଏକା କଥାକୁ ବୁଝାଇଲେ, ବିବାହର ଉପଚାର ରୂପେ ଗାନ କରାଯିବା ବେଳକୁ ତାହା ଓ ଗୋଟିଏ ବୃତ୍ତର ନାମ ବେଳକୁ ମଧ ତାହା। ପରିଶେଷରେ, ଉପରେ ପ୍ରତିପାଦିତ ସିଦ୍ଧାନ୍ତଗୁଡ଼ିକୁ ପୁଣି ଦୋହରାଉଛି :-

୧. ସାରଳା ଦାସ ସଂସ୍କୃତ ଭାଷାର ମଙ୍ଗଳଗୀତ ଅର୍ଥରେ 'କଳସା' ଶବ୍ଦ ଅନେକ ଠାରେ ବ୍ୟବହାର କରିଛନ୍ତି। 'କଳସା ଚଉତିଶା' ନାମଧେୟ ଓଡ଼ିଆ ରଚନାକୁ ସେ ଉଲ୍ଲେଖ କରି ନାହାନ୍ତି।

୨. 'କଳସା ଚଉତିଶା'ର ପ୍ରକୃତ ନାମ ଗଉରା କଳସା' ଓ ତାହାର କବିଙ୍କ ନାମ ବଂଶୀ ଦାସ ; ବସ୍ତ ଦାସ ନୁହେଁ।

୩. ଓଡ଼ିଆରେ ବହୁ ସଂଖ୍ୟକ 'କଳସା' ରଚନା ରହିଛି। ତନ୍ମଧ୍ୟରୁ ଗଉରା କଳସା ବା କଳସା ଚଉତିଶା ଗୋଟିଏ।

୪. କଳସା ରଚନା ଗୁଡ଼ିକ ବିବାହବେଳେ ଗାନ କରାଯିବା ପାଇଁ ଉଦ୍ଦିଷ୍ଟ ତେଣୁ ମଙ୍ଗଳଗୀତ ଓ କଳସା ସମାନ।

୫. ଗଉରା କଳସା ବା କଳସା ଚଉତିଶାର ରଚନାକାଳ ଖ୍ରୀ ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧର ପୂର୍ବବର୍ତ୍ତୀ ନୁହେଁ।

୬. ବିବାହକାଳୀନ ଗୀତ ଅର୍ଥରେ ହେଉ କି ଛନ୍ଦର ନାମ ଭାବରେ ହେଉ କଳସା ମଙ୍ଗଳର ନାମାନ୍ତର ମାତ୍ର।



*ତୃତୀୟ ଅଧ୍ୟାୟ*

# ଅନେକ ଜଗନ୍ନାଥ ଦାସ

ଏକା ନାମବିଶିଷ୍ଟ ଅନେକ ବ୍ୟକ୍ତି ଥିବା ଏକ ମାମୁଲି କଥା। ଗୋଟିଏ ଗୋଟିଏ କ୍ଷୁଦ୍ର ଗୋଷ୍ଠୀରେ ମଧ୍ୟ ସମାନ ନାମଧେୟ ବହୁବ୍ୟକ୍ତି ଏକ ସମୟରେ ମିଳନ୍ତି। ସାରା ଓଡ଼ିଶାରେ ବିଗତ ପାଞ୍ଚଶହ ବର୍ଷ ବ୍ୟାପୀ ଇତିହାସ ଗର୍ଭରେ ଏକା ନାମଧାରୀ ସାହିତ୍ୟିକ ଅନେକ ଥିବା ସମ୍ଭାବନା ଅବଶ୍ୟ ରହିଛି। ହେଲେହେଁ, ଓଡ଼ିଆ ସାହିତ୍ୟର ଇତିହାସର ଆଲୋଚକମାନେ ସାଧାରଣତଃ ନାମ ସମାନ ଦେଖିବା ମାତ୍ରେ ବ୍ୟକ୍ତି ମଧ୍ୟ ସମାନ ବୋଲି ମତ ପୋଷଣ କରିଥାନ୍ତି। ଜଗନ୍ନାଥ ଦାସଙ୍କ କ୍ଷେତ୍ରରେ ତାହାହିଁ ଘଟିଛି। ଇତିହାସରେ ଜଗନ୍ନାଥ ଦାସ ଅନେକ। କିନ୍ତୁ, ବିଭିନ୍ନ ଜଗନ୍ନାଥ ଦାସଙ୍କର ବ୍ୟକ୍ତିତ୍ୱର ସ୍ୱାତନ୍ତ୍ର୍ୟ ନିର୍ଣ୍ଣିତ ହୋଇନାହିଁ; ସବୁ ଜଗନ୍ନାଥ ଦାସଙ୍କ କୃତିତ୍ୱକୁ ଜଣେ ଜଗନ୍ନାଥ ଦାସଙ୍କ କୃତିତ୍ୱ ବୋଲି ଧରି ନିଆଯାଉଛି। ତନ୍ମଧ୍ୟରୁ କେତେଜଣ ବିଖ୍ୟାତ ଜଗନ୍ନାଥ ଦାସଙ୍କ ସଂପର୍କରେ ମିଳୁଥିବା ତଥ୍ୟାବଳୀ ଉପସ୍ଥାପନ କରି ଅନ୍ୟାନ୍ୟ ଜଗନ୍ନାଥ ଦାସଙ୍କ ଠାରୁ ତାଙ୍କର ଭିନ୍ନତାକୁ ନିମ୍ନରେ ସୂଚାଇ ଦିଆଯାଉଛି।

**ଭାଗବତକାର ଜଗନ୍ନାଥ ଦାସ—**

ଓଡ଼ିଆ ଭାଗବତ ମହାପୁରାଣର ପ୍ରଣେତା ଜଗନ୍ନାଥ ଦାସ ଓଡ଼ିଶାର ପୁରପଲ୍ଲୀ ସର୍ବତ୍ର ସୁବିଖ୍ୟାତ। ଓଡ଼ିଶାରେ ଜଗନ୍ନାଥ ଦାସ ନାମଟି ମୁଖ୍ୟ ଭାବରେ ଏହି ଭାଗବତକାରଙ୍କୁ ବୁଝାଏ। ସ୍ୱପ୍ରଣୀତ ନବାକ୍ଷରୀ ଭାଗବତର ବିଭିନ୍ନ ସ୍ଥାନରେ ସେ ନିଜ ସଂପର୍କରେ ଅତି ଅଳ୍ପକଥା ମାତ୍ର ଜଣାଇଛନ୍ତି। ସେ ଲେଖିଛନ୍ତି ଯେ ସେ ଜାତିରେ ବ୍ରାହ୍ମଣ। ଏପରି ଜଣାଇବା ତାହାଙ୍କର ଜାତ୍ୟାଭିମାନ ବୋଲି ଆପାତତଃ ମନେ ହୋଇପାରେ। କିନ୍ତୁ, ତାହା ପ୍ରକୃତ କଥା ନୁହେଁ। ବୈଷ୍ଣବଜନସୁଲଭ ଅକିଞ୍ଚନ ମନୋଭାବକୁ ସେ ଅନେକ ଠାରେ ପ୍ରକାଶ କରିଚନ୍ତି। କୌଣସି ଅଭିମାନୀ ଲୋକ ପକ୍ଷେ ଏତାଦୃଶ ଦୀନତା ପ୍ରକାଶ ସମ୍ଭବପର ନୁହେଁ (ଏଠାରେ ଉଦ୍ଧୃତ ଓଡ଼ିଆ ଭାଗବତର ପଦମାନ ରାଜକିଶୋର ଦାସଙ୍କ ସଂସ୍କରଣର; ଉଦ୍ଧୃତି ପରେ ପ୍ରଥମେ ସ୍କନ୍ଧ ସଂଖ୍ୟା ଓ ତାହା ପରେ ଅଧ୍ୟାୟ ସଂଖ୍ୟା ଲେଖାଯାଉଛି)।

ମୁହିଁ ପାମର ଦୁରାଚାର । ଭୋ ନାଥ ମୋତେ କୃପାକର ॥୫/୧୭
ପାମର ବିପ୍ର ଜଗନ୍ନାଥ । ଗୀତେ ଗାଇଲା ଭାଗବତ ॥୧୦/୧୫
ପାମର ହୀନ ମୋର ବୁଦ୍ଧି । କୃଷ୍ଣ ଚରଣେ ଚିତ୍ତ ଖେଦି ॥୧୦/୩୦
ମୁଁ ଛାର ହୀନ ମୂଢ଼ ମତି । କୃଷ୍ଣ ଚରଣେ ହେଉ ରତି ॥୧୦/୯୬
ଅଳପ ହୀନ ବୁଦ୍ଧି ମୋର । ଏଣୁ ଅଜ୍ଞାନ ମୁଁ ପାମର ॥୧୧/୯
ପାମର ହୀନଜ୍ଞାନ ମୋର । ପଣ୍ଡିତେ ଦୋଷ ମୋ ନ ଧର ॥୧୧/୩୦

ଅନୁବାଦର ସାବଲୀଳତା ଜଗନ୍ନାଥ ଦାସଙ୍କ ଭାଗବତ ଭାଷାନ୍ତରର ବିଶେଷତ୍ୱ। ଜଟିଳ ଦର୍ଶନ ଓ ଧର୍ମର ତତ୍ତ୍ୱକୁ ସଂକ୍ଷେପରେ ପଦ୍ୟରେ ପ୍ରକାଶ କରିବାରେ ନିପୁଣତା ସାଙ୍ଗକୁ ନିର୍ଦ୍ଦୋଷ ଓଡ଼ିଆ ଭାଷା ଉପରେ ତାହାଙ୍କର ଦଖଲ ଥିଲା । ଏହା ତାହାଙ୍କର ପାଣ୍ଡିତ୍ୟ ଓ କବିତ୍ୱ ଶକ୍ତିର ନିଦର୍ଶନ। ଯେଉଁ ଲୋକ ନିଜର ଏତାଦୃଶ ପାଣ୍ଡିତ୍ୟ ଓ କବିତ୍ୱ ସତ୍ତ୍ୱେ ନିଜକୁ ଏତେ ହେୟ ଓ ତୁଚ୍ଛ ରୂପେ ବ୍ୟକ୍ତ କରିପାରେ ସେ ଆଭିଜାତ୍ୟ ଅଭିମାନବଶତଃ ନିଜର ଉଚ୍ଚଜାତିର ଉଲ୍ଲେଖ କରିଚନ୍ତି ବୋଲି ଅନୁମାନ କରାଯାଇ ନପାରେ। ଜଗନ୍ନାଥ ଦାସଙ୍କର ସ୍ୱଜାତିର ନାମୋଲ୍ଲେଖକୁ ସଂସ୍କୃତ-ପ୍ରାକୃତ ଭାଷା ମଧ୍ୟର ତାତ୍କାଳିକ ପ୍ରତିଯୋଗର ପୃଷ୍ଠଭୂମିରେ ଥୋଇଲେ ହିଁ ବୁଝିହେବ। ପରଂପରାକ୍ରମେ ସଂସ୍କୃତ ଥିଲା ଦେବଭାଷା। ଦେବମାନେ ସ୍ୱର୍ଗରେ ତ ରହୁଥିଲେ, ସେମାନଙ୍କର ପାର୍ଥିବ ସଂସ୍କରଣ ଏହି ଭୂଲୋକରେ ମଧ୍ୟ ରହୁଥିଲେ। ପୃଥିବୀରେ ଜାତ ଦେବମାନେ ଥିଲେ ଭୂଦେବ ଅର୍ଥାତ୍ ବ୍ରାହ୍ମଣ ଓ ନରଦେବ ଅର୍ଥାତ୍ ରାଜା। ଭୂଦେବ-ନରଦେବମାନଙ୍କର ଭାଷା ମଧ୍ୟଥିଲା ସଂସ୍କୃତ। ସଂସ୍କୃତ ନାଟକଗୁଡ଼ିକରେ ଏ କଥାର ପାଳନ ହେଉଥିଲା ; ରାଜା ଓ ବ୍ରାହ୍ମଣମାନେ ସଂସ୍କୃତ କହିବା ସ୍ଥଳେ ଅନ୍ୟମାନେ ପ୍ରାକୃତ କହୁଥିଲେ। ପ୍ରାକୃତ ଭାଷା (ଓଡ଼ିଶାରେ ଓଡ଼ିଆ) ଥିଲା ପ୍ରାକୃତ ଜନତା ଅର୍ଥାତ୍ ସଂଖ୍ୟାଗରିଷ୍ଠ ଶୂଦ୍ର ସମାଜର ଭାଷା। ସଂସ୍କୃତ ଭାଷା ଓ ସାହିତ୍ୟ ରାଜକୀୟ ପୃଷ୍ଠପୋଷକତା ଦ୍ୱାରା ପରିପୁଷ୍ଟ ତଥା ବିଦ୍ୱତ୍ ସମାଜରେ ଲାଳିତ ହେଉଥିଲା। ଏହି ପରିପ୍ରେକ୍ଷଣରେ ଜଗନ୍ନାଥ ଦାସଙ୍କ ପରି ଜଣେ ବ୍ରାହ୍ମଣ କୁଳୋତ୍ପନ୍ନ ସଂସ୍କୃତ ଭାଷାଭିଜ୍ଞ ବ୍ୟକ୍ତିର ପ୍ରାକୃତ (ଓଡ଼ିଆ) ଭାଷା ପ୍ରତି ଆଦରର ମୂଲ୍ୟାଙ୍କନ କରିବାକୁ ହେବ। ସାରଳା ଦାସ ଓ ବଳରାମ ଦାସ ଉଭୟେ ଶୂଦ୍ର ଜାତିର ଥିଲେ। ସାରଳା ଦାସ ନିଜକୁ ଶୂଦ୍ରମୁନି ବୋଲି ଅଭିହିତ କରିଥିବା କଥା ସୁବିଦିତ; ଏହା ସୁବିଦିତ ନ ହେଲେ ହେଁ ସତ୍ୟ ଯେ ବଳରାମ ଦାସ ମଧ୍ୟ ନିଜକୁ 'ଶୂଦ୍ରମୁନି' ବୋଲାଇଛନ୍ତି। ଅଥଚ ଜଗନ୍ନାଥ ଦାସ ଭୂଦେବ ବ୍ରାହ୍ମଣ ଥିଲେ, ସଂସ୍କୃତଜ୍ଞ ଥିଲେ। ତଥାପି ସେ ସଂସ୍କୃତକୁ ଆଦର ନ କରି ଜନସାଧାରଣଙ୍କ ଅସଂସ୍କୃତ ତୁଚ୍ଛଭାଷା ପ୍ରାକୃତକୁ ଆଦର କଲେ।

ସେ ହରି ଅଭୟ ଚରଣେ। ବ୍ରାହ୍ମଣ ଜଗନ୍ନାଥ ଭଣେ॥
ପାମର ବୁଦ୍ଧି ତୁଚ୍ଛ ଭାଷା। କେବଳ କୃଷ୍ଣରେ ଭରସା ॥୧୧/୨୨

ଏହି ଦୃଷ୍ଟିରେ ଦେଖିଲେ ଜଗନ୍ନାଥ ଦାସଙ୍କ ଆଭିଜାତ୍ୟ ପ୍ରକାଶ ଆପଣାକୁ ଗୌରବ ଦେବା ଲାଗି ଉଦ୍ଦିଷ୍ଟ ନ ଥିଲା। ତାହା ସାଧାରଣ ଜନତାଙ୍କ ମୁଖର ଭାଷାକୁ ପ୍ରତିଷ୍ଠା ଦେବା ସଙ୍ଗେ ସଙ୍ଗେ ବ୍ରାହ୍ମଣ ସମାଜରେ ପ୍ରାକୃତ ଭାଷା ପ୍ରତି ଥିବା ବିରୋଧକୁ ଦୁର୍ବଳ କରାଇବା ଲାଗି ଉଦ୍ଦିଷ୍ଟ ଥିଲା ବୋଲି ଅନୁମାନ କରାଯାଇ ପାରେ।

ଜଗନ୍ନାଥ ଦାସ ଭାଗବତରେ ଭାଷାନ୍ତର ରଚନାକୁ ଏକ ଜନହିତକର କାର୍ଯ୍ୟ, ବିଶେଷତଃ ବୈଷ୍ଣବ ଭକ୍ତମାନଙ୍କର ମଙ୍ଗଳସାଧନ କାର୍ଯ୍ୟ ବୋଲି ବିଚାର କରୁଥିଲେ :-

ବୋଲଇ ବିପ୍ର ଜଗନ୍ନାଥ। ସୁଜନ ହିତେ ଭାଗବତ ॥୧/୪
ସୁଜନ ଜନଙ୍କର ହିତେ। ଯେବା ପ୍ରକାଶ ମୋର ଚିତ୍ତେ ॥୧/୧୮
ଭଣଇ ଜଗନ୍ନାଥ ଦାସ। ସାଧୁଙ୍କ ହିତେ ଏ ପ୍ରକାଶ ॥୩/୩୧
କହିଲା ବିପ୍ର ଜଗନ୍ନାଥ। ଭକ୍ତଙ୍କ ହିତେ ଭାଗବତ ॥୪/୭
ସଂସାର ଜନ ହିତେ ଗୀତ। କହିଲା ବିପ୍ର ଜଗନ୍ନାଥ ॥୪/୧୨
କହଇ ଦାସ ଜଗନ୍ନାଥ। ସଂସାର ହିତ ଏହୁ ଗୀତ ॥୬/୫
ଶୁଣି ସଂସାରୁ ତର ପ୍ରାଣୀ। ସୁଜନ ହିତେ ଏହୁ ଭଣି ॥୭/୧୫
ସୁଜନ ଜନଙ୍କର ହିତ। କହଇ ଦାସ ଜଗନ୍ନାଥ ॥୧୦/୩୦
ଅନାଥ ବିପ୍ର ଜଗନ୍ନାଥ। ସଂସାର ହିତେ ଭାଗବତ।୧୦/୭୫
ଶ୍ରୀ ଏକାଦଶ ଭାଗବତେ। ଗୀତେ କହିଲି ଜନହିତେ ॥୧୧/୯
ପ୍ରାକୃତ ବନ୍ଧେ ଭାଗବତ। ପ୍ରକାଶି ସଛ ଜନହିତ ॥୧୧/୧୦

ଏଥିରୁ ଅନୁମିତ ହୁଏ ଯେ ଭାଗବତର ପ୍ରାକୃତ ଭାଷାନ୍ତରର ଲକ୍ଷ୍ୟ ସାହିତ୍ୟିକ ହେବା ଅପେକ୍ଷା ଅଧିକ ମାତ୍ରାରେ ଥିଲା ଧାର୍ମିକ। ଭକ୍ତିଧର୍ମର ସର୍ବଶ୍ରେଷ୍ଠ ଗ୍ରନ୍ଥ ଭାଗବତ। ଭକ୍ତିବାଦର ବ୍ୟାପକ ପ୍ରସାର ପାଇଁ ଜନସାଧାରଣଙ୍କ ପାଇଁ ଅବୋଧ୍ୟ ସଂସ୍କୃତ ଭାଷା ଅପେକ୍ଷା ଜନସାଧାରଣଙ୍କ ବୋଧ୍ୟ ପ୍ରାକୃତ ଭାଷାର ଉପଯୋଗିତା ଅଧିକ ବୋଲି ଅନୁଭୂତ ହେବା ସ୍ୱାଭାବିକ। ଭକ୍ତିବାଦ ଯେଉଁ ସାଧାରଣ ଜନତାଙ୍କ ପାଇଁ ଅଭିପ୍ରେତ ଥିଲା ସେହି ଜନତାଙ୍କ ଭାଷା ଥିଲା ପ୍ରାକୃତ। ପ୍ରାକୃତ ଜନତା ଓ ଧର୍ମର କ୍ଷେତ୍ର ମଧ୍ୟରେ ସଂସ୍କୃତ ଭାଷା ଏକ ପ୍ରତିବନ୍ଧକ ସ୍ୱରୂପ ରହିଥିଲା। ତେଣୁ ସେହି ପ୍ରତିବନ୍ଧକର ଅପସାରଣ ଅବଶ୍ୟ ଏକ ଜନହିତକର କାର୍ଯ୍ୟ ଥିଲା। ଗୋଟିଏ ଧର୍ମଗ୍ରନ୍ଥର ପ୍ରାକୃତ ଭାଷାନ୍ତର ପ୍ରସ୍ତୁତି ଦ୍ୱାରା ଯେ ଜନହିତକର କାର୍ଯ୍ୟ ସାଧନ ହୋଇପାରେ ଏହା ଉତ୍କଳର ଗ୍ରାମେ ଗ୍ରାମେ ପ୍ରତିଷ୍ଠିତ ଭାଗବତ ଘରଗୁଡ଼ିକର ଉଦ୍‌ଗମ ଓ ବିକାଶରୁ ପ୍ରମାଣିତ ହେଉଛି। ଭାଗବତ-ଘର ଉତ୍କଳର ଗୋଟିଏ ଲୋକସମାଦୃତ କୃଷ୍ଟିରେ ପରିଣତ ହୋଇଥିଲା। ଗାଉଁଲି ସମାଜରେ ଭାଗବତ-ଘରଗୁଡ଼ିକର ସକ୍ରିୟ ଭୂମିକା, ଗ୍ରାମ୍ୟ ସମାଜ ପାଇଁ ଏକ ସ୍ଥାୟୀ ମିଳନପୀଠ ଯୋଗାଇ ସାମାଜିକ ସଦ୍‌ଭାବ ରକ୍ଷା, ଆଦି ବିଷୟ ବିଚାର କଲେ ଜଗନ୍ନାଥ ଦାସଙ୍କର ସଂସାର ଜନହିତ

ସାଧକ ଚେତନାର ଯଥାର୍ଥ ମୂଲ୍ୟାଙ୍କନ ସମ୍ଭବପର ହେବ। ଜଗନ୍ନାଥ ଦାସ ଏହା କିପରି କରିପାରିଲେ ?

ଭଣଇ ବିପ୍ର ଜଗନ୍ନାଥ। ଏ କୃଷ୍ଣ ଆଜ୍ଞାରୁ ଉଦିତ। ୪୪/୩୨
ସେ ହରି ଆଜ୍ଞା ଶିରେ ବହି। ଗୀତେ ପାରିଲି ଯାହା କହି॥ ୧୦/୯୬

ଜଗନ୍ନାଥ ଦାସ ଜଣାଇଛନ୍ତି ଯେ ସ୍ୱୀୟ ଆରାଧ୍ୟ ଭଗବାନ କୃଷ୍ଣଙ୍କ ଆଜ୍ଞାକୁ ପାଳନ କରି ସେ ଭାଗବତର ଭାଷାନ୍ତର ପ୍ରଣୟନ କରିଛନ୍ତି। ସେ ଆଉ ମଧ୍ୟ ଜଣାଇଛନ୍ତି ଯେ ତାହାଙ୍କ ରଚିତ ଭାଗବତ କୃଷ୍ଣଙ୍କ ମୁଖନିସୃତ ବାଣୀ :-

ଭାଷା ପ୍ରବନ୍ଧେ ଗୀତ କରି। ଯାହା କହିଲେ ନରହରି ॥୯/୩
ସଂସାର ହିତେ ବିଷ୍ଣୁବାଣୀ। ଗୀତେ ମୁଁ ବଖାଣିଲି ଆଣି ॥୧୦/୮୦

ସ୍ୱୟଂ କୃଷ୍ଣ ଭାଗବତର ଗୀତାନୁବାଦ କରିବାକୁ କବିଙ୍କୁ କହିଥିଲେ ଅନ୍ତର୍ଯ୍ୟାମୀ ଭାବରେ ଓ କବି ଜଣେ ଅଜ୍ଞାନ ଶିଶୁପରି କୃଷ୍ଣଙ୍କ ଆଜ୍ଞା ପାଳନ କରିଥିଲେ।

କୃଷ୍ଣ ସବୁରି ଦେହେ ଥାଇ। ଯାହାକୁ ଯେମନ୍ତ ବୁଝାଇ ॥।
କେ କରି ପାରିବ ତା ଆନ। ଚିତ୍ତକୁ ସାକ୍ଷୀ ଭଗବାନ ॥
ମୋ ମନ ମୋହିଲେ ମୁରାରି। ପୁରାଣ ଗୀତ ଅର୍ଥ କରି ॥
ଏଣୁ ମୋହର ଜ୍ଞାନ ନାହିଁ। ବାଳୁତ ଜନ ପ୍ରାୟ ହୋଇ ॥୧୦/୧୫

ଭଗବାନ୍ ଅନ୍ତର୍ଯ୍ୟାମୀ ଆତ୍ମା ରୂପେ ସମସ୍ତଙ୍କ ଦେହ ମଧ୍ୟରେ ରହି ପ୍ରେରଣା ଦିଅନ୍ତି, ବୋଧ ଦିଅନ୍ତି। ମନୁଷ୍ୟ ଯାହା ସବୁ ଚିନ୍ତା କରେ ତାହାର ହେତୁ ଭଗବାନ। ଅନ୍ୟତ୍ର କବି ପ୍ରକାଶ କରିଛନ୍ତି ଯେ ଭାଗବତର ପ୍ରାକୃତ ଭାଷାରେ ଅନୁବାଦ କରିବା ପାଇଁ କୃଷ୍ଣ ତାହାଙ୍କୁ ସ୍ୱପ୍ନରେ ଆଦେଶ ଦେଇଥିଲେ :-

ବ୍ରାହ୍ମଣ କୁଳେ ଜାତ ହୋଇ। ବିଷ୍ଣୁବାସନା ମୋର ନାହିଁ॥
ସ୍ୱପନେ କହିଲେ ମୁରାରି। ପୁରାଣ ଗୀତ ନାଦ କରି ॥
ଏଣୁ ମୋହର ଭୟ ନାହିଁ। ସୁଜନେ ଡ଼ର ଏହା ପାଇ ॥୧୦/୪୭

ଅନୁରୂପ ଦୈବୀବାଣୀ ଫଳରେ ସାରଳାଦାସ ମହାଭାରତ ଲେଖିଥିବା କଥା ଓ ବଳରାମ ଦାସ ଜଗମୋହନ ରାମାୟଣ ଲେଖିଥିବା କଥା ସେମାନେ ପ୍ରକାଶ କରିଛନ୍ତି। ଏହାଦ୍ୱାରା ପ୍ରାଚୀନ କବି ଦୁଇଟି କଥା ହାସଲ କରେ। ଗୋଟିଏ ହେଲା, ଆପଣା କୃତିତ୍ୱକୁ ଅସ୍ୱୀକାର କରିବା ଭିତରେ ଦୈନ୍ୟଭାବର ପ୍ରକାଶ; ଭକ୍ତକବିମାନେ ନିଜେ ନିକୃଷ୍ଟଧରଣର କବି ହେବାରୁ ଦେବତାଙ୍କ କରୁଣା ବ୍ୟତିରେକେ ସେମାନେ ଏତାଦୃଶ କାବ୍ୟ ରଚନା କରିପାରନ୍ତେ ନାହିଁ ବୋଲି ଜଣାଇବା ଅଭିପ୍ରାୟରେ ଦୈବସଂପର୍କ ଦାବି କରିଥାନ୍ତି। ଦୈବୀପ୍ରସାଦ ୧ ଦାବିର ଦ୍ୱିତୀୟ ଲକ୍ଷ୍ୟ ଗ୍ରନ୍ଥର ସୁପ୍ରଚାର। ଦେଖାଯାଏ ଯେ ବହୁକବି ଦୈବୀବାଣୀ ଫଳରେ ପୁରାଣ ଆଦି ଧର୍ମଗ୍ରନ୍ଥ ରଚନା କରିଥିବା କଥା ପ୍ରକାଶ କରିଛନ୍ତି। କିନ୍ତୁ କେହିହେଲେ କାଳ୍ପନିକ ବା ଧର୍ମନିରପେକ୍ଷ ଗ୍ରନ୍ଥର

ପ୍ରଣେତା ଏ ପ୍ରକାର ଦାବି କରିନାହାନ୍ତି। ଆଉମଧ ଉଲ୍ଲେଖନୀୟ ଯେ ସେହି ଯୁଗରେ ଶିଷ୍ଟ-ସମାଜ-ସମାଦୃତ ଦେବଭାଷା ସଂସ୍କୃତହିଁ ଥିଲା ସର୍ବବିଧ ଧର୍ମଗ୍ରନ୍ଥ ରଚନା ପାଇଁ ପ୍ରଶସ୍ତ ଭାଷା। ପ୍ରାକୃତ ମଧ ଅନୁରୂପ ଭାବରେ ଧର୍ମାର୍ଜନ ଓ ପୁଣ୍ୟ ସଂଚୟର ବାହକ-ଭାଷା ହୋଇପାରିବ ଏହି ବିଶ୍ୱାସକୁ ଦେବଦେବୀଭକ୍ତ ଧର୍ମପ୍ରାଣ ଧର୍ମଭୀରୁ ଅଶିକ୍ଷିତ ସମାଜର ଗ୍ରହଣଯୋଗ୍ୟ କରାଇନେବା ଉଦ୍ଦେଶ୍ୟରେ କବିମାନେ ଐଶ୍ୱରିକ ସଂପର୍କ ଦାବି କରିଥିବା ଅନୁମିତ ହୁଏ। ଏପରି ଦାବି ପ୍ରାକୃତ ଭାଷାକୁ ଦେବଭାଷା ସ୍ତରକୁ ଉନ୍ନୀତ କରେ ଓ ପରିଣାମତଃ ପ୍ରାକୃତ ଭାଷାର ଗ୍ରନ୍ଥ ଧାର୍ମିକ ଜନତାର ଗ୍ରହଣୀୟ ହେବାରେ ବିଶେଷ ସହାୟକ ହୋଇଥାଏ। ଏହି ଲକ୍ଷଟିର ସୂଚନା ଜଗନ୍ନାଥ ଦାସଙ୍କର କେତେକ ପଦରେ ମିଳେ।

ପୁରାଣ କଲି ଗୀତରସ। ଯାହା କହିଲେ ପୀତବାସ॥
କେ ତାହା କରିବଟି ଆନ। ସବୁରି ପ୍ରଭୁ ଭଗବାନ॥୧୦/୩୪

ଅନୁବାଦଟିକୁ ଧର୍ମପରାୟଣ ସମାଜର ଗ୍ରହଣୀୟ କରାଇବା ଲକ୍ଷ୍ୟରେ ଜଗନ୍ନାଥ ଦାସ ଅବଲମ୍ବନ କରିଥିବା ଏହି କୌଶଳ ଅନନ୍ୟସୁଲଭ ସଫଳତା ଅର୍ଜନ କରିଛି। ଓଡ଼ିଆ ଲୋକେ ଏହି ଅନୁବାଦଟିକୁ ସମୁଚ୍ଚ ଅର୍ଚ୍ଚନୀୟତା ପ୍ରଦାନ କରିବାର ବଡ଼ ପ୍ରମାଣ ଭାଗବତ ଗାଦି, ଯେଉଁଠାରେ ଭାଗବତ ପୋଥିକୁ ଉପାସ୍ୟ ରୂପେ ଗ୍ରହଣ କରାଯାଏ। ପୂର୍ବରୁ ସାରଳାଦାସ ଓ ବଳରାମ ଦାସଙ୍କ ବିରଚିତ ମହାଭାରତ ଓ ରାମାୟଣ ରହିଥିଲା କିନ୍ତୁ ଉପାସ୍ୟ ରୂପେ ଭାଗବତ ଗ୍ରନ୍ଥର ଅନୁବାଦହିଁ ଗୃହୀତ ହେଲା। ଓଡ଼ିଶାରେ ଭାଗବତ ଗାଦି ପୂଜା ପ୍ରବର୍ତ୍ତନର ପ୍ରାୟ ଦେଢ଼ ଶତାବ୍ଦୀ ପରେ ଶିଖଧର୍ମରେ ଗୁରୁଗ୍ରନ୍ଥସାହେବ ପୂଜାର ପ୍ରବର୍ତ୍ତନ ହେଲା। ଦାସଙ୍କ ଭାଗବତର ଶ୍ରେଷ୍ଠତର ସିଦ୍ଧି ଧର୍ମାନୁଷ୍ଠାନ ମଧକୁ ପ୍ରାକୃତ ଭାଷାର ପ୍ରବେଶ। ସବୁ ଧର୍ମଗ୍ରନ୍ଥର ପୁଣ୍ୟଦାୟକତା ଓ ଧାର୍ମିକ ପବିତ୍ରତା ତାହାକୁ ଭାଷାନ୍ତର କରିଦେଲେ କ୍ଷୁଣ୍ଣ ହୁଏ ବୋଲି ବିଶ୍ୱାସ ବିଶ୍ୱବ୍ୟାପକ। ଭାଷାନ୍ତର ଅନ୍ତର ପୁଅ ପରି ଦ୍ୱିତୀୟ ଶ୍ରେଣୀର ହୁଏ ସିନା କଦାପି ଔରସପୁଅର ସମାଙ୍କନ ହୋଇପାରେ ନାହିଁ। ଯଜ୍ଞପାଇଁ ବୈଦିକ ମନ୍ତ୍ରହିଁ ଗ୍ରାହ୍ୟ, ତାହାର ଅନୁବାଦ ନୁହେଁ। ବିବାହ, ବ୍ରତ ଆଦିରେ ଅନୁସୃତ କର୍ମକର୍ମାଣିରେ ସେହିକଥା। ଆଧୁନିକ ମଣିଷଯାଜ୍ଞିକ, ପୁରୋହିତ ସମେତ-ସେସବୁ ମନ୍ତ୍ରର ଭାବ ବୁଝନ୍ତି ନାହିଁ, ଭାଷାଟିକୁହିଁ ମୁଖ୍ୟ ବୋଲି ଧରିଥାନ୍ତି। ଯେପରି ମନେହୁଏ, ଗ୍ରନ୍ଥ ଯେ ପବିତ୍ର ହୁଏ ତାହା ଭାବ ଯୋଗୁଁ ନୁହେଁ। ପବିତ୍ରତା ମୂଳ ଭାଷା ଯୋଗୁଁ। ଭାଷା ଯେ ଭାବର ବାହକ ମାତ୍ର, ତେଣୁ ଗୌଣ, ଏକଥା ଧାର୍ମିକ ସମାଜକୁ ବୁଝାଇବା ଏକ ପ୍ରକାର ଅସାଧ୍ୟ ସାଧନ। ଭକ୍ତମାନେ ଜଗନ୍ନାଥଙ୍କୁ ପଛ କରି ଗରୁଡ଼ଙ୍କୁ ପୂଜିବା ଅବସ୍ଥା। କୋରାଣର ସହସ୍ର ସଂଖ୍ୟାରେ ଅନୁବାଦ ରହିଛି (ଓଡ଼ିଆରେ ତିନୋଟି ହେଲାଣି),

କିନ୍ତୁ ମୂଳ ଆରବୀଭାଷାର ଗ୍ରନ୍ଥଟିହିଁ ପବିତ୍ର କୋରାଣରୂପେ ସର୍ବବିଧ ଧର୍ମାନୁଷ୍ଠାନ ପାଇଁ ଗୃହୀତ ହୁଏ। ସାଂପ୍ରତିକ ଓଡ଼ିଶାରେ ଚାରୋଟି ଗ୍ରନ୍ଥର ବିଧିବିଧାନ-ଉପଚାର ସହିତ ଆନୁଷ୍ଠାନିକ ପାରାୟଣ ହୁଏ :- ୧. ଭାଗବତ ପୁରାଣ ୨. ଚଣ୍ଡୀ ସପ୍ତଶତୀ ୩. ଭଗବଦ୍‌ଗୀତା ଓ ୪. ରାମଚରିତ ମାନସ। ଭାଗବତ ସପ୍ତାହାଦିର ବ୍ୟବସ୍ଥା ସଂସ୍କୃତ ପଦ୍ମପୁରାଣର ଭାଗବତ ମାହାତ୍ମ୍ୟାଦିରେ ରହିଛି। ଓଡ଼ିଶାରେ ଭାଗବତ ସପ୍ତାହ ଉପଲକ୍ଷେ ଜଗନ୍ନାଥ ଦାସଙ୍କ ଅନୁବାଦିତ ଓଡ଼ିଆ ଭାଗବତ ଚଳେ। ଦୀନବନ୍ଧୁ ଖାଡ଼ଙ୍ଗା, କୃଷ୍ଣଚରଣ ପଟ୍ଟନାୟକ ଆଦି ଓଡ଼ିଆ କବିମାନେ ମୂଳ ଭାଗବତ ପୁରାଣର ଶୁଦ୍ଧତର ଅନୁବାଦ ପ୍ରସ୍ତୁତ କରିଥିଲେ ହେଁ ଆନୁଷ୍ଠାନିକ ପାରାୟଣ ଉଦ୍ଦେଶ୍ୟରେ କେବଳ ଦାସଙ୍କ ଓଡ଼ିଆ ଭାଗବତ ଗୃହୀତ ହୁଏ। ଚଣ୍ଡୀର ଓଡ଼ିଆ ଅନୁବାଦ ଅଛି, ଭାଗବତଗୀତାର ତ ବିଂଶାଧିକ ଓଡ଼ିଆ ଅନୁବାଦ ରହିଛି। କିନ୍ତୁ, ଚଣ୍ଡୀ ପାଠ ଓ ଗୀତା ପାରାୟଣ ପାଇଁ ଲୋକେ ଓଡ଼ିଆ ଭାଷାନ୍ତରକୁ ନ ନେଇ ମୂଳ ସଂସ୍କୃତ ଗ୍ରନ୍ଥକୁହିଁ ଆନୁଷ୍ଠାନିକ ଧର୍ମାଚାର ପାଇଁ ଗ୍ରହଣ କରନ୍ତି। ମୋ ବିଚାରରେ, ଭାଷାର ଏହି ଦୃଢ଼ ପ୍ରତିବନ୍ଧକକୁ ଅତିକ୍ରମ କରିବା ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ପକ୍ଷେ ସମ୍ଭବ ହୋଇଛି ତାଙ୍କ ଦ୍ୱାରା ଅନୁସୃତ କୌଶଳ ଯୋଗୁଁ। ଜଗନ୍ନାଥ ଦାସଙ୍କ ସମୟର ପରବର୍ତ୍ତୀ କାଳରେ ତୁଳସୀ ଦାସ ଅନୁରୂପ ଭାବରେ ରାମାୟଣ କ୍ଷେତ୍ରରେ ଭାଷାର ପ୍ରତିବନ୍ଧକକୁ ଅତିକ୍ରମ କରିପାରିଥିଲେ।

ଜଗନ୍ନାଥ ଦାସ ଜଣେ ନିଷ୍ଠାପର ବୈଷ୍ଣବ ଭକ୍ତ ଥିଲେ। ମଧ୍ୟଯୁଗୀୟ ଭାରତରେ ମୁଖ୍ୟତଃ ବୈଷ୍ଣବ ଭକ୍ତମାନେ 'ଦାସ' ଆଖ୍ୟାରେ ଅଭିହିତ ହେଉଥିଲେ। ପଞ୍ଚଧା ଭକ୍ତିଭାବ (ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର) ମଧ୍ୟରୁ ଉପାସ୍ୟଙ୍କୁ ସ୍ୱପ୍ରଭୁ ବୋଲି ଜ୍ଞାନ କରିବା ଦାସ୍ୟଭାବାତ୍ମକ ଅଟେ। ଜଗନ୍ନାଥ ଦାସ ଏକାନ୍ତ ଭାବରେ ଦାସ୍ୟଭାବର ଅନୁଗତ ବୈଷ୍ଣବ ଥିଲେ "କେବଳ ଦାସ ଭାବେ ମତି" (୧୧/୧୯)। ଭାଗବତକାରଙ୍କର ତଥା ଅନ୍ୟାନ୍ୟ ଜଗନ୍ନାଥ ଦାସଙ୍କର ଜୀବନ ବୃତ୍ତାନ୍ତ ଅଧ୍ୟୟନ ପାଇଁ ଏହି ତଥ୍ୟଟି ଅତ୍ୟନ୍ତ ଉପାଦେୟ।

ଏଣେ ନିର୍ମଳ ଚିତ୍ତକର। କୃଷ୍ଣଚରଣେ ମୁଁ କିଂକର ୧୦/୮୦
ସେ ହରି ଅଭୟ ଚରଣେ। ପାମର ଜଗନ୍ନାଥ ଭଣେ॥
କେବଳ ଦାସ୍ୟଭାବେ ମତି। ଚରଣେ ଶରଣ ମୁଁ ନିତି॥୧୧/୧୯

ସେ ନିଜକୁ ତାଙ୍କର ଆରାଧ୍ୟ ଦେବ କୃଷ୍ଣଙ୍କର ଦାସ, କିଂକର, ସେବକ, ଭୃତ୍ୟ ବୋଲି ତ ଅନେକତ୍ର ପ୍ରକାଶ କରିଛନ୍ତି, ଭକ୍ତ ଓ ସାଧୁମାନଙ୍କର କିଂକର, ସେବକ, ଦାସ ଆଦି ବୋଲି ମଧ୍ୟ ଅନେକତ୍ର ଅଭିହିତ କରିଛନ୍ତି। ଏହା ତାଙ୍କର ଦାସ୍ୟଭାବର ଚରମ ନିଦର୍ଶନ।

ସୁଜନେ ନ ଘେନିବ ଦୋଷ । ମୁଁ ତୁମ୍ଭ ଦାସଙ୍କର ଦାସ ॥୧/୧୮
ସୁଜନେ ଦୋଷ ମୋ ନଧର । ମୁଁ ତୁମ୍ଭ ଚରଣେ କିଂକର ॥୧/୩୧
କହଇ ଦାସ ଜଗନ୍ନାଥ । ମୁଁ କୃଷ୍ଣ ସେବକର ଭୃତ୍ୟ ॥୧୦/୩୩
ପଣ୍ଡିତେ ନ କରିବ ହାସ । ତୁମ୍ଭ ଚରଣେ ମୁହିଁ ଦାସ ॥୧୦/୩୭
ସୁଜନେ କୃଷ୍ଣପାଦେ ରସ । ତୁମ୍ଭ ଚରଣେ ମୁହିଁ ଦାସ ॥୧୦/୬୯
ବୋଲଇ ବିପ୍ର ଜଗନ୍ନାଥ । ମୁଁ ତୁମ୍ଭ ଭକ୍ତଙ୍କର ଭୃତ୍ୟ ॥୧୧/୩୨

ପଞ୍ଚବିଧ (ମତାନ୍ତରେ ଏକାଦଶ ବିଧ) ଭକ୍ତିଭାବ ମଧ୍ୟରେ ଦାସ୍ୟଭାବ ସର୍ବଶ୍ରେଷ୍ଠ ବୋଲି ଭାଗବତକାରଙ୍କର ଅଟଳ ବିଶ୍ୱାସ ରହିଥିଲା । ବିଭିନ୍ନ ଜଗନ୍ନାଥ ଦାସଙ୍କର ବ୍ୟକ୍ତିତ୍ୱର ପାର୍ଥକ୍ୟ ପ୍ରତିପାଦନ ପାଇଁ ଏହି ତଥ୍ୟଟି ଗୁରୁତ୍ୱପୂର୍ଣ୍ଣ ।

କହିଲି ଏ ପରମ ତତ୍ତ୍ୱ । କୃଷ୍ଣସେବକ ବଳବନ୍ତ ॥ ୧୦/୨୪

ଜଗନ୍ନାଥ ଦାସଙ୍କ ମତରେ ଭକ୍ତିର ସାଧନୋପାୟ ଥିଲା ନାମକୀର୍ତ୍ତନ । କଳିଯୁଗରେ ନାମକୀର୍ତ୍ତନ ଭିନ୍ନ ଅନ୍ୟ ଉପାୟରେ ଭକ୍ତିଲାଭ ବା ସିଦ୍ଧି ଅର୍ଜ୍ଜନ ହୋଇପାରିବ ନାହିଁ ବୋଲି ଜଗନ୍ନାଥ ଦାସ ମନେକରୁଥିଲେ ।

ଦ୍ୱିଜ ଜଗନ୍ନାଥ ବୋଲଇ । ନାମରେ ସର୍ବସିଦ୍ଧ ହୋଇ ॥୬/୮
ହରି କୀର୍ତ୍ତନେ ସର୍ବହୋଇ । କଳିରେ ଆନଗତି ନାହିଁ ॥୬/୧୩
ସୁଜନେ କର ଏଣେ ଭାବ । ଯେ ନାମେ ସଂସାରୁ ତରିବ ॥
କଳି କଳୁଷ ନାଶ ପାଇଁ । ଏ ବିନୁ ଆନ ଗତିନାହିଁ ॥୮/୫

ଜଗନ୍ନାଥ ଦାସଙ୍କର ଏହି ମତ ଭାଗବତ ଓ ବୃହନ୍ନାରଦୀୟ ପୁରାଣର ମତ ଉପରେ ଆଧାରିତ । ଅନ୍ୟାନ୍ୟ ବହୁ ପୁରାଣରେ ମଧ୍ୟ ଅନୁରୂପ ମତ ବ୍ୟକ୍ତ ହୋଇଛି ।

କୃତେ ଯଦ୍‌ଧ୍ୟାୟତୋ ବିଷ୍ଣୁଂ ତ୍ରେତାୟାଂ ଯଜତୋ ମଖୈଃ ।
ଦ୍ୱାପରେ ପରିଚର୍ଯ୍ୟାୟାଂ କଲୌ ତଦ୍ଧରିକୀର୍ତ୍ତନାତ୍ ॥ (ଭାଗବତ ୧୨/୩/୫୨)
ହରେର୍ନାମ ହରେର୍ନାମ ହରେର୍ନାମୈବ କେବଳମ୍ ।
କଲୌ ନାସ୍ତେବ ନାସ୍ତେବ ନାସ୍ତେବ ଗତିରନ୍ୟଥା ॥ (ବୃହନ୍ନାରଦୀୟ ୩୮/୧୨୬)
ଧ୍ୟାୟନ୍‌କୃତେ ଯଜନ୍ୟଜ୍ଞୈ ସ୍ତେତାୟାଂ ଦ୍ୱାପରେର୍ଚ୍ଚୟନ୍
ଯଦାପ୍ନୋତି ତଦାପ୍ନୋତି କଲୌ ସଂକୀର୍ତ୍ତ୍ୟ କେଶବମ୍ (ବିଷ୍ଣୁ ୬/୨/୧୭)

ଜଗନ୍ନାଥ ଦାସ ଭାଗବତର ଭାଷାନ୍ତର ପାଇଁ ଶ୍ରୀଧର ସ୍ୱାମୀଙ୍କ ପ୍ରଣୀତ 'ଭାବାର୍ଥ ଦୀପିକା' ନାମକ ଟୀକାକୁ ବିଶେଷ ଭାବରେ ଅନୁସରଣ କରିଛନ୍ତି । ଏପରି ଭାଷାନ୍ତର କରି ପରେ ଭାଗବତର ଶ୍ଳୋକର ଭାଷାନ୍ତର ଦେଇଛନ୍ତି । ହେଲେହେଁ, ଠାଏଁ ଠାଏଁ ମୂଳ ଭାଗବତ ଓ ଭାବାର୍ଥଦୀପିକା ଟୀକାର ବର୍ଣ୍ଣନାର ବ୍ୟତିକ୍ରମ କରିଛନ୍ତି (ଯଥା :- ରାସ ପଞ୍ଚାଧ୍ୟାୟରେ ବୃନ୍ଦାବତୀ ନାମା ଗୋପୀକୁ କୃଷ୍ଣ ଏକାନ୍ତରେ କାନ୍ଧରେ ବୋହିବା ବର୍ଣ୍ଣନା) । ପୁନଶ୍ଚ, ଶ୍ରୀଧରଙ୍କ ଟୀକାକୁ ଅନୁସରଣ କଲେ ହେଁ ଜଗନ୍ନାଥ ଦାସ

ସାତୋଟି ଅଧିକ ଅଧ୍ୟାୟ (୧୦ମ ସ୍କନ୍ଧରେ ୬ଟି ଓ ଏକାଦଶ ସ୍କନ୍ଧରେ ଗୋଟିଏ) ଯୋଗ କରିବା ଦ୍ୱାରା ମୋଟ ଅଧ୍ୟାୟ ସଂଖ୍ୟାକୁ ବଢ଼ାଇ ଦେଇଛନ୍ତି। ଅବଶ୍ୟ କୌଣସି ନୂତନ ବିଷୟବସ୍ତୁ ଯୋଗ କରିବା ଫଳରେ ଅଧ୍ୟାୟ ସଂଖ୍ୟା ବଢ଼ିନାହିଁ। ଗୋଟିଏ ଗୋଟିଏ ଅଧ୍ୟାୟକୁ ଭାଗ କରି ଦୁଇଟି କରି ଅଧ୍ୟାୟ କରିବାରୁ ଅଧ୍ୟାୟ ସଂଖ୍ୟା ବଢ଼ିଯାଇଛି ମାତ୍ର। ସେ ନିଜେ ତ ଅଧ୍ୟାୟ ସଂଖ୍ୟା କାହିଁକି ବଢ଼ାଇଲେ ତାହାର କାରଣ ଜଣାଇ ନାହାନ୍ତି, କୌଣସି ଆଲୋଚକ ମଧ୍ୟ ଏହାର କାରଣ ଅନୁସନ୍ଧାନ କରିନାହାନ୍ତି। ମୁଁ ଅନୁମାନ କରୁଛି ଯେ କୃଷ୍ଣଙ୍କୁ ୧୬ କଳାପୂର୍ଣ୍ଣ ଗ୍ରହଣ କରି ତାଙ୍କ ଚରିତଥିବା ୧୦ମ ଓ ୧୧ଶ ସ୍କନ୍ଧର ଅଧ୍ୟାୟ ସଂଖ୍ୟାକୁ ୧୬ର ଗୁଣିତକ କରାଇବାରୁ ଏହା ଘଟିଛି। ୧୦ମ ସ୍କନ୍ଧର ଅଧ୍ୟାୟ ସଂଖ୍ୟା ଥିଲା ୯୦ (ପୂର୍ବାର୍ଦ୍ଧ ୪୯ ଓ ଉତ୍ତରାର୍ଦ୍ଧ ୪୧) ଓ ୧୧ଶ ସ୍କନ୍ଧର ୩୧। ଜଗନ୍ନାଥ ଦାସ ଦଶମ ସ୍କନ୍ଧରେ ୬ ଅଧ୍ୟାୟ ଯୋଗ କରି ତାହାକୁ ଦୁଇ ସମାନ ଭାଗକରି ଗୋପଲୀଳା ୪୮ ଅଧ୍ୟାୟ ଓ ଦ୍ୱାରିକା ଲୀଳା ୪୮ ଅଧ୍ୟାୟ କଲେ। ଏକାଦଶ ସ୍କନ୍ଧରେ ଗୋଟିଏ ଅଧ୍ୟାୟ ଯୋଗ କରିବାରୁ ତାହା ୩୨ ଅଧ୍ୟାୟ ବିଶିଷ୍ଟ ହେଲା। ମୋର ଏ ଅନୁମାନରୁ ଜଣାଯାଉଛି ଭାଗବତକାର ଦିବାକର ଦାସଙ୍କ "ସେ ଜଗନ୍ନାଥ ଷୋଳ କଳା, ତହୁଁ କଳାଏ ନନ୍ଦ ବଳା" ତତ୍ତ୍ୱକୁ ଗ୍ରହଣ କରୁ ନଥିଲେ। ତାଙ୍କ ମତ ସାରଳା ଦାସଙ୍କ ଅନୁକାରୀ ଥିଲା, ଯେ କୃଷ୍ଣ ସେ ହିଁ କଳିଯୁଗରେ ଜଗନ୍ନାଥ।

ଭାଗବତକାର ନିଜ ସଂପର୍କରେ ଅଧିକ କିଛି ଜଣାଇ ନାହାନ୍ତି। ତାହାଙ୍କର ସମୟ, ବାସସ୍ଥାନ, ପିତାମାତା, ଗୁରୁ, ବୃତ୍ତି, ପୃଷ୍ଠପୋଷକ, ସଖାବନ୍ଧୁ, ସାଂସାରିକ ଜୀବନ ଆଦି ବିଷୟରେ ସେ କିଛିହିଁ ଜଣାଇ ନାହାନ୍ତି। ଅନେକ କବି ରଚନା ଶେଷକୁ କିଛି ଆତ୍ମପରିଚୟ ଦେଇଥାନ୍ତି। ହୁଏତ, ଭାଗବତ ରଚନା ଶେଷ କରିଥିଲେ ସେ ଆତ୍ମପରିଚୟ ଦେଇ କିଛି କହିଥାନ୍ତେ। କିନ୍ତୁ, ତାହା ହେଲା ନାହିଁ। ଏକାଦଶ ସ୍କନ୍ଧର ଅନୁବାଦ ସାରିବା ପରେ, ତାଙ୍କର ଉପାସ୍ୟ କୃଷ୍ଣଙ୍କ ତିରୋଧାନ ବର୍ଣ୍ଣନା କରିବା ପରେ, ନିଜେ ତିରୋହିତ ହେଲେ।

**ବିପ୍ର ମହାଦେବ ଦାସ :—**

ଜଣେକି ମହାଦେବ ଦାସ ଭାଗବତର ଦ୍ୱାଦଶ ସ୍କନ୍ଧର ନବାକ୍ଷରୀ ପଦ୍ୟାନୁବାଦ କରି ଓଡ଼ିଆ ଭାଗବତକୁ ପୂର୍ଣ୍ଣ କରିଥିଲେ। ଏହି ମହାଦେବ ଦାସ ପ୍ରସିଦ୍ଧ ଓଡ଼ିଆ ପୁରାଣକାର ମହାଦେବ ଦାସ ନୁହନ୍ତି। ଏ ଥିଲେ ଜାତିରେ ବ୍ରାହ୍ମଣ (ବିପ୍ର) କିନ୍ତୁ ପ୍ରସିଦ୍ଧ ମହାଦେବ ଦାସ ଶୂଦ୍ର। ବିପ୍ର ମହାଦେବ ଦାସ ଜଗନ୍ନାଥ ଦାସଙ୍କ ପରି ନବାକ୍ଷରୀ ବୃତ୍ତରେ ତ ଭାଷାନ୍ତର କରିଛନ୍ତି, ଅଧ୍ୟାୟ ଗୁଡ଼ିକୁ ନିଜ ନାମରେ ଭଣିତ ନ କରି ଜଗନ୍ନାଥ ଦାସଙ୍କ ନାମରେ କରିଛନ୍ତି। ବିପ୍ର ମହାଦେବ ଦାସଙ୍କ ଭାବପ୍ରକାଶ ଜଗନ୍ନାଥ ଦାସଙ୍କଠାରୁ ନିକୃଷ୍ଟତର। ଏହାଙ୍କର ବିଶେଷ ପାଣ୍ଡିତ୍ୟ ନଥିଲା ଓ ଓଡ଼ିଆ

ଭାଷା ଉପରେ ଭଲ ଦଖଲ ମଧ୍ୟ ନଥିଲା। ସେ ନିଜେ ପ୍ରକାଶ କରିଛନ୍ତି ଯେ ଅନ୍ୟ ଜଣେ ବା କେତେଜଣ ବିପ୍ରଙ୍କ ମୁଖରୁ ସଂସ୍କୃତ ଭାଗବତର ବ୍ୟାଖ୍ୟାନ ଶୁଣି ମନେ ରଖି ଦ୍ୱାଦଶ ସ୍କନ୍ଧର ଭାଷାନ୍ତର କରିଛନ୍ତି। ଦ୍ୱାଦଶ ସ୍କନ୍ଧ ଶେଷରେ ବିପ୍ର ମହାଦେବ ଦାସ ଆତ୍ମପରିଚୟ ଦେଇ ଜଣାଇଛନ୍ତି ଯେ ଜଗନ୍ନାଥ ଦାସ ଏକାଦଶ ସ୍କନ୍ଧ ଯାଏ ମୋଟ ତିନିଶହ ଅଣତିରିଶି ଅଧ୍ୟାୟ ରଚନା କରିଥିଲେ। ଏହା ମଧ୍ୟରୁ ସାତୋଟି ଅଧ୍ୟାୟ ଅଧିକ। ଅପୂର୍ଣ୍ଣ ଭାଗବତ ରଚନାକୁ ପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ବିପ୍ର ମହାଦେବ ଦାସ ଦ୍ୱାଦଶ ସ୍କନ୍ଧର ଅନୁବାଦ କଲେ। କିନ୍ତୁ, ଓଡ଼ିଆ ଭାଗବତ ଜଗନ୍ନାଥ ଦାସଙ୍କ ରଚନା ଭାବରେ ପ୍ରସିଦ୍ଧି ଅର୍ଜନ କରିଥିବା ହେତୁ ବିପ୍ର ମହାଦେବ ଦାସ ନିଜ ନାମରେ ଭଣିତ ନ କରି ଜଗନ୍ନାଥ ଦାସଙ୍କ ନାମରେ କଲେ।

ବିପ୍ରକୁଳରେ ଜନ୍ମହୋଇ। ଜଗନ୍ନାଥ ଦାସ ବୋଲାଇ।।
ପ୍ରାକୃତ ବନ୍ଧେ ଭାଗବତ। କହିଲେ ସନ୍ଥଜନ ହିତ।।
ସେ କୃଷ୍ଣ ଗୁଣ-କର୍ମ-ଯଶ। ପୁରାଣ କଲେ ଗୀତରସ।।
ତିନିଶତ ଉନତିରିଶ। ଏକାଦଶ ଯାଏଁ ପ୍ରକାଶ।।
ସାତ ଅଧ୍ୟାୟ ଯେ ବିଶେଷ। ସେ ଭାଗବତ ଗୀତରସ।।
ଏଣୁ ଚିତ୍ତବୋଧିବା ଅର୍ଥେ। ଦ୍ୱାଦଶ ସ୍କନ୍ଧ ଶ୍ରୁତିପଥେ।।
ବିପ୍ରଙ୍କଠାରୁ ଶୁଣି ମନେ। ଚିତ୍ତୋଇ କରିଲି ଲେଖନେ।।
ଯେଣୁ ସେ ଗୀତରେ ବିଶୁଦ୍ଧ। ଜଗନ୍ନାଥ ନାମେ ପ୍ରସିଦ୍ଧ।
ତେଣୁ ତାଙ୍କ ନାମ ବଖାଣ। ସେ ଯେ ମହତ ମହାଜନ।।
ସେ ବିପ୍ର ଜାଣି କୃଷ୍ଣରସ। ପୁରାଣ ଗୀତରେ ପ୍ରକାଶ।।
ଜଗତ ଉଦ୍ଧାର ନିମନ୍ତେ। ରଚିଲେ ଶିରୀ ଭାଗବତେ।।
ତାଙ୍କ ଚରଣେ ତେଣୁ ମନ। ସୁଜନେ ଦୋଷ ମୋ ନ ଘେନ।।
ଆଶ୍ରା ମୋ ସାଧୁଙ୍କ ଚରଣ। ଶରଣ ମହାଦେବ ହୀନ।।୧୨/୧୩।

ସଂସ୍କୃତ ଭାଗବତର ମୋଟ ଅଧ୍ୟାୟ ସଂଖ୍ୟା ମୂଳରେ ସମ୍ଭବତଃ ୩୩୨ ଥିଲା। ଶ୍ରୀଧର ସ୍ୱାମୀଙ୍କ ଦ୍ୱାରା ପ୍ରଣୀତ ଭାବାର୍ଥଦୀପିକା ଟୀକାର ମଙ୍ଗଳାଚରଣର ଏକ ଶ୍ଳୋକରେ ଏହା ଲେଖାଅଛି :-

ଶ୍ରୀମଦ୍ଭାଗବତାଭିଧଃ ସୁରତରୁସ୍ତାରାଙ୍କୁରଃ ସଜ୍ଜନିଃ
ସ୍କନ୍ଧୈର୍ଦ୍ୱାଦଶଭିସ୍ତତଃ ପ୍ରବିଲସଦ୍ ଭକ୍ତ୍ୟାଲବାଲୋଦୟଃ।
ଦ୍ୱାତ୍ରିଂଶତ ତ୍ରିଶତଂ ଚ ଯସ୍ୟବିଲସତ୍‌ଶାଖ୍ୟା ସହସ୍ରାଣ୍ୟଲଂ
ପର୍ଣ୍ଣାନ୍ୟଷ୍ଟଦଶେଷ୍ଟଦୋଽତି ସୁଲଭୋବର୍ବର୍ତ୍ତି ସର୍ବୋପରି।।

କିନ୍ତୁ, ଶ୍ରୀଧର ସ୍ୱାମୀ ୩୩୫ ଅଧ୍ୟାୟ ବିଶିଷ୍ଟ ଭାଗବତର ଟୀକା କରିଛନ୍ତି। ତହିଁର ଦ୍ୱାଦଶ ସ୍କନ୍ଧର ଅଧ୍ୟାୟ ସଂଖ୍ୟା ୧୩ ବାଦ୍ ଦେଲେ ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ

ଅଧ୍ୟାୟ ସଂଖ୍ୟା ୩୨୨। ଜଗନ୍ନାଥ ଦାସ ଦଶମ ସ୍କନ୍ଧରେ ୬ଟି ଓ ଏକାଦଶ ସ୍କନ୍ଧରେ ଗୋଟିଏ ଏହି ପରି ସାତୋଟି ଅଧ୍ୟାୟ ଯୋଗ କରିବା ଫଳରେ (ସାତ ଅଧ୍ୟାୟ ଯେ ବିଶେଷ) ତାହାଙ୍କ ଭାଗବତର ଏକାଦଶ ସ୍କନ୍ଧ ଯାଏଁ ଅଧ୍ୟାୟ ସଂଖ୍ୟା ୩୨୯। ମହାଦେବ ଦାସ "ତିନିଶତ ଉନତିରିଶ, ଏକାଦଶ ଯାଏଁ ପ୍ରକାଶ" ଲେଖିବାର ତାତ୍ପର୍ଯ୍ୟ ଏହା। ଏଥିରୁ ଜଣାପଡ଼େ ସମଗ୍ର ଓଡ଼ିଆ ଭାଗବତର ପ୍ରଣେତା ହିସାବରେ ଜଗନ୍ନାଥ ଦାସଙ୍କ ନାମ ସୁବିଖ୍ୟାତ ହେଲେହେଁ ସେ ତାହାର ଏକାଦଶ ସ୍କନ୍ଧ ଯାଏଁହିଁ ରଚନା କରିଛନ୍ତି। ଦ୍ୱାଦଶ ସ୍କନ୍ଧଟିକୁ ବିପ୍ର ମହାଦେବ ଦାସ ଜଗନ୍ନାଥ ଦାସଙ୍କ ନାମରେ ଭଣତ କରିଛନ୍ତି। ମହାଦେବ ଦାସଙ୍କ ଉକ୍ତିରୁ ସନ୍ଦେହ ରହୁନାହିଁ ଯେ ଭାଗବତ ରଚନା ଅପୂର୍ଣ୍ଣ ଥିବା ଅବସ୍ଥାରେ ମଧ୍ୟ ପ୍ରସିଦ୍ଧି ଅର୍ଜନ କରି ସାରିଥିଲା। ସେ ଦ୍ୱାଦଶ ସ୍କନ୍ଧର ଆରମ୍ଭରେ ମଧ୍ୟ ଜଗନ୍ନାଥ ଦାସ କୃଷ୍ଣଙ୍କ ଗୋଲୋକ ଗମନ ବର୍ଣ୍ଣନା କରିବା ପରେ ପରେ ପ୍ରାଣତ୍ୟାଗ କରିଥିବା କଥା ଜଣାଇଛନ୍ତି।

ଦ୍ୱାଦଶ ସ୍କନ୍ଧେ ଭାଗବତ। ତ୍ରୟୋଦଶ ଅଧ୍ୟା ବିଦିତ।।
ଜଗନ୍ନାଥ ଦାସ ପ୍ରକାଶ। କରିତେ ଲୋଡ଼ୁଅଛି ଆଶ।।
ନାମ ମୋହର ମହାଦେବ। ବିପ୍ରର କୁଳରେ ସମ୍ଭବ।।
କୃଷ୍ଣ ସଙ୍ଗତେ ଜଗନ୍ନାଥ। ଚଳିଲେ ଗୋଲୋକ ଯେ ପଥ।।
ମୁଁ ଏହା କରଇ ବିଚାର। ଅଷ୍ଟାଦଶ ପୁରାଣ ସାର।।
ଦ୍ୱାଦଶ ଅଧ୍ୟା ତ୍ରୟୋଦଶ। ଯେମନ୍ତେ ହୋଇବ ପ୍ରକାଶ।।୧୨/୧

ଏକାଦଶ ସ୍କନ୍ଧର ଶେଷ ଅଧ୍ୟାୟରେ କୃଷ୍ଣ ଗୋଲାକକୁ ପ୍ରତ୍ୟାବର୍ତ୍ତନ କରିବା ବିଷୟ ବର୍ଣ୍ଣିତ ହୋଇଛି। କୃଷ୍ଣ ଗୋଲୋକକୁ ଫେରିଯିବା ବର୍ଣ୍ଣନା କରି କବି ଜଗନ୍ନାଥ ଦାସ ମଧ୍ୟ କୃଷ୍ଣଙ୍କ ସହିତ ଗୋଲୋକକୁ ଚାଲିଯିବା କଥା ମହାଦେବ ଦାସ କହୁଛନ୍ତି। 'କୃଷ୍ଣ ସଙ୍ଗତେ ଜଗନ୍ନାଥ ଚଳିଲେ ଗୋଲୋକ'।

ମହାଦେବ ଦାସଙ୍କ ବିଚାରରେ ଭାଗବତୋକ୍ତ କୃଷ୍ଣଙ୍କ ଗୋଲୋକ ପ୍ରତ୍ୟାବର୍ତ୍ତନ ସହିତ ଜଗନ୍ନାଥ ଦାସଙ୍କ ତରୋଧାନକୁ ଯୋଡ଼ିବା ଲାଗି କାରଣ ଥିଲା। ଜଗନ୍ନାଥ ଦାସ ଦଶମ ସ୍କନ୍ଧର କୃଷ୍ଣଲୀଳା ଅନୁବାଦ କରିବା ସମୟରୁ ଭାବାବିଷ୍ଟ ହୋଇ, ସମୟର ଦୀର୍ଘ ବ୍ୟବଧାନକୁ ଭୁଲି, ନିଜକୁ କୃଷ୍ଣଲୀଳାରେ ସାମିଲ କରାଇବାକୁ ବ୍ୟାକୁଳ ହୋଇ ପଡୁଥିଲେ। ରାସ ବର୍ଣ୍ଣନାରେ ବୃନ୍ଦାବନରେ ଗୋପୀମାନେ କୃଷ୍ଣଙ୍କୁ ଖୋଜିବା ବେଳେ ଏଣେ ଦାସେ ବି ଖୋଜୁଛନ୍ତି :-

ବୋଲଇ ଦାସ ଜଗନ୍ନାଥ। ବନେ ନିରୋପି କୃଷ୍ଣପଥ।।
ମୋହର ମନ ଗୋଡ଼ାଇଲା। କୃଷ୍ଣଙ୍କ ଭେଟ ନ ପାଇଲା।।
ବାହୁଡ଼ି ହୋଇଲା ନିରାଶ। ସୁଜନେ ବୃନ୍ଦାବନେ ପର୍ଶ।।୧୦/୩୦

କୃଷ୍ଣ ମଥୁରା ଦାଣ୍ଡରେ ଗଲାବେଳେ ମଧ୍ୟ ଜଗନ୍ନାଥ ଦାସ କୃଷ୍ଣଙ୍କ ପଛେ ପଛେ ଯାଉଥିଲେ :-

ଥିଲା ଯେ ବିପ୍ର ଜଗନ୍ନାଥ । ଗୋଡ଼ାଇଥିଲା କୃଷ୍ଣପଥ ॥୧୦/୪୫

ଜଗନ୍ନାଥ ଦାସ କୃଷ୍ଣଲୀଳା ବର୍ଣ୍ଣନାକୁ ନିଜର ଅନ୍ତିମ ଲକ୍ଷ୍ୟ କରିସାରି ଥିଲେ ଓ କୃଷ୍ଣରସ ବର୍ଣ୍ଣନା କରିବା ପରେ ଦେହତ୍ୟାଗ କରିବା ଅଭିଳାଷ ପୋଷଣ କରିଥିଲେ ।

ଥିଲା ଯେ ଜଗନ୍ନାଥ ଦାସ । ଶିରେ ନିବେଶି ବେନି ହସ୍ତ ॥
ସୁଜନ ଜନ ପଛେ ଥାଇ । ରାମ ଗୋବିନ୍ଦ ସୁଖ ଚାହିଁ ॥
ଛାଡ଼ିବ ଭବବନ୍ଧ ପାଶ । ଗୀତେ ଭିଆଇ କୃଷ୍ଣରସ ॥୧୦/୪୧

ଭାଗବତ ଚରିତରେ କୃଷ୍ଣ ସ୍ୱଧାମ ଫେରିବା ମାତ୍ରେ ଜଗନ୍ନାଥ ଦାସ ମନେ କଲେ ଯେ ସେହି ସମୟ ପର୍ଯ୍ୟନ୍ତ କୃଷ୍ଣ ପାଖରେ ଥିଲେ ଦ୍ୱାପର ଯୁଗ ଶେଷରେ କୃଷ୍ଣ ଗୋଲୋକ ଯିବାରୁ କଳିଯୁଗର ଜଗନ୍ନାଥ ଦାସ ଅନାଥ ହୋଇଗଲେ ।

ବୋଲଇ ଦାସ ଜଗନ୍ନାଥ । ଏବେ ମୁଁ ହୋଇଲି ଅନାଥ ॥୧୧/୩୫

ଜଗନ୍ନାଥ ଦାସଙ୍କର ଏତାଦୃଶ ଭାବାବେଗ ଦୃଷ୍ଟେ କୃଷ୍ଣଙ୍କ ଗୋଲୋକ ପ୍ରତ୍ୟାବର୍ତ୍ତନ ବର୍ଣ୍ଣନା କରିବା ପରେ ଭାଗବତର 'କୃଷ୍ଣରସ' ବର୍ଣ୍ଣନା ସରିଯିବାରୁ ଜଗନ୍ନାଥ ଦାସ 'ଭବବନ୍ଧ ପାଶ' ତ୍ୟାଗ କଲେ ବୋଲି ଅନୁମାନ କରିବା ମହାଦେବ ଦାସଙ୍କ ପକ୍ଷେ ଅସମୀଚୀନ ହୋଇ ନାହିଁ ।

ଜଗନ୍ନାଥ ଦାସଙ୍କ ନାମରେ ଦ୍ୱାଦଶ ସ୍କନ୍ଧ ରଚନା କରି ଭାଗବତ ପୁରାଣର ଅନୁବାଦକୁ ପୂର୍ଣ୍ଣ କରିଥିବା ଏହି ମହାଦେବ ଦାସଙ୍କ ସମୟ ନିର୍ଦ୍ଦିଷ୍ଟ ହୋଇପାରି ନାହିଁ । ଏହି ମହାଦେବ ଦାସଙ୍କର ଅନ୍ୟ କୌଣସି ରଚନା ଅଛି କି ନାହିଁ ଜଣାନାହିଁ । ପ୍ରସିଦ୍ଧ କବି ଦ୍ୱାରିକା ଦାସ (ଜନ୍ମ ଖ୍ରୀ୧୬୫୮) ଭାଗବତରେ ତ୍ରୟୋଦଶ ସ୍କନ୍ଧ ଯୋଗ କରିଥିଲେ । ସେତେବେଳକୁ ଦ୍ୱାଦଶ ସ୍କନ୍ଧ ରଚନା ସରିଥିବା ନିଶ୍ଚିତ । ତେଣୁ ମହାଦେବ ଦାସଙ୍କ ସମୟ ଖ୍ରୀ ୧୬୦୦ ପାଖାପାଖି ବୋଲି ସ୍ଥିର କରାଯାଇ ପାରେ ।

**ଅତିବଡ଼ ଜଗନ୍ନାଥ ଦାସ**

ପୁରୀର ବଡ଼ ଓଡ଼ିଆ ମଠର ସ୍ଥାପୟିତା ତଥା ଅତିବଡ଼ୀ ନାମକ ବୈଷ୍ଣବ ସଂପ୍ରଦାୟ ବିଶେଷର ପ୍ରବର୍ତ୍ତକ ଜଗନ୍ନାଥ ଦାସ ଓଡ଼ିଶାରେ ବିଖ୍ୟାତ । ଏହାଙ୍କର ପଦ ଥିଲା ଅତିବଡ଼ ଓ ସେ ତାଙ୍କ ରଚନାରେ ଏହି ପଦକୁ ବ୍ୟବହାର କରୁଥିଲେ ମଧ୍ୟ । ଅତିବଡ଼ ଜଗନ୍ନାଥ ଦାସଙ୍କ ଠାରୁ ପୂର୍ବେ ଆଲୋଚିତ ଭାଗବତକାର ଭିନ୍ନ ନୁହନ୍ତି ବୋଲି ସାଧାରଣତଃ ବିଶ୍ୱାସ କରାଯାଉଛି । କିନ୍ତୁ, ଏହି ବିଶ୍ୱାସ ଯେ ଅମୂଳକ ଓ ଭ୍ରାନ୍ତ ତାହା ଉପଲଭ୍ୟ ତଥ୍ୟ ଦ୍ୱାରା ପ୍ରମାଣିତ ହୁଏ ।

ବଡ଼ ଓଡ଼ିଆ ମଠର ଅଧିକାରୀମାନଙ୍କର ଗୁରୁପ୍ରଣାଳୀ ରହିଛି । ତଦନୁସାରେ ମଠର ବର୍ତ୍ତମାନ ଅଧିକାରୀ (ଏହି ମଠର ଅଧକ୍ଷମାନେ ମହନ୍ତ ନ ବୋଲାଇ ଅଧିକାରୀ ବୋଲାନ୍ତି)

ଅତିବଡ଼ ଜଗନ୍ନାଥ ଦାସଙ୍କର ଅଧସ୍ତନ ୧୪ଶ ପୁରୁଷ ଶିଷ୍ୟ। ମଠଟି ଗୃହୀ ମଠ ନୁହେଁ। ଏହାର ଅଧିକାରୀମାନେ ପରିଣତ ବୟସରେ ଚେଲାପିଲା ସ୍ୱୀକାର କରି ପ୍ରଣାଳୀରକ୍ଷା କରିଥାନ୍ତି। ଗୁରୁ ଓ ଶିଷ୍ୟ ମଧ୍ୟର ବୟସର ତାରତମ୍ୟ ହାରାହାରି ୩୫ ବର୍ଷ ବୋଲି ଧରିଲେ ମଠର ସ୍ଥାପୟିତା ଜଗନ୍ନାଥ ଦାସଙ୍କ ସମୟ ଖ୍ରୀ ଷୋଡ଼ଶ ଶତାବ୍ଦୀର ପ୍ରଥମ ପାଦ ବୋଲି ନିର୍ଣ୍ଣୟ କରାଯାଇପାରେ।

ଅତିବଡ଼ ଜଗନ୍ନାଥ ଦାସଙ୍କର ଜୀବନ ବୃତ୍ତାନ୍ତ 'ଜଗନ୍ନାଥାମୃତ' (ଏହା ସଂପ୍ରତି ତାହାର ନାମାନ୍ତର 'ଜଗନ୍ନାଥ ଚରିତାମୃତ' ନାମରେ ଅଧିକ ଜଣାଶୁଣା) ଲେଖିଛନ୍ତି ଦିବାକର ଦାସ ଯେ କି ଜଗନ୍ନାଥ ଦାସଙ୍କର ଅଧସ୍ତନ ପଞ୍ଚମ ପୁରୁଷ ଶିଷ୍ୟ (ଦିବାକରଙ୍କ ପରମଗୁରୁ ଦୟାଳୁ ଦାସ ଥିଲେ ଜଗନ୍ନାଥ ଶିଷ୍ୟ ବନମାଳୀଙ୍କ ପ୍ରଶିଷ୍ୟ)। ଅନୁମିତ ହୁଏ, ଦିବାକର ଦାସ ଖ୍ରୀ. ସପ୍ତଦଶ ଶତାବ୍ଦୀର ଶେଷଆଡ଼କୁ ତାହାଙ୍କ ସଂପ୍ରଦାୟର ପ୍ରବର୍ତ୍ତକଙ୍କର ଜୀବନବୃତ୍ତାନ୍ତ ମୂଳକ ଏହି ଗ୍ରନ୍ଥଟିକୁ ଖ୍ରୀ. ସପ୍ତଦଶ ଶତାବ୍ଦୀର ପ୍ରଥମ ପାଦରେ ରଚିତ କୃଷ୍ଣଦାସ କବିରାଜଙ୍କ ଚୈତନ୍ୟଚରିତାମୃତର ପ୍ରତିବାଦ କଳ୍ପେ ଲେଖିଥିଲେ।

ଜଗନ୍ନାଥାମୃତର ବର୍ଣ୍ଣନା ଅନୁସାରେ ଅତିବଡ଼ ଜଗନ୍ନାଥ ଦାସଙ୍କର ଜୀବନ ବୃତ୍ତାନ୍ତ ଏହିପରି :

ନିତ୍ୟଗୋଲୋକର ରାଧାଙ୍କ ହାସରୁ ଜଗନ୍ନାଥ ଦାସ ଓଡ଼ିଶାରେ ଓ କୃଷ୍ଣଙ୍କ ହାସରୁ ଚୈତନ୍ୟ ନଦିଆରେ ଜନ୍ମଗ୍ରହଣ କଲେ। କପିଳେଶ୍ୱରପୁର ଶାସନବାସୀ ପୁରାଣପଣ୍ଡା ଭଗବାନ ତାହାଙ୍କର ପିତା (ମାତା ପଦ୍ମା)। ରାଧାଙ୍କ ଅଂଶ ହୋଇଥିବାରୁ ସେ ରାଧାଷ୍ଟମୀ (ଭାଦ୍ରବ ଶୁକ୍ଳାଷ୍ଟମୀ) ଦିନ ଜନ୍ମିଲେ। ଶିଶୁ ଜଗନ୍ନାଥ ଦାସ ବ୍ରତୋପନୟନ ପରେ ବିଭିନ୍ନ ଗ୍ରନ୍ଥପାଠ କଲେ। ତାଙ୍କୁ ୧୨ ବର୍ଷ ବୟସ ହେବା ବେଳେ ପିତା ତାଙ୍କର ବିବାହ କରାଇବା ଯୋଗାଡ଼ କରୁଥିଲେ। କିନ୍ତୁ, ଜଗନ୍ନାଥ ବିବାହ କରିବାକୁ ନାସ୍ତି କରି ବେଦାଦି ଶାସ୍ତ୍ର ଅଧ୍ୟୟନ ପ୍ରତି ମନୋନିବେଶ କଲେ। ତାଙ୍କୁ ୧୮ ବର୍ଷ ବୟସ ହେଲା ବେଳକୁ ସେ ଯଜୁର୍ବେଦ ଓ ସାମବେଦକୁ କଣ୍ଠସ୍ଥ କରି ସାରିଥିଲେ, କଳାପ ନାମକ ବ୍ୟାକରଣ ଓ ବର୍ଦ୍ଧମାନ (ଟୀକା) ଘୋଷି ସାରି ରାମାୟଣ-ମହାଭାରତ ପଢ଼ି ଟୀକାଟିପ୍ପଣୀ ସହିତ ଦ୍ୱାଦଶ ସ୍କନ୍ଧାତ୍ମକ ଭାଗବତରେ ମନୋନିବେଶ କଲେ।

ଯଜୁର୍ବେଦ ସାମବେଦକୁ। କଣ୍ଠସ୍ଥ କଲେ ସେ ଏହାଙ୍କୁ॥
କଳାପ ବର୍ଦ୍ଧମାନ ଦୁଇ। ରଖିଲେ ଜିହ୍ୱା ଅଗ୍ରେ ନେଇ॥
ସକଳ ଶାସ୍ତ୍ରେ ପୂର୍ଣ୍ଣ ହେଲେ। ଭାରତ ସମଗ୍ରେ ପଢ଼ିଲେ॥
ଶ୍ରୀ ରାମାୟଣ ଗ୍ରନ୍ଥ ସାଧି। ଶ୍ରୀ ଭାଗବତେ ଦେଲେ ବୁଦ୍ଧି॥
ଦ୍ୱାଦଶ ସ୍କନ୍ଧ ଭାଗବତ। ଟୀକାଟିପ୍ପଣୀ ହିଁ ସହିତ॥
ହେଲା ଅଷ୍ଟାଦଶ ବରଷ। ଏମାନ ସାଧିଲେ ବିଶେଷ॥

(ଜଗନ୍ନାଥାମୃତ, ୧ମ ଅଧ୍ୟାୟ)

ଜଗନ୍ନାଥ ଦାସ ଭାଗବତର ଓଡ଼ିଆ ଅନୁବାଦ ରଚନା କରିଥିବା କଥା ଦିବାକର ଦାସ କୁତ୍ରାପି ଲେଖିନାହାନ୍ତି। ସେ ଅଷ୍ଟାଦଶ ବର୍ଷୀୟ ହେବା ପୂର୍ବରୁ ଟୀକାଟିପ୍ପଣୀ ସହିତ ଦ୍ୱାଦଶ ସ୍କନ୍ଧାତ୍ମକ ଭାଗବତ ଗ୍ରନ୍ଥ ସାଧିବା କଥାହିଁ ଦିବାକର କହନ୍ତି। ଜଗନ୍ନାଥ ଦାସ ରାମାୟଣ ଗ୍ରନ୍ଥ ମଧ୍ୟ ସାଧିଥିଲେ। ସାଧିବାର ଅର୍ଥ ଭାଷାନ୍ତର କରିବା ନୁହେଁ, ତାହାର ଅର୍ଥ ଅଧ୍ୟୟନ କରିବା, ଆୟତ୍ତ କରିବା। ଟୀକାଟିପ୍ପଣୀ ଯୁକ୍ତ ଦ୍ୱାଦଶ ସ୍କନ୍ଧାତ୍ମକ ଭାଗବତ ନିଶ୍ଚୟ ସଂସ୍କୃତ ଭାଷାର। ଜଗନ୍ନାଥ ଦାସଙ୍କ ପ୍ରଣୀତ ଓଡ଼ିଆ ଭାଗବତ ଟୀକାଟିପ୍ପଣୀ ଯୁକ୍ତ ତ ନୁହେଁ ଦ୍ୱାଦଶ ସ୍କନ୍ଧାତ୍ମକ ମଧ୍ୟ ନୁହେଁ। ଆଉ ମଧ୍ୟ, ସାଧିବାର ଅର୍ଥ ପ୍ରଣୟନ କରିବା ବୋଲି ଧରିଲେ ଦାସେ ଅଠର ବର୍ଷ ବୟସ୍କ ହେବା ପୂର୍ବରୁ ରାମାୟଣ ମଧ୍ୟ ରଚନା କରି ସାରିଥିଲେ ବୋଲି କହିବାକୁ ହେବ। ଏହା ଅସମ୍ଭବ। ତେଣୁ, ଏଠାରେ ଦିବାକର ଲେଖିଥିବା 'ଭାଗବତ'ର ସାଧନା ଜଗନ୍ନାଥ ଦାସ ପ୍ରଣୀତ ଏକାଦଶସ୍କନ୍ଧାତ୍ମକ ଓଡ଼ିଆ ଭାଗବତକୁ ବୁଝାଉ ନାହିଁ। ପୁନଶ୍ଚ ଜଗନ୍ନାଥାମୃତ ଅନୁସାରେ ଅତିବଡ଼ ୬୦ ବର୍ଷ ବୟସରେ ଦେହତ୍ୟାଗ କଲେ। ଦିବାକରଙ୍କ ସମୟର ବହୁ ପୂର୍ବରୁ ମହାଦେବ ଦାସଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ଭାଗବତକାର ଏକାଦଶ ସ୍କନ୍ଦ ରଚନା କରିବା ପରେ ପରେ ଦେହତ୍ୟାଗ କଲେ। ତେଣୁ, ୧୮ବର୍ଷ ବୟସ୍କ ହେବା ପୂର୍ବରୁ ଅତିବଡ଼ ଜଗନ୍ନାଥ ଦାସ ଯେଉଁ ଭାଗବତ ସାଧିଥିଲେ ତାହାକୁ ଓଡ଼ିଆରେ ଭାଗବତର ଭାଷାନ୍ତର ବୋଲି ଆଲୋଚକମାନେ ଅବିଚାରିତ ମତ ଦେଉଛନ୍ତି।

ଜଗନ୍ନାଥାମୃତର ବର୍ଣ୍ଣନା ଅନୁସାରେ ଚୈତନ୍ୟ ସନ୍ୟାସ ଦୀକ୍ଷା ନେଇ ନଦିଆ ଛାଡ଼ି ନାନା ଦେଶ ଭ୍ରମଣ ପରେ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଲେ। କିଛିକାଳ ପରେ ଜଗନ୍ନାଥ କଳ୍ପବଟ ନିକଟରେ ଭାଗବତର ଦଶମସ୍କନ୍ଧର ବ୍ରହ୍ମସ୍ତୁତିକୁ ବୁଝାଉଥିବା ବେଳେ ଚୈତନ୍ୟ ବ୍ୟାଖ୍ୟା ଶୁଣି ଜଗନ୍ନାଥ ଦାସଙ୍କ ପ୍ରତି ଆକୃଷ୍ଟ ହେଲେ। ଚୈତନ୍ୟଙ୍କ ଆଜ୍ଞା ଅନୁସାରେ ଜଗନ୍ନାଥ ଦାସ ମତ୍ତ ବଳରାମ ଦାସଙ୍କ ଠାରୁ ଦୀକ୍ଷା ନେଲେ। ଜଗନ୍ନାଥ ଦାସ ଚୈତନ୍ୟଙ୍କର ଅଙ୍ଗସେବକ ଭାବରେ ଚୈତନ୍ୟଙ୍କ ପାଖରେ ରହିଲେ। ଦାସଙ୍କ ସେବାରେ ପରିତୃପ୍ତ ହୋଇ ଚୈତନ୍ୟ ତାହାଙ୍କୁ ତାଙ୍କର ପୂର୍ବସିଦ୍ଧି ବିଷୟ ପଚାରିଲେ। ଦାସେ ଚୈତନ୍ୟଙ୍କୁ ଜଣାଇଲେ ଯେ ସେ ରାଧାଙ୍କ ହାସରୁ ଓ ସ୍ୱୟଂ ଚୈତନ୍ୟ କୃଷ୍ଣଙ୍କ ହାସରୁ ଜାତ। ଏହା ଶୁଣି ଚୈତନ୍ୟ ନିଜର ଅଙ୍ଗବସ୍ତ୍ରକୁ ଦାସଙ୍କ ମୁଣ୍ଡରେ ବାନ୍ଧି ତାହାଙ୍କୁ "ଅତିବଡ଼" ପଦ ଦେଲେ ଓ କହିଲେ ଯେ ଦାସେ ଅତିବଡ଼ କଥା କହିବାରୁ 'ଅତିବଡ଼' ହେଲେ। ଚୈତନ୍ୟ ଅତିବଡ଼ ବୋଲି ଡାକିବାରୁ ସମସ୍ତେ ଅତିବଡ଼ ବୋଲି ଡାକିଲେ।

ଆପଣା ଶ୍ରୀଅଙ୍ଗ ପାଛୋଡ଼ି । ଶ୍ରୀକରେ ଘେନି ଅଙ୍ଗୁକାଢ଼ି ॥
ଦାସଙ୍କ ଶିରେ ବାନ୍ଧି ଦେଲେ । ଅତିବଡ଼ ବୋଲି ବୋଇଲେ ॥
ଅତି ବଡ଼ କଥା କହିଲେ । ତେଣୁ ଅତିବଡ଼ ହୋଇଲେ ॥
ଶ୍ରୀ ଅତିବଡ଼ ଜଗନ୍ନାଥ । ଦାସଙ୍କୁ ବୋଲନ୍ତି ଜଗତ ॥
ମହାପ୍ରଭୁଙ୍କ ମୁଖୁ ଶୁଣି । ସର୍ବେ ବୋଲନ୍ତି ସେହୁବାଣୀ ॥

(ଜଗନ୍ନାଥାମୃତ, ୩ୟ ଅଧ୍ୟାୟ)

ଆଲୋଚକମାନେ ସାଧାରଣତଃ 'ଅତିବଡ଼ୀ ଜଗନ୍ନାଥ ଦାସ' ବୋଲି ଭ୍ରମବଶତଃ ଲେଖୁଛନ୍ତି । ଜଗନ୍ନାଥ ଦାସଙ୍କ ପଦ 'ଅତିବଡ଼' । ସେ ଅତିବଡ଼ ହେବାରୁ ତାଙ୍କ ଦ୍ୱାରା ପ୍ରବର୍ତ୍ତିତ ବୈଷ୍ଣବ ସଂପ୍ରଦାୟର ନାମ 'ଅତିବଡ଼ୀ' ହେଲା । କିନ୍ତୁ ଦାସେ ନିଜେ ଅତିବଡ଼ୀ ନୁହନ୍ତି ।

ଜଣେ ଓଡ଼ିଆକୁ 'ଅତିବଡ଼' ଆଖ୍ୟା ଦେଇ, ନିଜ ଅଙ୍ଗସେବା ସୁଯୋଗ ଦେଇ, ପ୍ରାଧାନ୍ୟ ଦେବାରୁ ଚୈତନ୍ୟଙ୍କର ଗୌଡ଼ିଆ ଭକ୍ତମାନେ ଚୈତନ୍ୟଙ୍କୁ ଛାଡ଼ି ଯାଜପୁର ପଳାଇଲେ । ଚୈତନ୍ୟ ମିଳାମିଶା ପାଇଁ ବିଶେଷ ଉଦ୍ୟମ କରିବା ସତ୍ତ୍ୱେ ଗୌଡ଼ିଆମାନେ ଜଗନ୍ନାଥ ଦାସଙ୍କୁ ପ୍ରାଧାନ୍ୟ ନ ଦେବା ଜିଦ୍‌ରେ ଅଟଳ ରହିଲେ । ଚୈତନ୍ୟ ଜଗନ୍ନାଥ ଦାସଙ୍କୁ ତଥାପି ଅତିବଡ଼ ବୋଲି ଡାକିବାରୁ ସେମାନେ ପୁରୁଷୋତ୍ତମ ଫେରିଯିବା ପାଇଁ ଚୈତନ୍ୟଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ବୃନ୍ଦାବନ ପଳାଇଲେ ଓ ପୂର୍ବରୁ ଗୃହୀତ ଚୈତନ୍ୟଙ୍କ ମତ ବଦଳାଇ ରାମାଦି ସ୍ଥଳେ କୃଷ୍ଣାଦି ମନ୍ତ୍ର, ହରିମନ୍ଦିର ସ୍ଥଳେ କଲିତିଳକ, ପୁରୁଷୋତ୍ତମ ସ୍ଥଳେ ବୃନ୍ଦାବନ କ୍ଷେତ୍ର ଓ ବିଧିମାର୍ଗ ସ୍ଥଳେ ରାଗମାର୍ଗକୁ ଗ୍ରହଣ କଲେ ।

ଜଗନ୍ନାଥ ଦାସ ଛଅ ବର୍ଷ କାଳ ଚୈତନ୍ୟଙ୍କ ବ୍ୟକ୍ତିଗତ ପରିକର ଭାବେ ରହିବା ପରେ ନିଜେ ଏକ ପୃଥକ୍ ମଠ ସ୍ଥାପନ କରି ରହିଲେ । ଚୈତନ୍ୟ ଓ ଜଗନ୍ନାଥ ଦାସଙ୍କ ମଧ୍ୟରେ ପ୍ରେମ ଅତୁଟ ରହିଲା । ଦାସେ ଚୈତନ୍ୟଙ୍କ ପାଖରୁ ଭକ୍ତିମାର୍ଗ ଶିକ୍ଷା କରି 'ଷୋଳ ଚଉପଦୀ' ଲେଖିଲେ ଓ ବିଭିନ୍ନ ଗ୍ରନ୍ଥରୁ ଫଳ (ଫଳଶ୍ରୁତି ?) ସଂଗ୍ରହ କଲେ । ଷୋଳଟି ଚଉପଦୀର ସମାହାର 'ଷୋଳ ଚଉପଦୀ' ନାମକ କ୍ଷୁଦ୍ର ପୁସ୍ତିକାଟି ପ୍ରକାଶ ପାଇଛି । ଏଥିରେ ମଞ୍ଜରୀ ସେବା ବା ରାଗାନୁଗା ଭକ୍ତିର ଶ୍ରେଷ୍ଠତା ପ୍ରତିପାଦିତ ହୋଇଛି । ଦିବାକର ଦାସ କ୍ଷୁଦ୍ର ଷୋଳ ଚଉପଦୀର ରଚନା ବିଷୟ ଲେଖିଥିଲେହେଁ ଭାଗବତ ରଚନା କରିବା କଥା ଲେଖିନାହାନ୍ତି । ଯଦି ଅତିବଡ଼ ଜଗନ୍ନାଥ ଦାସ ଭାଗବତ ଲେଖିଥିଲେ ବୋଲି ଲୋକ-ବିଶ୍ୱାସ, କିଂବଦନ୍ତୀ ବା ପରଂପରା ଦିବାକର ଦାସ ଶୁଣିଥାନ୍ତେ ତେବେ ଅତିବଡ଼ଙ୍କ ଜୀବନର ସର୍ବଶ୍ରେଷ୍ଠ କୃତିକୁ ସେ ଉପେକ୍ଷା କରନ୍ତେ ନାହିଁ ।

ପୁରୀରେ ୨୪ ବର୍ଷ ବିତାଇବା ପରେ ଚୈତନ୍ୟ ରାଜା ପ୍ରତାପରୁଦ୍ରଙ୍କୁ ପ୍ରେମଭକ୍ତି ତତ୍ତ୍ୱ ବୁଝାଇବା ପାଇଁ ଜଗନ୍ନାଥ ଦାସଙ୍କୁ କହି ନିଜେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ବିଗ୍ରହରେ ଲୀନ ହୋଇଗଲେ ।

ଅନନ୍ତର ଜଗନ୍ନାଥ ଦାସ ନିଜକୁ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବାରେ ଉତ୍ସର୍ଗ କରିଦେଲେ । ବାହାରେ ସେ ନିତ୍ୟ କର୍ମ ସଂପାଦନ କରୁଥାନ୍ତି କିନ୍ତୁ ଭିତରେ ସେ ରାଗମାର୍ଗରେ ଥାଆନ୍ତି । କ୍ରମଶଃ ସେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଠାରେ ତଦ୍‌ଗତପ୍ରାଣ ହୋଇ ବ୍ରାହ୍ମଣ କୁଳୋଚିତ ସକଳ ଆଚାର (ସ୍ନାନ, ସନ୍ଧ୍ୟା, ଦେବପୂଜା, ବୈଶ୍ୱଦେବ, ଅତିଥିସତ୍କାର, ବେଦାଦି ଶାସ୍ତ୍ରାଧ୍ୟୟନ ଓ ଯମନିୟମାଦି ଅଷ୍ଟାଙ୍ଗଯୋଗ) ସମେତ ସବୁ ବୈଧୀକର୍ମକୁ ଛାଡ଼ି କେବଳମାତ୍ର ରାଗମାର୍ଗକୁ ଆଶ୍ରୟ କଲେ । ଗୌଡ଼ିଆ ବୈଷ୍ଣବମାନେ ଚୈତନ୍ୟଙ୍କ ପ୍ରତି ବିରୋଧଭାବ ପୋଷଣ କରି ରାଗମାର୍ଗକୁ ଧରିଲେ, ଅତିବଡ଼ ଗୋସାଇଁ ଚୈତନ୍ୟଙ୍କ ଦେହାନ୍ତ ପରେ ତାହାହିଁ କଲେ !

ଥରେ ରାଜା ପ୍ରତାପରୁଦ୍ର ଜଗନ୍ନାଥ ଦାସଙ୍କ କାର୍ଯ୍ୟକଳାପ ବୁଝିବା ପାଇଁ ଚାର ନିଯୁକ୍ତ କଲେ । ଚାରମାନେ ଅନୁସନ୍ଧାନ ପରେ ରାଜାଙ୍କୁ ଜଣାଇଲେ ଯେ ଜଗନ୍ନାଥ ଦାସ ପ୍ରତ୍ୟହ ନିଶାର୍ଦ୍ଧରେ ଶ୍ରୀମନ୍ଦିରରୁ ଫେରିବା ପରେ ଦୁଇ ଜଣ ଅନିନ୍ଦ୍ୟ ସୁନ୍ଦରୀ ଯୁବତୀ ଦାସଙ୍କ ପରିଚର୍ଯ୍ୟା କରନ୍ତି । ପାରିଷଦବର୍ଗଙ୍କ ଗହଣରେ ରାଜା ମଧ୍ୟ ଏହା ସ୍ୱଚକ୍ଷୁରେ ଦେଖିଲେ । ଜଗନ୍ନାଥ ଦାସ ରାଜାଙ୍କୁ ଶୁଣାଇ କହିଲେ "ମୁଁ ପୂର୍ବେ ପୁରୁଷ ଥିଲି, ପ୍ରେମଭାବରେ ନାରୀ ହେଲିଣି, ଏମାନେ ମୋର ନିତ୍ୟଲୀଳାର ଦାସୀ, ମୋର ସେବା କରି ପ୍ରତ୍ୟହ ନିତ୍ୟ ଲୋକକୁ ଫେରିଯାଆନ୍ତି" । ଏହା କହି ନିଜର ନାରୀତ୍ୱର ପ୍ରମାଣ ଦେବା ଉଦ୍ଦେଶ୍ୟରେ ଦାସେ ଆପଣା କୌପୁନିଟିକୁ ଖୋଲି ପକାଇଲେ । ସମସ୍ତେ ଦେଖିଲେ ଦାସଙ୍କ ପୁଂ ଚିହ୍ନ ବଦଳେ ସ୍ତ୍ରୀ ଚିହ୍ନ ରହିଛି ଓ ତହିଁରୁ ରକ୍ତ ସ୍ରବୁଛି ।

ଏହାପରେ ଜଗନ୍ନାଥ ଦାସ ମାସକେ ୨୭ଦିନ ପୁରୁଷ ଓ ୩ଦିନ ସ୍ତ୍ରୀ ଭାବରେ କଟାଇଲେ । ତାଙ୍କର ନାରୀତ୍ୱ ବିଷୟ ବୁଝି, ଗୁରୁ ଗୋପାଳ ନାମକ ଜନୈକ ତତ୍ତ୍ୱଜ୍ଞ ବୈଷ୍ଣବ ତାଙ୍କୁ 'ସଖି, ସଖି' ବୋଲି ସମ୍ବୋଧନ କରୁଥିଲେ । ଜଗନ୍ନାଥ ଦାସ ପ୍ରଥମେ ପୁରୁଷ ଥିଲେ, ପରେ ପ୍ରେମଭାବରେ ଉଭୟ ପୁରୁଷ ଓ ସ୍ତ୍ରୀ ହେଲେ ଓ ପରିଶେଷରେ ରାଧାଭାବରେ ମାତି 'ଏକାଗ୍ର ଯୁବତୀ' ହୋଇଗଲେ । ଯୁଗଳଭାବର ପ୍ରବର୍ତ୍ତକ ଅତିବଡ଼ ଜଗନ୍ନାଥ ଦାସ ୬୦ ବର୍ଷ ବୟସରେ ଦେହତ୍ୟାଗ କରି ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ ଲୀନ ହୋଇଗଲେ ।

ଏହା ହେଲା ଜଗନ୍ନାଥାମୃତ ଅନୁସାରେ ଅତିବଡ଼ଙ୍କ ଜୀବନ ଚରିତ ।

## ଅତିବଡ଼ ଭାଗବତକାର ନୁହନ୍ତି

ଜଗନ୍ନାଥମୃତର ରଚୟିତା ଦିବାକର ଦାସ ଅତିବଡ଼ୀ ସଂପ୍ରଦାୟର ଲୋକ। ତେଣୁ, ଅତିବଡ଼ଙ୍କ ଶିଷ୍ୟ-ପ୍ରଶିଷ୍ୟ ମଧ୍ୟରେ ପରଂପରାକ୍ରମେ ଗଢ଼ି ଆସୁଥିବା ଜନଶ୍ରୁତି ଗୁଡ଼ିକୁ ଦିବାକର ଦାସ ବର୍ଣ୍ଣନା କରିଛନ୍ତି ବୋଲି ଧରି ନେବାକୁ ପଡୁଛି। ଜଗନ୍ନାଥାମୃତକୁ ଛାଡ଼ିଲେ ଅତିବଡ଼ଙ୍କ ଜୀବନ ଚରିତ ଜାଣିବାକୁ ଅନ୍ୟ କିଛି ସୂତ୍ର ନାହିଁ। ଜଗନ୍ନାଥାମୃତକୁ ଗ୍ରହଣ କଲେ। ଭାଗବତକାର ଓ ଅତିବଡ଼ ଭିନ୍ନ ଭିନ୍ନ ବ୍ୟକ୍ତି ବୋଲି ଗ୍ରହଣ କରିବାକୁ ପଡ଼ିବ। ଦୁଇ ବ୍ୟକ୍ତିତ୍ୱ ମଧ୍ୟରେ ପାର୍ଥକ୍ୟ ନିମ୍ନୋକ୍ତ ଯୁକ୍ତି ବଳରେ ସିଦ୍ଧ ହୁଏ।

୧. ଭାଗବତକାର ଜଗନ୍ନାଥ ଦାସ ଭାଗବତର ୧୧ଟି ସ୍କନ୍ଧ ମାତ୍ରା ଲେଖି ଦେହତ୍ୟାଗ କରିଛନ୍ତି। ଏ ବିଷୟରେ ମହାଦେବ (ବିପ୍ର)ଙ୍କ ବଚନ ଗ୍ରାହ୍ୟ। କାରଣ, ଦ୍ୱାଦଶ ସ୍କନ୍ଧର ଭାଷା ଓ ଶୈଳୀ ପୂର୍ବ ସ୍କନ୍ଧଗୁଡ଼ିକ ସହିତ ମିଶୁନାହିଁ। ଅତିବଡ଼ ଜଗନ୍ନାଥ ଦାସ ତାହାଙ୍କ ଜୀବନର ଶେଷ ଭାଗରେ ସର୍ବବିଧ ବୈଧୀକର୍ମ, ଏପରିକି ବେଦ ପୁରାଣାଦିର ଅଧ୍ୟୟନ ସୁଦ୍ଧା ଛାଡ଼ି ଦେଇ ରାଗମାର୍ଗାଶ୍ରିତ ହେଲେ। ଦିବାକରଙ୍କ ଏତାଦୃଶ ବର୍ଣ୍ଣନା ଦୃଷ୍ଟିରୁ ଅତିବଡ଼ ଦାସେ ଶେଷ ଜୀବନରେ ଭାଗବତ ପୁରାଣର ଭାଷାନ୍ତର କର୍ମରେ ନିଯୁକ୍ତ ରହିବା ସମ୍ଭାବନା ରହୁନାହିଁ।

୨. ଅତିବଡ଼ ଦାସେ 'ଷୋଳ ଚଉପଦୀ' ରଚନା କରିଥିବା କଥା ଦିବାକର ଲେଖିଛନ୍ତି; କିନ୍ତୁ, ସେ ଭାଗବତ ଲେଖିଥିବା କଥାର କୌଣସି ସୂଚନା ଦେଇ ନାହାନ୍ତି। ଯଦି ଅତିବଡ଼ ଦାସେ ଭାଗବତ ଭଳି ଲୋକପ୍ରିୟ ବିରାଟ ଗ୍ରନ୍ଥର ରଚୟିତା ବୋଲି ଅତିବଡ଼ୀ ଗୋଷ୍ଠୀ ମଧ୍ୟରେ ଜନଶ୍ରୁତି/କିଂବଦନ୍ତୀ ପ୍ରଚଳିତ ଥାଆନ୍ତା ତେବେ ଦିବାକର ତାହାର ରଚନା ବିଷୟକୁ ଅତିବଡ଼ଙ୍କ ପ୍ରଧାନ କୃତି ଭାବରେ ଅବଶ୍ୟ ଉଲ୍ଲେଖ କରିଥାନ୍ତେ।

୩. ପୂର୍ବରୁ ସପ୍ରମାଣ ଦର୍ଶାଇ ଦିଆଯାଇଛି ଯେ ଭାଗବତକାର ଜଗନ୍ନାଥ ଦାସଙ୍କର ଦାସ୍ୟ ଭକ୍ତିରେ ବିଶ୍ୱାସ ଥିଲା ଓ ସେ ଅନନ୍ୟଭାବରେ ଦାସ୍ୟଭାବରେ ମଜ୍ଜିଥିଲେ— 'କେବଳ ଦାସ୍ୟଭାବେ ମତି' (୧୧/୧୯)। ଭକ୍ତିର ଦାସ୍ୟ ଭାବରେ ଭଗବାନ୍ ହେଉଛନ୍ତି ପ୍ରଭୁ ଓ ଭକ୍ତ ତାହାଙ୍କର ସେବକ। ଅନ୍ୟ ପକ୍ଷରେ ଅତିବଡ଼ ଜଗନ୍ନାଥ ଦାସଙ୍କ ଷୋଳ ଚଉପଦୀରେ ରାଗାନୁଗା ଭକ୍ତିର ମଞ୍ଜରୀ ତତ୍ତ୍ୱ ପ୍ରକାଶିତ ହୋଇଛି। ଦିବାକର ମଧ୍ୟ ଜଣାଇଛନ୍ତି ଯେ ଅତିବଡ଼ ଗୋସାଇଁ ଏକାନ୍ତ ଭାବରେ ରାଗାନୁଗ ମାର୍ଗକୁ ଆଶ୍ରୟ କରୁଥିଲେ। ଏହି ସକାଶରୁ କେତେକ ତତ୍ତ୍ୱଜ୍ଞ ଅତିବଡ଼ଙ୍କୁ 'ସଖି'ବୋଲି ସଂବୋଧନ କରୁଥିଲେ ମଧ୍ୟ। ରାଗାନୁଗ ମାର୍ଗର ଭକ୍ତ ନିଜକୁ ଜଣେ ନାରୀ ବା ମଞ୍ଜରୀ ବିଶେଷ ବୋଲି ଜ୍ଞାନ କରି ରାଧାକୃଷ୍ଣ ଯୁଗଳ ଭାବର ଅନୁସରଣ କରିଥାଏ। ଦାର୍ଶନିକ ବିଚାରରୁ ଦାସ୍ୟଭାବ ଓ ମଞ୍ଜରୀଭାବ ମଧ୍ୟରେ ବିଶେଷ ପାର୍ଥକ୍ୟ ରହିଛି। ଏଥିଯୋଗୁଁ ଭାଗବତକାର ଓ ଅତିବଡ଼

ଏକା ଲୋକ ହେବା ସମ୍ଭବପର ନୁହେଁ। ଅତିବଡ଼ଙ୍କ ପ୍ରବର୍ତ୍ତିତ ଅତିବଡ଼ୀ ସଂପ୍ରଦାୟ ରାଗାନୁଗଭକ୍ତିର ଶ୍ରେଷ୍ଠତା ମାନନ୍ତି, ଦାସ୍ୟଭାବକୁ ଗୌଣ ବିଚାର କରନ୍ତି। ସେମାନେ ନିଜକୁ ରାଧାକୃଷ୍ଣଲୀଳା ବେଳର ଦାସୀ, ସଖୀ ବା ଦୂତୀ ବୋଲି ଭାବନ୍ତ, ସେହି ଲୀଳା ବର୍ତ୍ତମାନ କାଳରେ ଚାଲୁଛି (ଯାହାକି ସଖୀଭାବକ ନ ହେଲେ ପ୍ରତ୍ୟକ୍ଷ କରି ହେବ ନାହିଁ) ବୋଲି ଭାବନ୍ତି ଓ ଆଚରଣରେ, ଚାଲିଚଳଣରେ, ଚାହାଣି ହାସ ଆଦି ହାବରେ, କଥାରେ ଯୁବତୀ ସ୍ତ୍ରୀର ଲୀଳାଭଙ୍ଗୀ ପ୍ରକାଶ କରନ୍ତି। 'ନିଷ୍ଠାନୀଳମଣି'ରେ ଏମାନଙ୍କ ସାଧନ ବିଷୟ ବୁଝାଇ ଦିଆଯାଇଛି:-

ଭାବସିଦ୍ଧ ଦେହ ସ୍ୱାରୋପଣରେ। ରହିବ ସଦା ରାଗାନୁଗା ଗଣରେ ॥
ହସିବା ଭାଷିବାର ଚାଲି ଚାହାଣି। ଚାତୁରୀ ଚିତ୍ତଚୋରି କରିବା ଠାଣି ॥
ଫୁଲାଇ ନାସାପୁଡ଼ା ଭୁରୂନଚାଇ। ଏ ସାଧନ ଶିଖିବ ମନ ମଣାଇ ॥

ଅତିବଡ଼ ଭଣିତିଯୁକ୍ତ 'ଦୂତୀବୋଧ' ଓ 'ରାଧାମଞ୍ଜରୀ' ନାମକ ଦୁଇଟି କ୍ଷୁଦ୍ର ରଚନାରେ ମଧ୍ୟ ଏହି ରାଗାନୁଗାଭକ୍ତିର ବର୍ଣ୍ଣନା ରହିଛି (ଚାରଣ ସଂକଳିତ 'ଅତିବଡ଼ୀ ସ୍ମୃତି ସଂଖ୍ୟା'ର ପୃ.୩୪-୩୫ ଦ୍ରଷ୍ଟବ୍ୟ)। ଚୈତନ୍ୟ ରଥଯାତ୍ରା ପୂର୍ବଦିନ ଗୁଣ୍ଡିଚାମନ୍ଦିର ମାର୍ଜନ ସେବା ପ୍ରବର୍ତ୍ତନ କରିଥିଲେ। ଅଦ୍ୟାବଧି ସେବା ଚାଲିଛି ଓ ସେହି ସେବା ବେଳେ ଓଡ଼ିଆ ମଠର ଅଧିକାରୀମାନେ ନାରୀବେଶ ଧାରଣ କରି ଗୁଣ୍ଡିଚା ମନ୍ଦିର ମାର୍ଜନ କର୍ମ କରିଥାନ୍ତି।

୪. ଭାଗବତକାର ନିଜକୁ ପାମର, ହୀନ, ଅଧମ, ଛାର, ଦୁରାଚାର ଆଦି ଆଖ୍ୟାଯୁକ୍ତ କରି ଆତ୍ମପରିଚୟ ଦେବା କଥା ପୂର୍ବେ ଦର୍ଶାଇ ଦିଆଯାଇଛି। ଭାଗବତର ପ୍ରାୟ ପ୍ରତ୍ୟେକ ଅଧ୍ୟାୟରେ ଭାଗବତକାର ସ୍ୱୀକାର କରିଥିବା ଅକିଂଚନ ମନୋଭାବ 'ଅତିବଡ଼' ଭଳି ଏକ ଉପାଧିକୁ ମାନିନେବା ଓ ତାହାକୁ ଉପାଧିରୂପେ ବ୍ୟବହାର କରି ଲେଖାଲେଖି କରିବା କଥା ନୁହେଁ। ତେଣୁ ଭାଗବତକାର ଜଗନ୍ନାଥ ଦାସ ଅତିବଡ଼ ଜଗନ୍ନାଥ ଦାସଙ୍କ ଠାରୁ ଭିନ୍ନ ଜଣେ ଲୋକ ହେବା ହିଁ ସମ୍ଭବପର।

## ଭାଗବତକାରଙ୍କ ଜୀବନବୃତ୍ତାନ୍ତ

କବି ରାମଦାସ 'ଦାର୍ଢ୍ୟତାଭକ୍ତି'ର ୧୫ଶ ଅଧ୍ୟାୟରେ ଭାଗବତକାର ଜଗନ୍ନାଥ ଦାସଙ୍କ ଜୀବନଚରିତ ଲେଖିଛନ୍ତି। ଦାର୍ଢ୍ୟତାଭକ୍ତିର ପ୍ରଥମ ପଚିଶ ଅଧ୍ୟାୟର ରଚନା ଖ୍ରୀ.୧୭୭୦ରେ ସଂପୂର୍ଣ୍ଣ ହୋଇଥିଲା। ତେଣୁ, ଅନୁମିତ ହୁଏ ଯେ ରାମଦାସ ଖ୍ରୀ. ୧୭୭୦ର କିଛିକାଳ ପୂର୍ବେ ଭାଗବତକାରଙ୍କ ଚରିତ ସମ୍ବଳିତ ଅଧ୍ୟାୟଟିକୁ ଲେଖିଥିଲେ। ଭାଗବତକାରଙ୍କର ସମୟର ଦୀର୍ଘ ଅଢ଼େଇ ଶହ ବର୍ଷ ପରେ ରାମଦାସ ତାହାଙ୍କ ଜୀବନବୃତ୍ତାନ୍ତ ଯେପରି ବର୍ଣ୍ଣନା କରିଛନ୍ତି, ତାହାର ସାରକଥା ନିମ୍ନରେ ପ୍ରଦତ୍ତ ହେଲା।

ପୁରୁଷୋତ୍ତମ କ୍ଷେତ୍ରବାସୀ ଜଗନ୍ନାଥ ଦାସ ଜାତିରେ ବ୍ରାହ୍ମଣ, ସୁପଣ୍ଡିତ, ଧର୍ମପ୍ରାଣ, ସର୍ବଶାସ୍ତ୍ରଜ୍ଞ ଓ ଶାନ୍ତସ୍ୱଭାବ ଥିଲେ। ଭବସାଗରରୁ ପାର ହେବା ପାଇଁ ଭକ୍ତିହିଁ ଏକମାତ୍ର ଉପାୟ ବୋଲି ବିଚାର କରି ସେ ଅନନ୍ୟଚିତ୍ତ ହୋଇ ହରିଚରଣ ଧ୍ୟାନ କଲେ। ଦାସଙ୍କ ଭକ୍ତିଭାବରେ ସନ୍ତୁଷ୍ଟ ହୋଇ ଶ୍ରୀଜଗନ୍ନାଥ ମହାପ୍ରଭୁ ତାହାଙ୍କୁ ସ୍ୱପ୍ନରେ ଦେଖାଦେଇ କହିଲେ "ତୋର ଉଦ୍ଧାର ପାଇଁ ମୁଁ ତୋତେ ସ୍ୱୟଂ ଦୀକ୍ଷା ଦେଉଅଛି। ସବୁ ଶାସ୍ତ୍ରମଧ୍ୟରେ ଶ୍ରେଷ୍ଠ ଯେଉଁ ଭାଗବତ ତାହାକୁ ପ୍ରାକୃତ ଭାଷାରେ ଅନୁବାଦ କଲେ ତୁ ମୁକ୍ତି ପାଇବୁ। ତୋ ହୃଦୟରେ ଅଧିଷ୍ଠିତ ହୋଇ ମୁଁ ଭାଗବତର ମର୍ମ କହିଦେବି, ତାହାକୁ ତୁ ଗୀତରେ ଲେଖ।" ରାମଦାସଙ୍କ ବର୍ଣ୍ଣନାରେ ଶ୍ରୀଜଗନ୍ନାଥଙ୍କ ଜଗନ୍ନାଥ ଦାସଙ୍କ ପ୍ରତି ଉକ୍ତିହେଲା:-

ତୋ ଜୀବ ଉଦ୍ଧାର ନିମନ୍ତେ। ଦୀକ୍ଷା ମୁଁ ଦେଉଅଛି ତୋତେ॥
ସେ ମହାପୁରାଣ ଚରିତ। ପ୍ରାକୃତ ବନ୍ଧେ କଲେ ଗୀତ॥
ତୁ ନିଶ୍ଚେ ପବିତ୍ର ହୋଇବୁ। ଅଶେଷ ପ୍ରାଣୀଙ୍କି ତାରିବୁ॥
ତୋ ହୃଦପଦ୍ମେ ବସିଥାଇ। ମୁଁ ଯାହା ଦେଉଥିବି କହି॥
ତାହା ତୁ ପତ୍ରଘେନି ଲେଖ। କହି ଚଳିଲେ ପଦ୍ମମୁଖ॥ (ଦାର୍ଢ୍ୟତା ଭକ୍ତି)

ଦାସେ ଭାଗବତ ରଚନା କଲେ। ଦାସଙ୍କ ସୁଲଳିତ ପ୍ରାକୃତ ଭାଷାନ୍ତରକୁ ଆବାଳବୃଦ୍ଧବନିତା ସମସ୍ତେ ସମାଦର କଲେ। ବିଶେଷତଃ ମହିଳାମାନେ ଦାସଙ୍କୁ ନିଜ ନିଜ ଘରକୁ ଡାକି ନେଇ ତାହାଙ୍କ ସୁମଧୁର କଣ୍ଠରୁ ଭାଗବତର ଶ୍ରୀକୃଷ୍ଣବାଳଲୀଳା ଶୁଣିବାକୁ ବିଶେଷ ଆଗ୍ରହ ପ୍ରକାଶ କଲେ। ଦାସଙ୍କୁ ଧନବସ୍ତ୍ରାଦି ଦକ୍ଷିଣା ଦେଇ ନାରୀମାନେ ପ୍ରତ୍ୟହ ଶ୍ରୀକୃଷ୍ଣଲୀଳା ଶୁଣିଲେ।

ଖଟୁଆ ଲୋକେ ରାଜା ପ୍ରତାପରୁଦ୍ରଙ୍କ ଆଗରେ ଅଭିଯୋଗ କଲେ ଯେ ଜଗନ୍ନାଥ ଦାସ କପଟ ବ୍ରହ୍ମଚାରୀ ହୋଇ ଭାଗବତ ପାଠ ଆଳରେ ସ୍ତ୍ରୀମାନଙ୍କୁ ନାଶ କରୁଛି। ରାଜା କ୍ରୁଦ୍ଧ ହୋଇ ଦାସଙ୍କୁ ଡକାଇ ଆଣିଲେ ଓ ସେ ସଦାସର୍ବଦା ସ୍ତ୍ରୀଲୋକଙ୍କ ଗହଣରେ କାହିଁକି ରହୁଛନ୍ତି ବୋଲି ପଚାରିଲେ।

ଜଗନ୍ନାଥ ଦାସ କହିଲେ, "ମୁଁ ବ୍ରହ୍ମଚାରୀ, ପୁରୁଷଙ୍କ ମେଳରେ ପୁରୁଷ। ସ୍ତ୍ରୀଙ୍କ ମେଳରେ ସ୍ତ୍ରୀ"। ଏତାଦୃଶ ଉତ୍ତରରେ ରାଜା ଅଧିକ ରାଗିଯାଇ ସ୍ତ୍ରୀ ରୂପ ଦେଖାଇବାକୁ କହିଲେ। ଦାସେ ଶ୍ରୀ ଜଗନ୍ନାଥଙ୍କୁ ପ୍ରାର୍ଥନା କଲେ ରାଜାଙ୍କ କୋପରୁ ରକ୍ଷା ପାଇବା ନିମନ୍ତେ ତାଙ୍କୁ ସ୍ତ୍ରୀ କରିଦେବା ପାଇଁ। ଭକ୍ତବତ୍ସଳ ଭଗବାନ ଦାସଙ୍କୁ ଏକ ସୁନ୍ଦରୀ ତରୁଣୀ କରିଦେଲେ। ରାଜା ତଥାପି ସନ୍ତୁଷ୍ଟ ନ ହୋଇ ଏହା ମାୟା ମାତ୍ର ବୋଲି କହିବାରୁ ଦାସେ ନିଜ ପିନ୍ଧା ଲୁଗାଖୋଲି ସ୍ତ୍ରୀ ଚିହ୍ନ ଦେଖାଇଦେଲେ: "ମର୍ମ ସ୍ଥାନରୁ ଶ୍ରୋଣି ବହି। ବସନ ବିବର୍ଣ୍ଣ ଦିଶଇ"।

ରାଜା ଦାସଙ୍କ ଆଲୌକିକ ସିଦ୍ଧିର ପ୍ରତ୍ୟକ୍ଷ ପ୍ରମାଣ ପାଇ ତାଙ୍କୁ ପୂଜା କଲେ। ଦାସେ ସ୍ନାନ କରିବା ପାଇଁ ଜଳ ମଧ୍ୟରେ ପଶି ବାହାରିଲା ବେଳକୁ ପୁଣି ନିଜର ପୁରୁଷ ରୂପ ଧାରଣ କରିଥିଲେ। ଦାସେ ରାଜାଙ୍କୁ ସ୍ୱପ୍ରଣୀତ ପ୍ରାକୃତ ଭାଗବତ 'ଆଦ୍ୟରୁ ପ୍ରାନ୍ତ' ଯାଏଁ କହିଲେ। ରାଜା ଦାସଙ୍କୁ ଭୂମି, ଗୃହ, ଅଳଙ୍କାର ଆଦି ଦାନ ଦେଇ ସନ୍ତୁଷ୍ଟ କରିଥିଲେ।

ଦିବାକର ଦାସ ବର୍ଣ୍ଣିତ ଜଗନ୍ନାଥ ଦାସ ଓ ରାମଦାସ ବର୍ଣ୍ଣିତ ଜଗନ୍ନାଥ ଦାସ ଉଭୟଙ୍କର ଜୀବନବୃତ୍ତାନ୍ତରେ ଏକ ଉଲ୍ଲେଖନୀୟ ଘଟନା ଭାବରେ ସେମାନେ ନିଜର ନାରୀତ୍ୱର ପ୍ରମାଣ ଦେବା ଲାଗି ସ୍ତ୍ରୀ ଶରୀର ଧାରଣ କରି ଋତୁମତୀ ହେବା କଥା ବର୍ଣ୍ଣିତ ହୋଇଛି। ଅବଶ୍ୟ ଏହା ଏକ ବାସ୍ତବ ଘଟନା ହେବା ସମ୍ଭବପର ନୁହେଁ। ଏକ ପ୍ରକାର କପୋଳକଳ୍ପନାକୁ ଦୁଇ ଜୀବନଚରିତକାର ଉଲ୍ଲେଖ କରିଥିବା କାରଣରୁ ଦୁଇ ଜଗନ୍ନାଥ ଦାସ ଏକା ବ୍ୟକ୍ତି ବୋଲି କୁହାଯାଇ ପାରିବ ନାହିଁ। ଘଟନାଟି ବାସ୍ତବ ହୋଇଥିଲେ ଦୁହେଁ ଏକା ବ୍ୟକ୍ତି ହେବା କଥା ଅନୁମାନ କରିବା ଯୁକ୍ତିଯୁକ୍ତ ହୁଅନ୍ତା। ରାମଦାସେ ବ୍ରହ୍ମପୁର(ଗଞ୍ଜାମଜିଲା) ନିକଟବର୍ତ୍ତୀ ଡୁରା ଗ୍ରାମର ଲୋକ। ଭାଗବତକାରଙ୍କ ସମୟର ଦୀର୍ଘ ଅଢ଼େଇ ଶହ ବର୍ଷ ପରେ, ସମ୍ଭବତଃ ପୁରୀରେ, ସେ ତାହାଙ୍କ ସଂପୃକ୍ତ ଜନଶ୍ରୁତି ସଂଗ୍ରହ କରି ଜୀବନଚରିତ ଲେଖିଲେ। ନାମ ସମାନ ହୋଇଥିବା ଯୋଗୁଁ ଲୋକମୁଖରେ ଅତିବଡ଼ ଜଗନ୍ନାଥ ଦାସଙ୍କ ସଂପର୍କରେ ପ୍ରଚାରିତ୍ ଏକ ଅଲୌକିକ ଆଖ୍ୟାନ ଭାଗବତକାରଙ୍କ ସଂପର୍କରେ ଲାଖି ଯାଇଥିବା ସମ୍ଭବ। ତଥାପି, ଲକ୍ଷ୍ୟ କରାଯାଇପାରେ ଯେ ଭାଗବତକାର ସ୍ତ୍ରୀ ରୂପ ଧାରଣ କରିବାର ପରିସ୍ଥିତି ସହିତ ଅତିବଡ଼ ଦାସେ ସ୍ତ୍ରୀରୂପ ଧାରଣ କରିବାର ପରିସ୍ଥିତିର କୌଣସି ସାମଞ୍ଜସ୍ୟ ନାହିଁ। ଅତିବଡ଼ଙ୍କ ସ୍ତ୍ରୀତ୍ୱ ନିତ୍ୟ ଓ ସହଜାତ, ସେ ରାଧାଙ୍କ ଅବତାର। କିନ୍ତୁ, ଭାଗବତକାରଙ୍କ ସ୍ତ୍ରୀତ୍ୱ ଶ୍ରୀଜଗନ୍ନାଥଙ୍କ କରୁଣାଜନିତ କ୍ଷଣସ୍ଥାୟୀ ମାତ୍ର ବୋଲି ଜୀବନକାରଙ୍କ ମତ। ନିମ୍ନଲିଖିତ ଯୁକ୍ତି ବଳରେ ସ୍ଥିର କରାଯାଇପାରେ ଯେ ଦାର୍ଢ୍ୟତାଭକ୍ତି ଓ ଜଗନ୍ନାଥାମୃତରେ ଭିନ୍ନ ଭିନ୍ନ ଜଗନ୍ନାଥ ଦାସଙ୍କ ଜୀବନଚରିତର ବର୍ଣ୍ଣନା ରହିଛି :-

୧. ଜଗନ୍ନାଥାମୃତ ଦାର୍ଢ୍ୟତାଭକ୍ତି ପୂର୍ବରୁ ରଚିତ ହୋଇଛି। ଦାର୍ଢ୍ୟତାଭକ୍ତିରେ ଜଗନ୍ନାଥ ଦାସ 'ଭାଗବତ' ରଚନା କରିଥିବା କଥା ଲେଖାଅଛି କିନ୍ତୁ 'ଷୋଳ ଚଉପଦୀ' ରଚନା କରିଥିବା କଥା ଲେଖା ନାହିଁ। ଜଗନ୍ନାଥାମୃତରେ ଜଗନ୍ନାଥ ଦାସ 'ଷୋଳଚଉପଦୀ' ରଚନା କରିଥିବା କଥା ଲେଖାଅଛି, କିନ୍ତୁ ଭାଗବତ ରଚନା କରିଥିବା କଥା ଲେଖାନାହିଁ।

୨. ଜଗନ୍ନାଥାମୃତ ବର୍ଣ୍ଣିତ ଜଗନ୍ନାଥ ଦାସଙ୍କୁ ଚୈତନ୍ୟଙ୍କ ଆଜ୍ଞା ଅନୁସାରେ ମତ୍ତ ବଳରାମ (ଏ ହିଁ ଜଗମୋହନ ରାମାୟଣ କାର ବଳରାମ ଦାସ ବୋଲି ଭ୍ରମାତ୍ମକ ବିଶ୍ୱାସ ପ୍ରାୟ ସମସ୍ତେ ପୋଷଣ କରନ୍ତି, କିନ୍ତୁ ମତ୍ତ ବଳରାମ ଯେ ରାମାୟଣକାରଙ୍କ ଠାରୁ ଜଣେ ଭିନ୍ନ ବ୍ୟକ୍ତି ତାହା ଅନେକ ବଳରାମ ଦାସ ଅଧ୍ୟାୟରେ ଦେଖାଇ ଦିଆଯିବ) ଦୀକ୍ଷା ଦେଇଥିଲେ। ଦାର୍ଢ୍ୟତାଭକ୍ତି ବର୍ଣ୍ଣିତ ଜଗନ୍ନାଥ ଦାସଙ୍କୁ ଶ୍ରୀଜଗନ୍ନାଥ ସ୍ୱୟଂ ଦୀକ୍ଷା ଦେଇଛନ୍ତି। ଅତିବଡ଼ଙ୍କର ଜଣେ 'ସଦ୍‌ଗୁରୁ'ଥିବା କଥା ତାଙ୍କର 'ଦୂତୀବୋଧ' ନାମକ ରଚନାରେ ସେ ଜଣାଇଛନ୍ତି।

୩. ଦାର୍ଢ୍ୟତାଭକ୍ତି ବର୍ଣ୍ଣିତ ଜଗନ୍ନାଥ ଦାସଙ୍କ ନିବାସସ୍ଥାନ ପୁରୁଷୋତ୍ତମ କ୍ଷେତ୍ର କିନ୍ତୁ ଜଗନ୍ନାଥାମୃତର ଜଗନ୍ନାଥ ଦାସଙ୍କ ଘର କପିଳେଶ୍ୱରପୁର ଶାସନରେ। କପିଳେଶ୍ୱରପୁର ପୁରୀଠାରୁ ପ୍ରାୟ ୧୦ କିଲୋମିଟର ପଶ୍ଚିମସ୍ଥ ଏକ ଗ୍ରାମ।

ଯେ କ୍ଷେତ୍ରମାନଙ୍କ ଉତ୍ତମ। ନାମ ତା' ଶ୍ରୀପୁରୁଷୋତ୍ତମ ।।
ସେ ପୁଣ୍ୟ କ୍ଷେତ୍ରରେ ନିବାସ। ନାମ ତା' ଜଗନ୍ନାଥ ଦାସ ।। (ଦାର୍ଢ୍ୟତା ଭକ୍ତି)
ନାମ କପିଳେଶ୍ୱର ପୁର। ଶାସନ ମଧ୍ୟେ ତାଙ୍କ ଘର ।।
ପୁରାଣ ପଣ୍ଡା ଭଗବାନ। ପଦ୍ମା ବୋଲିଣ ପତ୍ନୀନାମ ।।
ଜନ୍ମ ନୋହିବେ ଯେବେ ମହୀ। ତେବେ ସେ ଭକ୍ତି ହୋଏ ନାହିଁ ।।
ତେଣୁ ସେ ପଦ୍ମାର ଉଦରେ। ଜନ୍ମିଲେ ବାଳଙ୍କ ବେଭାରେ ।।
(ଜଗନ୍ନାଥାମୃତ, ୧ ଅଧ୍ୟାୟ)

୪. ଦାର୍ଢ୍ୟତାଭକ୍ତିର ଜଗନ୍ନାଥ ଦାସ ରାଜଦଣ୍ଡରୁ ପରିତ୍ରାଣ ପାଇବା ପାଇଁ ଶ୍ରୀ ଜଗନ୍ନାଥଙ୍କ କରୁଣାବଶତଃ ସ୍ତ୍ରୀ ରୂପ ଧାରଣ କରିଥିଲେ; କିନ୍ତୁ ପରେ ପରେ ପୁଣି ପୁରୁଷ ହୋଇଗଲେ। ଜଗନ୍ନାଥାମୃତର ଜଗନ୍ନାଥ ଦାସଙ୍କ ନାରୀତ୍ୱ ସହଜାତ; ସେ ରାଧାଙ୍କ ଅଂଶରୁ ଜାତ, ନିଜକୁ 'ଜଗନ୍ନାଥ ଦାସୀ', 'ସ୍ୱାମିନୀ' ବୋଲାଉଥିଲେ, ପ୍ରତିମାସ ତିନିଦିନ ସ୍ତ୍ରୀ ହେଉଥିଲେ (ମାସିକ ରଜସ୍ରାବ ହେବା ପାଇଁ?) ଓ ପରିଶେଷରେ ସେ ପୂରାପୂରି ସ୍ତ୍ରୀ ପାଲଟି ଯାଇଥିଲେ (ହୁଏତ ଲିଙ୍ଗ ପରିବର୍ତ୍ତନ କଥାର ସୂଚନା ଦିଆଯାଇଛି)।

୫. ଜଗନ୍ନାଥ ଦାସ (କ) ରାଧାଙ୍କ ଅଂଶରୁ ଜାତ ହେବାକଥା (ଖ) ଚୈତନ୍ୟଙ୍କ ଘନିଷ୍ଠ ସଂପର୍କରେ ଆସିଥିବା କଥା, (ଗ) ଅତିବଡ଼ ପଦ ପାଇବା କଥା (ଘ) ଏକ ସ୍ୱତନ୍ତ୍ର ମଠ ସ୍ଥାପନ କରିବା କଥା ଓ (ଙ) କାହାରିକୁ ଶିଷ୍ୟ କରି ଏକ ପୃଥକ୍ ସଂପ୍ରଦାୟ ପ୍ରତିଷ୍ଠା କରିବା କଥା ରାମଦାସ ଲେଖିନାହାନ୍ତି। ଯଦିଚ, ତାହାଙ୍କ ସମୟର ପୂର୍ବବର୍ତ୍ତୀ ଦିବାକର ଦାସ ଜଗନ୍ନାଥ ଦାସଙ୍କ ଜୀବନବୃତ୍ତାନ୍ତର ଶ୍ରେଷ୍ଠ କୃତିତ୍ୱ ଭାବରେ ଏ ସବୁର ବର୍ଣ୍ଣନା କରିଛନ୍ତି। ରାମଦାସଙ୍କ ଜଗନ୍ନାଥ ଦାସ ଅତିବଡ଼ଙ୍କ ଠାରୁ ପୃଥକ୍ ବୋଲି ବିଶ୍ୱାସ କରାଯାଉ ନଥିଲେ ଅତିବଡ଼ଙ୍କ ଜୀବନବୃତ୍ତାନ୍ତର ଏହି ସବୁ ପ୍ରଧାନ ପ୍ରଧାନ ଘଟନାକୁ ରାମଦାସ ଉପେକ୍ଷା କରିପାରନ୍ତେ ନାହିଁ।

୬. ଦାର୍ଢ୍ୟତାଭକ୍ତିର ଜଗନ୍ନାଥ ଦାସ ଜଣେ ସାଧାରଣ ଜୀବ, ଯେକି ମୁକ୍ତି ପାଇଁ ବ୍ୟାକୁଳ। ଭାଗବତର ଭାଷାନ୍ତର ହେଉଛି ତାହାଙ୍କ ମୁକ୍ତିର ସାଧନୋପାୟ। ଜଗନ୍ନାଥାମୃତର ଜଗନ୍ନାଥ ଦାସ ସାଧାରଣ ଜୀବ ନୁହନ୍ତି। ସେ ସ୍ୱୟଂ ରାଧାଙ୍କ ଅଂଶାବତାର, ଯୁଗଳଭାବାତ୍ମକ ପ୍ରେମଭକ୍ତିର ପ୍ରଚାର ପାଇଁ ସେ ଅବତୀର୍ଣ୍ଣ ହୋଇଥିଲେ। ତାହାଙ୍କ ସଙ୍ଗରେ ଅବତୀର୍ଣ୍ଣ ହୋଇଥିଲେ କୃଷ୍ଣଙ୍କ ଅଂଶାବତାର ଚୈତନ୍ୟ।

ନିତ୍ୟଲୀଳା ଯୁଗଳଭାବ। କେ କରି ପାରି ନାହିଁ ଠାବ।।
ସେ ଲୀଳା ପ୍ରକାଶିବା ପାଇଁ। ଶ୍ରୀ ଜଗନ୍ନାଥ ଦାସ ହୋଇ।।
ଯୁଗଳ ଭାବ ବୁଡ଼ିଥିଲା। ନିତ୍ୟରାଧାଙ୍କ ସ୍ନେହ ହେଲା।।
ଆପଣା ଅଙ୍ଗୁ ଜାତ କଲେ। ପ୍ରେମଭଗତି ପ୍ରକାଶିଲେ।।

(ଜଗନ୍ନାଥାମୃତ, ୨୪ ଅଧ୍ୟାୟ)

ଜଗନ୍ନାଥାମୃତର ଜଗନ୍ନାଥ ଦାସ ପୂରାପୂରି ସ୍ତ୍ରୀ(ସ୍ୱାମିନୀ) ହୋଇ ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ ଲୀନ ହୋଇଗଲେ। ସେ ରାଧାକୃଷ୍ଣ ଯୁଗଳଭାବାତ୍ମକ ଶ୍ରୀଜଗନ୍ନାଥଙ୍କ ଏକ ଅଂଶ ଥିଲେ, ଅଂଶ ରହିଲେ।

ବିଜୁଳି ଯେସନେ ଚଞ୍ଚଳ। ଦିଶି ଲିଭଇ ମେଘମାଳେ।।
ସେହି ରୂପେ ସ୍ୱାମିନୀ ଗଲେ। ଜଗନ୍ନାଥ ଅଙ୍ଗେ ମିଶିଲେ।।
ପୂର୍ବେ ଯହିଁରୁ ଆସିଥିଲେ। ସେହି ଅଙ୍ଗେ ସେବା ଲଭିଲେ।।

(ଜଗନ୍ନାଥାମୃତ, ୨୪ ଅଧ୍ୟାୟ)

୭. ଦାର୍ଢ୍ୟତା ଭକ୍ତିର ଜଗନ୍ନାଥ ଦାସ ଜଣେ ପୁରାଣ ପାଠକ। ପୁରୀରେ ଘର ଘର ବୁଲି ଭାଗବତର କୃଷ୍ଣଲୀଳା ଶୁଣାଇ ଦକ୍ଷିଣା ନେଉଥିଲେ। ଜଗନ୍ନାଥାମୃତର ଜଗନ୍ନାଥ ଦାସ ଜଣେ ପୁରାଣ ପଣ୍ଡାଙ୍କ ପୁତ୍ର। ତାଙ୍କ ପିତା କପିଳେଶ୍ୱର ପୁରରେ କୌଣସି ନିର୍ଦ୍ଦିଷ୍ଟ ଆସ୍ଥାନରେ - ମନ୍ଦିରରେ କି ଗାଁଦାଣ୍ଡ ଚଉତରାରେ - ବସି ହିଁ ପୁରାଣ ଶୁଣାଉ ଥିବେ। ପୁତ୍ର ଜଗନ୍ନାଥ ପୁରୀ ଆସି ଶ୍ରୀମନ୍ଦିର ବେଢ଼ାମଧ୍ୟରେ ବଟ ଗଣେଶଙ୍କ ସମ୍ମୁଖରେ -ଏଠାରେ ସ୍ଥାନ ସଂକୀର୍ଣ୍ଣ- ପୁରାଣ ପଢ଼ି ବ୍ୟାଖ୍ୟା କରୁଥିଲେ। ସେ ଏକ ସଂପ୍ରଦାୟର ପ୍ରବର୍ତ୍ତକ, ଧର୍ମ ତତ୍ତ୍ୱର ପ୍ରଖ୍ୟାପକ, ଏକ ମଠର ସଂସ୍ଥାପକ ଓ ବହୁଶିଷ୍ୟଙ୍କ ଗୁରୁ ହୋଇ କାଳାତିପାତ କରୁଥିଲେ। ତେଣୁ, ଘର ଘର ବୁଲି ବିଶେଷତଃ ସ୍ତ୍ରୀମାନଙ୍କ ଆଗରେ ପୁରାଣ ପଢ଼ିବା ଭଳି ଦୂରବସ୍ଥା ତାଙ୍କର ନ ଥିଲା।

## ଅତିବଡ଼ କାହିଁକି ?

ରାଧା ମଞ୍ଜରୀ ଓ ଦୂତୀବୋଧ ନାମକ ଦୁଇଟି କ୍ଷୁଦ୍ର ରଚନାର ପ୍ରଣେତା ଜଗନ୍ନାଥ ତାହାର ଭଣିତିରେ (ଚାରଣ ସଂକଳିତ 'ଅତିବଡ଼ୀ ସ୍ମୃତି ସଂଖ୍ୟା' ଦ୍ରଷ୍ଟବ୍ୟ) 'ଅତିବଡ଼' ପଦର ଉଲ୍ଲେଖ କରିଛନ୍ତି।

ଜଗନ୍ନାଥ ଦାସ ଅତିବଡ଼ ମାନସର
ସେ ଅଷ୍ଟମଞ୍ଜରୀ ପଦେ ଚିତ୍ତ ରହୁ ମୋର ॥ (ରାଧାମଞ୍ଜରୀ)
ବିପ୍ରକୁଳେ ଜନ୍ମ ହୋଇ କିଛି ନ ଜାଣଇ।
ଅତିବଡ଼ ବୋଲିଣ ଚୈତନ୍ୟଚନ୍ଦ୍ର କହି ॥
ଜଗନ୍ନାଥ ଦାସ ବୋଲି ନାମ ମୋର ହେଲା।
ସଦଗୁରୁ କୃପାରେଣ ସନ୍ଦେଶ ଫିଟିଲା ॥ (ଦୂତୀବୋଧ)

ଜଗନ୍ନାଥାମୃତରେ ବର୍ଣ୍ଣିତ ହୋଇଛି ଯେ ଜଗନ୍ନାଥ ଦାସଙ୍କୁ ଗୌରବ ଦେବା ଲକ୍ଷ୍ୟରେ ଚୈତନ୍ୟ ତାଙ୍କୁ ଅତିବଡ଼ ପଦ ଦେଇଥିଲେ ଓ ପଦ ଦେବା ବେଳର ଆନୁଷଙ୍ଗିକ ପ୍ରକ୍ରିୟା ଭାବରେ ନିଜର ଉତ୍ତରୀୟ କାଢ଼ି ଦାସଙ୍କ ମୁଣ୍ଡରେ ପାଗ ବାନ୍ଧିଥିଲେ। ଦାସଙ୍କ ଶିଷ୍ୟ ଓ ଅନୁଗାମୀମାନେ ଓ ସାଧାରଣ ଜନତା ମଧ୍ୟ ଚୈତନ୍ୟ ଦେଇଥିବା ପଦକୁ ଗୌରବ ପ୍ରଖ୍ୟାପକ ବୋଲି ଜ୍ଞାନ କରିଥିଲେ। 'ଦୂତୀବୋଧ'ର ସ୍ୱୀକୃତିରୁ ଏହା ଜଣାଯାଉଛି ବା ସେ ନିଜେ ମଧ୍ୟ ତାହା ତାଙ୍କ ମହତ୍ତ୍ୱଜ୍ଞାପକ ବୋଲି ଗ୍ରହଣ କରିଥିଲେ। ଜଗନ୍ନାଥାମୃତର ବିବରଣ ଅନୁସାରେ ଜଗନ୍ନାଥ ଦାସଙ୍କ ପ୍ରତି ଈର୍ଷା ପରାୟଣ ଗୌଡ଼ିଆ ବୈଷ୍ଣବମାନେ ପଦଟିକୁ ଦାସଙ୍କ ଗୌରବ ପ୍ରଖ୍ୟାପକ ବୋଲି ବିଚାର କରି ଜଣେ ଓଡ଼ିଆ ବୈଷ୍ଣବ ଏପରି ପଦ ଦ୍ୱାରା ସମ୍ମାନିତ କରାଯିବାରୁ ପ୍ରତିବାଦ କରିଥିଲେ। ଚୈତନ୍ୟ ଗୌଡ଼ିଆଙ୍କ ପ୍ରତିବାଦ ସତ୍ତ୍ୱେ ଜଗନ୍ନାଥ ଦାସଙ୍କୁ ଅତିବଡ଼ ବୋଲି ଡ଼ାକିବାରୁ ସେମାନେ ବ୍ୟଥିତ ହୋଇ ଚୈତନ୍ୟଙ୍କୁ ତ୍ୟାଗ କରି ବୃନ୍ଦାବନ ପଳାଇଲେ।

କୌଣସି ପ୍ରାଚୀନ ଗୌଡ଼ିଆ ବୈଷ୍ଣବଙ୍କ ରଚନାରେ ଚୈତନ୍ୟ କାହାକୁ 'ଅତିବଡ଼' ପଦ ଦେବା ବିଷୟ ଲେଖାନାହିଁ; ମୁଖ୍ୟତଃ ଏହି ପଦ ପାଇଁ ଓଡ଼ିଆ-ଗୌଡ଼ିଆ ବୈଷ୍ଣବ ବିବାଦ ଘଟିଥିବା ବିବରଣ ଜଗନ୍ନାଥାମୃତ ହିଁ ଦିଏ। ଅନ୍ୟ କୌଣସି ଓଡ଼ିଆ ପୁସ୍ତକରେ ବି ଏ ଘଟନା ବର୍ଣ୍ଣିତ ହୋଇନାହିଁ। ବଙ୍ଗଦେଶରେ ରୂପ କବିରାଜଙ୍କ ଦ୍ୱାରା ପ୍ରବର୍ତ୍ତିତ ଏକ ପୃଥକ୍ 'ଅତିବଡ଼ୀ' ସଂପ୍ରଦାୟ ଅଛନ୍ତି। ରୂପ କବିରାଜ ଖ୍ରୀ.୧୭ଶ ଶତାବ୍ଦୀର ପ୍ରଥମ ଭାଗର ଲୋକ। କୁହାଯାଏ ଯେ ଶ୍ରୀନିବାସାଚାର୍ଯ୍ୟଙ୍କ ଝିଅ ହେମମାଳା ରୂପ କବିରାଜଙ୍କ ଗଳାରମାଳା ଛିଣ୍ଡାଇ ପକାଇଥିଲେ ଓ ତାଙ୍କୁ 'ଅତିବଡ଼ୀ' ବୋଲି ନାମ ଦେଇଥିଲେ। ଏହା ଗୌଡ଼ିଆମାନଙ୍କର ଅତିବଡ଼ୀ ସଂପ୍ରଦାୟ ପ୍ରତି ବିରୋଧର ସୂଚନା ଦିଏ। ଓଡ଼ିଶାର ଅତିବଡ଼ୀମାନେ ଓ ବଙ୍ଗଦେଶର ଅତିବଡ଼ୀମାନେ ନିକଟ ଅତୀତ ପର୍ଯ୍ୟନ୍ତ ଏକ କଣ୍ଠୀମାଳା ପିନ୍ଧୁଥିଲେ। ଓଡ଼ିଶାର ଅତିବଡ଼ୀମାନଙ୍କ ପରି ରୂପ କବିରାଜଙ୍କ ଅନୁଗାମୀ ବଙ୍ଗଦେଶର ଅତିବଡ଼ୀମାନେ ମଧ୍ୟ ବୃନ୍ଦାବନର ନେତୃତ୍ୱାଧୀନ ଗୌଡ଼ିଆ ବୈଷ୍ଣବଙ୍କ ଘୋର ବିରୋଧୀ। ଅନୁମିତ ହୋଇପାରେ, ରୂପ କବିରାଜ ଜଗନ୍ନାଥ ଦାସଙ୍କ ପନ୍ଥାକୁ ଗ୍ରହଣ କରିବା ହେତୁରୁ 'ଅତିବଡ଼ୀ' ବୋଲାଇଲେ। କେଦାରନାଥ ଦତ୍ତ ପ୍ରମୁଖ ଉତ୍କଟ ସାଂପ୍ରଦାୟିକ ଗୌଡ଼ିଆମାନେ 'ଅତିବଡ଼' ପଦ ବିଷୟରେ

ଭିନ୍ନ ମତ ପୋଷଣ କରନ୍ତି। ତାହାଙ୍କ ମତରେ ଜଗନ୍ନାଥ ଦାସ ନିଜେ ନିତ୍ୟରାଧାଙ୍କ ଅବତାର ବୋଲି ଦାବି କରିବାରୁ ଚୈତନ୍ୟ ଏହାକୁ ନାପସନ୍ଦ କଲେ ଓ ତାସଲ୍ୟ ପ୍ରକାଶ କରି ଦାସଙ୍କୁ 'ଅତିବଡ଼' ବୋଲି ଡାକିଲେ।

ବାସ୍ତବରେ, 'ତୃଣାଦପି ସୁନୀଚେନ କୀର୍ତ୍ତନୀୟ ସଦାହରିଃ' ଭଳି ସମୁଚ୍ଚ ବୈଷ୍ଣବୀୟ ଆଦର୍ଶର ପ୍ରଚାରକ ଚୈତନ୍ୟ ତାହାଙ୍କର ସ୍ନେହଭାଜନ କୌଣସି ବୈଷ୍ଣବଙ୍କୁ ଗୌରବ ଦେବା ଅଭିପ୍ରାୟରେ ଅତିବଡ଼ ବୋଲି ଡାକିଥିବେ ଓ ତାହାଙ୍କ ମନୋଭାବ ସହିତ ବୈଷ୍ଣବ ସମାଜ ଏହି ପଦକୁ ସ୍ୱୀକାର କରିଥିବେ, ଏ ବିଷୟ ସଙ୍ଗତ ବୋଲି ବୋଧ ହେଉନାହିଁ।

ପ୍ରମାଣ ଦୃଷ୍ଟେ ଚୈତନ୍ୟ ହିଁ ଜଗନ୍ନାଥ ଦାସଙ୍କୁ 'ଅତିବଡ଼' ବୋଲି ପ୍ରଥମେ ଡାକିଥିବା କଥା ଅସ୍ୱୀକାର କରି ହେଉନାହିଁ। କିନ୍ତୁ, ଅତିବଡ଼ ପଦଟି ଦାସଙ୍କ ଗୌରବ ପ୍ରତିପାଦକ ବୋଲି ଅନ୍ୟମାନେ ଗ୍ରହଣ କରିନେବା ଠିକ୍ ହୋଇନାହିଁ। ବୈଷ୍ଣବ ଆଦର୍ଶରୁ ବିଚ୍ୟୁତ ନ ହେଲେ କେହି ନିଜକୁ ଅତିମହାନ୍ ବୋଲି ଘୋଷଣା କରି ନପାରେ। ଏହି କାରଣରୁ ଅତିବଡ଼ ପଦର ତାତ୍ପର୍ଯ୍ୟ ଭିନ୍ନ ପ୍ରକାରର ହେବା ଅନୁମାନ କରାଯାଇପାରେ। ଓଡ଼ିଶାରେ ବିଭିନ୍ନ ଅର୍ଥରେ ଅତିବଡ଼ ଶବ୍ଦ ବ୍ୟବହୃତ ହୁଏ। ଏକ ଅର୍ଥରେ ଅତିବଡ଼ର ଅର୍ଥ ସବୁଠାରୁ ବଡ଼। ବଡ଼ ଶବ୍ଦର ଏକ ଅର୍ଥ ପରିମାଣ/ଆକାର ଦୃଷ୍ଟିରୁ ବୃହତ୍, ଅନ୍ୟ ଏକ ଅର୍ଥ ଗୌରବ ବା ପ୍ରତିଷ୍ଠା ବିଚାରରୁ ଶ୍ରେଷ୍ଠ ଓ ଆଉ ଏକ ଅର୍ଥ ବୟୋଜ୍ୟେଷ୍ଠ। ବଡ଼ ଦାଣ୍ଡ, ବଡ଼ଦେଉଳ, ବଡ଼ଛତା ମଠ, ଆଦି ଶବ୍ଦର ବଡ଼ପଣ ଆକାର ବା ପରିମାଣରେ ବୃହତ୍ ହେବା ଯୋଗେ। ବଡ଼ଲୋକ, ବଡ଼ ଜାତି, ବଡ଼ଘର, ବଡ଼ଓଷା ଆଦି ଶବ୍ଦର ବଡ଼ପଣ ଗୌରବରେ ଅଧିକ ହେବାଯୋଗେ। ବଡ଼ ଠାକୁର, ବଡ଼ ହରିଦାସ, ବଡ଼ ପୁଅ, ବଡ଼ରାଣୀ ଆଦି ଶବ୍ଦର ବଡ଼ପଣ ବୟସରେ ଜ୍ୟେଷ୍ଠ ହେବା ଯୋଗୁଁ। ଓଡ଼ିଶାର ଗଡ଼ଜାତ ଅମଳରେ, ବୋଧହୁଏ ଆଧୁନିକ ଯୁଗ ପର୍ଯ୍ୟନ୍ତ, ସ୍ୱର୍ଗତ ରାଜାଙ୍କ ନାମ ପୂର୍ବରେ ଅତିବଡ଼ ଶବ୍ଦ ବ୍ୟବହୃତ ହେଉଥିଲା। ବେଳେବେଳେ ସାଦା 'ବଡ଼' ମଧ୍ୟ ଚଳୁଥିଲା। ଶ୍ରୀ ମନ୍ଦିରର ଜୟବିଜୟ ଦ୍ୱାରର ପ୍ରତାପରୁଦ୍ର ଦେବଙ୍କ ୪ଅଙ୍କର ଅଭିଲେଖରେ ପରଲୋକଗତ ପୁରୁଷୋତ୍ତମ ଦେବଙ୍କୁ 'ବଡ଼ଠାକୁର' ବୋଲି ଅଭିହିତ କରାଯାଇଛି (ବିଦ୍ୟମାନ ରାଜା ଚଳନ୍ତିଠାକୁର ହେବାରୁ)। ଚୈତନ୍ୟ କେଉଁ ଅର୍ଥରେ ଜଗନ୍ନାଥ ଦାସଙ୍କୁ ଅତିବଡ଼ ବୋଲି କହିଥିଲେ ତାହା ଅନୁମାନ କରାଯାଇପାରେ। ଜଣାଯାଏ ଯେ ତାଙ୍କ ସମୟରେ ଚୈତନ୍ୟଙ୍କ ପରିଚିତ ବୈଷ୍ଣବ ସମାଜରେ ଜଗନ୍ନାଥ ଦାସ ନାମଧାରୀ ଅନେକଗୁଡ଼ିଏ ବୈଷ୍ଣବ ଥିଲେ। ତନ୍ମଧ୍ୟରୁ ଜଣାଶୁଣା କେତେକ ଜଗନ୍ନାଥ ଦାସ ହେଲେ:-

(୧) ଚୈତନ୍ୟ ସଖା ଜଗନ୍ନାଥ ଦାସ, ଯାହାଙ୍କର ଚରିତ ଜଗନ୍ନାଥାନୁସାରେ ରହିଛି।

(୨) ପୂର୍ବୋକ୍ତ ଜଗନ୍ନାଥ ଦାସଙ୍କର ପ୍ରସିଦ୍ଧ ଷୋଳଜଣ ଶିଷ୍ୟ ମଧ୍ୟରେ ପରିଗଣିତ ଜଣେ ଜଗନ୍ନାଥ ଦାସ ଯେ ନିତ୍ୟବୈକୁଣ୍ଠରେ ପ୍ରେମାନନ୍ଦୀ ନାମକ ସଖୀଥିବା କଥା ଜଗନ୍ନାଥାମୃତ (୧୩ ଅଧ୍ୟାୟ) କହେ:-

ଶିଷ୍ୟ ଯେ ଜଗନ୍ନାଥ ଦାସ। ସେହି ପାଇଲେ ପ୍ରେମରସ ॥
ପ୍ରେମାନନ୍ଦ ନିତ୍ୟବେହାରୀ। ସେ ଆସି ମର୍ତ୍ତେ ଅବତରି ॥

(୩) ଚୈତନ୍ୟଙ୍କର ଏକାନ୍ତ ଭକ୍ତ ହରିଦାସ ଠାକୁରଙ୍କର ଜନୈକ ଶିଷ୍ୟଥିଲେ ଜଗନ୍ନାଥ ଦାସ। ସେ ହେଲେ ପୁରୀର ସିଦ୍ଧ ବକୁଳ ମଠର ପ୍ରଥମ ମହନ୍ତ। ତେଣୁ ସେ ସିଦ୍ଧ ଜଗନ୍ନାଥ ନାମରେ ମଧ ପରିଚିତ ଥିଲେ।

(୪) ଓଡ଼ିଆ ଭାଗବତକାର ଜଗନ୍ନାଥ ଦାସ, ଯେ କି ରାଜା ପ୍ରତାପରୁଦ୍ରଙ୍କ ସମୟର ବୋଲି ରାମଦାସ ଜଣାଇଛନ୍ତି। ସେ ଚୈତନ୍ୟଙ୍କ ପରିଚିତ ଥିବା ନଥିବା କଥା ଜଣାଯାଇ ନାହିଁ। କିନ୍ତୁ, ସେ ଚୈତନ୍ୟଙ୍କ ସମୟରେ ପୁରୀରେ ଥିଲେ।

(୫) ଚୈତନ୍ୟଙ୍କ ଅନ୍ତରଙ୍ଗ ଗଦାଧର ପଣ୍ଡିତଙ୍କ ଜନୈକ ଶିଷ୍ୟଥିଲେ ଜଗନ୍ନାଥ ଦାସ। ସେ କାଠକଟାଳି ଥିଲେ।

(୬) ଚୈତନ୍ୟଙ୍କ ନବଦ୍ୱୀପର ସଙ୍ଗୀ ଜଗନ୍ନାଥ ଦାସ ଯେ ପରେ ନିତ୍ୟାନନ୍ଦଙ୍କ ଅନୁଗାମୀ ହେଲେ। ଏହାଙ୍କୁ ହିଁ 'ଗାଲିମ ଜଗନ୍ନାଥ ଦାସ' କୁହା ଯାଉଥାଇ ପାରେ, ଅଥବା ଗାଲିମ୍ ଆଉ ଜଣେ ଜଗନ୍ନାଥ ଦାସ।

ଚୈତନ୍ୟ ଭାଗବତ ଓ ଚୈତନ୍ୟ ଚରିତାମୃତରେ ବର୍ଣ୍ଣିତ ବହୁ ଉପାଖ୍ୟାନରୁ ସ୍ପଷ୍ଟ ଜଣାଯାଏ ଯେ ଚୈତନ୍ୟ ଇଘୁ ପରିହାସପ୍ରିୟ. ଲୋକ ଥିଲେ। ଚୈତନ୍ୟ ମୁରାରି ପଣ୍ଡିତଙ୍କ ପୁଅ ମକରଧ୍ୱଜକୁ ସ୍ନେହବଶତଃ ତାହାର ବାଲ୍ୟାବସ୍ଥାରେ ହିଁ 'ଗୋପାଳଗୁରୁ' ପଦ ଦେଇଥିଲେ କାରଣ ମକରଧ୍ୱଜ ଝାଡ଼ା ବସିଲାବେଳେ ସୁଦ୍ଧା 'ଗୋପାଳ' ନାମ ଧରିବାରୁ ଯେତେବେଳେ ବୈଷ୍ଣବମାନେ ଅଶୌଚରେ ନାମ ଧରିବାକୁ ମନା କଲେ ସେ କହିଥିଲା 'ନାମ ପରା ସବୁ ଅଶୌଚକୁ ଦୂର କରେ ?''। ଚୈତନ୍ୟଙ୍କ ଜଣେ ଅନୁଗାମୀଙ୍କ ନାମ ଥିଲା ପୁରନ୍ଦର ଆଚାର୍ଯ୍ୟ। ତାହାଙ୍କୁ ଚୈତନ୍ୟ ପରିହାସରେ 'ବାପା' ବୋଲି ଡାକୁଥିଲେ। କାରଣ, ଚୈତନ୍ୟଙ୍କ ପିତାଙ୍କ ଉପାଧି ଥିଲା ପୁରନ୍ଦର। ଚୈତନ୍ୟଙ୍କ ଜଣେ ଭକ୍ତଥିଲେ ଗୋପୀନାଥ ସିଂହ। ଏହାଙ୍କ ସାଙ୍ଗିଆ ସିଂହ ହେଲେହେଁ ଏ ଶାନ୍ତ ସ୍ୱଭାବର ଥିବାରୁ ଚୈତନ୍ୟ ଏହାଙ୍କୁ ଅକ୍ରୁର ସିଂହ ବୋଲି ଡାକୁଥିଲେ ପରିହାସ କରି। ଏହିପରି ବହୁ ଉଦାହରଣ ଦିଆଯାଇପାରେ। ଚୈତନ୍ୟଙ୍କ ସଖା ଜଗନ୍ନାଥ ଦାସଙ୍କ ବପୁ ପୃଥୁଳ ଥିବା କଥା ଜଗନ୍ନାଥାମୃତରେ ବର୍ଣ୍ଣିତ ଅଛି। ସାତ ଲହଡ଼ୀ ମଠରେ ଥିବା ତାଙ୍କର ମୂର୍ତ୍ତିରେ ମଧ ସେ ଘେଡ଼ା ଓ ମୋଟା। ବୋଧହୁଏ, ଶରୀରର ଆକୃତି ଦୃଷ୍ଟିରୁ ଏହି ଜଗନ୍ନାଥ ଦାସ ଅନ୍ୟାନ୍ୟ ଜଗନ୍ନାଥ ଦାସଙ୍କ ତୁଳନାରେ 'ବଡ଼' ଥିଲେ। ପୁଣି, ସେ ମଧ ଥିଲେ ଅନ୍ୟାନ୍ୟ ଜଗନ୍ନାଥ ଦାସଙ୍କ ଅପେକ୍ଷା ବୟୋଜ୍ୟେଷ୍ଠ, ତେଣୁ 'ବଡ଼'। ଦୁଇବଡ଼ ମିଶିବାରୁ ସେ ହେଲେ, ଅତିବଡ଼। ପ୍ରାଚୀନ ଶିଷ୍ଟାଚାର ଅନୁଯାୟୀ ଲୋକେ ପିତା ଆଦି ଗୁରୁଜନଙ୍କ ନାମ ଧରି କାହାକୁ ଡାକୁନଥିଲେ। ଚୈତନ୍ୟଙ୍କ ପିତାଙ୍କ ନାମଥିଲା ଜଗନ୍ନାଥ। ତେଣୁ, ଚୈତନ୍ୟ ଜଗନ୍ନାଥ ଦାସଙ୍କୁ ଜଗନ୍ନାଥ ନାମରେ ନ ଡାକିବା କଥା। ଚୈତନ୍ୟଙ୍କ ପିତାଙ୍କ ମୃତ୍ୟୁ ହୋଇସାରିଥିଲା,

ତେଣୁ ତାଙ୍କ ପିତା ବଡ଼ ହୋଇ ସାରିଥିଲେ। ପିତୃପୁରୁଷଙ୍କୁ ବଡ଼ବଡ଼ିଆ କହିବା ପ୍ରଥା ଓଡ଼ିଶାରେ ଚଳେ, ବିଶେଷତଃ କାର୍ତ୍ତିକ ଅମାବାସ୍ୟାରେ। ସବୁବଡ଼ ଜଗନ୍ନାଥ ଦାସଙ୍କ ଠାରେ ସନ୍ନିଶ୍ରିତ ହୋଇଯିବାରୁ ଚୈତନ୍ୟ ତାଙ୍କୁ 'ଅତିବଡ଼' ବୋଲି ସମ୍ବୋଧନ କରିଥିବା ସମ୍ଭବ। ଦିବାକର ଦାସ ଏହି ପଦର ତାତ୍ପର୍ଯ୍ୟ ବୁଝି ନ ପାରି ତାହା ଜଗନ୍ନାଥ ଦାସଙ୍କୁ ଗୌରବ ଦେବା ଅର୍ଥରେ ଚୈତନ୍ୟ କହିଥିବେ ବୋଲି ଭାବି ଏହି ପଦ ନେଇ ଗୌଡ଼ିଆ ଓ ଓଡ଼ିଆ ବୈଷ୍ଣବମାନଙ୍କ ମଧ୍ୟରେ ବିବାଦ ଘଟିଥିବା କଥା କଳ୍ପନା କରିଛନ୍ତି ବୋଲି ମୋର ଅନୁମାନ ହୁଏ।

ଅତିବଡ଼ଙ୍କ ସମୟ

ଜଗନ୍ନାଥାମୃତ ଅନୁସାରେ ଅତିବଡ଼ଙ୍କ ବୟସ ୧୮ ବର୍ଷ ବେଳେ ତାଙ୍କ ସହିତ ଚୈତନ୍ୟଙ୍କ ଭେଟ ହେଲା ଓ ତାହାର ପରବର୍ତ୍ତୀ ୬ ବର୍ଷ ଅତିବଡ଼ ଚୈତନ୍ୟଙ୍କ ଅଙ୍ଗସେବକ ଭାବରେ ରହିଲେ। ଚୈତନ୍ୟଙ୍କ ଦେହାନ୍ତ (ଖ୍ରୀ. ୧୫୩୩)ପୂର୍ବରୁ ୧୨ବର୍ଷ ଧରି ଗମ୍ଭୀରବାସ କରିଥିଲେ। ତେଣୁ ଗମ୍ଭୀରାବାସର ଆରମ୍ଭ ଖ୍ରୀ.୧୫୨୧। ଜଗନ୍ନାଥ ଦାସଙ୍କ ସହିତ ଚୈତନ୍ୟଙ୍କ ଭେଟ ପୂର୍ବରୁ ଚୈତନ୍ୟ ନାନା ଦେଶ ପର୍ଯ୍ୟଟନ କରି ଫେରି ସାରିଥିବା କଥା ଜଗନ୍ନାଥାମୃତ କହେ। ତେଣୁ ଖ୍ରୀ. ୧୫୧୫ରେ ଜଗନ୍ନାଥଙ୍କ ସହିତ ଚୈତନ୍ୟଙ୍କ ଭେଟ ହେଲା ଓ ସେତେବେଳକୁ ଜଗନ୍ନାଥ ଦାସଙ୍କ ବୟସ ୧୮ବର୍ଷ ହୋଇଥିବାରୁ ତାଙ୍କ ଜନ୍ମ ଖ୍ରୀ.୧୪୯୭ ନିକଟରେ ବୋଲି ସ୍ଥିର କରାଯାଇପାରେ। ଭାଗବତକାର ତାଙ୍କଠାରୁ ୫/୭ବର୍ଷ କନିଷ୍ଠ ହୋଇଥାଇ ପାରନ୍ତି। ଅତିବଡ଼ଙ୍କ ମୃତ୍ୟୁ ୬୦ ବର୍ଷ ବୟସରେ ହୋଇଥିବା କଥା ଜଗନ୍ନାଥାମୃତ କହେ।

ଯୋଗୀ ଜଗନ୍ନାଥ ଦାସ

'ତୁଳାଭିଣା'ର ରଚୟିତା ଜଗନ୍ନାଥ ଦାସ ପୂର୍ବାଲୋଚିତ ଜଗନ୍ନାଥ ଦାସମାନଙ୍କ ଠାରୁ ଭିନ୍ନ ବ୍ୟକ୍ତି। ପୂର୍ବାଲୋଚିତ ଜଗନ୍ନାଥ ଦାସମାନେ ଭକ୍ତିମାର୍ଗୀ, କିନ୍ତୁ ତୁଳାଭିଣାର ରଚୟିତା ଜଣେ ଯୋଗମାର୍ଗୀ, ଶୂନ୍ୟବାଦୀ। ସାଂପ୍ରତିକ ଯୁଗରେ ସବୁ କିସମର ରାଜନୀତିକ ବିଚାରଧାରାର ଲୋକେ ଆପଣାକୁ ସମାଜବାଦୀ ବୋଲାଇଲା ପରି ବୈଷ୍ଣବଧର୍ମ-ପ୍ରଧାନ ମଧ୍ୟଯୁଗରେ ଯୋଗମାର୍ଗୀମାନେ ମଧ୍ୟ ବୈଷ୍ଣବ ବୋଲାଉଥିଲେ। କିନ୍ତୁ ଭାଗବତର ବୈଷ୍ଣବ ମତ ଓ ଅତିବଡ଼ଙ୍କ ବୈଷ୍ଣବ ମତ ଓ ତୁଳାଭିଣାର ବୈଷ୍ଣବ ମତ ମଧ୍ୟରେ ବୈସାଦୃଶ୍ୟ ପ୍ରଚୁର। ତୁଳାଭିଣାକାର ତୀର୍ଥ, ବ୍ରତ, ଉପାସନା, ମାଳା, ତିଳକ, ଶୌଚ, ସଦାଚାର, ଏକାଦଶୀ ଆଦି ଉପବାସ କିଛି ମାନୁ ନଥିଲେ (ତୁଳାଭିଣାର ୬ଷ୍ଠ ଅଧ୍ୟାୟ ଦ୍ରଷ୍ଟବ୍ୟ)। ତାହାଙ୍କ ମତରେ ଜୀବର ଅନୁଭବଗମ୍ୟ ଓ ଅନୁଭବାତୀତ ସକଳ କଥାର ସତ୍ତା 'ପରମ', ଅର୍ଥାତ୍ ଶୂନ୍ୟବ୍ରହ୍ମ। ଜୀବପାଇଁ ଏକମାତ୍ର ସାଧ୍ୟ ଏହି ଶୂନ୍ୟବ୍ରହ୍ମ। ଏହାଙ୍କ ସାଧନା ବାହ୍ୟ ଆଚାର-କ୍ରିୟା ଆଦି ଦ୍ୱାରା ନ ହୋଇ ଦେହ ଭିତରର ଧ୍ୟାନ, ଧାରଣା, ସମାଧି ଆଦି ଦ୍ୱାରା ହୁଏ। ବହିର୍ଜଗତ ଅନ୍ତର୍ଜଗତର ପ୍ରତିଫଳନ ମାତ୍ର ହେବା ଯୋଗେ ବ୍ରହ୍ମାଣ୍ଡକୁ ପିଣ୍ଡ ନ୍ୟା-

ଶରୀର ଭିତରେ ଉପଲବ୍ଧି କରିହେବ। ଉପଲବ୍ଧି ବ୍ୟକ୍ତିଗତ ହେବା ହେତୁ ଏମାନେ ଗୁରୁଙ୍କୁ ମଧ୍ୟ ଗୁରୁତ୍ୱ ଦେଉ ନଥିଲେ।

ତୁଳାଭିଣାକାର ମଧ ବ୍ରାହ୍ମଣ : "ବ୍ରାହ୍ମଣ ଜଗନ୍ନାଥ ଭଣେ" (ତୁଳାଭିଣା, ୯) ଏହାଙ୍କ ସମୟ ଅତିବଡ଼ ଆଦିଙ୍କ ସମୟର ବିଶେଷ ପରବର୍ତ୍ତୀ। ତୁଳାଭିଣାକାର ଜଣାଇଛନ୍ତି ଯେ ସେ ଏହି ଗ୍ରନ୍ଥକୁ ଶ୍ରୀମନ୍ଦିରର ମୁକତମଣ୍ଡପ (ଆଧୁନିକ ମୁକ୍ତିମଣ୍ଡପ) ନିକଟରେ ଭୋଜରାଜାଙ୍କୁ ଓ ବ୍ରାହ୍ମଣମାନଙ୍କୁ ଶୁଣାଇଥିଲେ। ଏହା ଶୁଣି ଭୋଜରାଜ ଦାସଙ୍କ ଶିଷ୍ୟ ହେଲେ ବୋଲି ତୁଳାଭିଣାରେ ବର୍ଣ୍ଣିତ ଅଛି :-

(୧) "ଜଗନ୍ନାଥ ଦାସ କହିଲା, ସକଳ ବ୍ରାହ୍ମଣମାନେ ଶୁଣିଲେ। ମୁକତମଣ୍ଡପେ ଥାଇ ଭୋଜରାଜ ଶୁଣିଲେ। ଦାସଙ୍କୁ ବହୁତ ପ୍ରଶଂସା କଲେ।"

(୨) "ଭୋଜରାଜନ ତୋଷ ହେଲେ। ଦାସଙ୍କୁ ଶିକ୍ଷାଗୁରୁ କଲେ"। ବ୍ରାହ୍ମଣମାନେ କଲେ ମାନ୍ୟ। ସକଳେ କହେ ଧନ୍ୟ ଧନ୍ୟ"

(୩) "ଭୋଜରାଜ ହିଁ ତୋଷ ହେଲେ। ଦାସଙ୍କୁ ଶିକ୍ଷାଗୁରୁ କଲେ॥"

ବର୍ଣ୍ଣିତ ଭୋଜରାଜ ଖୋରଧାର ଭୋଇବଂଶର କୌଣସି ରାଜାହିଁ ହେବେ। ମାଦଳା ପାଞ୍ଜି ଆଦି ପ୍ରାଚୀନ ପୁସ୍ତକରେ ଭୋଇ ରାଜାମାନଙ୍କୁ ଯଦୁବଂଶ ବୋଲି କୁହାଯାଇଛି। ପୌରାଣିକ ଭୋଜବଂଶ ଯଦୁବଂଶର ଅନ୍ତର୍ଗତ। ଯଦୁବଂଶରେ ଭୋଜ ନାମକ ଜଣେ ରାଜା ଥିଲେ, ଯାହାଙ୍କର ବଂଶଧରମାନେ ଭୋଜବଂଶୀ ହେଲେ। ଅଷ୍ଟାଦଶ ଶତାବ୍ଦୀର ମଧ ଭାଗର କବି ମହେଶ୍ୱର ଦାସ 'ସଭାବିନୋଦ'ରେ ଓଡ଼ିଆ (ଅର୍ଥାତ୍ ପୁରୀ ସମେତ ଖୋରଧା) ରାଜ୍ୟରେ ଭୋଜବଂଶ ରାଜତ୍ୱ କରିବା କଥା ଲେଖିଛନ୍ତି:-

ଏଣୁ କଳି କଲେ ଯେଣୁ କଳିକାଳ ହୋଇ।
ଭୋଜବଂଶ ଓଡ଼ିଶାରେ ରାଜା ହେବେ ଯାଇ॥

ତୁଳାଭିଣାର ଭୋଜରାଜା ନିଶ୍ଚୟ ଖୋରଧାର କୌଣସି ଭୋଇରାଜା (ଭୋଇ ଶବ୍ଦ ଭୋଜରୁ ଆସିଥିବା କଳ୍ପନା ଏଥିରେ ରହିଛି)। ଷୋଡ଼ଶ ଶତାବ୍ଦୀର ଶେଷପାଦରେ ଭୋଇ ରାମଚନ୍ଦ୍ରଦେବ ଖୋରଧା ରାଜ୍ୟ ପ୍ରତିଷ୍ଠା କଲେ। ତେଣୁ ତୁଳାଭିଣାକାର ଏହାର ପରବର୍ତ୍ତୀ କାଳର ଲୋକ।

'ବ୍ରହ୍ମାଣ୍ଡ ଭୂଗୋଳ', 'କେଶବ କୋଇଲି ଅର୍ଥ' (ଏହା ଆଜିକାଲି ଅର୍ଥକୋଇଲି ବୋଲାଉଛି) ଆଦି ଅନେକ ଯୋଗମାର୍ଗୀ ରଚନାର ସ୍ରଷ୍ଟା ଜଗନ୍ନାଥ ଦାସ ବୋଲି ସେଥିରେ ଲେଖାଅଛି। ବ୍ରହ୍ମାଣ୍ଡ ଭୂଗୋଳରେ ଓଡ଼ିଆ ଭାଗବତର ଅନେକ ପଦ, କେଶବ କୋଇଲିର କିଛି ପଦ ଓ ଗୋପବୋଲି (ଗୋପୀଭାଷା)ର କେତେକ ପଦ ଉଦ୍ଧାର କରି ତାହାର ଯୋଗମାର୍ଗୀ 'ଅର୍ଥ' ବ୍ୟକ୍ତ ହୋଇଛି। ମଧ୍ୟଯୁଗରେ ଭକ୍ତିଧର୍ମର ପ୍ରସାରକୁ ରୋକିବା ପାଇଁ ଜନପ୍ରିୟ ଭକ୍ତି ଗ୍ରନ୍ଥଗୁଡ଼ିକରେ ଯୋଗ ହିଁ ବ୍ୟକ୍ତ ହୋଇଛି ବୋଲି କିଂଭୂତକିମାକାର ବ୍ୟାଖ୍ୟା କରି ଜନପ୍ରିୟ ଭକ୍ତକବିମାନଙ୍କ ନାମରେ ଜାଲ ଭଣିତି ଦେଇ ଗ୍ରନ୍ଥ ସୃଷ୍ଟି କରିବା ଏକ ସାଧାରଣ ବ୍ୟାପାର ଥିଲା। ଅଧୁନା ଓଡ଼ିଶୀବୈଷ୍ଣବ

ନାମରେ ଆଖ୍ୟାତ ଯୋଗାନ୍ତ ପନ୍ଥାର ବ୍ରହ୍ମଜ୍ଞାନୀମାନେ ଏହା ଖୁବ୍ କରୁଥିଲେ। ଏହି କାରଣରୁ 'ଜଗନ୍ନାଥ ଦାସ' ଭଣିତି ଥାଇ ପ୍ରଣୀତ ବ୍ରହ୍ମଜ୍ଞାନ ପ୍ରଖ୍ୟାପକ ରଚନାମାନ ତୁଳାଭିଣାକାରଙ୍କର ନ ହୋଇ ତାଙ୍କଠାରୁ ଅର୍ବାଚୀନ ଲୋକଙ୍କର ହେବା ମଧ୍ୟ ସମ୍ଭବ। ଏସବୁ ଭାଗବତକାରଙ୍କ ନାମକୁ ନେଇଛନ୍ତି ସମାଜରେ ଗ୍ରାହ୍ୟ ହେବା ଆଶାରେ।

ତୁଳାଭିଣାକାର ଦାବି କରିଛନ୍ତି ଯେ ତୁଳାଭିଣା ଶୁଣି ବ୍ରାହ୍ମଣମାନେ ପ୍ରଶଂସାକଲେ, ଲୋକେ ଧନ୍ୟଧନ୍ୟ କଲେ ଓ ଭୋଜରାଜା ମୁଗ୍ଧ ହୋଇ ଦାସଙ୍କର ଶିଷ୍ୟ ପାଲଟିଲେ। ଏତାଦୃଶ ଆତ୍ମପ୍ରଶଂସା ଅତିବଡ଼ ବା ଭାଗବତକାରଙ୍କ ଲେଖନୀରୁ ଜାତ ହୋଇ ନ ପାରେ। ଆଉ ମଧ୍ୟ, ବୈଷ୍ଣବ ବିଚାର ସଂପର୍କରେ ଯୋଗୀ ଜଗନ୍ନାଥଙ୍କର ଭଲ ପରିଚିତି ନଥିଲା। ଉଦାହରଣ ଦେଇ କୁହାଯାଇପାରେ ଯେ, ତୁଳାଭିଣାର ୮ମ ଅଧ୍ୟାୟରେ ଭାଗବତୋକ୍ତ ନିମିରାଜା-ଅବଧୂତ ଆଖ୍ୟାନର ଗୂଢ଼ ତାତ୍ପର୍ଯ୍ୟ ବୁଝାଇବା ପ୍ରସଙ୍ଗରେ ତୁଳାଭିଣାକାର ଉପର୍ଯ୍ୟୁପରି ଚାରିଥର ଜଣାଇଛନ୍ତି ଯେ ତାହା ଭାଗବତର ଦ୍ୱାଦଶ ସ୍କନ୍ଧର ଚରିତ୍ର। ଭାଗବତର ଏକାଦଶ ସ୍କନ୍ଧର ଚରିତକୁ ଦ୍ୱାଦଶସ୍କନ୍ଧର ବୋଲି ଚିହ୍ନାଇବା ବ୍ୟକ୍ତି ଯେ ଭାଗବତକାର ବା ଅତିବଡ଼ ନୁହନ୍ତି ତାହା ସହଜରେ ଅନୁମାନ କରାଯାଇପାରେ।

## କେଶବ କୋଇଲି କଦର୍ଥକାର

କେଶବ କୋଇଲି ପରି ଗୋଟିଏ ସରଳ ସୁବୋଧ୍ୟ ସାହିତ୍ୟିକ କୃତି ମଧ୍ୟରେ ଅସଙ୍ଗତ ବ୍ରହ୍ମଜ୍ଞାନ ଲୁଚିରହିଛି ବୋଲି ବୁଝାଇବା ଉଦ୍ଦେଶ୍ୟରେ କେଶବ କୋଇଲି ଅର୍ଥ (ଅର୍ଥ କୋଇଲି) ଲେଖି ଯତ୍ପରୋନାସ୍ତି କଦର୍ଥ କରିଛନ୍ତି ଯେଉଁ ଜଗନ୍ନାଥ ଦାସ ସେ ତୁଳାଭିଣାକାର ହୋଇପାରନ୍ତି ବା ଅନ୍ୟକେହି ବ୍ରହ୍ମଜ୍ଞାନୀ ପ୍ରବଞ୍ଚକ ହୋଇପାରନ୍ତି। ଓଡ଼ିଆ ସାହିତ୍ୟର ଇତିହାସକାରମାନେ କଦର୍ଥକାର ଜଗନ୍ନାଥ ଦାସ ଭାଗବତକାରଙ୍କ ଠାରୁ ଭିନ୍ନ ନୁହନ୍ତି ବୋଲି କହୁଛନ୍ତି 'କେଶବ କୋଇଲି' ଚଉତିଶାଟି ଷୋଡ଼ଶ ଶତାବ୍ଦୀର ପ୍ରଥମ ପାଦ ବେଳକୁ ସୁପ୍ରଚାରିତ ହୋଇ ସାରିଥିଲା, ତେଣୁ ଭାଗବତକାର ତାହାର ବ୍ୟାଖ୍ୟା କଲେ, ବୋଲି ବିଚାରି କେଶବ କୋଇଲିର ପ୍ରଣେତା ମାର୍କଣ୍ଡ ଦାସ ଜଗନ୍ନାଥ ଦାସଙ୍କର ଅନ୍ତତଃ ଏକଶତ ବର୍ଷ ପୂର୍ବର ବ୍ୟକ୍ତି, ତେଣୁ ସାରଳାଦାସଙ୍କ ପୂର୍ବ ସମୟର, ବୋଲି ନିର୍ଣ୍ଣୟ ଦେଲେ।

ନାମଟି 'କେଶବ କୋଇଲି ଅର୍ଥ' ହେଲେ ହେଁ ସେଥିରେ କଦର୍ଥହିଁ ରହିଛି। ଗୋଟିଏ ସାହିତ୍ୟିକ ରଚନା ଭାବରେ କେଶବ କୋଇଲି ଯେଉଁ ଅନୁପମ ରୂପକଳ୍ପ ସୃଷ୍ଟି କରିଛି ତାହାର ଯଥାର୍ଥ ମୂଲ୍ୟାଙ୍କନ ଚର୍ଚ୍ଚା ଏ ଯାବତ୍ ହୋଇଛି ବୋଲି ମନେ ହେଉନାହିଁ। ସଦ୍ୟୋଜାତ କୃଷ୍ଣ ମଥୁରାରୁ ଗୋପକୁ ଅଣାଯାଇଥିଲେ, କୈଶୋରରେ ଉପନୀତ ହେବାପରେ ଶୁଣି ମଥୁରାକୁ ଫେରିଗଲେ। ଯେଉଁ, ପୁତ୍ରବତ୍ସଳା ଯଶୋଦା ଆପଣା ପୁତ୍ରଜ୍ଞାନରେ କୃଷ୍ଣଙ୍କ ଠାରେ ହୃଦୟର ସମସ୍ତ ସ୍ନେହ ଢାଳି ଦେଇଥିଲେ, ବାଳୁତ କୃଷ୍ଣଙ୍କ ସକଳ ଅଝଟ ଜଞ୍ଜାଳକୁ ପରମ ସୌଭାଗ୍ୟମଣି, ତାହାଙ୍କ ସର୍ବବିଧ ଦୁଷ୍ଟାମିକୁ ସୁଖ ପାଇ କୃଷ୍ଣଙ୍କ ଲାଳନପାଳନ ପ୍ରତି ନିରନ୍ତର ତତ୍ପର ରହିଆସିଥିଲେ

ସେହି ସନ୍ତାନରଙ୍କୁଣୀର ମନୋବ୍ୟଥା କେଶବ କୋଇଲି'ର ଆଧେୟ। ପ୍ରାଚୀନ ସାହିତ୍ୟରେ ବାତ୍ସଲ୍ୟ ଓ କରୁଣ ରସର ଶୋଚନୀୟ ଅଭାବକୁ ଦୂର କରୁଥିବା ଦୃଷ୍ଟିରୁ କେଶବ କୋଇଲିର ପ୍ରାଧାନ୍ୟକୁ ଅତିରଞ୍ଜନ କରି ହେବନାହିଁ। ସମାଲୋଚକମାନେ ରଚନାଟିର ଏହି ବୈଶିଷ୍ଟ୍ୟ ପ୍ରତି ସମୁଚିତ ଦୃଷ୍ଟି ଦେଇଛନ୍ତି। କିନ୍ତୁ ସେମାନେ ଦୃଷ୍ଟି ଦେଇପାରି ନାହାନ୍ତି କବି କୋଇଲି ଭିତରେ ଫୁଟାଉଥିବା ରୂପକଳ୍ପ ପ୍ରତି। କୋଇଲି ତା'ଅଣ୍ଡାକୁ କାଉବସାରେ ଲୁଚାଇ ଥୋଇଦିଏ ଓ କାଉର ଅଣ୍ଡାକୁ ନେଇଯାଇ ନଷ୍ଟ କରିଦିଏ। ବୋକୀ ମାଈକାଉ କୋଇଲିର ଅଣ୍ଡାକୁ ନିଜର ଅଣ୍ଡା ବୋଲି ଭାବି ଫୁଟାଏ, ଲାଳନପାଳନ କରେ। କୋଇଲି ଛୁଆ ବଡ଼ ହୋଇ ଉଡ଼ି ଶିଖିବା ପରେ ଉଡ଼ି ପଳାଏ କୋଇଲିଙ୍କ ମେଳକୁ। ମାଈ କାଉ ସେତେବେଳେ ଯାଇ ଜାଣେ ଯେ ସେ ମୂଳରୁ ହିଁ ପ୍ରତାରିତ ହୋଇଛି। ତାହାର ସବୁ ସ୍ନେହମାୟାମମତା ଶୁଦ୍ଧ ଅକପଟ ଥିବା ସତ୍ତ୍ୱେ ବୃଥା ହୋଇଗଲା। ଭାଗ୍ୟର କି ବିଡ଼ମ୍ବନା! ଯଶୋଦାଙ୍କ ଦଶା ଏହି ମାଈକାଉ ପରି। ବସୁଦେବ ତାଙ୍କ ଶିଶୁପୁତ୍ରକୁ ଥୋଇ ଯଶୋଦାଙ୍କ ଗର୍ଭଜାତ କନ୍ୟାକୁ ଲୁଚାଇ ନେଇଗଲେ ଓ କଂସ ହାତରେ ମରାଇ ଦେଲେ। କୃଷ୍ଣ ଓ କୋଇଲି ଉଭୟେ କୃଷ୍ଣବର୍ଣ୍ଣ ଓ ପରଭୃତ। ଯଶୋଦା କୋଇଲି ଭିତରେ କୃଷ୍ଣଙ୍କୁ ଦେଖିଲେ, କୃଷ୍ଣଚରିତ୍ରର ବିମ୍ବ ଦେଖିଲେ। କୋଇଲି ଛୁଆ କୁଆ ବସାରେ ବଢ଼ିବା ପରି କୃଷ୍ଣ ଯଶୋଦାଙ୍କ ଘରେ ବଢ଼ିଲେ ଓ ବଡ଼ ହୋଇ ନିଜର ଲୋକଙ୍କ ମେଳକୁ ପଳାଇଲେ।

ଏତାଦୃଶ କମନୀୟ ଭାବଚିତ୍ରକୁ 'କେଶବ କୋଇଲି ଅର୍ଥ' ନିର୍ମମ ରଙ୍ଗ ବୋଲି କେତେଦୂର କଦର୍ଯ୍ୟ କରୁଛି ତାହା ବର୍ଣ୍ଣନା କରିବାକୁ ବି ଲଜ୍ଜା ହେଉଛି। ବିଛୁଆତି ଦୁଇ ପତ୍ରରୁ କୁଣ୍ଢେଇ ହେଲାପରି କେଶବ କୋଇଲିର ପ୍ରଥମ ପଦର ବ୍ୟାଖ୍ୟା ଜଗନ୍ନାଥ ଦାସ କିପରି ଅସଙ୍ଗତ ଭାବରେ କରିଛନ୍ତି ଦେଖାଯାଉ। ଏହା ଭାତ ହାଣ୍ଡିରୁ ଗୋଟିଏ, ଜଗନ୍ନାଥ ଦାସଙ୍କ ବ୍ୟାଖ୍ୟାନ ଢ଼ଙ୍ଗ ଆମୂଳଚୂଳ ଏହିପରି। ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ''କୋଇଲି କେଶବ ଯେ ମଥୁରାକୁ ଗଲା, କାହାବୋଲେ ଗଲା ପୁତ୍ର ବାହୁଡ଼ି ନଇଲା''ର ଅର୍ଥ ବୁଝାଇ କହୁଛନ୍ତି :-

''କୋଇଲି ବୋଲିଣ ପାର୍ଥ ଜୀବକୁଟି କହି।
ସେହି ଜୀବ ମୁହିଁ ଜାଣ ସର୍ବତ୍ର ଅଛଇ ॥
ଆପେ ଆସିଥିଲା ଜୀବ ଆପେ ଚଳିଗଲା।
ସେହି ପୁତ୍ର ଗୋଟି ଆଉ ବାହୁଡ଼ି ନଇଲା ॥
ଏହି ପୁତ୍ର ଗୋଟି ଯହୁଁ ବାହୁଡ଼ି ନଇଲା।
ମଥୁରା ସ୍ୱରୂପ ପିଣ୍ଡ ପଡ଼ିଣ ରହିଲା ॥

ସାହିତ୍ୟିକ ଅର୍ଥକୁ ହତ୍ୟା କରି ଏଥିରେ ମନ ମାଫିକେ ଅର୍ଥ କରାହୋଇଛି। ମୂଳରେ କେଶବ ମଥୁରାକୁ ଯିବା କଥା ଲେଖାଅଛି। ଏଠାରେ କୋଇଲି ଯିବା ପରି ଅର୍ଥ କରାଯାଇଛି। ପୁଣି ମୂଳରେ କେଶବ ମଥୁରାରୁ ନ ଫେରିବା କଥା ଲେଖାଥିଲା।

ଏଠି ଅର୍ଥ କରାଗଲା କେଶବ ମଥୁରାକୁ ଫେରିଲେ ନାହିଁ ବୋଲି। ଏପରି ଅଦ୍ଭୁତ ବ୍ୟାଖ୍ୟା ପଦ୍ଧତି ଓଡ଼ିଶାର ଶିକ୍ଷାନୁଷ୍ଠାନରେ ମଧ୍ୟ ଉଚ୍ଛ୍ୱସିତ ପ୍ରଶଂସା ପାଉଛି। କିମାଶ୍ଚର୍ଯ୍ୟଂ ଅତଃପର।

ସେହି ଜଗନ୍ନାଥ ଦାସ 'ବ୍ରହ୍ମାଣ୍ଡ ଭୂଗୋଳ'ର ୯୮ ଅଧ୍ୟାୟରେ କେଶବ କୋଇଲିର ପ୍ରଥମ ପଦକୁ ଆହୁରି ଅଧିକ ଅବୋଧ୍ୟ କରି ବୁଝାଇଛନ୍ତି :-

କୋଇଲି ଜୀବଆତ୍ମା କହି। କେଶବ ପରମ ଅଟଇ॥
ଗୋପ ହୃଦୟ ବୋଲି ଜାଣ। ମଥୁରା ମସ୍ତକ ପ୍ରମାଣ॥
ଗୋପରୁ ଗଲେ ନରହରି। ଆସିତ ଭାର୍ଜନ କାହାରି॥
ପଞ୍ଚାସ ପ୍ରକୃତି ଯେ ଜାଣ। ଛଡ଼ ଅଇରି ଆଦି ପୁଣ॥
କାମ କ୍ରୋଧାଦି ହିଂସା ଯେତେ। କୁଟୀଳ କପଟ ସହିତେ॥
ଏମାନେ ଗୋପୀଗଣ କହି। ଶୁଣ ଅର୍ଜୁନ ମନ ଦେଇ॥
କେଶବ ମଥୁରାକୁ ଗଲେ। ମାତା ଯେ ବିଳାପ କରିଲେ॥
ସେ ମାତା ଅର୍ଦ୍ଧମାତ୍ରା କହି। ପିତା ଯେ ସୁବୁଧି ଅଟଇ॥

ଏହି ଜଗନ୍ନାଥ ଦାସ ଅର୍ଥ ଲଗାଇବା ବିଷୟରେ ନିରଙ୍କୁଶ, ଏଠି ଗୋଟିଏ ପ୍ରକାର ଅର୍ଥ କଲେ ତ ଅନ୍ୟତ୍ର ସେହି ଏକା ପଦକୁ ଅଲଗା ଅର୍ଥ। 'ବ୍ରହ୍ମାଣ୍ଡ ଭୂଗୋଳ' ୧୧୭ ଅଧ୍ୟାୟରେ 'ଗଲାପୁତ୍ର ବାହୁଡ଼ି ନଇଲା।· ଗହନ ତ ବୃନ୍ଦାବନ ଶୋଭା ନ ପାଇଲା'' ର ଅର୍ଥ କୃଷ୍ଣଙ୍କ ତୁଣ୍ଡରେ ବ୍ୟକ୍ତ ହୋଇଛି :-

ପୁତ୍ରଟି ପବନ ଅଟଇ। ପରମ ପବନଟି ହୋଇ॥
ପବନ ଦେହୁ ଛାଡ଼ିଗଲା। କ୍ଷଣକେ ମଣ୍ଡଳେ ରହିଲା॥
ପାଳଟି ନ ରହିଲା ଯେଣୁ। ଏ ଦେହ ଶୂନ୍ୟ ହେଲା ତେଣୁ॥
ଏ ଦେହେ ଶିର ବୃନ୍ଦାବନ। ଜୀବ ସାକ୍ଷାତେ ବିନ୍ଦୁ ପୁଣ॥
ନାଦ ବୁନ୍ଦୁ ଯେ ଦୁହେଁ ମିଶି। ମଥୁରା ଗଲେ ରଥେ ବସି॥
ମଥୁରା ବୋଲି ଯାହା କହି। ମୋହାଶୂନ୍ୟଟି ଅଟେ ସେହି॥

ଗୋଟିଏ ସୁବୋଧ୍ୟ ବିଷୟକୁ ଏପରି ଦୁର୍ବୋଧ୍ୟ କରିବା ସ୍ୱଭାବ ଭାଗବତକାରଙ୍କର ଥିଲେ ସେ ଜମାରୁ ଭାଗବତର ପ୍ରାକୃତ ରୂପ ପ୍ରସ୍ତୁତ କରିବା ପ୍ରତି ମନୋଯୋଗୀ ହୁଅନ୍ତେ ନାହିଁ।

**ଅନ୍ୟାନ୍ୟ ଜଗନ୍ନାଥ ଦାସ**

୧. ପ୍ରସିଦ୍ଧ କବି ଦ୍ୱାରିକା ଦାସ ନିଜକୁ ଦ୍ୱାରିକା ଜଗନ୍ନାଥ ଦାସ ବୋଲାଇ ଭାଗବତରେ ଗୋଟିଏ ଅଧିକ ସ୍କନ୍ଧ ଯୋଗ କରି ସେଥିରେ ଯୋଗମାର୍ଗ ଚର୍ଚ୍ଚା କରିଛନ୍ତି। ଭାଗବତର ଏହି ତ୍ରୟୋଦଶ ସ୍କନ୍ଧର ପ୍ରକୃତ ପ୍ରଣେତା ଦ୍ୱାରିକା ଦାସ (ଜନ୍ମ ଖ୍ରୀ.୧୬୫୮)।
୨. ସଂସ୍କୃତ ଭାଗବତର ଅଧ୍ୟାୟ ସଂଖ୍ୟା ୩୩୫। ଜଗନ୍ନାଥ ଦାସ ଅଧ୍ୟାୟ ସଂଖ୍ୟା ୭ ବଢ଼ାଇ ଥିବାରୁ ଓଡ଼ିଆ ଭାଗବତର ଅଧ୍ୟାୟ ସଂଖ୍ୟା ୩୪୨ ହେଲା।

ସୌର ବର୍ଷର ଦିନ ସଂଖ୍ୟା ୩୬୫। ଗୋଟିଏ ନିର୍ଦ୍ଦିଷ୍ଟଦିନ ଭାଗବତ ପାରାୟଣ ଆରମ୍ଭ କରି ଦିନକୁ ଗୋଟିଏ ଗୋଟିଏ ଅଧ୍ୟାୟ ସାରି ସେହି ନିର୍ଦ୍ଦିଷ୍ଟ ଦିନ ପାରାୟଣ ସଂପୂର୍ଣ୍ଣ କରିବା ଯୋଜନା କଲେ ଭାଗବତରେ ମୋଟ ୩୬୬ ଅଧ୍ୟାୟ ରହିବା ଆବଶ୍ୟକ। 'ଗୁପ୍ତ ଭାଗବତ' ନାମକ ୨୪ ଅଧ୍ୟାୟ ବିଶିଷ୍ଟ ଏକ ରଚନା ଏହି ଲକ୍ଷ୍ୟରେ ରଚିତ ହୋଇଛି। ଗୁପ୍ତ ଭାଗବତରେ ଲେଖାଅଛି :-

(କ) ତିନିଶ ଛଷଠି ଅଧ୍ୟାୟେ। ପ୍ରତ୍ୟେକ ଅଧ୍ୟାୟ ନିର୍ଣ୍ଣୟେ ।।
ଯେ ଜନ ସଂକଳ୍ପ କରିବ। ଦିନକେ ଅଧ୍ୟାୟେ ଶୁଣିବ ।। (ଅ.୧୮)
(ଖ) ଶ୍ରୀ ଭାଗବତ ତିନିଶତ। ବୟାଳିଶ ଅଧ୍ୟା ବିଖ୍ୟାତ।
ଚୌବିଂଶ ଅଧ୍ୟା ଗୁପ୍ତ ସାର। ବିଖ୍ୟାତ ନୁହଇ ସଂସାର ।।(ଅ.୨୩)

ଗୁପ୍ତ ଭାଗବତର କବି ମଧ ପ୍ରତ୍ୟେକ ଅଧ୍ୟାୟ ଶେଷରେ ଭଣିତିରେ ନିଜକୁ 'ଜଗନ୍ନାଥ ଦାସ' ଓ ଜାତିରେ ବିପ୍ର (ବ୍ରାହ୍ମଣ) ବୋଲି ଜଣାଇଛନ୍ତି। ଗୁପ୍ତ ଭାଗବତର ୯ମ ଅଧ୍ୟାୟରେ ସେ ସୂଚାଇଛନ୍ତି ଯେ ଗୁପ୍ତ ଭାଗବତକୁ ନୀଳକଣ୍ଠ ନାମଧେୟ ଜଣେ ବ୍ରାହ୍ମଣ ପ୍ରଥମେ ପ୍ରକାଶ କରିଥିଲେ।

ଏହା ଯେ ଗୁପ୍ତଭାବେ ଥାଇ। ପରୀକ୍ଷିତଙ୍କୁ ଏହା କହି ।।
ପ୍ରଥମେ ପ୍ରକାଶ ଯେ କଲୁ। ନୀଳକଣ୍ଠଙ୍କୁ କହିଥିଲୁ ।।
ସେ ନୀଳକଣ୍ଠ ଯେ ବ୍ରାହ୍ମଣ। ପ୍ରକାଶ କଲେ ଜଗତେଣ।

ଗୁପ୍ତ ଭାଗବତ ସମ୍ଭବତଃ ତ୍ରୟୋଦଶ ସ୍କନ୍ଧର ରଚନା (ପ୍ରାୟ ଖ୍ରୀ.୧୭୦୦) ପୂର୍ବରୁ ବା ସମସାମୟିକ ଭାବରେ ରଚିତ ହୋଇଛି। ତେଣୁ ଗୁପ୍ତ ଭାଗବତକାର ତ୍ରୟୋଦଶ ସ୍କନ୍ଧର ଅଧ୍ୟାୟ ଗୁଡ଼ିକୁ ଗଣନା କରିନାହାନ୍ତି।

୩. ପରମ ଭାଗବତ ନାମରେ ୧୨ ଅଧ୍ୟାୟ ବିଶିଷ୍ଟ ଅନ୍ୟ ଏକ ରଚନା ରହିଛି। ଏହାର ଭଣିତିରେ ଥିବା 'ଜଗନ୍ନାଥ ଦାସ' ନାମ କବିଙ୍କର ପ୍ରକୃତ ନାମ କି ସ୍ୱୀକୃତ ନାମ ଜାଣିବାର ଉପାୟ ନାହିଁ। ପରମ ଭାଗବତର ରଚନା ଗୁପ୍ତ ଭାଗବତର ରଚନାର ପରବର୍ତ୍ତୀ ସମୟର :-

ଏଥୁ ଅନ୍ତେ ଶୁଣ ଅଧ୍ୟାର ପ୍ରମାଣ ଗୁପତ ଚବିଶ ଘେନି।
ତିନିଶତ ପଞ୍ଚଷଠି ଦିବସେଣ ଭିଆଇଲେ ବ୍ୟାସ ମୁନି ।।

୪. ନବାକ୍ଷରୀ ବୃତ୍ତରେ ରଚିତ 'ଗୋପାଳ ଚରିତାମୃତ' ନାମକ ଗ୍ରନ୍ଥଟି ଜଗନ୍ନାଥ ଦାସଙ୍କ ନାମରେ ଭଣିତ ହୋଇଅଛି। ଏହି ଜଗନ୍ନାଥ ଦାସଙ୍କ ସମୟ ଖ୍ରୀ.୧୯ଶ ଶତାବ୍ଦୀ ଓ ତାହାଙ୍କର ଜଣେ ଶିଷ୍ୟ ମଦନମୋହନ ପଟ୍ଟନାୟକ ସ୍ୱଗୁରୁଙ୍କ ନାମରେ ଗ୍ରନ୍ଥଟିକୁ ଲେଖିଛନ୍ତି।

୫. ପଞ୍ଚଦଶ ଛାନ୍ଦ ବିଶିଷ୍ଟ 'ପ୍ରେମଭକ୍ତି' କାବ୍ୟର ପ୍ରଣେତା ଜଗନ୍ନାଥ ଦାସଙ୍କ ସମ୍ଭବତଃ ଅଷ୍ଟାଦଶ ଶତାବ୍ଦୀ। ସେ ଥିଲେ ଧଳଭୂମର ଜଣେ ରାଜପୁତ୍ର।

୬. ବିପ୍ର ଜଗନ୍ନାଥ ଭଣିତି ଯୁକ୍ତ ୩୧ ଅଧ୍ୟାୟ ବିଶିଷ୍ଟ "ପୁରୁଷୋତ୍ତମ ମାସ ମାହାତ୍ମ୍ୟ" (ଅର୍ଥାତ୍ ମଳମାସ ମାହାତ୍ମ୍ୟ)ର କବିଙ୍କର ପ୍ରକୃତ ନାମ ଥିଲା ଗୌରାଙ୍ଗ ମହାପାତ୍ର। ମାହାତ୍ମ୍ୟର ଶେଷ ଭଣିତି ହେଲା :-
ଶିରୀ ଗୌରାଙ୍ଗ ମହାପାତ୍ର। ଭଣିଲା ବିପ୍ର ଜଗନ୍ନାଥ ॥

୭. ଜଗନ୍ନାଥ ଦାସଙ୍କ ଭଣିତି ଯୁକ୍ତ 'ଭବିଷ୍ୟମାଳିକା' ପୁସ୍ତକ ଓଡ଼ିଶା ମ୍ୟୁଜିଅମ୍‌ରେ ରହିଛି। ଏହାଙ୍କ ସମୟ ବୋଧହୁଏ ଖ୍ରୀ. ୧୯ଶ ଶତାବ୍ଦୀ।

ଓଡ଼ିଶାରେ ଜଗନ୍ନାଥ ସର୍ବମାନ୍ୟ ଦେବତା। ବହୁଲୋକ ଶିଶୁ ପୁତ୍ରର ନାମ ଜଗନ୍ନାଥ ରଖିଥାନ୍ତି। ଦାସ ସାଂଜ୍ଞା ମଧ୍ୟ ଓଡ଼ିଶାରେ ବହୁଳଭାବରେ ବ୍ୟବହୃତ ହୁଏ। ଆବ୍ରାହ୍ମଣ ପ୍ରାୟ ସବୁ ଜାତିର ଲୋକେ ଦାସ ସାଂଜ୍ଞାଧାରୀ। ପୁଣି, ଅନ୍ୟ ସାଂଜ୍ଞାଧାରୀମାନେ ମଧ୍ୟ ବୈଷ୍ଣବ କବି ହେଲେ ଦାସ ସାଂଜ୍ଞାକୁ ସ୍ୱୀକାର କରିଥାନ୍ତି। ଅତଏବ ଇତିହାସରେ ଶତସଂଖ୍ୟକ ଜଗନ୍ନାଥ ଦାସ ଥିବା ସ୍ୱାଭାବିକ। ତନ୍ମଧ୍ୟରୁ ଅନେକ ଜଗନ୍ନାଥ ଦାସ ସ୍ୱୟଂ କବି ଥିଲେ ଓ ସେମାନଙ୍କ ମଧ୍ୟରୁ କେତେକଙ୍କର ଗ୍ରନ୍ଥ ବର୍ତ୍ତମାନ ଉପଲବ୍ଧ ହେଉଛି। ପ୍ରସିଦ୍ଧ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ବିଶେଷ ଲୋକପ୍ରିୟତା ଓ ଖ୍ୟାତି ଅର୍ଜନ କରିବା ପରେ ଆଉ କେତେକ କବି ନିଜର ନାମ ଜଗନ୍ନାଥ ଦାସ ହୋଇ ନଥିଲେ ହେଁ ନିଜ ରଚିତ ଗ୍ରନ୍ଥର ଓ/ବା ସ୍ୱପୋଷିତ ମତବାଦର ସୁପ୍ରଚାର ଲୋଭରେ ନିଜର ପ୍ରକୃତ ନାମକୁ ଲୁଚାଇ ଜଗନ୍ନାଥ ଦାସଙ୍କ ନାମରେ ଗ୍ରନ୍ଥ ରଚନା କରିଯାଇଛନ୍ତି। ନକଲି ଜଗନ୍ନାଥ ଦାସମାନଙ୍କୁ ଓ ସେମାନଙ୍କ ରଚନାଗୁଡ଼ିକୁ ଚିହ୍ନାଇ ଦେବା ବର୍ତ୍ତମାନର ଜ୍ଞାନ ଦୃଷ୍ଟିରୁ ଏକ ଦୁରୂହ କାର୍ଯ୍ୟ; କିନ୍ତୁ ଅସଲି ଜଗନ୍ନାଥ ଦାସ ମଧ୍ୟ ଯେ ଅନେକ ଥିଲେ ଏହା ନିର୍ଣ୍ଣୟ କରିବା ଜମାରୁ ଦୁରୂହ ନୁହେଁ। ତଥାପି ଆଲୋଚକମାନେ ସବୁ ଜଗନ୍ନାଥ ଦାସଙ୍କ କୃତିକୁ ଜଣକର କୃତୀ ବୋଲି ଧରିନେଉଛନ୍ତି।

---

୧. ସଂସ୍କୃତ ଆଳଂକାରିକ ରାଜଶେଖର କବିମାନଙ୍କୁ ତିନୋଟି ଶ୍ରେଣୀଭୁକ୍ତ କରିଛନ୍ତି। ଶ୍ରେଷ୍ଠ କବିମାନଙ୍କ କବିତ୍ୱ ନୈସର୍ଗିକ, ସେମାନଙ୍କର କବିତ୍ୱଶକ୍ତି ସହଜାତ। ମଧ୍ୟମ ଶ୍ରେଣୀର କବିମାନେ ଆହାର୍ଯ୍ୟବୁଦ୍ଧି; ସେମାନେ ନାନା ଗ୍ରନ୍ଥାଭ୍ୟାସ, ବିଭିନ୍ନ ପ୍ରେରଣା ପାଇ ଉଦ୍ୟମ କରି କବି ହୁଅନ୍ତି। ଅଧମ ଶ୍ରେଣୀୟ କବିମାନେ କେବଳ ଦୈବୀପ୍ରସାଦ ଯୋଗୁଁ କବିତ୍ୱଶକ୍ତି ଅର୍ଜନ କରିଥାନ୍ତି।

୨. ଭାଗବତର ମୋଟ ଅଧ୍ୟାୟ ସଂଖ୍ୟା ୩୩୫ ବୋଲି ସାଧାରଣତଃ ଗୃହୀତ ହୁଏ। କିନ୍ତୁ 'ଭାବାର୍ଥଦୀପିକା'ର ମଙ୍ଗଳାଚରଣ ଶ୍ଳୋକ ଅନୁସାରେ ଅଧ୍ୟାୟ ସଂଖ୍ୟା ୩୩୨ ଜଗନ୍ନାଥ ଦାସଙ୍କ ଅନୁବାଦରେ ରାଜକିଶୋର ଦାସଙ୍କ ସଂସ୍କରଣ ଅନୁଯାୟୀ ୩୪୨ ଅଧ୍ୟାୟ। ଅନ୍ୟ ସଂସ୍କରଣ ଅନୁଯାୟୀ ୩୪୧ ଅଧ୍ୟାୟ ଓ ଅନେକ ତାଳପତ୍ର ପୋଥି ଅନୁଯାୟୀ ୩୪୫ ଅଧ୍ୟାୟ।

# ପରିଶିଷ୍ଟ

ଭାଗବତକାର ଜଗନ୍ନାଥ ଦାସ ଓ ଅତିବଡ଼ ଜଗନ୍ନାଥ ଦାସ ଦୁଇଜଣ ପୃଥକ୍ ବ୍ୟକ୍ତି ବୋଲି ପ୍ରତିପାଦନ କରିଥିବା ମୋର "ଅନେକ ଜଗନ୍ନାଥ ଦାସ" ଶୀର୍ଷକ ପ୍ରବନ୍ଧ ଝଙ୍କାର ପତ୍ରିକାର ୧୯୮୫ ଜୁନ୍ ସଂଖ୍ୟାରେ ପ୍ରକାଶ ପାଇବା ପରେ ଡଃ ନଟବର ସାମନ୍ତରାୟ ସେହି ଝଙ୍କାରର ୧୯୮୫ ଅକ୍ଟୋବର ସଂଖ୍ୟାରେ ପ୍ରକାଶିତ "ଭାଗବତକାର ହିଁ ଅତିବଡ଼ ଜଗନ୍ନାଥ ଦାସ" ପ୍ରବନ୍ଧରେ ତାହାର ପ୍ରତିବାଦ କଲେ। ତାହାଙ୍କ ପ୍ରବନ୍ଧରେ ଉପସ୍ଥାପିତ ଯୁକ୍ତିଗୁଡ଼ିକ ଯେ ମୋ ପ୍ରବନ୍ଧରେ ପ୍ରତିପାଦିତ ସିଦ୍ଧାନ୍ତକୁ ଖଣ୍ଡନ କରିପାରୁ ନାହିଁ ଏହା ଦୁଇଟି ଯାକପ୍ରବନ୍ଧକୁ ମିଳାଇ ପଢ଼ିବା ପାଠକେ ସହଜରେ ଉପଲବ୍ଧି କରି ପାରିବେ। ତେବେ ବି ଏଠାରେ ତାଙ୍କ ଯୁକ୍ତିର ଅସାରତାକୁ ଠାରି ଦେଉଛି।

ଉଲ୍ଲେଖନୀୟ ଯେ ଦ୍ୱିତୀୟ ବ୍ୟକ୍ତିତ୍ୱର ସୂଚନା ମିଳୁଛି ଖୋଦ୍ ଭାଗବତକାର ଓ ଅତିବଡ଼ଙ୍କ ଲେଖାରେ, ଯାହାର ପ୍ରାମାଣିକ ମୂଲ୍ୟ ଅପ୍ରତିମ :-

(୧) ଭାଗବତରେ ତାହାର ପ୍ରଣେତା ଦେଇଥିବା ଆତ୍ମପରିଚୟ ଅନୁସାରେ ସେ ବହୁବିଧ ଭକ୍ତିଭାବ ମଧ୍ୟରୁ ଅନନ୍ୟ ଭାବରେ ଦାସ୍ୟଭାବରେ ବିଶ୍ୱାସୀ ଥିଲେ :- "କେବଳ ଦାସଭାବେ ମତି" (ଭା.୧୧/୧୯)। ସେ ପୁଣି ଭାଗବତ ମଧ୍ୟରେ ନିଜକୁ ବହୁ ସ୍ଥାନରେ ପାମର, ଦୁରାଚାର, ଅଧମ, ହୀନ, ମୂଢ଼, ଅଳ୍ପବୁଦ୍ଧି, ଜ୍ଞାନହୀନ ବୋଲି ଅଭିହିତ କରି ଅକିଂଚନତା ଜ୍ଞାପନ କରିଛନ୍ତି।

(୨) ଅପରପକ୍ଷରେ ଅତିବଡ଼ ଜଗନ୍ନାଥ ଦାସ (ଡଃ ସାମନ୍ତରାୟ ତାଙ୍କୁ ଅତିବଡ଼ି ବୋଲି କିପରି କହୁଛନ୍ତି ତାହା ସେ ହିଁ ଜାଣନ୍ତି) ଲେଖିଥିବା 'ଷୋଳ ଚଉପଦୀରେ' ମଞ୍ଜରୀ ତତ୍ତ୍ୱର ଶ୍ରେଷ୍ଠତା ପ୍ରତିପାଦନ କରାଯାଇଛି। ମଞ୍ଜରୀତତ୍ତ୍ୱ ରାଗାନୁଗା। ଏହି ମାର୍ଗର ଭକ୍ତ ନିଜକୁ ଜଣେ ନାରୀ ବୋଲି ଜ୍ଞାନ କରି ରାଧାକୃଷ୍ଣ ଯୁଗଳଭାବର ଅନୁସରଣ କରେ। ଭାଗବତକାରଙ୍କ ଦାସ୍ୟଭାବ ଓ ଅତିବଡ଼ଙ୍କ ରାଗାନୁଗା ଭାବ ମଧ୍ୟରେ ଅମେଳ ଥିବା କଥା ମୋର ପ୍ରବନ୍ଧରେ ଦେଖାଇ ଦିଆଯାଇଛି। ଅତିବଡ଼ ଜଗନ୍ନାଥ ଦାସଙ୍କ ଭଣିତି ଥିବା 'ରାଧାମଞ୍ଜରୀ' ଓ 'ଦୂତୀବୋଧ' ରଚନା ଦ୍ୱୟରେ ମଧ୍ୟ ରାଗାନୁଗା ଭକ୍ତିର ପ୍ରାଧାନ୍ୟ ଦର୍ଶାଯାଇଛି, ଦାସ୍ୟଭାବର ନୁହେଁ। ଏହି ରାଗାନୁଗା ଭକ୍ତ ଜଗନ୍ନାଥ ଦାସ ଚୈତନ୍ୟଙ୍କ ପ୍ରଦତ୍ତ 'ଅତିବଡ଼' ଆଖ୍ୟାକୁ ସାଦରେ ସ୍ୱୀକାର କରିଛନ୍ତି (ରାଧାମଞ୍ଜରୀ ଓ ଦୂତୀବୋଧରେ)। ଏହି ଅତିବଡ଼ ଆଖ୍ୟାରେ ଭାଗବତକାରଙ୍କ ପାମର, ଅଧମ ଆଦି ଆତ୍ମପରିଚୟରେ ପ୍ରକାଶ ପାଉଥିବା ଅକିଂଚନତା ପାଇଁ ସ୍ଥାନ ନାହିଁ।

ଡଃ ସାମନ୍ତରାୟ ଏହି ସଂପର୍କରେ ଅନ୍ୟ ଏକ ଅନୁମାନଗର୍ଭିତ ପ୍ରଶ୍ନ ଉତ୍ଥାପନ କରିଛନ୍ତି। ମୂଳ ଭାଗବତରେ ରାଧାଙ୍କ ନାମ ଦୃଷ୍ଟ ନାହିଁ। ଓଡ଼ିଆ ଭାଗବତକାର କୃଷ୍ଣ ଗୋପୀମାନଙ୍କ ମଧ୍ୟରୁ ଏକମାତ୍ର ବୃନ୍ଦାବତୀକୁ ନେଇ ଅନ୍ତର୍ଦ୍ଧାନ ହେବା ବର୍ଣ୍ଣନା

ରାମପଞ୍ଚାଧ୍ୟାୟରେ ଲେଖି ଗୋପୀମାନଙ୍କ ମଧ୍ୟରେ ବୃନ୍ଦାବତୀଙ୍କ ଶ୍ରେଷ୍ଠତ୍ୱ ସୂଚାଇଛନ୍ତି। ତେଣେ ଦିବାକର ଦାସ ଅତିବଡ଼ ରାଧାଙ୍କ ଅଂଶୀ ବୋଲି ଲେଖିଛନ୍ତି। ଏଥିରେ ପ୍ରକାଶ ପାଉଥିବା ଅନ୍ତର୍ବିରୋଧ ଡଃ ସାମନ୍ତରାୟଙ୍କୁ ସଂଶୟରେ ପକାଇଛି। ସେ ଲେଖିଛନ୍ତି :- "ଶ୍ରୀରାଧାଙ୍କ ହାସ୍ୟରୁ ଅତିବଡ଼ ଜନ୍ମ ହେବା ଓ ଜୀବନରେ ରାଗାନୁଗା ପ୍ରେମଭିତ୍ତିକ କାମାନୁଗା ଭକ୍ତି ହେତୁ ନିଜେ ନାରୀରେ ରୂପାନ୍ତରିତ ହୋଇଯିବା-ଏ ସବୁ ଯେପରି କି ଭାଗବତକାରଙ୍କ ବ୍ୟକ୍ତିତ୍ୱ ପ୍ରତି ଏକ କ୍ରୂର ଉପହାସ ମାତ୍ର। ତେଣୁ ଯେଉଁ ବ୍ୟକ୍ତି ଭାଗବତକାର ରୂପରେ ନିଜ ପୁସ୍ତକରେ ରାଧାନାମ ଉଚ୍ଚାରଣ କରିବାକୁ କୁଣ୍ଠିତ, ସେ ବ୍ୟକ୍ତି କ'ଣ ଅତିବଡ଼ ରୂପରେ ନିଜ ଜୀବନ ତଥା ଧର୍ମଦର୍ଶନରେ ରାଧାଙ୍କୁ ସର୍ବଶ୍ରେଷ୍ଠ ଆସନ ଦେବା କେବେ ସମ୍ଭବପର? ରାଧାଙ୍କୁ କେନ୍ଦ୍ରକରି ଦୁଇ ଜଗନ୍ନାଥ ଦାସଙ୍କର ସ୍ୱତନ୍ତ୍ର ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଉପଲବ୍ଧ ହେଉଥିଲେ ହେଁ ସେ ଉପଲବ୍ଧି ଏକ ସୁସ୍ଥିର ଭିତ୍ତି ଉପରେ ପ୍ରତିଷ୍ଠିତ ବୋଲି ମନେ ହୁଏ ନାହିଁ। କାରଣ, ଦିବାକର ଦାସ ଅତିବଡ଼ଙ୍କ ଜୀବନୀରେ ଯେଉଁ କେତେକ ଉପାଦାନ ଏପରି ସ୍ଥାନ ଓ ରୀତିରେ ଉପଯୋଗ କରିଛନ୍ତି, ଯାହା ଫଳରେ ଦୁଇ ଜଗନ୍ନାଥ ଦାସ- ଧାରଣା ଅପେକ୍ଷା ଏକା ଜଗନ୍ନାଥ ଦାସ ଧାରଣା ଅଧିକ ସ୍ପଷ୍ଟ, ସତ୍ୟ ଓ ସ୍ୱାଭାବିକ ହୋଇ ଉଠୁଛି।" ଦିବାକର ଦାସ ଅତିବଡ଼ଙ୍କ ଜୀବନବୃତ୍ତାନ୍ତ ଲେଖି ତାଙ୍କ ବ୍ୟକ୍ତିତ୍ୱ ପ୍ରତି କ୍ରୂର ଉପହାସ କରିଥିବା କଥା ଯେଉଁ ଡଃ ସାମନ୍ତରାୟ କହୁଛନ୍ତି, ସେହି ଦିବାକରଙ୍କ ଲେଖାରୁ ହିଁ "କେତେକ ଉପାଦାନ" ଚୟନ କରି ସ୍ପଷ୍ଟ, ସତ୍ୟ ଓ ସ୍ୱାଭାବିକ ଧାରଣାର ସଂଧାନ ନେଉଛନ୍ତି। ଯଦି ଦିବାକର ଦାସ ଜଗନ୍ନାଥ ଦାସଙ୍କ ଜୀବନୀ ସଂପର୍କରେ ବିଶ୍ୱାସ ଯୋଗ୍ୟ ନୁହନ୍ତି ତାଙ୍କ ବର୍ଣ୍ଣନାର କେଉଁ ଅଂଶଟି ତଥ୍ୟାଶ୍ରିତ ଓ କେଉଁଟି ନୁହେଁ ଏହା କିପରି ଜଣାଯିବ? ଅର୍ଦ୍ଧକୁକ୍କୁଟୀ ନ୍ୟାୟରେ କୁକ୍କୁଟୀ ଅଣ୍ଡା ଦିଏନାହିଁ। ଅଥଚ, ଏଇ କ୍ରୂର ଉପହାସକ ଦିବାକର ଦାସଙ୍କୁ ଛାଡ଼ିଲେ ଡଃ ସାମନ୍ତରାୟଙ୍କ ପାଇଁ ଦ୍ୱିତୀୟ ଆଶ୍ରୟ କାହିଁ? ପୁଣି, ସେ ଯେଉଁ ଦିବାକରଙ୍କ ଉକ୍ତି ଉପରେ ଭରସା କରୁଛନ୍ତି ତାହା ଯେ ଆଧୁନିକ ଜାଲିଆତି ତାହା ଟିକିଏ ବିଶ୍ଳେଷଣ କଲେ ଜଣାଯିବ।

ଭାଗବତକାର ଓ ଅତିବଡ଼ ପୃଥକ୍ ପୃଥକ୍ ବ୍ୟକ୍ତି ବୋଲି ମୁଁ ଦେଇଥିବା ସିଦ୍ଧାନ୍ତ ସେ ଦୁହିଁଙ୍କର ଆତ୍ମପରିଚୟାତ୍ମକ ସ୍ୱୀକୃତି ଉପରେ ଆଧାରିତ। ଡଃ ସାମନ୍ତରାୟ ଏହି ସିଦ୍ଧାନ୍ତକୁ କାଟିବା ପାଇଁ ସେମାନଙ୍କ ଲେଖାରୁ କୌଣସି ପ୍ରମାଣ, ଏପରିକି ସମସାମୟିକ ବା ନିକଟ ସମୟର କୌଣସି ପ୍ରମାଣ, ଦେଇପାରି ନାହାନ୍ତି। ସେ ନିର୍ଭର କରିଛନ୍ତି ଅତିବଡ଼ଙ୍କ ଦ୍ୱାରା ପ୍ରତିଷ୍ଠିତ ବଡ଼ ଓଡ଼ିଆ ମଠ ତରଫରୁ ଖ୍ରୀ.୧୯୬୩ରେ ପ୍ରକାଶିତ ଦିବାକର ଦାସ ଭଣିତ 'ଜଗନ୍ନାଥ ଚରିତାମୃତ'ର ସଂସ୍କରଣ ଉପରେ। ଏହି ସଂସ୍କରଣରେ ରହିଛି ଯେ ଜଗନ୍ନାଥ ଦାସ :-

"ବଟ ଗଣେଶଙ୍କ ଅଗ୍ରତ। ରଚିଲେ ଭାଷା ଭାଗବତ॥
ପଢୁଣ ଥାନ୍ତି ସୁଖ ପାଇ। ଗଣେଶ ଦେଉଥାନ୍ତି କହି॥"

'ଜଗନ୍ନାଥ ଚରିତାମୃତ' ଓଡ଼ିଆ ମଠ ତରଫରୁ ପ୍ରକାଶ ପାଇବା ପୂର୍ବରୁ ସୁଦର୍ଶନ ନନ୍ଦ ଶର୍ମାଙ୍କ ଦ୍ୱାରା ଇଉନିଅନ୍ ପ୍ରେସ୍‌ରେ ମୁଦ୍ରିତ ହୋଇ ୧୯୧୩ରେ ପ୍ରକାଶ ପାଇଥିଲା। ମଠ ସଂସ୍କରଣର ଉପରେ ଉଦ୍ଧୃତ ଅଂଶ ନନ୍ଦଙ୍କ ସଂସ୍କରଣରେ ନିମ୍ନ ରୂପରେ ରହିଛି :-

ବଟ ଗଣେଶଙ୍କ ଅଗ୍ରରେ। ଶ୍ରୀ ଭାଗବତ ନିରନ୍ତରେ॥
ପଢୁଣ ଥାନ୍ତି ସୁଖ ପାଇ। ଗଣେଶ ଦେଉଥାନ୍ତି କହି॥

ଏଥିରେ 'ରଚିଲେ ଭାଷା ଭାଗବତ' ନାହିଁ। ଟିକିଏ ମନନ କଲେ ଜାଣି ହେବ ଯେ "ରଚିଲେ ଭାଷା ଭାଗବତ" ମୌଳିକ ଲେଖା ହୋଇନପାରେ, ପରେ ପରେ 'ପଢୁଣଥାନ୍ତି' କ୍ରିୟାପଦ ଥିବା ଯୋଗୁଁ ରଚିଲେ କ୍ରିୟା ରହିବା କଥା ନୁହେଁ। ଯଦି ରଚିଲେ କ୍ରିୟା ରହିଥାନ୍ତି ତେବେ ପଢୁଣଥାନ୍ତି ପାଇଁ ଆଉ ଏକ କର୍ତ୍ତା ପଦର ଆବଶ୍ୟକତା ଦେଖାଦିଅନ୍ତା ଓ ପଢୁଣଥାନ୍ତି ସ୍ଥାନରେ "ପଢ଼ିଲେ ତାହା" ଭଳି କିଛି ଲେଖା ହୋଇଥାନ୍ତା। ବଡ଼ ଓଡ଼ିଆ ମଠଟି ଅତିବଡ଼ୀ ସଂପ୍ରଦାୟର ମଠ। ସଂପ୍ରଦାୟର ମର୍ଯ୍ୟାଦା ବଢ଼ାଇବା ପାଇଁ ଜଗନ୍ନାଥ ଦାସଙ୍କ ଭଣିତି ଥିବା ଭାଗବତଟି ସଂପ୍ରଦାୟର ପ୍ରବର୍ତ୍ତକଙ୍କ ରଚନା ବୋଲି ଦର୍ଶାଇବା ମତଲବରେ ଏତାଦୃଶ ପ୍ରକ୍ଷେପ କରାଯାଇଥିବା ଅନୁମାନ କରାଯାଇପାରେ। ଯଦି ପ୍ରକ୍ଷେପ ହୋଇ ନଥାନ୍ତା ତେବେ ପୂର୍ବ ସଂସ୍କରଣର ପାଠ ଅପେକ୍ଷା ଏ ସଂସ୍କରଣର ପାଠ ଅଧିକ ବିଶ୍ୱାସ୍ୟ କାରଣ ପ୍ରାଚୀନତର ତାଳପତ୍ର ପୋଥିରେ ଏ ପାଠ ମିଳୁଛି ବୋଲି ସୂଚନା ଅନ୍ତତଃ ଗ୍ରନ୍ଥର ମୁଖବନ୍ଧରେ ବା ପାଦଟୀକାରେ ତ ଦିଆଯାଆନ୍ତା। ମୁଁ ଏହି ଉଭୟ ସଂସ୍କରଣ ଅପେକ୍ଷା ପ୍ରାଚୀନତର ତାଳପତ୍ର ପୋଥିର ପାଠକୁ ଧରି ଆଲୋଚନା କରିଛି ଓ ସେଥିରେ ଜଗନ୍ନାଥ ଦାସ (ଅତିବଡ଼) ଭାଗବତ ରଚନା କରିଥିବା କଥା ଲେଖାନାହିଁ। ମୂଳରେ ନ ଥିବା ପଦ ("ରଚିଲେ") ଯୋଗ କରାହେବାର କାରଣ ଅନୁମାନ କରିହେଉଛି କିନ୍ତୁ ମୂଳରେ ଥିବା ପଦକୁ ତାଳପତ୍ର ପୋଥିରେ ଲେପ କରାଯିବାର କୌଣସି କାରଣ ମିଳିବ ନାହିଁ। ଡଃ ସାମନ୍ତରାୟ ସବୁଠାରୁ ଅର୍ବାଚୀନ ଓ ସନ୍ଦିଗ୍ଧ ସୂତ୍ରରୁ ମିଳୁଥିବା ତଥ୍ୟକୁ ଅଧିକ ପ୍ରାମାଣିକ ବୋଲି ବିଚାର କରି ସଚ୍ଚା ଗବେଷକର ଧର୍ମ ରକ୍ଷା କରିନାହାନ୍ତି।

ଡଃ ସାମନ୍ତରାୟ ଏକ ପକ୍ଷରେ ଜଗନ୍ନାଥ ଚରିତାମୃତର ଐତିହାସିକ ମୂଲ୍ୟ ବିଷୟରେ ସନ୍ଦିହାନ ଓ ଅନ୍ୟ ପକ୍ଷରେ ସେ ତାହାକୁ ହିଁ ଆଶ୍ରୟ କରୁଛନ୍ତି। ସେ ମାନିଛନ୍ତି :- "ଜଗନ୍ନାଥ ଚରିତାମୃତରେ ବର୍ଣ୍ଣିତ ଚୈତନ୍ୟ- ଅତିବଡ଼ ସମ୍ପର୍କୀୟ କେତେକ ଘଟନା ଓ ପୂର୍ବୋକ୍ତ ଗୁରୁପ୍ରଣାଳୀକୁ ଅନୁଧ୍ୟାନ କଲେ ଘଟନା ସଂଘଟନର ସମୟ ଉପରେ ଦିବାକର ଦାସଙ୍କର କିଛି ମାତ୍ର ଧାରଣା ଥିଲା ବୋଲି ବିଶ୍ୱାସ ହୁଏ ନାହିଁ।" ତଥାପି ସେ ମାନୁଛନ୍ତି ଯେ:- "ଅତିବଡ଼ ଓ ଭାଗବତକାର ଯେ ଏକ ଏବଂ ଅଭିନ୍ନ ଦିବାକର ଦାସଙ୍କ ଜଗନ୍ନାଥ ଚରିତାମୃତହିଁ ତାର ପ୍ରଧାନ ଓ ପ୍ରତ୍ୟକ୍ଷ ସାକ୍ଷୀ।"

ଏଠି ମୁଁ ପ୍ରତ୍ୟକ୍ଷ ଶବ୍ଦକୁ ଅଧୋରେଖାଙ୍କିତ କରିଛି ପାଠକଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ଯେ ଯେଉଁ ଦିବାକର ଦାସ ଘଟନା ସମୟର ଦୀର୍ଘ ପ୍ରାୟ ଦୁଇଶହ ବର୍ଷ ପରବର୍ତ୍ତୀ ଓ ଯାହାଙ୍କର ଘଟନା ସମୟ ଉପରେ କିଛିମାତ୍ର ଧାରଣା ନାହିଁ ବୋଲି ଡଃ ସାମନ୍ତରାୟ ବିଶ୍ୱାସ କରୁଥିବା ସ୍ୱୀକାର କରୁଛନ୍ତି, ତାଙ୍କରି ଲେଖାକୁ ପ୍ରଧାନ ଓ ପ୍ରତ୍ୟକ୍ଷ ସାକ୍ଷୀ ବୋଲି ସେ ଭଣୁଛନ୍ତି। ପ୍ରତ୍ୟକ୍ଷର ଅର୍ଥର କି ଅଧୋଗତି !

ମଠ ସଂସ୍କରଣରେ ପୂର୍ବୋଦ୍ଧୃତ 'ରଚିଲେ ଭାଷା ଭାଗବତ'କୁ ମିଶାଇ ମାତ୍ର ତିନିଠାରେ ଓଡ଼ିଆ ଭାଗବତର ଅତିବଡ଼ଙ୍କ ସହିତ ସଂପର୍କର ସୂଚନା ରହିଥିବା କଥା ଡଃ ସାମନ୍ତରାୟ ଦର୍ଶାଇଛନ୍ତି ଓ ସେପରି ସଂପର୍କର ସୂଚନା ଏହି ତିନିଠାରେ କି ଅନ୍ୟତ୍ର ପୋଥିରେ ନାହିଁ, ନନ୍ଦଙ୍କ ସଂସ୍କରଣରେ ମଧ ନାହିଁ। ସବୁଠାରେ ମଠ ସଂସ୍କରଣର ଜାଲିଆତି ଧରାପଡ଼ିଯାଉଛି। ମଠ ସଂସ୍କରଣରେ ପୂର୍ବୋଦ୍ଧୃତ ''ରଚିଲେ ଭାଷା ଭାଗବତ ପରେ ପରେ ରହିଛି'':-

ଶ୍ରୀକୃଷ୍ଣ ସ୍ତୁତିର ବିଚାର। ପଢ଼ନ୍ତି ଗଣେଶ ଅଗ୍ରର॥
ପ୍ରାକୃତ ଭାଗବତ ବାଣୀ। ଶ୍ରୀକୃଷ୍ଣ ଲୀଳାତରଙ୍ଗିଣୀ॥

ଏହି ସଂସ୍କରଣରେ ଆଉ ଠାଏଁ ଅତିବଡ଼ ତାଙ୍କ ଶିଷ୍ୟବର୍ଗଙ୍କୁ ଉପଦେଶ ଦେବା ମଧରେ କହିଥିବା ଲେଖାଅଛି :-

ଶ୍ରୀ ଭାଗବତ ଭକ୍ତିଗ୍ରନ୍ଥ ପଢ଼ିବ ଶୁଣିବ ନିରତ॥

ଏହି ଉପଦେଶ ଓଡ଼ିଆ ଭାଗବତକୁ ଉଦ୍ଦେଶ୍ୟ କରୁଛି, ତେଣୁ ଅତିବଡ଼ ହିଁ ତାହାର ପ୍ରଣେତା ହୋଇପାରନ୍ତି ବୋଲି ଡଃ ସାମନ୍ତରାୟ ଅବିଚାରିତ ମତ ଦେଇଛନ୍ତି ଓ ଏହାକୁ ହିଁ ସେ 'ପ୍ରତ୍ୟକ୍ଷ ସାକ୍ଷୀ' ମୋହରମାରି ଅତିବଡ଼ଙ୍କ ଭାଗବତକାରତ୍ୱ ସାବ୍ୟସ୍ତ ହୋଇଗଲା ବୋଲି କହୁଛନ୍ତି।

ଭାଗବତ ରଚନା ଜଗନ୍ନାଥ ଦାସ ପୂର୍ଣ୍ଣ କରିପାରି ନଥିଲେ। ସେ ଏକାଦଶ ସ୍କନ୍ଧ ଯାଏଁହିଁ ଲେଖିଥିଲେ। ଦ୍ୱାଦଶ ସ୍କନ୍ଧଟି ଜଗନ୍ନାଥ ଦାସଙ୍କ ଦେହାନ୍ତ ପରେ ବିପ୍ର ମହାଦେବ ଦାସ ରଚନା କରିବାରୁ ହିଁ ପ୍ରାକୃତରେ ଭାଗବତ ରଚନା ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇଥିଲା। ମୁଁ ମୋ ପ୍ରବନ୍ଧରେ ଏହା ପ୍ରତିପାଦନ କରିଛି ଓ ଡଃ ସାମନ୍ତରାୟ ଏ ବିଷୟରେ ମୋ ସହିତ ଏକମତ। ସେ ଲେଖିଛନ୍ତି :- ଅସଂପୂର୍ଣ୍ଣ ଗ୍ରନ୍ଥର ପାରାୟଣ ଧର୍ମ ଦୃଷ୍ଟିରୁ ଶୁଭପ୍ରଦ ନୁହେଁ। ଦ୍ୱାଦଶ ସ୍କନ୍ଧର ଅନୁବାଦ ଲୋକ-କଲ୍ୟାଣମୂଳକ ଧର୍ମଦୃଷ୍ଟିରୁ ମହାଦେବ ଦାସ ନିଜ ହାତକୁ ନେବା ଏକାନ୍ତ ସ୍ୱାଭାବିକ, ଗ୍ରନ୍ଥ ରଚନାର ଅସମାପ୍ତି ଓ ଦେହାବସାନ, ଏ ଉଭୟ ହିଁ ଦ୍ୱାଦଶ ସ୍କନ୍ଧ ରଚନାର ମୂଳ ହେତୁ।''

ଡଃ ସାମନ୍ତରାୟ ଏହା ସ୍ୱୀକାର କରିବା ସତ୍ତ୍ୱେ କେଉଁ ଅକଲରେ କହିପାରୁଛନ୍ତି ଯେ ମଠ ସଂସ୍କରଣରେ ଅତିବଡ଼ ଗୋସାଇଁ ପ୍ରାକୃତ ଭାଗବତ ପଢ଼ିବା କଥା ଯାହା ଲେଖାଅଛି ତାହା ବିଶ୍ୱାସଯୋଗ୍ୟ ? ରଚନା ଅପୂର୍ଣ୍ଣ ଥିବା ସତ୍ତ୍ୱେ ତାହାର ପାରାୟଣ ପାଇଁ ସେ ଶିଷ୍ୟବର୍ଗଙ୍କୁ ଉପଦେଶ ଦେବେ କିପରି ? ଅସଂପୂର୍ଣ୍ଣ ଗ୍ରନ୍ଥର ପାରାୟଣ

ଧର୍ମ ଦୃଷ୍ଟିରୁ ଶୁଭପ୍ରଦ ନଥିବା କଥା ଡଃ ସାମନ୍ତରାୟ ଜାଣନ୍ତି, ମହାଦେବ ଦାସ ବି ଜାଣିଥିଲେ କେବଳ ଅତିବଡ଼ ଗୋସାଇଁ ଜାଣି ନଥିଲେ ? ଏହି ସବୁ ଉଲ୍ଲେଖରୁ ସ୍ପଷ୍ଟ ହେଉଛି ଯେ ମଠ ସଂସ୍କରଣଟିକୁ ଜାଲ୍ କରିବା ଲୋକର ଧାରଣା ନଥିଲା ଯେ ଜଗନ୍ନାଥ ଦାସ ଭାଗବତ ରଚନା ସଂପୂର୍ଣ୍ଣ କରି ପାରି ନଥିଲେ। ମୋର ଏଥିପ୍ରତି ଦୃଷ୍ଟି ଆକର୍ଷଣ କରିବା ପର୍ଯ୍ୟନ୍ତ ସମଗ୍ର (ଦ୍ୱାଦଶ ସ୍କନ୍ଧ ସମେତ) ଭାଗବତକୁ ଏକା ଜଗନ୍ନାଥ ଦାସ ଲେଖିଥିବା ବିଶ୍ୱାସ ଗୃହୀତ ହୋଇ ଆସୁଥିଲା। ସାଧାରଣରେ ଗୃହୀତ ଏହି ଭ୍ରାନ୍ତ ବିଶ୍ୱାସର ବଶବର୍ତ୍ତୀ ହେବାରୁହିଁ ମଠ ସଂସ୍କରଣର ପ୍ରସ୍ତୁତକର୍ତ୍ତା ଅତିବଡ଼ ଗୋସାଇଁ ଭାଗବତ ପଢ଼ିବାକୁ ସୁପାରିସ୍ କରିଥିଲେ ବୋଲି ଲେଖିଦେଲେ।

ଜଗନ୍ନାଥ ଚରିତାମୃତ ଅତିବଡ଼ ଗୋସାଇଁଙ୍କ ଜୀବନବୃତ୍ତାନ୍ତର ଯେଉଁ ଛାଞ୍ଚ ପ୍ରସ୍ତୁତ କରିଛି ସେଥିରେ ଭାଗବତ ରଚନା ଅତିବଡ଼ଙ୍କ ଦ୍ୱାରା ହେବା ଅସମ୍ଭବ ବୋଲି ଜଣାପଡୁଛି। ଜଗନ୍ନାଥ ଚରିତାମୃତ ମତରେ ଚୈତନ୍ୟଙ୍କ ତିରୋଭାବ ପରେ ଅତିବଡ଼ ଗୋସାଇଁ ସର୍ବବିଧ ବୈଧୀକର୍ମ ତ୍ୟାଗକରି କେବଳମାତ୍ର ପ୍ରେମଭକ୍ତିରେ ନିମଜ୍ଜିତ ହେଲେ :-

ସ୍ନାହାନ ସନ୍ଧ୍ୟା ଜପହୋମ। ପଞ୍ଚଧା ଦେବତା ପୂଜନ ॥
ବୈଶ୍ୱଦେବ ଅତିଥି ପୂଜା। ସମସ୍ତ କଲେ ପରିତେଜ୍ୟା ॥
ପୁରାଣ ଆଦି ବେଦ ଆଧ୍ୟାନ। ପୂର୍ବେ ଯେବା ଥିବା ପଠନ ॥
ତାହା ଛାଡ଼ିଲେ ଭକ୍ତି ବଳେ। ଆଶ୍ରୟ ଶ୍ରୀପଦକମଳେ ॥ (୧୦ମ ଅଧ୍ୟାୟ)

ମହାଦେବ ଦାସ (ଯେ କି ନିଃସନ୍ଦେହ ଭାବରେ ଦିବାକର ଦାସଙ୍କ ପୂର୍ବବର୍ତ୍ତୀ) ସେ ରଚନା କରିଥିବା ଦ୍ୱାଦଶ ସ୍କନ୍ଧରେ ସ୍ପଷ୍ଟ ଭାଷାରେ କହିଛନ୍ତି ଯେ ଭାଗବତକାର ଜଗନ୍ନାଥ ଦାସ ଏକାଦଶ ସ୍କନ୍ଧର ଶେଷ ଅଧ୍ୟାୟରେ ଶ୍ରୀକୃଷ୍ଣଙ୍କ ଗୋଲୋକ ଗମନ (ଅର୍ଥାତ୍ ଦେହାବସାନ) ବର୍ଣ୍ଣନା କରିବା ପରେ ନିଜେ ଗୋଲୋକଗାମୀ ହେଲେ (ଅର୍ଥାତ ଦେହତ୍ୟାଗ କଲେ)।

"କୃଷ୍ଣ ସଙ୍ଗତେ ଜଗନ୍ନାଥ। ଚଳିଲେ ଗୋଲୋକ ଯେ ପଥ।"

ଡଃ ସାମନ୍ତରାୟ ଏହି ପଦର କିମ୍ଭୂତ ଅର୍ଥ କରିଛନ୍ତି ଦେଖାଯାଉ :- "ଭାଗବତ ଏକାଦଶ ସ୍କନ୍ଧ ଶେଷରେ ଭଗବାନ ଶ୍ରୀକୃଷ୍ଣଙ୍କ ସ୍ୱଧାମ ପ୍ରତ୍ୟାବର୍ତ୍ତନ (ଗୋଲୋକଯାତ୍ରା)ର ବର୍ଣ୍ଣନା ଓ ଅସଂପୂର୍ଣ୍ଣ ଅନୁବାଦ ପରେ ଜଗନ୍ନାଥ ଦାସଙ୍କ ଦେହାବସାନ (ଗୋଲୋକଯାତ୍ରା), ଏ ଉଭୟ ବିଷୟର ଏକତ୍ର ବର୍ଣ୍ଣନାକୁ 'କୃଷ୍ଣ ସଙ୍ଗତେ ଜଗନ୍ନାଥ। ଚଳିଲେ ଗୋଲୋକ ଯେ ପଥ" ପରେ ଏକ ଚାତୁର୍ଯ୍ୟପୂର୍ଣ୍ଣ ବଚନ ବିନ୍ୟାସ ଶୈଳୀରେ ମହାଦେବ ଦାସ ପ୍ରକାଶ କରିଛନ୍ତି ମାତ୍ର।" ମହାଦେବ ଦାସଙ୍କ ସରଳ ଅଭିବ୍ୟକ୍ତିରେ ଡଃ ସାମନ୍ତରାୟ ଚାତୁର୍ଯ୍ୟପୂର୍ଣ୍ଣ ବଚନବିନ୍ୟାସ ଅଧ୍ୟାସ କରି ଯେଉଁ ଚାତୁର୍ଯ୍ୟପୂର୍ଣ୍ଣ ବଚନବିନ୍ୟାସ ପ୍ରକାଶ କଲେ ତାହା ସରଳ ଓଡ଼ିଆ ପାଠକ ବୁଝିପାରିବ ବୋଲି ବିଶ୍ୱାସ ଜନ୍ମୁନାହିଁ। ମହାଦେବ ଦାସ 'ସଙ୍ଗତେ' ଶବ୍ଦ ପ୍ରୟୋଗ କରି ଦୁଇଟି ଘଟନା (୧) ଭାଗବତରେ କୃଷ୍ଣଙ୍କ ଦେହାବସାନର ବର୍ଣ୍ଣନା ଓ (୨) କବି ଜଗନ୍ନାଥ ଦାସଙ୍କ ଦେହାବସାନର

ସମକାଳୀନତାକୁ ସୂଚାଇଛନ୍ତି। ଅନ୍ୟଥା ସେ 'ସଙ୍ଗତେ' ଲେଖିନଥାନ୍ତେ। ଡଃ ସାମନ୍ତରାୟ ଏହାର ଅସଙ୍ଗତ ବ୍ୟାଖ୍ୟାନ କରି କୃଷ୍ଣଙ୍କ ଗୋଲୋକଗମନ ବର୍ଣ୍ଣନାର ଦୀର୍ଘକାଳ (ହୁଏତ ତିରିଶ ବର୍ଷ ଖଣ୍ଡେ) ପରେ କବିଙ୍କ ଦେହାବସାନ ହେଲା ବୋଲି କହୁଛନ୍ତି। ସଙ୍ଗତେର ଏପରି ବ୍ୟାଖ୍ୟା ଦୁଷ୍ଟ ଓ ବିତଣ୍ଡା ମାତ୍ର।

ଡଃ ସାମନ୍ତରାୟ ଭାଗବତକାର ଓ ଅତିବଡ଼ ଗୋସାଇଁଙ୍କୁ ଏକ ଓ ଅଭିନ୍ନ ବ୍ୟକ୍ତି ବୋଲି କହିବାକୁ ଯାଇ ତାହାଙ୍କର ଜୀବନବୃତ୍ତାନ୍ତକୁ ଯେପରି ସଜାଡ଼ିଛନ୍ତି ତାହା ମଧ୍ୟ ଅଯୁକ୍ତିଯୁକ୍ତ ଓ ଅବାସ୍ତବ।

(୧) ଡଃ ସାମନ୍ତରାୟଙ୍କ ମତରେ ଖ୍ରୀ. ୧୫୧୫ରେ ଚୈତନ୍ୟଙ୍କ ସହିତ ଅତିବଡ଼ ଗୋସାଇଁଙ୍କ ପ୍ରଥମ ଭେଟ ହେଲା। ସେତେବେଳେ ଅତିବଡ଼ ଗୋସାଇଁଙ୍କ ବୟସଥିଲା ୧୮ ବର୍ଷ ଓ ସେ ସ୍ୱପ୍ରଣୀତ ପ୍ରାକୃତ ଭାଗବତର ଦଶମସ୍କନ୍ଧର ୧୪ଶ ଅଧ୍ୟାୟ ପାରାୟଣ କରୁଥିଲେ।

ଏହା ଅବିଚାରିତ ମତ। ପ୍ରଥମତଃ ଜଣେ ଅଠର ବର୍ଷର ଯୁବକ ପକ୍ଷେ ପ୍ରବୀଣ ବିଦ୍ୱାନଙ୍କ ପକ୍ଷେ ସୁଦ୍ଧା ଦୁରଧିଗମ୍ୟ ଭାବରେ ଖ୍ୟାତ (ବିଦ୍ୟାବତାଂ ଭାଗବତେ ପରୀକ୍ଷାଂ) ପୁରାଣକୁ ଅନୁବାଦ କରିଥିବା ସମ୍ଭବପର ନୁହେଁ। ସେ ଯଦି ଅଠର ବର୍ଷ ବେଳକୁ ଭାଗବତର ଦୁଇ ତୃତୀୟାଂଶ ଅନୁବାଦ ସାରିଲେଣି, ସେ କଣ ୧୫/୧୬ ବର୍ଷରେ ଅନୁବାଦ ଆରମ୍ଭ କଲେ ? ଦ୍ୱିତୀୟତଃ ଗ୍ରନ୍ଥରଚନା ନସରୁଣୁ ତାହାର ପାରାୟଣ ସମୀଚୀନ ବିଚାର ନୁହେଁ ବୋଲିତ ଡଃ ସାମନ୍ତରାୟ ମାନୁଛନ୍ତି।

(୨) ଡଃ ସାମନ୍ତରାୟଙ୍କ ମତରେ ଚୈତନ୍ୟଙ୍କୁ ଭେଟିବା ପରେ ଅତିବଡ଼ ଗୋସାଇଁ ରାଗାନୁଗାଭକ୍ତିକୁ ସାଧନମାର୍ଗ ରୂପେ ଗ୍ରହଣ କଲେ :- "ଶ୍ରୀଚୈତନ୍ୟଙ୍କ ସହ ପ୍ରଥମ ସାକ୍ଷାତ୍ ସମୟ ଠାରୁ ଶ୍ରୀଚୈତନ୍ୟଙ୍କ ତିରୋଭାବ ସମୟ ଭିତରେ ସେ ଯେଉଁ ଦୀର୍ଘ ସମୟ ପାଇଥିଲେ ତାହାର ପ୍ରଥମ ଭାଗରେ ଭାଗବତର ଦଶମସ୍କନ୍ଧ ୧୫ଶ ଅଧ୍ୟାୟ ଠାରୁ ଏକାଦଶ ସ୍କନ୍ଧର ଶେଷ ପର୍ଯ୍ୟନ୍ତ ଅନୁବାଦ କରିବା ସର୍ବାଦୌ ବିଶ୍ୱାସଯୋଗ୍ୟ। ଦ୍ୱାଦଶ ସ୍କନ୍ଧ ଅନୁବାଦ ନ କରିବାର କେତୋଟି କାରଣ ସମ୍ଭାବନା କରାଯାଇପାରେ। ରାଗାନୁଗା ଭକ୍ତିରେ ଦୀକ୍ଷିତ ଅତିବଡ଼ଙ୍କ ମନ ଭାଗବତର ଗତାନୁଗତିକ ଅନୁବାଦ ପାଇଁ ଆଉ ପ୍ରସ୍ତୁତ କିମ୍ବା ଅନୁକୂଳ ନ ଥିଲା। ଯେଉଁ ଶ୍ରୀକୃଷ୍ଣଲୀଳା ବର୍ଣ୍ଣନା ତାହାଙ୍କ ଜୀବନର ପ୍ରଧାନ ଲକ୍ଷ୍ୟ ଥିଲା, ଏକାଦଶ ସ୍କନ୍ଧ ଶେଷରେ କୃଷ୍ଣଙ୍କ ସ୍ୱଧାମ ପ୍ରତ୍ୟାବର୍ତ୍ତନର ବର୍ଣ୍ଣନା ପରେ ସେଇ ଲୀଳାର ଅଧିକ ବିସ୍ତାରରେ କୌଣସି ଆବଶ୍ୟକତା ଥିବାର ସେ ବୋଧହୁଏ ଅନୁଭବ କରିନଥିଲେ। ଦଶମ-ଏକାଦଶ ସ୍କନ୍ଧର ଅନୁବାଦ ବେଳକୁ ଯେପରି କି ସେ ଅତିଶୟ ଶ୍ରାନ୍ତକ୍ଳାନ୍ତ ହୋଇ ପଡ଼ିଥିଲେ----।"

ଏ ସବୁ ସମ୍ଭାବନା ପ୍ରସ୍ତାବ ମଧ୍ୟ ନିରାଧାର କଳ୍ପନା। ଚୈତନ୍ୟଙ୍କ ତିରୋଭାବ ହେଲା ଖ୍ରୀ ୧୫୩୩ ବେଳେ; ଅତିବଡ଼ଙ୍କ ସହ ପ୍ରଥମ ସାକ୍ଷାତ୍ ଠାରୁ ୧୮ ବର୍ଷ ପରେ। ଏହି 'ଦୀର୍ଘ ସମୟ ପାଇଥିଲେ'ରୁ ମନେ ହୁଏ ଚୈତନ୍ୟ ଖ୍ରୀ ୧୫୩୩ରେ

ମରିବେ ବୋଲି ଅତିବଡ଼ ଖ୍ରୀ.୧୫୧୫ରେ ଜାଣିଥିଲେ। ତାହାର 'ପ୍ରଥମ ଭାଗ' ଏକବର୍ଷ ନା ସତର ବର୍ଷ କୁହାଯାଇନାହିଁ। ଯେଉଁ ଅତିବଡ଼ ଗୋସାଇଁ ବର୍ଷେ ଦିବର୍ଷ ମଧ୍ୟରେ ଭାଗବତର ୨୧୫ ଅଧ୍ୟାୟର ଅନୁବାଦ କରି ପାରିଥିଲେ ତାଙ୍କୁ ଦୀର୍ଘ ସମୟ ମିଳିବାର ଆବଶ୍ୟକତା କଣ ଅଛି? ପୁଣି, ଯେଉଁ ଭାଗବତର ପଦ ଶୁଣି ଚୈତନ୍ୟ ଅତିବଡ଼ ଗୋସାଇଁଙ୍କୁ ଅତି ପ୍ରଶଂସା କରିଥିବା କଥା ଦିବାକର ଦାସ କହନ୍ତି ତାହା 'ଗତାନୁଗତିକ ଅନୁବାଦ' ମାତ୍ର ବୋଲି ମତ ଦେଇ ଡଃ ସାମନ୍ତରାୟ ନା ଓଡ଼ିଆ ଭାଗବତର, ନା ଚୈତନ୍ୟଙ୍କର, ନା ଜଗନ୍ନାଥ ଦାସଙ୍କର, ନା ଦିବାକର ଦାସଙ୍କର କାହାରି ହେଲେ ମର୍ଯ୍ୟାଦା ରକ୍ଷା କରୁ ନାହାନ୍ତି। ନିଜର ପୂର୍ବ ପୋଷିତ ଭ୍ରାନ୍ତ ମତକୁ ରକ୍ଷା କରିବା ପାଇଁ ଏପରି ମତଦେବା ଦ୍ୱାରା ଡଃ ସାମନ୍ତରାୟ ତାଙ୍କ ଭିତରେ ଥିବା ସମାଲୋଚକର ମର୍ଯ୍ୟାଦା ମଧ୍ୟ ରକ୍ଷା କରୁନାହାନ୍ତି। ଅଠର ବର୍ଷ ବୟସରେ ଭାଗବତର ଦୁଇ ତୃତୀୟାଂଶ ଅନୁବାଦ ସାରିଥିବା ବ୍ୟକ୍ତି ଆଉ ମାତ୍ର ଏକ ତୃତୀୟାଂଶରୁ କମ୍ ଅନୁବାଦ କରି 'ଅତିଶୟ ଶ୍ରାନ୍ତକ୍ଳାନ୍ତ' ହୋଇଯିବାରୁ ମାତ୍ର ତେରଟି ଅଧ୍ୟାୟ ଅନୁବାଦ ନ କରି ଗ୍ରନ୍ଥଟିକୁ, ଖଣ୍ଡିତ କରି ଛାଡ଼ିଦେଲେ? ଏହା ଯଦି ତାଙ୍କର 'ସର୍ବାଦୌ ବିଶ୍ୱାସଯୋଗ୍ୟ' ହୋଇଥାଏ ତେବେ ତାଙ୍କର ବିଶ୍ୱାସ ଯୁକ୍ତିଯୁକ୍ତ ନୁହେଁ।

ଏହି ସମସ୍ତ ବିଷୟ ବିଚାର କଲେ ଜଣାଯାଏ ଯେ (୧) ଜଗନ୍ନାଥ ଚରିତାମୃତର ବଡ଼ ଓଡ଼ିଆ ମଠ ଦ୍ୱାରା ପ୍ରକାଶିତ ସଂସ୍କରଣରେ ଗୃହୀତ ପାଠ ମୌଳିକ ନୁହେଁ, (୨) ମଠ ସଂସ୍କରଣରେ ଅତିବଡ଼ ଗୋସାଇଁ ଭାଗବତ ରଚିଲେ ବୋଲି ଯାହା ଲେଖାଅଛି ତାହା ଅତିବଡ଼ୀ ସଂପ୍ରଦାୟର ଆଧୁନିକ ଯୁଗର ପ୍ରକ୍ଷେପ/ଜାଲିଆତି ଓ (୩) ଜଗନ୍ନାଥ ଚରିତାମୃତରେ ଅତିବଡ଼ ଗୋସାଇଁଙ୍କ ଜୀବନବୃତ୍ତାନ୍ତ ଯେପରି ବର୍ଣ୍ଣିତ ହୋଇଛି (ମଠ ସଂସ୍କରଣର ପ୍ରକ୍ଷିପ୍ତ ଅଂଶକୁ ଗ୍ରହଣ କଲେ ମଧ୍ୟ) ସେଥିରେ ଅତିବଡ଼ ଗୋସାଇଁ ଭାଗବତ ରଚନା କରିଥିବା ସମ୍ଭାବନା ଦେଖାଯାଉ ନାହିଁ।

ଏହି ପରିସ୍ଥିତିରେ ଭାଗବତ ରଚନା ଓ ତାହାର କବି ଜଗନ୍ନାଥ ଦାସଙ୍କ ବିଷୟ ଉଲ୍ଲେଖ କରୁଥିବା ପ୍ରାଚୀନ ଓଡ଼ିଆ କବିମାନେ (ଯଥା:-ଦିବାକର ଦାସଙ୍କ ପୂର୍ବବର୍ତ୍ତୀ ମହାଦେବ ଦାସ ଓ ପରବର୍ତ୍ତୀ ନୃସିଂହ ପୁରାଣକାର ପୀତାମ୍ବର ଦାସ ଓ ଦାର୍ଢ୍ୟତାଭକ୍ତିକାର ରାମଦାସ) ଜଗନ୍ନାଥ ଦାସଙ୍କୁ 'ଅତିବଡ଼' ଉପାଧିଯୁକ୍ତ କରିନାହାନ୍ତି।*



---

* ମୋର ପ୍ରବନ୍ଧ ପ୍ରକାଶ ପାଇବା ପରେ ଅତିବଡ଼ ହିଁ ଭାଗବତକାର ବୋଲି ଗ୍ରହଣ କରି ଆସୁଥିବା ଲୋକେ ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗକୁ ପ୍ରଭାବିତ କରି ଭାଗବତକାରଙ୍କ ନାମରେ ପ୍ରଦତ୍ତ ପୁରସ୍କାରକୁ 'ଅତିବଡ଼ୀ' ଆଖ୍ୟା ଦେଲେ।

## ଚତୁର୍ଥ ଅଧ୍ୟାୟ

# ଅନେକ ବଳରାମ ଦାସ

ଭାଗବତକାର ଜଗନ୍ନାଥ ଦାସଙ୍କ ବ୍ୟକ୍ତିତ୍ୱ ନିରୂପଣ କ୍ଷେତ୍ରରେ ଯେଉଁ ଯେଉଁ ଅଡୁଆ ରହିଛି ରାମାୟଣକାର ବଳରାମଦାସଙ୍କ କ୍ଷେତ୍ରରେ ଜଣାଅଧିକେ ସେହି ସେହି ଅଡୁଆ ରହିଛି। ବଳରାମ ଦାସ ଭଣିତି ଦେଖିଲେ ତାହା ଏକମାତ୍ର ରାମାୟଣକାରଙ୍କ ରଚନା ବୋଲି ଗ୍ରହଣ କରି ନେବା ଆମ ଆଲୋଚକଙ୍କର ଏକ ଖୋଇ ହୋଇଯାଇଛି। ଅତୀତର ପ୍ରାୟ ୫୦୦ ବର୍ଷ ମଧ୍ୟରେ ବଳରାମ ଦାସ ନିଶ୍ଚୟ ଶତଶତ ସଂଖ୍ୟକ ରହିଥିବେ ଓ ତନ୍ମଧ୍ୟରୁ ଅନେକ କିଛି କିଛି ଲେଖିଥିବା ସମ୍ଭବ। ପୁଣି, ଜଣେ ପ୍ରତିଷ୍ଠାବନ୍ତ କବିଙ୍କ ନାମକୁ ଅନ୍ୟ କେହି କବି ବ୍ୟବହାର କରି ସ୍ୱକୃତି/ସ୍ୱମତକୁ ସମାଜରେ ଚଳାଇ ନେବାକୁ ଯତ୍ନବାନ୍ ହୋଇପାରେ ମଧ୍ୟ। ଏହି ଦୃଷ୍ଟିରୁ ଭଣିତିକୁ ସନ୍ଦେହ କରାଯାଇ ରଚନାର ପିତୃତ୍ୱ ବିଚାର ହେଉନାହିଁ। ଆଜ ମଧ୍ୟ, ଅଜବି ବଳାରାମ ଦାସଙ୍କ ସଂପର୍କରେ ମିଳୁଥିବା ତଥ୍ୟକୁ କବି ବଳରାମ ଦାସଙ୍କ ଜୀବନ ବୃତ୍ତାନ୍ତ ସହିତ ମିଶାଇ ଦେବା ଦ୍ୱାରା କବିଙ୍କ ଜୀବନ ବୃତ୍ତାନ୍ତ ଭ୍ରମାତ୍ମକ ହୋଇ ପଡ଼ିଛି; ଯଥା- ଅତିବଡ଼ ଜଗନ୍ନାଥ ଦାସଙ୍କ ଜୀବନବୃତ୍ତାନ୍ତ ରଚୟିତା ଦିବାକର ଦାସ ଜଣାଇଛନ୍ତି ଯେ ମତ୍ତ ବଳରାମ ଅତିବଡ଼ଙ୍କୁ ବୈଷ୍ଣବ ମତରେ ଦୀକ୍ଷିତ କରିଥିଲେ। ମୁଁ ପୂର୍ବରୁ ଦର୍ଶାଇଛି ଯେ ଭାଗବତକାର ହିଁ ଅତିବଡ଼ ବୋଲି ଧରି ନେବା ଭ୍ରମ। ବର୍ତ୍ତମାନ ଦେଖାଇବାକୁ ଯାଉଛି ଯେ ରାମାୟଣକାର ହିଁ ମତ୍ତ ବଳରାମ ବୋଲି ଧରି ନେବା ମହାଭ୍ରମ।

### ରାମାୟଣକାର ବଳରାମ ଦାସ

ରାମାୟଣକାରଙ୍କ ପରିଚୟ ତାଙ୍କ ରଚନା ଉପରେ ନିର୍ଭର କରି ସର୍ବାଦୌ ନିର୍ଣ୍ଣିତ ହେବା ଆବଶ୍ୟକ। ତାହାଙ୍କର ଗ୍ରନ୍ଥର ନାମ ଜଗମୋହନ ରାମାୟଣ। ଏହା ପ୍ରାଚୀନ ଦାଣ୍ଡି ଶୈଳୀରେ ଲେଖା ହୋଇଥିବାରୁ 'ଦାଣ୍ଡି ରାମାୟଣ' ନାମରେ ମଧ୍ୟ ପରିଚିତ ହୋଇଥାଏ। କେତେଜଣ ଆଧୁନିକ ପ୍ରକାଶକ ମୁଦ୍ରଣ-ସୁବିଧା ପାଇଁ ଏହାକୁ ଚଉଦ ଅକ୍ଷରୀ ବୃତ୍ତରେ ରୂପାନ୍ତର କରିଛନ୍ତି। ଏପରି ରୂପାନ୍ତର କାର୍ଯ୍ୟ ପ୍ରଥମେ ଗୋବିନ୍ଦ ରଥ କରିଥିଲେ। ନିଜେ କବି ଗ୍ରନ୍ଥ ଶେଷକୁ ଗ୍ରନ୍ଥର ପରିଚୟ ଦେଇ

କହିଛନ୍ତି ଯେ ବାଲ୍ମୀକି ମୁନି ଯେଉଁ ୨୪ ହଜାର ଶ୍ଳୋକ ବିଶିଷ୍ଟ ରାମାୟଣ ଲେଖିଥିଲେ କବି ତାହାକୁ ପଣ୍ଡିତଙ୍କ ମୁହଁରୁ ଶୁଣି ଶ୍ରୀ ଜଗନ୍ନାଥଙ୍କ କରୁଣାବଶତଃ ଲକ୍ଷେ ପଦ ବିଶିଷ୍ଟ ଗୀତ (ଅର୍ଥାତ୍ ପ୍ରାକୃତ ପଦ୍ୟ)ରେ ପରିଣତ କରିଥିଲେ ।

ଚଉବିଂଶ ସହସ୍ର ଶ୍ଳୋକ ଏ ଗୀତ ରସ ।
ବାଲମୀକ ମୁନି ଯାହା କଲେକ ପ୍ରକାଶ ।।
ବିଦ୍ୱଜନ ମୁଖରୁ ଯେ ଶୁଣିଲଇ ତାହା ।
ଦୟାକଲେ ମୋତେ ଯେ କମଳା-ଦେବୀ-ନାହା ।।
ତେଣୁ ଏହି ମହାକାବ୍ୟକୁ ଯେ ବାକ୍ୟ କଲି ।
ଲକ୍ଷେ ପଦ ଠିକେ କରି ଗୀତେ ବସାଇଲି ।।

(ଉତ୍ତର କାଣ୍ଡ, ଗୋବିନ୍ଦରଥଙ୍କ ପାଠ)

ସେହି ଉତ୍ତରକାଣ୍ଡ ଶେଷକୁ କବି ଆଉ ଠାଏଁ ଜଣାଇଛନ୍ତି ଯେ ରାମାୟଣର ସାତକାଣ୍ଡଯାକର ମୋଟ ପଦସଂଖ୍ୟା ଏକ ଲକ୍ଷ। " ସପତ କାଣ୍ଡ ରାମାୟଣ ଯେ ଲକ୍ଷେ ପଦ। ଶୁଣସି ହୋ ସୁଜ୍ଞଜନେ ଗ୍ରନ୍ଥର ସଂବାଦ" (ଗୋବିନ୍ଦ ରଥଙ୍କ ପାଠ)। ଗୋବିନ୍ଦ ରଥେ ସଂପାଦିତ କରିଥିବା ପାଠରେ ମୋଟରେ ଚାଳିଶ ହଜାର ପଦ ମାତ୍ର ରହିଛି। ନିକଟରେ ଧର୍ମଗ୍ରନ୍ଥ ଷ୍ଟୋର ଜଗମୋହନ ରମାୟଣର ଏକ ପାଠାନ୍ତର ପ୍ରକାଶିତ କରାଇଛି। ଏଥିରେ ଗୋବିନ୍ଦ ରଥଙ୍କ ପାଠର ଦୁଇଗୁଣ ପଦ ଥାଇପାରେ କିନ୍ତୁ ଏହି ପାଠଟି ସୁସଂପାଦିତ ତ ନୁହେଁ ବହୁତ ପ୍ରକ୍ଷିପ୍ତ ବିଷୟ ଏଥିରେ ସ୍ଥାନ ପାଇ ଯାଇଥିବାରୁ ନିର୍ଭର ଯୋଗ୍ୟ ମଧ୍ୟ ନୁହେଁ। ଏହାର ଆଦିକାଣ୍ଡ ଶେଷକୁ ଜଣାଇ ଦିଆଯାଇଛି ଯେ ଆଦିକାଣ୍ଡରେ 'ନବସସ୍ର ପଦ' ରହିଛି। କିନ୍ତୁ, ଆଦି କାଣ୍ଡରେ ପ୍ରକୃତରେ ସତର ହଜାରରୁ ଅଧିକ ପଦ ମୁଦ୍ରିତ ହୋଇଛି। ସେହିପରି ଏହାର ଆରଣ୍ୟକ କାଣ୍ଡଟି "ଅଠର ସସ୍ର ଚବିଶ" ପଦବିଶିଷ୍ଟ ବୋଲି ସେଠାରେ ଉକ୍ତ ହୋଇଥିଲେହେଁ ମୁଦ୍ରିତ ପଦ ସଂଖ୍ୟା ପ୍ରାୟ ସାଢ଼େ ସାତହଜାର ମାତ୍ର। ଆଉ ଏକ ଉଲ୍ଲେଖନୀୟ ବିଷୟ ଏହି ଯେ ଦକ୍ଷିଣ ଓଡ଼ିଶାରେ ଉପଲଭ୍ୟ ଜଗମୋହନ ରାମାୟଣ ପୋଥିର ପାଠ ଓ କଟକ, ପୁରୀ ଜିଲାର ପୋଥିପାଠ ମଧ୍ୟରେ ବିଶେଷ ପାର୍ଥକ୍ୟ ରହିଥିବା କଥା ଜଣାଅଛି। ଏହି ପରିସ୍ଥିତିରେ ଜଗମୋହନ ରାମାୟଣ ସଂପର୍କରେ କିଛି ଲେଖିବାକୁ ଯିବାବେଳେ ନିର୍ଭର ଯୋଗ୍ୟ ଉପାଦାନର ଅଭାବ ପ୍ରଥମେ ଅନୁଭୂତ ହେଉଛି। ଏହି ପ୍ରାଚୀନ ରଚନାଟିର ଏକ ସୁସଂପାଦିତ ଶୁଦ୍ଧ ସଂସ୍କରଣର ପ୍ରକାଶ ପାଇବା ପର୍ଯ୍ୟନ୍ତ ଏହି ଅଭାବ ରହିଥିବ।

ରାମାୟଣକାର ଜଣାଇଛନ୍ତି ଯେ ତାଙ୍କ ପିତାଙ୍କ ନାମ ସୋମନାଥ ଦାସ ଓ ମାତାଙ୍କ ନାମ ମନୋମାୟା। ସୋମନାଥଙ୍କ ଉପାଧି ଥିଲା ମହାପାତ୍ର ଓ ସେ କୌଣସି ଏକ ରାଜାଙ୍କର ମହାମନ୍ତ୍ରୀ ଥିଲେ।

ମହାମନ୍ତ୍ରୀ ସୋମନାଥ ମହାପାତ୍ର।
ବଳରାମ ଦାସ ମୁଁ ଯେ ତାହାଙ୍କର ପୁତ୍ର॥
ଜନ୍ମେ ଜନ୍ମେ ମୁହିଁ ଶ୍ରୀହରିର ସେବକ।
କି ପାପ କରି ଆସି ଜନ୍ମିଲି ମୃତ୍ୟୁ ଲୋକ॥
ମନମାୟା ବୋଲି ଯେ ଜନନୀର ଗର୍ଭୁ।
ଜନ୍ମ ହୋଇଣ ମୁଁ ନ ଚିହ୍ନିଲି ମହାପ୍ରଭୁ॥ (ଉତ୍ତର, ଛତ୍ରପୁର ପୋଥି)।

ଲଙ୍କାକାଣ୍ଡ ଓ ଉତ୍ତରକାଣ୍ଡ ଶେଷରେ ମଧ୍ୟ କବି ତାଙ୍କ ପିତାଙ୍କ ନାମ ଲେଖି ଜଣାଇଛନ୍ତି ଯେ ତାଙ୍କ ପିତା ଜଣେ ବିଷ୍ଣୁଭକ୍ତ ଥିବା ହେତୁ ଶ୍ରୀଜଗନ୍ନାଥ କବିଙ୍କ ପ୍ରତି ସଦୟ ହୋଇ ରାମାୟଣ-ରଚନାଶକ୍ତି ଦେଇଥିଲେ।

ସୋମନାଥ ମହାପାତ୍ର କୁଳରେ ମୁଁ ସମ୍ଭୂତ।
ଯେଣୁ ପିତା ମୋର ବିଷ୍ଣୁରେ ଭଗତ॥
ତେଣୁ ଜଗନ୍ନାଥ ଦୟା ମୋତେ କଲେ।
ରାମାୟଣ ଗ୍ରନ୍ଥ ମୋ ହୃଦରେ ପୂରୋଇଲେ॥ (ଲଙ୍କା, ଛତ୍ରପୁର ପୋଥି)।
ମହାପାତ୍ର ସୋମନାଥ ଦାସର ତନୟ।
ବଳରାମ ଦାସ ଗୀତ ଯେ ଅମୃତ ମୟ॥ (ଉତ୍ତର, ଗୋବିନ୍ଦ ରଥଙ୍କ ପାଠ)

ବଳରାମ ଦାସଙ୍କ କବି ଜୀବନର ଆଦର୍ଶ ତଥା ପଥପ୍ରଦର୍ଶକ ଥିଲେ ସାରଳା ଦାସ। ରଚନାର ଭାଷା ଓ ଶୈଳୀ, ମୂଳ ଗ୍ରନ୍ଥୋକ୍ତ ଚରିତର ଯଥେଚ୍ଛ ପରିବର୍ତ୍ତନ ଆଦି ବିଷୟରେ ବଳରାମ ଦାସ ସାରଳାଦାସଙ୍କ ପଦାଙ୍କ ଅନୁସରଣ କରିଛନ୍ତି। ସାରଳାଦାସଙ୍କ ପରି ବଳରାମ ଦାସ ମଧ୍ୟ ଲେଖିଛନ୍ତି ଯେ ସେ ଜନ୍ମେ ଜନ୍ମେ ବିଷ୍ଣୁଭକ୍ତ ଥିଲେ ଓ ଏହି ଜନ୍ମରେ ସେ ଜଣେ ମୂର୍ଖ ଓ ଅଜ୍ଞାନ ମଣିଷ। ସାରଳା ଦାସ ଯେପରି ସାରଳାଚଣ୍ଡୀ ମହାଭାରତ ଡାକି ଦେଇଥିବା ଓ ସେ ତାହା ଲେଖିଥିବା କଥା କହିଛନ୍ତି, ବଳରାମ ଦାସ ସେହିପରି ଶ୍ରୀ ଜଗନ୍ନାଥ ତାଙ୍କୁ ରାମାୟଣ ଡାକି ଦେଇଥିବା କଥା ଲେଖିଛନ୍ତି। ଦେବୀ ସାରଳାଙ୍କ କୃପାରୁ ଲେଖାଯିବା ଗ୍ରନ୍ଥ ସାରଳା ମହାଭାରତ ହେଲା ପରି ଶ୍ରୀ ଜଗନ୍ନାଥଙ୍କ କୃପାରୁ ଲିଖିତ ଗ୍ରନ୍ଥ ଜଗମୋହନ ରାମାୟଣ ବୋଲାଇଲା, କାରଣ ଶ୍ରୀ ଜଗନ୍ନାଥଙ୍କ ନାମାନ୍ତର ଜଗମୋହନ।

ଜଗମୋହନ ରାମାୟଣ ନାମ ଏହୁ ଗ୍ରନ୍ଥ।
ଏଥିରେ କବି ତ ଶ୍ରୀ ନୀଳଗିରି ଜଗନ୍ନାଥ॥
ସେ ହରି ମୋର ହୃଦେ ବିଜେ କରିଥାନ୍ତି।
ଆପଣାର ଚରିତ ଆପଣେ ବଖାଣନ୍ତି॥ (ଉତ୍ତରକ ଛତ୍ରପୁର ପୋଥି)

ଶ୍ୟାମସୁନ୍ଦର ରାଜଗୁରୁ 'ପ୍ରବନ୍ଧାବଳୀ'ରେ ଉଦ୍ଧାର କରିଥିବା ଅଂଶରେ ତଥା ମୁଁ ପାଠ କରିଥିବା ଛତ୍ରପୁର ପୋଥିରେ ଲେଖା ଅଛି ଯେ ରାମାୟଣ ରଚନା ଶେଷ ହେବା ବେଳକୁ କବିଙ୍କର ବୟସ ମୋଟେ ତିରିଷ ବର୍ଷ ହୋଇଥିଲା।

ଜାତିରେ ଶୁଦ୍ର ମୁଁ ଅଳପ ବୟସ।
ଗ୍ରନ୍ଥ କରିବା କାଳେ ତିରିଶି ବରଷ ॥
ଦାରା ପୁତ୍ର ଧନ ସୁଖଭୋଗ ଶିରୀ।
ଅଭୋକୀ ଅଦାତା ପଣ ଦେଇଛନ୍ତି ହରି ॥ (ଉତ୍ତର, ଛତ୍ରପୁର ପୋଥି)

ଗୋବିନ୍ଦ ରଥଙ୍କ ଦ୍ୱାରା ସଂପାଦିତ ପାଠରେ ସେତେବେଳକୁ କବିଙ୍କ ବୟସ ବତିଶ ବୋଲି ଲେଖାଅଛି :-

ଜନ୍ମରୁ ମୂରୁଖ ମୋର ଅଳପ ବୟସ।
ଗ୍ରନ୍ଥ କଲାକାଳେ ମୋତେ ବରଷ ବତିଶ ॥
ଦାରା, ସୁତ, ଧନଜନ ସୁଖଭୋଗ ଶିରୀ ॥
ଅଳପେ ଅଳପେ ଦେଇ ଅଛନ୍ତି ତା ହରି ॥

ଏଥିରୁ ଜଣାପଡ଼େ ଯେ ତାହାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଥିଲା ; ସେ ଧନବାନ୍, ସୁଖୀ ଓ ଭୋଗୀ ଥିଲେ। ଜଣେ ମନ୍ତ୍ରୀଙ୍କର ପୁତ୍ର ହୋଇଥିବାରୁ ତାଙ୍କ ପକ୍ଷେ ଏହି ଅବସ୍ଥା ସ୍ୱାଭାବିକ ଥିଲା। ତାଙ୍କର ଅନ୍ନଚିନ୍ତା ନଥିଲା (ଅଭୋକୀ); ଦାତା ହେବା ଭଳି ଆର୍ଥିକ ସାମର୍ଥ୍ୟ ତାଙ୍କର ନଥିଲା (ଅଦାତା)। ସେ ବିବାହ କରିସାରିଥିଲେ ଓ ପୁତ୍ରସନ୍ତାନର ଜନକ ହୋଇସାରିଥିଲେ।

କବି ତାହାଙ୍କର ବାସସ୍ଥାନ ସଂପର୍କରେ କୌଣସି ସୂଚନା ରାମାୟଣରେ ଦେଇନାହାନ୍ତି। କିନ୍ତୁ, ରାମାୟଣର କେତେକ ବର୍ଣ୍ଣନାରୁ ଜଣାପଡ଼େ ଯେ ଗ୍ରନ୍ଥ ରଚନା ସ୍ଥାନ ପୁରୁଷୋତ୍ତମ କ୍ଷେତ୍ର ନ ଥିଲା। ରାମାୟଣ ରଚନାର ପୃଷ୍ଠଭୂମି ବିଷୟ ଆଲୋଚନା କରିବା ଅବସରରେ ସେ ଜଣାଇଛନ୍ତି ଯେ ଏକଦା ସେ ଶ୍ରୀ ଜଗନ୍ନାଥଙ୍କ ପୁଷ୍ୟାଭିଷେକ (ପୌଷ ପୂର୍ଣ୍ଣିମା) ଉତ୍ସବ ବେଳେ ପୁରୁଷୋତ୍ତମ କ୍ଷେତ୍ରକୁ ଯାଇଥିଲେ ଓ ସେଠାରେ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରି ନିଷ୍ପାପ ହେବାରୁ ରାମାୟଣ ରଚନା କରିବାକୁ ସମର୍ଥ ହେଲେ।

ମୁହିଁ ବଳରାମ ଦାସ ତହିଁକି ଯାଇଥିଲି।
ଲକ୍ଷ୍ମୀନାରାୟଣଙ୍କର ଆନନ୍ଦ ଦେଖିଲି ॥
ତେଣୁ ସେ ମୋହର ସକଳ ପାପ ଗଲା।
ରାମାୟଣ ଗ୍ରନ୍ଥ ମୋ ହୃଦରେ ସ୍ପୁରିଲା ॥ (ଲଙ୍କାକାଣ୍ଡ, ଛତ୍ରପୁର ପୋଥି)

କବି ଆଉ ମଧ୍ୟ ଜଣାଇଛନ୍ତି ଯେ ଆଦିରୁ ସୁନ୍ଦର ପର୍ଯ୍ୟନ୍ତ ପାଞ୍ଚକାଣ୍ଡ ରଚନା କରିସାରିବା ପରେ କିପରି ଲଙ୍କାକାଣ୍ଡ ରଚନା କରିବେ ବୋଲି ସେ ଭାବିତ ଥିଲେ। ଶ୍ରୀଜଗନ୍ନାଥଙ୍କ କରୁଣା ହେଲେ ତାହା ସଂପନ୍ନ ହୋଇ ପାରିବ ବୋଲି ବିଚାରି ସେ ପୁରୁଷୋତ୍ତମ କ୍ଷେତ୍ରକୁ ଗଲେ ଓ ଗୁଣ୍ଡିଚା ଯାତ୍ରା ଦେଖିଲେ। ଏଥିରୁ ଜଣାଯାଉଛି ଯେ ତାହାଙ୍କର ବାସସ୍ଥାନ ପୁରୁଷୋତ୍ତମ କ୍ଷେତ୍ର ନ ଥିଲା, ଆଖପାଖ କୌଣସି ଗ୍ରାମ ମଧ୍ୟ ନଥିଲା।

ଏତେ ବିଚାରି ମୁଁ ଶ୍ରୀ ପୁରୁଷୋତ୍ତମ ଗଲି।
ଶ୍ରୀ ଗୁଣ୍ଡିଚା ବିଜେ ଶ୍ରୀ ଜଗନ୍ନାଥଙ୍କୁ ଦେଖିଲି॥

(ଲଙ୍କା କାଣ୍ଡ, ଛତ୍ରପୁର ପୋଥି)

ଈଶ୍ୱର ଦାସ 'ଚୈତନ୍ୟ ଭାଗବତ' ୪୬ ଅଧ୍ୟାୟରେ ବଳରାମ ଦାସଙ୍କ ଜନ୍ମସ୍ଥାନ ଚନ୍ଦ୍ରପୁର ବୋଲି ଲେଖିଛନ୍ତି :-

ଚନ୍ଦ୍ରପୁରରେ ସୋମନାଥ। ରାଜାର ଅଟେ ସେହୁ ପାତ୍ର॥
ତାହାର ପୁତ୍ର ହୁଏ ଜାତ। ବଳରାମ ଦାସ ବିଖ୍ୟାତ॥

ଈଶ୍ୱର ଦାସଙ୍କ ବର୍ଣ୍ଣନାରେ ଚନ୍ଦ୍ରପୁର ଗ୍ରାମଟି ଯାଜପୁର ଓ କଟକ ମଧ୍ୟବର୍ତ୍ତୀ। ପ୍ରକୃତରେ ଏପରି କୌଣସି ଗ୍ରାମ ଥିବା ଜଣାଯାଉନାହିଁ। ଈଶ୍ୱର ଦାସ ବହୁବିଧ ଉଦ୍ଭଟ ବିଷୟ ଓ ନାନା କପୋଳକଳ୍ପନାକୁ ଉପଜୀବ୍ୟ କରି ତାହାଙ୍କ ଗ୍ରନ୍ଥ ରଚନା କରିଥିବା ଯୋଗୁଁ ତାହାଙ୍କର ବିବରଣକୁ ଐତିହାସିକ ପ୍ରମାଣ ରୂପେ ଗ୍ରହଣ କରାଯାଇପାରୁ ନାହିଁ।

ସାରଳା ଦାସଙ୍କ ପରି ବଳରାମ ଦାସ ମଧ୍ୟ ଐଶ୍ୱରିକ ସଂପର୍କ ଦାବି କରିଛନ୍ତି। ଓ ସ୍ୱୟଂ ଜଗନ୍ନାଥ ତାଙ୍କୁ ରାମାୟଣ ଡାକି ଦେଇଥିବା କଥା ଲେଖିଛନ୍ତି। ''ଜଗମୋହନ ରାମାୟଣ କବି ଜଗନ୍ନାଥ। ତାହାଙ୍କର ଆଜ୍ଞାରେ ଲିହିଲା ମୋର ହାତ'' (ଲଙ୍କାକାଣ୍ଡ, ଗୋବିନ୍ଦ ରଥଙ୍କ ପାଠ)। ଆପଣା କୃତିତ୍ୱକୁ କୃଷ୍ଣାର୍ପିତ କରିବା ଦ୍ୱାରା ଦୈନ୍ୟଭାବ ସହିତ ଭକ୍ତି ପ୍ରକାଶ ପାଏ। ଆଉ ମଧ୍ୟ ଉଲ୍ଲେଖନୀୟ ଯେ ସେହି ଯୁଗରେ ଶିଷ୍ଟସମାଜ-ସମାଦୃତ 'ଦେବଭାଷା' ସଂସ୍କୃତ ଥିଲା ସର୍ବବିଧ ରଚନା ପାଇ ପ୍ରଶସ୍ତ ଭାଷା। ପ୍ରାକୃତ ଭାଷାରେ ରଚିତ ଧର୍ମଗ୍ରନ୍ଥ ମଧ୍ୟ ସଂସ୍କୃତ ଧର୍ମଗ୍ରନ୍ଥର ସମକକ୍ଷ ହୋଇ ପାରିବ, ଏହି ବିଶ୍ୱାସକୁ ଦେବଦେବୀ ଭକ୍ତ ଧର୍ମଭୀରୁ ସମାଜରେ ଗ୍ରହଣଯୋଗ୍ୟ କରାଇନେବା ଲକ୍ଷ୍ୟରେ ସାରଳାଦାସ, ବଳରାମ ଦାସ, ଜଗନ୍ନାଥ ଦାସ ପ୍ରଭୃତି ଧର୍ମପୁସ୍ତକର କବିମାନେ ସ୍ୱସ୍ୱ ପ୍ରଣୀତ ଗ୍ରନ୍ଥଗୁଡ଼ିକ ଦେବଦେବୀଙ୍କ ମୁଖନିଃସୃତ ବକ୍ତବ୍ୟ (ତେଣୁ ଦେବଭାଷା ଅପେକ୍ଷା ଅଧିକ ଗ୍ରାହ୍ୟ) ବୋଲି ଦାବି କରିଥିବା ଅନୁମାନ କରାଯାଇପାରେ।

ବଳରାମ ଦାସ ଲେଖିଛନ୍ତି ଯେ ସେ ମୂଳତଃ ବୈକୁଣ୍ଠବାସୀ ବିଷ୍ଣୁଙ୍କ ସେବକ। ଅନୁରୂପ ଭାବରେ ସାରଳାଦାସ ମହାଭାରତରେ କହିଛନ୍ତି ଯେ ସେ ଥିଲେ ଶିବଙ୍କ ଅଧିଷ୍ଠାନ କୈଳାସର ଦ୍ୱାର ରକ୍ଷକ ନନ୍ଦୀ ଓ ଚଣ୍ଡୀପୁରାଣରେ ଲେଖିଛନ୍ତି ଯେ ସେଥିରେ ବୈକୁଣ୍ଠବାସୀ, ବିଷ୍ଣୁଙ୍କ ଦ୍ୱାରପାଳ। କୌଣସି ଦୋଷ କରିବାରୁ ବୈକୁଣ୍ଠବାସୀ ବଳରାମଦାସଙ୍କୁ ମର୍ତ୍ତ୍ୟଲୋକରେ ଜନ୍ମଗ୍ରହଣ କରିବାକୁ ପଡ଼ିଲା ଓ ଇଚ୍ଛା ହେଲେ ସେ ବୈକୁଣ୍ଠକୁ ଫେରିଯିବେ।

ଏ ମର୍ତ୍ତ୍ୟଲୋକେ ଯେ ମୁହିଁ ଜଗନ୍ନାଥ ସେବି।
ଇଚ୍ଛା ହୋଇଲେ ମୁଁ ବଇକୁଣ୍ଠକୁ ଯିବି॥
ସ୍ୱାମୀର ସେବକ ମୁଁ ସନ୍ନିଧେ ଖଟିଥାଇ।
ଏ ଭବସାଗରେ ମୋତେ ଚିନ୍ତା କିଛି ନାହିଁ॥

(ଉତ୍ତରକାଣ୍ଡ, ଗୋବିନ୍ଦ ରଥଙ୍କ ପାଠ)

ବଳରାମ ଦାସ ଶୂଦ୍ର ଥିବା କଥା ଅନେକତ୍ର ଲେଖିଛନ୍ତି (ଜାତିରେ ଶୂଦ୍ର ମୁଁ ଅଳପ ବୟସ-ଉତ୍ତର କାଣ୍ଡ)। ଭାବସମୁଦ୍ରରେ ସେ ଲେଖିଛନ୍ତି ଯେ ସେ ଉଚ୍ଚ ଜାତିରେ ଜାତ: ଦାସ ବଳିଆ ଅଟେ ବଡ଼ ଜାତି (୨୬ ପଦ)। କିନ୍ତୁ, ସାରଳାଦାସଙ୍କ ପରି ବଳରାମ ଦାସ ମଧ୍ୟ ନିଜର ନିର୍ଦ୍ଦିଷ୍ଟ ଜାତିର ନାମ ଜଣାଇନାହାନ୍ତି। ଗୋବିନ୍ଦ ରଥଙ୍କ ସଂପାଦିତ ପାଠରେ ବଳରାମ ଦାସ ଜାତିରେ ବିପ୍ର ବୋଲି ଆଦିପର୍ବ ଶେଷକୁ ଲେଖାଅଛି :-

ନୀଳଗିରି ଜଗନ୍ନାଥ ଶ୍ରୀ ପଦ୍ମଚରଣ
ବିପ୍ର ବଳରାମ ଦାସ ପଶିଲା ଶରଣ॥

ମୁଁ ଦେଖିଥିବା କୌଣସି ତାଳପତ୍ର ପୋଥିରେ ଏ ପାଠ ନାହିଁ, ସେଥିରେ ସେ ଶୂଦ୍ର ଥିବା କଥା ହିଁ ଲେଖାଅଛି। ତେଣୁ ସେ ବିପ୍ର ଥିବା ଉଲ୍ଲେଖ ପ୍ରକ୍ଷିପ୍ତ ବୋଲି ନିରୂପଣ କରିବାକୁ ହେଉଛି। ଅନ୍ୟତ୍ର କବି ଲେଖିଛନ୍ତି ଯେ ସେ ଏକ ବାନର ରୂପରେ ରାମଙ୍କ ସଙ୍ଗରେ ଥିଲେ ଓ ରାମଙ୍କ ଆଜ୍ଞା ଅନୁସାରେ କଳିଯୁଗରେ ସେ 'ଶୂଦ୍ରମୁନି' ଭାବରେ ଜନ୍ମଗ୍ରହଣ କରିଥିଲେ। 'ଶୂଦ୍ରମୁନି' ପଦଟି ମୂଳତଃ ସାରଳାଦାସଙ୍କ ଦ୍ୱାରା ଉଦ୍ଭାବିତ। ଏହାକୁ ବଳରାମ ଦାସ ମଧ୍ୟ ସ୍ୱୀକାର କରିଥିଲେ। କାରଣ, ସାରଳାଦାସଙ୍କ ପରି ବଳରାମ ଦାସ ମଧ୍ୟ ଶୂଦ୍ର ଥିଲେ ଓ ସେ ମଧ୍ୟ ପ୍ରାକୃତ ଭାଷାରେ କାବ୍ୟକର୍ତ୍ତା ଥିଲେ। ସାରଳାଦାସଙ୍କ ବ୍ୟାଖ୍ୟା ଅନୁସାରେ ମୁନିର ଅର୍ଥ ଶାସ୍ତ୍ରକାର : "ମୁନି ଅଂଶେ ଜାତ ହେଲେ ଶାସ୍ତ୍ର ପାରଇ କହି" (ବନ ପର୍ବ, ୨ୟ ଖଣ୍ଡ, ପୃ.୧୯୨)। ବଳରାମ ଦାସ ଲେଖିଛନ୍ତି :-

ମୁହିଁ ବଳରାମ ଦାସ ରାମାୟଣ ଅବତାରେ ଥିଲି।
ବିହୁଡ଼ି ଧରିଣ ମୁଁ ସମସ୍ତ ଦେଖିଲି॥
ମତେ ଆଜ୍ଞା ଦେଲେ ମର୍ତ୍ତ୍ୟପୁରକୁ ଯିବୁ।
କଳିଯୁଗେ ଶୂଦ୍ରମୁନି ହୋଇଣ ଜନମିବୁ॥
ଜନ୍ମହୁଁ ବର୍ଣ୍ଣକଥା ସୁମରିବୁ ତୁହି।
ଶ୍ରୀ ଜଗନ୍ନାଥ ପ୍ରଭୁ ଯେ ମୋହର ଗୋସାଇଁ॥

(ଲଙ୍କାକାଣ୍ଡ, ପ୍ରବନ୍ଧାବଳୀରେ ଉଦ୍ଧୃତ)

## ବଟ ଅବକାଶକାର

ପଣ୍ଡିତ ନୀଳକଣ୍ଠ ଦାସ ଓଡ଼ିଆ ସାହିତ୍ୟର କ୍ରମ-ପରିଣାମ (୨ୟ ଭାଗ, ୫ମ ଅଧ୍ୟାୟ)ରେ ଲେଖିଛନ୍ତି: ''ପଣସ ଚୋରି, ବଟ ଅବକାଶ, ଭାବସମୁଦ୍ର ପରି ଗ୍ରନ୍ଥମାନ ଯେ କଦାପି ସେଇ ବଳରାମ ଦାସଙ୍କର ନୁହେଁ, ଏହା ସ୍ଥିର କରିବାକୁ କଣ ସାହିତ୍ୟିକ ବିଚାର ଲୋଡ଼ା ? ଲେଖା ସାହିତ୍ୟର ଧାରାବାହିକ ବିଚାର ବେଳେ ଏଥିପ୍ରତି ଯଥାସ୍ଥାନରେ ପୁଣି ଲକ୍ଷ୍ୟ କରାଯିବ। ଏ ସବୁ ଭକ୍ତଙ୍କ କାମ।'' ପଣ୍ଡିତ ଦାସ କୌଣସି ଯୁକ୍ତି ଉପସ୍ଥାପନ ନ କରି ଏପରି ମତ ଦେଇଛନ୍ତି। ଏହା ଭକ୍ତଙ୍କ କାମ ବୋଲି କହିବା ଭିତରେ ପଣ୍ଡିତ ମତ ଦେଲା ପରି ଲାଗୁଛି ଯେ ବଳରାମ ଦାସ ଭକ୍ତ ନୁହନ୍ତି। ରାମାୟଣ ଯୁଗରେ ରାମଙ୍କ ସନ୍ନିଧରେ ରହି ଦିହୁଡ଼ି ଧରିବା ଲୋକଟି କିପରି ଭକ୍ତ ନ ହେଲା ବୁଝିହେଉ ନାହିଁ। ପ୍ରତିଶ୍ରୁତ 'ଧାରାବାହିକ ବିଚାର'' ପ୍ରକାଶ ପାଇନାହିଁ। କ୍ରମ ପରିଣାମର ୩ୟ ଭାଗର ପାଣ୍ଡୁଲିପି ପ୍ରକାଶକଙ୍କୁ ଦିଆଯାଇଥିଲା ବୋଲି ଶୁଣିଥିଲି। କିନ୍ତୁ ଯାହା ୩ୟ ଭାଗ ନାମରେ ପ୍ରକାଶ ପାଇଲା ସେଥିରେ ଏ ପ୍ରକାର କିଛି ବିଷୟ ନାହିଁ। ପଣ୍ଡିତେ ଧାରଣ କରି ନାହାନ୍ତି ଯେ ବଳରାମ ଦାସ ନିଜେ ଜଣେ ଭକ୍ତ। ବଟ ଅବକାଶ ଆଦିରେ ଥିବା 'ଭାକ୍ତିକ ମିଥ୍ୟା'ର ଜନକ ବଳରାମ ଦାସ ହେବା ସ୍ୱାଭାବିକ।

ପ୍ରାଚୀନ ଦାଣ୍ଡିଶୈଳୀରେ ରଚିତ ପ୍ରାୟ ସାଢ଼େ ତିନିଶହ ପଦ ବିଶିଷ୍ଟ କ୍ଷୁଦ୍ର 'ବଟ ଅବକାଶ' ପୁସ୍ତକଟି ବଳରାମ ଦାସ ଭକ୍ତ ଭାବରେ ଶ୍ରୀ ଜଗନ୍ନାଥଙ୍କର ଅତ୍ୟନ୍ତ କୃପାଭାଜନ ବୋଲି ପ୍ରତିପାଦନ କରେ। ଏଥିରେ କବି ଆତ୍ମପରିଚୟ ଦେଇ ଜଣାଇଛନ୍ତି: ''ସୋମନାଥ ତନୟ ମୁଁ ବଳରାମ ଦାସ'' (୯ପଦ)। ବଟ ଅବକାଶରେ କବି ନିଜ ସଂପର୍କରେ ଏକ ଅଲୌକିକ ଗଳ୍ପର ଅବତାରଣା କରିଛନ୍ତି। ସେଥିରେ ବର୍ଣ୍ଣିତ ହୋଇଛି ଯେ ବୈଷ୍ଣବ ବଳରାମ ଦାସ ପୁରୁଷୋତ୍ତମ କ୍ଷେତ୍ରର ଏକ ମଠର ମହନ୍ତ ଥିଲେ। ସେ ଲଙ୍କା ଦର୍ଶନ କରିବାକୁ ଶ୍ରୀ ଜଗନ୍ନାଥଙ୍କୁ ଅଳି କରିବାରୁ ଭକ୍ତବତ୍ସଳ ପ୍ରଭୁ ତାଙ୍କ ହାତକୁ ସୁନାଝରୀଟିଏ ବଢ଼ାଇ କହିଲେ ଯେ ସେ ଏହି ଝରୀଟିକୁ ଧରି ତାଙ୍କ ପଛେ ପଛେ ଆସିଲେ ଲଙ୍କାକୁ ଯାଇପାରିବେ। ରାତିରେ କଳ୍ପବଟଠାରେ ଦେବଦେବୀମାନଙ୍କର ସଭା ବସିଲା, ଶ୍ରୀଜଗନ୍ନାଥ ଦେବଦେବୀମାନଙ୍କର ଗୁହାରି ଶୁଣିଲେ। ବଳରାମ ଦାସ ଝରୀ ଧରି ଶ୍ରୀଜଗନ୍ନାଥଙ୍କ ପାଖେ ପାଖେ ଥିଲେ। ସେଠାରୁ ଶ୍ରୀଜଗନ୍ନାଥ ଗରୁଡ଼ ପିଠିରେ ଚଢ଼ି ଲଙ୍କାକୁ ଗଲେ, ବଳରାମ ଦାସ ଝରୀ ଧରି ତାଙ୍କ ସଙ୍ଗରେ ଗଲେ। ବାଟରେ ଦାସଙ୍କ ମନରେ ଗର୍ବ ହେଲା ଯେ ସେ ଅତିଶୟ ଭାଗ୍ୟବାନ, କାରଣ ମାନବ ଦେହଧରି ସେ ଲଙ୍କାକୁ ଯାଉଛନ୍ତି। ଗର୍ବ କରିବାରୁ ଦାସେ ଗରୁଡ଼ ପିଠିରୁ ଖସି ଜଳରେ ପଡ଼ିଲେ। ଶ୍ରୀଜଗନ୍ନାଥଙ୍କୁ କାକୁସ୍ଥ ହୋଇ ଡାକିବାରୁ ସେ ଦାସଙ୍କୁ ଜଳରୁ ଉଠାଇ ପୁଣି ଗରୁଡ଼ ପିଠିରେ ବସାଇ ଲଙ୍କାକୁ ନେଲେ।

ଲଙ୍କା ଦର୍ଶନ ପରେ ଦାସେ ଜଗନ୍ନାଥଙ୍କ ସହିତ ପୁରୁଷୋତ୍ତମ କ୍ଷେତ୍ରକୁ ଫେରିଲେ, କିନ୍ତୁ, ସୁନାଝରୀଟିକୁ ଫେରାଇବାକୁ ଭୁଲିଯାଇ ନିଜର ମଠକୁ ବାହୁଡ଼ି ଶୋଇ ପଡ଼ିଲେ। ସକାଳ ହେବାରୁ ଝରୀ ଖୋଜା ପଡ଼ିଲା। ଦାସେ ଝରୀଟିକୁ ନେଇ ଫେରାଇବା ପରେ ସେ ଚୋରି କରିଥିଲେ ବୋଲି ଅଭିଯୋଗ ହେଲା। ଦାସେ ରାଜା ପ୍ରତାପରୁଦ୍ରଙ୍କ ପାଖକୁ ଡକରା ହୋଇ ଗଲେ।

ରାଜା ପଚାରିଲେ ମହନ୍ତ ପରା ତୁମ୍ଭେ।
ଚୋରି ବିଦ୍ୟାରେ ଦାସେ ଥାଅ ବଡ଼ ଦମ୍ଭେ ।।୩୫।।
ବୈଷ୍ଣବ ପଣରେ ତୁମ୍ଭେ ଧାର୍ମିକ ବୋଲାଅ।
ଏତେ ବଡ଼ ଲୋକ ହୋଇ ଅନ୍ୟାୟକୁ ଯାଅ।।୩୬।। (ବଟ ଅବକାଶ)

ଗଣବିଶ୍ୱାସ ସୃଷ୍ଟି କରିବାର ଏହି ସୂତ୍ରଟି ଏ ଦେଶରେ ଅନେକାନେକ ବାର ସଫଳତାର ସହିତ ପ୍ରୟୋଗ କରାଯାଉଛି। ଜଗନ୍ନାଥଙ୍କ ଭଣ୍ଡାରରୁ ରତ୍ନମୁଦିଟିଏ ନେଇ ଜଣେ ଗଉଡୁଣୀକି ଦିଆଗଲା ଓ ଦୁଇ ଜଣ ଅଶ୍ୱାରୋହୀ ଦହି ଖାଇ ମୂଲ ବାବଦକୁ ତାହାକୁ ଦେଇଗଲେ ବୋଲି ମିଛରେ କହିଲେ ସେ ଗୋଟିଏ ଗାଁ ପାଇବ ବୋଲି ପ୍ରତିଶ୍ରୁତି ଦିଆଗଲା। ସେହି ଗଉଡୁଣୀର ସାକ୍ଷ୍ୟକୁ ନେଇ ଜଗନ୍ନାଥ-ବଳରାମ କାଞ୍ଚୀ ଅଭିଯାନରେ ଯାଉଛନ୍ତି ବୋଲି ଗଣବିଶ୍ୱାସ ଜନ୍ମାଇ ଦିଆଯାଇପାରିଲା। ସେହି ବିଶ୍ୱାସ ଦ୍ୱାରା ପ୍ରଣୋଦିତ ଓଡ଼ିଆ ସେନା ସେ ଥର ଯୁଦ୍ଧ ଯାତ୍ରାରେ ବିଜେତା ହୋଇ ପାରିଥିଲେ। ଗଣବିଶ୍ୱାସ ଦ୍ୱାରା ଉପକୃତ ଓଡ଼ିଶାର ରାଜା, ଯାହା ଦଖଲରେ ଶ୍ରୀ ଜଗନ୍ନାଥଙ୍କ ଭଣ୍ଡାର, ବିଶ୍ୱାସ ସୃଷ୍ଟିର ଯୋଜନା କରିଥିବା ସମ୍ଭବ। ଶ୍ରୀ ଜଗନ୍ନାଥଙ୍କ ଭୋଗରାଗରେ ବ୍ୟବହାର୍ଯ୍ୟ ସୁନାଥାଳିଟିଏ ନେଇ ଦରିଦ୍ର ବନ୍ଧୁ ମହାନ୍ତିଙ୍କି ଦିଆଗଲା ଥାଳି ଖୋଜା ପଡ଼ିବା ପରେ ମହାନ୍ତିଏ କହିଲେ ଯେ ଖୋଦ୍ ଜଗନ୍ନାଥ ଏହି ଥାଳିରେ ତାଙ୍କୁ ମହାପ୍ରସାଦ ପରିଶିଥିଲେ। ଫଳରେ ବନ୍ଧୁ ମହାନ୍ତି ଜଣେ ପରମଭକ୍ତ ବୋଲି ପ୍ରତିପାଦିତ ହେଲେ ଓ ବଡ଼ ଦେଉଳର ପାଞ୍ଜିଆ ପଦ ପୁରୁଷାନୁକ୍ରମେ ପାଇଗଲେ। ମହାନ୍ତିଙ୍କ ହିତାକାଂକ୍ଷୀ ବନ୍ଧୁ ସୁନାଥାଳିଟିର ଜିମାରେ ଥିଲେ ବୋଲି ସହଜରେ ଅନୁମାନ କରାଯାଇପାରେ। ସାକ୍ଷୀଗୋପାଳଙ୍କ ପୂଜକ ବେଲ ମହାପାତ୍ରଙ୍କ ବାଲ୍ୟବିଧବା ଯୁବତୀ ଝିଅ ଲକ୍ଷ୍ମୀ ଗର୍ଭବତୀ ହେଲା। ଏ କଥା ଜଣା ପଡ଼ିଲେ ବେଲ ମହାପାତ୍ରେ ସମାଜଚ୍ୟୁତ ହୁଅନ୍ତେ ଓ ପରିବାର-ପୋଷଣର ଧନାର୍ଜନ ଧନ୍ଦା ସାକ୍ଷୀଗୋପାଳଙ୍କ ସେବକତ୍ୱ ସେ ହରାନ୍ତା କଥା। ଏହାର ପ୍ରତିକାର କଲେ ଚତୁର ବେଲ ମହାପାତ୍ରେ ସୂତ୍ର ଖଞ୍ଜିଲେ। ସାକ୍ଷୀଗୋପାଳ ବିଗ୍ରହର ବଂଶୀଟିକୁ ନେଇ ଝିଅର ଶେଯରେ ପକାଇଦେଲେ। ବଂଶୀ ଖୋଜା ପଡ଼ିବା ପରେ ଲକ୍ଷ୍ମୀ କହିଲା ଯେ ରାଧା ପାଖରେ ନଥିବାରୁ ଗୋପାଳ ତାଙ୍କୁ ପ୍ରେମ କରି ଗର୍ଭବତୀ କରାଇ ଦେଇଛନ୍ତି। ଲମ୍ପଟିଆ କୃଷ୍ଣଙ୍କ ପରକୀୟା ପ୍ରୀତିର ବିବରଣରେ ବିଶ୍ୱାସ ସ୍ଥାପନ କରୁଥିବା ସମାଜ

ପକ୍ଷରେ ଏ ବ୍ୟାପାର ବିଶ୍ୱାସଯୋଗ୍ୟ ହେଲା ; ଭବିଷ୍ୟତରେ ଅନ୍ୟମାନେ ମଧ୍ୟ ଗର୍ଭବତୀ ହେବା ଆଶଙ୍କା ଜନ୍ମିଲା ଓ ପ୍ରତିକାର ସ୍ୱରୂପ ରାଧାଙ୍କର ପ୍ରତିମାଟିଏ ଗଢ଼ାଇ ଗୋପାଳଙ୍କ ପାଖରେ ସ୍ଥାପିତ କରାଗଲା । ରାଧାଙ୍କ ପ୍ରତିମାର ପ୍ରାଣପ୍ରତିଷ୍ଠା ଦିବସରେ ଅନ୍ତଃସତ୍ତ୍ୱା ଲକ୍ଷ୍ମୀକୁ ବିଷ ପ୍ରୟୋଗରେ ମାରି ପକାଇ ସମାଜକୁ ବୁଝାଇ ଦିଆଗଲା ଯେ ଲକ୍ଷ୍ମୀ ସ୍ୱୟଂ ରାଧା ହୋଇଥିବାରୁ ରାଧାଙ୍କ ବିଗ୍ରହରେ ପ୍ରାଣ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ଲକ୍ଷ୍ମୀର ପ୍ରାଣ ପଳାଇଲା । ଲକ୍ଷ୍ମୀ ସେତେବେଳେ ମରି ନଥିଲେ କୃଷ୍ଣଙ୍କ ଗୋଳକ ପୁତ୍ରର ବଂଶଧରମାନେ ଏ ଦେଶରେ ହାଉଜାଉ ହେଉଥାନ୍ତେ । ପ୍ରଭୁଦାସ ନାମଧେୟ ଜଣେ ତାମ୍ବୁଳୀ ଶ୍ରୀମନ୍ଦିରର ସିଂହଦ୍ୱାର ନିକଟରେ ତାମ୍ବୁଳ ବିକୁଥାଏ । ଦିନେ ବଡ଼ସିଂହାର ପରେ ଶ୍ରୀ ମନ୍ଦିରର ଦ୍ୱାର ପଡ଼ିବା ପରେ କୁଆଡ଼େ ଦି ଜଣ ଯୁବକ ତା ପାଖକୁ ତାମ୍ବୁଳ ଖାଇବାକୁ ଆସିଲେ । ପ୍ରଭୁଦାସେ ତାମ୍ବୁଳ ଦେଇ ପଇସା ମାଗିଲେ । ସେ ଦିଜଣଙ୍କ ପାଖରେ ପଇସା ନ ଥିଲା । ସେମାନେ ଖଣ୍ଡିଏ ଉତ୍ତରୀୟ ବନ୍ଧାଦେଇ ପଳାଇଲେ । ପରଦିନ ସକାଳେ ଦେଖାଗଲା ଯେ ଜଗନ୍ନାଥଙ୍କ ଓଢ଼ଣୀଟି ଉଭାନ ହୋଇଯାଇଛି । ବଡ଼ ଖୋଜାଲୋଡ଼ା ପରେ ଜଣାପଡ଼ିଲା ଯେ ଓଢ଼ଣୀ ଖଣ୍ଡିକ ପ୍ରଭୁଦାସଙ୍କ ପାଖରେ ବନ୍ଧା ପଡ଼ିଛି । ଶ୍ରୀ ଜଗନ୍ନାଥଙ୍କର ବିଡ଼ିଆ ଯୋଗାଣ ସେବା ନଥିବା ହେତୁରୁ ଏହା ଘଟିଲା ବୋଲି ସ୍ଥିର କରି ପ୍ରଭୁଦାସଙ୍କୁ ପ୍ରଥମ ବିଡ଼ିଆ ଯୋଗାଣିଆ ଭାବରେ ନିଯୁକ୍ତ ଦିଆଗଲା । ଶ୍ରୀମନ୍ଦିରର ସେବାପୂଜା ବିବରଣୀ ପ୍ରକାରେ ରାତିରେ ବଡ଼ସିଂହାର ଧୂପ ପରେ ଗର୍ଭଗୃହ ବନ୍ଦ ହେବା ପୂର୍ବରୁ ସେଠାରେ ପାଳିଆ ମେକାପ ଛଡ଼ା ଆଉ କେହି ନ ଥାନ୍ତି । ପ୍ରଭୁଦାସ ପ୍ରତି ପାଳିଆ ମେକାପ ସକରୁଣ ହେବାର ପ୍ରଭୁଙ୍କୁ ତାମ୍ବୁଳ ମିଳିପାରିଲା ।

କିଂବଦନ୍ତୀ ରହିଛି ଯେ ପ୍ରଭୁଦାସଙ୍କୁ ପଇସା ମାଗିବା ପାଇଁ ବୁଦ୍ଧି ଶିଖାଇଥିବା ଲୋକଟି ସ୍ୱୟଂ ବଳରାମ ଦାସ ! ଆହୁରି ଆହୁରି ଅନେକ ଏ ପ୍ରକାର କାହାଣୀ ରହିଛି । ଠାକୁର-ଠାକୁରାଣୀଙ୍କୁ ଜଡ଼ିତ କରି ମିଛ କଥା କହିଲେ ବି ଲୋକେ ସତ ବୋଲି ଭାବନ୍ତି । କାହିଁକି ନା, ଦେବତାଙ୍କ ନାଁରେ କେହି ମିଛ କହି ପାରିବେ ନାହିଁ ବୋଲି ଲୋକେ ବିଶ୍ୱାସ କରନ୍ତି । ଗଣବିଶ୍ୱାସ ସୃଷ୍ଟି କରି ସେଥିରୁ ଫାଇଦା ମାରି ନେବାର ଏହି ସୂତ୍ରର ପ୍ରୟୋଗ ଅସଂଖ୍ୟବାର ହୋଇଛି । ବଳରାମ ଦାସଙ୍କ ସାମାଜିକ ପ୍ରତିଷ୍ଠାକୁ ସ୍ଫୀତ କରାଇବା ଲକ୍ଷ୍ୟରେ କେହି ପାଳିଆ ମେକାପଙ୍କ ସହଯୋଗରେ 'ବଟ ଅବକାଶ' କାହାଣୀଟିକୁ ସୃଷ୍ଟି କରାଯାଇଛି । ଏହା ଫଳରେ ବଳରାମ ଦାସ ଖ୍ୟାତି ବଢ଼ିଲା ଜଗନ୍ନାଥଙ୍କ କୃପାପାତ୍ର ଭାବରେ ଓ ପ୍ରତିଦାନରେ ଦାସେ 'ବଟ ଅବକାଶ' ଲେଖି ଜଗନ୍ନାଥଙ୍କ 'ଅଘଟନ-ଘଟନ-ପଟୀୟସୀ ଶକ୍ତି'ର ମହିମା ଜଗଦ୍ ବିଖ୍ୟାତ କଲେ ।

'ବିଂଶ ଅବକାଶ'ରୁ ଜଣାପଡ଼େ ଯେ ରାଜା ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ସମୟରେ (ଅର୍ଥାତ୍ ଖ୍ରୀ. ୧୪୯୭ ରୁ ୧୫୩୮ ? ମଧ୍ୟରେ) ବଳରାମ ଦାସ ଜୀବିତ ଥିଲେ । ରାମାୟଣକାର ବଳରାମ ଦାସ ଶ୍ରୀଜଗନ୍ନାଥଙ୍କ ପରମଭକ୍ତ ଥିଲେହେଁ ପୁରୁଷୋତ୍ତମ

କ୍ଷେତ୍ରର ଅଧିବାସୀ ନଥିଲେ। ସେତେବେଳେ ସେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ସୁଜ୍ଞଜନଙ୍କ ଆଶିଷ କାମନା କରୁଥିଲେ।

ଭୋ ଭୋ ସୁଜ୍ଞଜନେ ତୁମ୍ଭେ ଯିସ ବାଞ୍ଛା କର।
ନୀଳଗିରିନାଥ ଦରଶନେ ଦେବବର ॥

(ଲଙ୍କାକାଣ୍ଡର ଶେଷ, ଗୋବିନ୍ଦରଥଙ୍କ ପାଠ)

ଆଉ ମଧ୍ୟ, ରାମାୟଣକାର ବଳରାମ ଦାସ ଥିଲେ ଗୃହସ୍ଥ, ଦାରାସୁତଯୁକ୍ତ। ବଟ ଅବକାଶ ରଚନା ବେଳକୁ ସେ ହେଲେଣି ପୁରୀର ଏକ ମଠର ମହନ୍ତ। ରାମାୟଣ ରଚନା ବେଳକୁ ଦାସଙ୍କ ବୟସ ଥିଲା ମାତ୍ର ୩୦ ବର୍ଷ କିନ୍ତୁ ବଟ ଅବକାଶ ଆଖ୍ୟାନ ବେଳକୁ ସେ ନିଶ୍ଚୟ ଖୁବ୍ ବୟସ୍କ ହେବେଣି କାରଣ ପ୍ରତାପରୁଦ୍ରଙ୍କ ବଚନ ଅନୁସାରେ ଦାସେ 'ଏତେ ବଡ଼ ଲୋକ' ହୋଇ ସାରିଲେଣି। ଏଥିରୁ ଜଣାଯାଉଛି କବି ରାମାୟଣ ରଚନା ପରେ ଗୃହସ୍ଥାଶ୍ରମ ଛାଡ଼ି ପୁରୀକୁ ଆସିଗଲେ ଓ ସେଠାରେ ଏକ ମଠ ସ୍ଥାପନ କରି ତାହାର ମହନ୍ତ ହୋଇଥିଲେ। ବଳରାମ ଗୃହସ୍ଥାଶ୍ରମ ଛାଡ଼ି, ନିଜ ବାସସ୍ଥାନ ଛାଡ଼ି, ନୀଳାଚଳକୁ ଯାଇଥିବା କଥାର କିଛି କିଛି ସୂଚନା ବାଟ ଅବକାଶରୁ ମିଳୁଛି। ସେ ହକିଛନ୍ତି, ଶ୍ରୀ ଜଗନ୍ନାଥ କବିଙ୍କ ପ୍ରକୃତିକୁ ଭୁଲାଇଲେ, ତାଙ୍କ ମନକୁ ହରଣ କଲେ, ତାଙ୍କୁ ଶୟନେ-ସ୍ୱପନେ କେବଳ ପୁରୁଷୋତ୍ତମ କ୍ଷେତ୍ର ଦିଶିଲା ତେଣୁ ସେ କର୍ମଧର୍ମ ଛାଡ଼ି ପୁରୀରେ ଆଳସ୍ୟ କଲେ କିନ୍ତୁ ତଦ୍ୱାରା ତାଙ୍କର ଭାଗ୍ୟୋଦୟ ହେଲା :-

ପ୍ରକୃତି ଭୁଲାଇଲେ ମୋର ମନ କଲେ ଚୋରି।
ଶୟନେ ସ୍ୱପନେ ମୋତେ ଦିଶିଲା ନୀଳଗିରି।୩୫୦।
ଏଣୁ ମୁଁ କର୍ମ ଧର୍ମ କିଛି ହିଁ ନ ଜାଣଇ।
ଅଳସୁଆ କର୍ମରୁ ଦ୍ୱାରେ ଗଙ୍ଗାଗଲେ ବହି।୩୫।

ସେ ଯେଉଁ କର୍ମଧର୍ମ ଛାଡ଼ିବା କଥା କହୁଛନ୍ତି ତାହା ଗୃହସ୍ଥର ଆଚରିତ ବର୍ଣ୍ଣାଶ୍ରମ ଧର୍ମର କର୍ମ ହେବ। ସେ ନିଜ ଇଚ୍ଛାରେ, ହୁଏତ ପରିବାରର ଲୋକଙ୍କ ବିରୋଧ ସତ୍ତ୍ୱେ ଗୃହସ୍ଥଧର୍ମ ଛାଡ଼ିଥିଲେ।

ମନଠାରୁ ଆଉ ତ ସଂସାରେ ବଡ଼ ନାହିଁ।
ମୋହର ମନ ବନ୍ଦୀ କଲେ ନୀଳଗିରି ସାଇଁ।୨୯୯।
ଏଣୁ ମୁଁ କର୍ମ-ଧର୍ମ ନ ଜାଣଇ କିଛି
ତୀର୍ଥବ୍ରତ ଆଦି କରି ପକାଇଲି ଲେଛି।୩୦୦।

ବଳରାମ ଦାସ ପୂର୍ବେ ଦୁର୍ଦ୍ଧର୍ଷ (ଦୁର୍ଦ୍ଧଣ୍ଡ୍ୟ) ଥିଲେ ଜଗନ୍ନାଥଙ୍କ ପ୍ରତି ଭକ୍ତି ହେତୁରୁ ସେ ଶାନ୍ତସ୍ୱଭାବର ହେଲେ ବୋଲି ବି ଜଣାଇଛନ୍ତି।

ଦୁର୍ଦ୍ଧଣ୍ଡପଣ କାଟି ସେ ଆଘଋ କଲେ ମୋତେ।
ଏଣୁ ଅନ୍ୟ କଥାକୁ ନ ଭାଳେ ମୋର ଚିତ୍ତେ।୩୧୯।

**ଭାବସମୁଦ୍ରକାର**

ବଟ ଅବକାଶର ପରବର୍ତ୍ତୀ ରଚନା ଭାବସମୁଦ୍ର। ଭାବସମୁଦ୍ରର ୧୭ଶ ପଦରେ ବଳରାମ ଦାସ ସେ ଅତୀତରେ ଗରୁଡ଼ ପିଠିରେ ବସି ଲଙ୍କାକୁ ଯିବା ବେଳେ ଗର୍ବ କରିବାରୁ ଖସିପଡ଼ିବା ଓ ଜଗନ୍ନାଥ ତାଙ୍କୁ ଉଠାଇ ଆଣିଥିବା କଥାର ସୂଚନା ଦେଇଛନ୍ତି। ଭାବସମୁଦ୍ରର ବର୍ଣ୍ଣନା ଅନୁସାରେ ରଥଯାତ୍ରାଦିନ ବଳରାମ ଦାସ ସନ୍ଥମାନଙ୍କ ଗହଣରେ ଶ୍ରୀଜଗନ୍ନାଥ ବିଜେ କରିଥିବା ରଥ ଉପରୋକ୍ତ ଉଠିବା ସମୟରେ ରାଜା ତାଙ୍କୁ ଗଳଥା ମାରି ରଥରୁ ପେଲିଦେଲେ, ତାଙ୍କୁ ବାନ୍ଧି ପକାଇଲେ ଓ କ୍ଷେତ୍ରରୁ ନିର୍ବାସନ କଲେ। ରଥରୁ ପଡ଼ିଯିବାରୁ ଦାସଙ୍କ ଥୋଡ଼ି ଫାଟିଗଲା। କ୍ଷେତ୍ରରୁ ନିର୍ବାସିତ ହେଲେହେଁ ଦାସେ ଦୂରକୁ ନ ଯାଇ କ୍ଷେତ୍ରର ସୀମାକୁ ଲାଗିଥିବା ବାଲିଖଣ୍ଡ ଅଞ୍ଚଳରେ ବାଙ୍କି ମୁହାଣ ପାଖରେ ରହିଲେ। ଦାସେ ବାଲିଖଣ୍ଡରେ ଅନ୍ୟ ଏକ ରଥଯାତ୍ରା କରାଇବା ସଂକଳ୍ପ କଲେ। ତେଣେ ବଡ଼ଦାଣ୍ଡର ରଥ ଚଳିଲା ନାହିଁ। କାରଣ, ଭକ୍ତର ଡାକ ଶୁଣି ଜଗନ୍ନାଥ ବଳରାମ ଦାସଙ୍କ ପାଖକୁ ପଳାଇଲେ। ଶେଷକୁ ରାଜା ଓ ସେବକମାନେ ଆସି ଦାସଙ୍କଠାରେ କ୍ଷମାଭିକ୍ଷା କରିବାରୁ ରଥ ଚଳିଲା। ଭାବସମୁଦ୍ରର ଅନେକ ପଦରେ ଲେଖାଅଛି ଯେ ଦାସେ ଶ୍ରୀଜଗନ୍ନାଥଙ୍କ ସେବକତ୍ୱ ଚାହୁଁଥିଲେ (ପଦ ୧୦୬,୧୫୬,୨୧୨,୨୧୩,୨୨୨ ଦ୍ରଷ୍ଟବ୍ୟ), କିଛିକାଳ ସେ ସେବା କରିଥିଲେ ମଧ (୨୧୯), ଅନ୍ୟ ସେବକମାନେ ତାଙ୍କୁ ସେବା ଅଧିକାର ଦେବାର ବିରୋଧୀ ଥିଲେ (୨୨୮)ଓ ସେ ସେବା ହରାଇ ଥିଲେ (୨୭୦, ୨୭୨)। ବୋଧହୁଏ ଦାସେ ଶ୍ରୀମନ୍ଦିରରେ ସେବାଧିକାର ଚାହିଁବାରୁ ପୂର୍ବର ସେବକଗୋଷ୍ଠୀ ଏହାର ବିରୋଧ କଲେ ଓ ରାଜା ମଧ ଦାସଙ୍କୁ ସମର୍ଥନ କଲେ ନାହିଁ। ରଥଯାତ୍ରାରେ ଦାସଙ୍କ ରଥ ଉପରେ ଉପସ୍ଥିତି ଏହି ସେବାଧିକାର ଦାବି ସହିତ ସମ୍ଭବତଃ ଜଡ଼ିତ ଥିଲା। ପୁରୀର ବିଭିନ୍ନ ମଠର ମହନ୍ତମାନଙ୍କର ଶ୍ରୀମନ୍ଦିରରେ ଓ ରଥଯାତ୍ରାରେ କେତେକ ସେବାଧିକାର ରହିଛି। ଦାସଙ୍କ ନବ ପ୍ରତିଷ୍ଠିତ ମଠର ସେପରି କୌଣସି ଅଧିକାର ନ ଥିଲେ ହେଁ ଦାସେ ଅଧିକାର ସୃଷ୍ଟି କରିବାକୁ ଉଦ୍ୟତ ଥିଲେ। ଅନୁମାନ କରାଯାଇ ପାରେ, ରଥ ଟଣାଳି କଳାପିଠିଆମାନେ ଦାସଙ୍କ ପଟରେ ରହିବାରୁ ଦାସଙ୍କ ଜିଦ୍ ରହିଲା।

ପରବର୍ତ୍ତୀ ସମୟରେ ରଚିତ 'ଦାର୍ଢ୍ୟତାଭକ୍ତି', ବ୍ରହ୍ମକୁଣ୍ଡଳୀ ଆଦି ରଚନାରେ ରଜା ଦାସଙ୍କୁ ରଥରୁ ତଡ଼ିବାର କାରଣ ଦର୍ଶାଯାଇଛି ଯେ ଦାସେ ଅତ୍ୟନ୍ତ ବେଶ୍ୟାସକ୍ତ ଥିଲେ ଓ ବେଶ୍ୟାର ଶେଯରୁ ସିଧା ଆସି ରଥରେ ଚଢ଼ିବାରୁ ରାଜା ତାଙ୍କୁ ତଡ଼ିଦେଲେ। ରାମଦାସ ଆନୁମାନିକ ଖ୍ରୀ.୧୭୬୯ରେ ରଚିତ ତାଙ୍କର ଦାର୍ଢ୍ୟତାଭକ୍ତିର ୧୪ଶ ଅଧାୟରେ ବଳରାମ ଦାସଙ୍କ ଜୀବନଚରିତ ଦେଇ ଲେଖିଛନ୍ତି :-

ନାମ ତା ବଳରାମ ଦାସ। ମହନ୍ତ ସୋମନାଥ ଶିଷ୍ୟ।
ପୁରୁଷୋତ୍ତମେ ତାର ଘର। କୁଟୁମ୍ବ ଘେନି ସଙ୍ଗତର॥
ଉତ୍ତମ ଜନେ ଆଶ୍ରେ କରି। ନିତି ବୁଲଇ ଭିକ୍ଷା କରି॥ xxx
ଶ୍ରୀ ଦାରୁବ୍ରହ୍ମ ସେବା ବିନେ। ଅନ୍ୟ ନ ଜାଣେ ତାର ମନେ।
କେବଳ ପ୍ରକୃତି ବଶରେ। ନିରତେ ଗମେ ବେଶ୍ୟାଘରେ॥

ରାମଦାସ ବଳରାମ ଦାସ ପୁରୀରେ କୁଟୁମ୍ବ ନେଇ ରହନ୍ତି ଓ ତାଙ୍କ ଗୁରୁ ମହନ୍ତ ସୋମନାଥ ତଥାପି ସେ ଭିକ୍ଷା କରି ବୁଲୁଥାନ୍ତି ଅଥଚ ସର୍ବଦା ବେଶ୍ୟାଘରକୁ ଯାଆନ୍ତି ଏ ପ୍ରକାର ପରସ୍ପର ବିରୋଧୀ ବିବରଣ ଦେବାରୁ ଜଣାପଡୁଛି ସେ ବଳରାମ ଦାସଙ୍କ ଜୀବନ ବୃତ୍ତାନ୍ତ ବିଷୟରେ ଜମାରୁ ଅବହିତ ନଥିଲେ। ରାମଦାସଙ୍କ ଦାର୍ଢ୍ୟତାଭକ୍ତିର ଅଧିକାଂଶ ଚରିତରେ ଭଗବାନ ଭକ୍ତର ସବୁଦୋଷ ଖଣ୍ଡନ କରିଥିବା କଥା ଲେଖାଅଛି। ସେହି ଲକ୍ଷ୍ୟରେ ରାମଦାସ ଭକ୍ତ ବଳରାମଙ୍କୁ ବେଶ୍ୟାସକ୍ତ କରାଇ ଭକ୍ତ ପକ୍ଷେ ବେଶ୍ୟାସକ୍ତ ହେବା ଦୋଷାବହ ନୁହେଁ ବୋଲି ଜଗନ୍ନାଥଙ୍କ ମୁହଁରେ କୁହାଇଛନ୍ତି :-

ମୋର ଭକତ ଯେଉଁଜନ। ମୋହର ନାମ କରେ ଗାନ।
ସେ କେବେ ଅଶୁଚି ନୁହଁଇ। ସର୍ବଦା ଶୁଚିବନ୍ତ ଦେହୀ॥

ଭକ୍ତ ପାଇଁ ସଦାଚାର ପ୍ରଶ୍ନ ଯେ ଅବାନ୍ତର ଏହା ବୃନ୍ଦାବନ ଦାସ ପ୍ରଣୀତ ଚୈତନ୍ୟ ଭାଗବତର ଅନ୍ତ୍ୟଲୀଳାର ସପ୍ତମ ଅଧ୍ୟାୟରେ ଖୁବ୍ ଦୃଢ଼ଭାବରେ କୁହାଯାଇଛି। ନିତ୍ୟାନନ୍ଦଙ୍କ ଆଚରଣ ଆପତ୍ତିଜନକ ହେବାରୁ ଚୈତନ୍ୟ କହିଥିଲେ :-

ଗୃହ୍ଣୀୟାଦ୍ ଯବନୀପାଣିଂ ବିଶେଦ୍ ବା ଶୌଣ୍ଡିକାଳୟମ୍।
ତଥାପି ବ୍ରହ୍ମଣୋ ବନ୍ଦ୍ୟଂ ନିତ୍ୟାନନ୍ଦ ପଦାମ୍ବୁଜମ୍॥

ଅନ୍ୟ ଏକ ଘଟନା ବର୍ଣ୍ଣନା କରି ଚୈତନ୍ୟ ଭାଗବତ (ଅନ୍ତ୍ୟଲୀଳା, ୧୦ମ ଅଧ୍ୟାୟ) କହେ ଯେ ଅଦ୍ୱୈତ ମଧ ସଦାଚାରର ବିଧି ନିଷେଧର ଅଧୀନ ନୁହନ୍ତି।

ମଦିରା ଯବନୀ ଯଦି ଧରେନ ଅଦ୍ୱୈତେ॥
ତଥାପି କରିବ ଭକ୍ତି ଅଦ୍ୱୈତର ପ୍ରତି।

ଭକ୍ତ ରାମଦାସ ବଳରାମଙ୍କୁ ଭକ୍ତପ୍ରବର କରାଇବା ଲକ୍ଷ୍ୟରେ ବେଶ୍ୟାସକ୍ତ କରାଇ ଭଗବାନଙ୍କ ଦ୍ୱାରା 'ଚାରିଖୁନ୍ ମାଫ୍' କରାଇଛନ୍ତି ଓ ଭକ୍ତିର ଉତ୍କର୍ଷ ପ୍ରତିପାଦନ କରାଇଛନ୍ତି। ଭବସମୁଦ୍ରରେ ବଳରାମ ଦାସ ନିଜର କୌଣସି ଦୋଷ ନଥିବା ସତ୍ତ୍ୱେ ରାଜା ତାଙ୍କୁ ଦଣ୍ଡ ଦେଇଥିବା କଥା ବାରଂବାର (ପଦ ୨୪, ୭୪, ୧୫୧, ୨୧୭, ୩୨୭, ୪୫୪) କହିଛନ୍ତି। ତାଙ୍କର ବେଶ୍ୟାସକ୍ତି ବ୍ୟାପାରଟି ଭକ୍ତିର ଉତ୍କର୍ଷ ପ୍ରତିପାଦନ ଲକ୍ଷ୍ୟରେ ରାମଦାସଙ୍କ କଳ୍ପନା ପ୍ରସୂତ ହେବା ହିଁ ସମ୍ଭବ। ବ୍ରହ୍ମକୁଣ୍ଡଳୀ ନାମକ ଏକ କ୍ଷୁଦ୍ର ଲେଖା, ଯାହା ପୁଷ୍ପିକାରେ 'ମହାପୁରୁଷ ବଳରାମ' ତାହାର ରଚୟିତା ବୋଲି ଲେଖାଅଛି, ରାମଦାସଙ୍କ କାହାଣୀକୁ ଗ୍ରହଣ କରିନେଇଛି। ବଳରାମ ଦାସ

ଜଗନ୍ନାଥଙ୍କର ଏକନିଷ୍ଠ ଭକ୍ତ ଥିବା କଥା ଓ ଜଗନ୍ନାଥଙ୍କ ଛଡ଼ା ଆଉକିଛି ଜାଣୁ ନଥିବା କଥା ବାରଂବାର କହିଛନ୍ତି। ପରେ ଦେଖାଇ ଦିଆଯିବ ଯେ ବଙ୍ଗୀୟ କବି ଦେବକୀ ନନ୍ଦନ ଓ ଅତିବଡ଼ଙ୍କ ଜୀବନଚରିତ୍ରକାର ଦିବାକର ବଳରାମ ଦାସଙ୍କ ବିଷୟରେ ପ୍ରଶଂସାମୂଳକ ବାକ୍ୟ କହିଛନ୍ତି। ବଳରାମ ଦାସ 'ନିରତେ ଗମେ ବେଶ୍ୟାଘରେ' ବୋଲି ରାମ ଦାସ କହିକରି ପ୍ରକୃତ କଥା ପ୍ରକାଶ କରି ନାହାନ୍ତି।

**ଅନ୍ୟାନ୍ୟ ରଚନା**

ନିମ୍ନଲିଖିତ ଛୋଟବଡ଼ ରଚନା ଗୁଡ଼ିକରେ ଓ ଅନ୍ୟାନ୍ୟ ଅପ୍ରଧାନ ରଚନାରେ ବଳରାମ ଦାସ ଭଣିତି ମିଳେ:- ଭଗବଦ୍ ଗୀତା, ଉଦ୍ଧବଗୀତା, ରୁକ୍ମିଣୀବିଭା, ଲକ୍ଷ୍ମୀପୁରାଣ, ବଉଳାଗାଈ ଗୀତ ( ବା ବଉଳାଧ୍ୟାୟ), ମାଳଶ୍ରୀ (ବା ଖୁଦୁରୁକୁଣୀ ପୂଜା) ମୃଗୁଣୀ ସ୍ତୁତି, ଦୁର୍ଗା ସ୍ତୁତି, ଗଜନିସ୍ତାରଣ, ବେଢ଼ାବୁଲା, ହନୁମାନ କବଚ, କାନ୍ତକୋଇଲି, ବାରମାସୀ କୋଇଲି, ରାଇକନ୍ୟାର ଗୀତ (ବା ରାଧାଦାମୋଦର ପୂଜା), ଦୂତି ଚଉତିଶା, କମଳଲୋଚନ ଚଉତିଶା, ସୀତା ସ୍ୱୟଂବର ଚଉତିଶା। ଏହା ମଧ୍ୟରୁ ବଉଳାଗାଈ ଗୀତ, ମାଳଶ୍ରୀ, ମୃଗୁଣୀ ସ୍ତୁତି, ଦୁର୍ଗା ସ୍ତୁତି ଓ ରାଇକନ୍ୟାର ଗୀତର ଭାଷା ରାମାୟଣକାରଙ୍କ ସମୟର ହେବା ପରି ବୋଧ ହେଉଅଛି। ଭଗବଦ୍‌ଗୀତା, ଉଦ୍ଧବଗୀତା ଓ ଲକ୍ଷ୍ମୀପୁରାଣର ତାଳପତ୍ର ପୋଥି ଦେଖିବାର ସୁଯୋଗ ମୁଁ ପାଇ ନାହିଁ। ଏ ସବୁର ମୁଦ୍ରିତ ପୁସ୍ତକରେ ୧୬ଶ ଶତାବ୍ଦୀର ପରବର୍ତ୍ତୀ ସାହିତ୍ୟିକ ଶୈଳୀ ବ୍ୟବହୃତ ହୋଇଛି, କିନ୍ତୁ ସେ ସବୁ ପ୍ରକାଶକଙ୍କ ଦ୍ୱାରା ପ୍ରକ୍ଷିପ୍ତ ହେବା ମଧ୍ୟ ସମ୍ଭବପର। ଲକ୍ଷ୍ମୀପୁରାଣଟି ରାମାୟଣକାରଙ୍କର ରଚନା ହେଉ କି ଇତର କାହାର ରଚନା ହେଉ ଓଡ଼ିଆ ସାହିତ୍ୟର ଏକ ଅନୁପମ ସୃଷ୍ଟି। ଏହାର ତୁଳନା ଅନ୍ୟ ପ୍ରାଦେଶିକ ସାହିତ୍ୟରେ ମଧ୍ୟ ମିଳିବ କି ନାହିଁ ସନ୍ଦେହ। ବଳରାମ ଦାସଙ୍କର ଗଣେଶ ବିଭୂତି ଟୀକା, ଜ୍ଞାନ ଉଜ୍ଜ୍ୱଳମଣି ଗୀତା, ଦୀପ୍ତିସାର ଗୀତା ମଧ୍ୟ ରହିଛି ବୋଲି କେହି କେହି ଲେଖିଛନ୍ତି। ଏ ଗୁଡ଼ିକ ଦେଖିବାର ସୁଯୋଗ ମୁଁ ପାଇନାହିଁ। କମଳଲୋଚନ ଚଉତିଶାର ଭଣିତି କେଉଁଠି ବଳରାମ ଦାସଙ୍କ ନାମରେ ତ କେଉଁଠି ଜଗନ୍ନାଥ ଦାସଙ୍କ ନାମରେ ମିଳେ। ଏହି ସବୁ ରଚନା ଭାବସମୁଦ୍ର ରଚନାର ପୂର୍ବବର୍ତ୍ତୀ ହେବା ସମ୍ଭବ।

**ମତ୍ତ ବଳରାମ**

ଦିବାକର ଦାସ ଖ୍ରୀ. ୧୭ଶ ଶତାବ୍ଦୀର ଶେଷ ଆଡ଼କୁ ସ୍ୱୀୟ ସଂପ୍ରଦାୟର ପ୍ରବର୍ତ୍ତକ ଅତିବଡ଼ ଜଗନ୍ନାଥ ଦାସଙ୍କର ଜୀବନଚରିତ 'ଜଗନ୍ନାଥାମୃତ' (ଆଜିକାଲି 'ଜଗନ୍ନାଥ ଚରିତାମୃତ' ନାମରେ ଅଧିକ ପରିଚିତ) ରଚନା କରିଥିଲେ। ଜଗନ୍ନାଥାମୃତରେ ଅତିବଡ଼ଙ୍କ ଦୀକ୍ଷାଗୁରୁ ମତ୍ତ ବଳରାମ ବୋଲି ସେ ଲେଖିଛନ୍ତି। ଅତିବଡ଼ ଜଗନ୍ନାଥ ଦାସ ହିଁ ଭାଗବତକାର ଜଗନ୍ନାଥ ଦାସ ବୋଲି ଗୋଟିଏ ଭୁଲ ଧାରଣାର ସୁପ୍ରଚାର

ହେଉଥିବା ପରି ମତ୍ତ ବଳରାମ ହିଁ ରାମାୟଣକାର ବଳରାମ ଦାସ ବୋଲି ଭ୍ରମବଶତଃ ଗୃହୀତ ହୋଇ ଆସୁଛନ୍ତି।

ଦିବାକର ଦାସ ଜଗନ୍ନାଥାମୃତର ପ୍ରଥମ ଅଧ୍ୟାୟରେ ନିଜର ଗୁରୁପ୍ରଣାଳୀ ଲେଖିଛନ୍ତି। ସେ ଜଣାଇଛନ୍ତି ଯେ ତାଙ୍କ ଗୁରୁନବୀନକିଶୋର, ନବୀନକିଶୋରଙ୍କ ଗୁରୁଦୟାଳୁ, ଦୟାଳୁଙ୍କ ଗୁରୁ କେଳିକୃଷ୍ଣ, କେଳିକୃଷ୍ଣଙ୍କ ଗୁରୁ ବନମାଳୀ ଦାସ ଓ ବନମାଳୀଙ୍କ ଗୁରୁ ଜଗନ୍ନାଥ ଦାସ ଅତିବଡ଼। ଅତିବଡ଼ଙ୍କ ଗୁରୁ ମତ୍ତ ବଳରାମ, ମତ୍ତବଳରାମଙ୍କ ଗୁରୁ ହୃଦୟାନନ୍ଦ, ହୃଦୟାନନ୍ଦଙ୍କ ଗୁରୁ ଗୌରୀ ଦାସ ଓ ଗୌରୀଦାସ ପଣ୍ଡିତଙ୍କ ଗୁରୁ ଚୈତନ୍ୟ ମହାପ୍ରଭୁ। ଏହି ଗୁରୁପ୍ରଣାଳୀଟିକୁ ଦିବାରେ ଦାସ ତାଙ୍କ ସଂପ୍ରଦାୟର ବୈଷ୍ଣବମାନଙ୍କ ମୁଖରୁ ଶୁଣିଥିଲେ।

ପ୍ରଣାଳୀ ମଧ୍ୟେ ଯେତେ ଗୁରୁ। ଶୁଣିଛି ସାଧୁଙ୍କ ମୁଖରୁ॥

ଦିବାକର ଦାସ 'ନିତ୍ୟଗୁପ୍ତମଣି' ନାମକ ଏକ ସାଂପ୍ରଦାୟିକ ପୁସ୍ତକ ଲେଖିଛନ୍ତି। ତାହାର ୧୯ଶ ଆସ୍ୱାଦର ୧୯ ଓ ୨୦ ଶ୍ଳୋକରେ। ମଧ ତାଙ୍କ ଗୁରୁପ୍ରଣାଳୀଟିକୁ ଦେଇଛନ୍ତି :-

ଶ୍ରୀମଚ୍ଚୈତନ୍ୟ ଦେବସ୍ୟ ଗୌରୀଦାସାଖ୍ୟ ପଣ୍ଡିତଃ।
ତସ୍ୟ ଶିଷ୍ୟସ୍ତୁ ଗୋସ୍ୱାମୀ ହୃଦୟାନନ୍ଦ ପଣ୍ଡିତଃ।୧୯।
ତଚ୍ଛିଷ୍ୟୋ ମତ୍ତପୂର୍ବସ୍ତୁ ବଳରାମ ଇତି ସ୍ମୃତଃ।
ମହାନ୍‌ପି ଜଗନ୍ନାଥ ଦାସସ୍ତତ୍ ପରିଚାରକ।୨୦।

କେଉଁ ପରିସ୍ଥିତିରେ ମତ୍ତ ବଳରାମ ଅତିବଡ଼ ଜଗନ୍ନାଥ ଦାସଙ୍କୁ ଦୀକ୍ଷାଦେଲେ ତାହା ଜଗନ୍ନାଥାମୃତର ୨ୟ ଅଧ୍ୟାୟରେ ଲେଖାଅଛି। ଚୈତନ୍ୟ ଦେଶାଟନ ସାରି ପୁରୀକୁ ଫେରିବା ପରେ ଦିନେ ଶ୍ରୀମନ୍ଦିର ମଧ୍ୟରେ ବଟଗଣେଶଙ୍କ ଆଗରେ ଜଗନ୍ନାଥ ଦାସଙ୍କ ଭାଗବତ ବ୍ୟାଖ୍ୟାନ ଶୁଣି ମୁଗ୍ଧ ହୋଇ ଦାସଙ୍କୁ ପ୍ରେମାଲିଙ୍ଗନ କରି କଲ୍ୟାଣ ବାଞ୍ଛିଲେ। ଚୈତନ୍ୟ ଜଣେ ଦୀକ୍ଷାହୀନ ଓଡ଼ିଆ ବ୍ରାହ୍ମଣଙ୍କୁ ଆଦର କରିବାରୁ ଗୌଡ଼ଦେଶାଗତ ବୈଷ୍ଣବମାନେ ଈର୍ଷାପରାୟଣ ହେଲେ ଓ ଜଣେ ଦୀକ୍ଷା ନେଇ ନ ଥିବା ଲୋକ ମହାପାତକୀ ତୁଲ୍ୟ (ତେଣୁ ଅସ୍ପୃଶ୍ୟ) ବୋଲି କୁହାକୁହି ହେଲେ। ସେମାନଙ୍କ ସମାଲୋଚନା ଶୁଣି ଜଗନ୍ନାଥ ଦାସ ଚୈତନ୍ୟଙ୍କ ନିକଟକୁ ଯାଇ ତାଙ୍କୁ ବୈଷ୍ଣବ ଦୀକ୍ଷା ଦିଆଇବାକୁ ଅନୁରୋଧ କଲେ। ସେତିକିବେଳକୁ ସେଠାରେ ବୈଷ୍ଣବୋତ୍ତମ ମତ୍ତ ବଳରାମଥିଲେ, ଯେ କି ସଦାସର୍ବଦା ହରିନାମ କୀର୍ତ୍ତନରେ ମତ୍ତ ରହୁଥିଲେ। ଜଗନ୍ନାଥ ଦାସଙ୍କୁ ଦୀକ୍ଷାଦେବାକୁ ଚୈତନ୍ୟ ମତ୍ତ ବଳରାମଙ୍କୁ ଆଜ୍ଞା ଦେଲେ। ତଦନୁସାରେ ମତ୍ତବଳରାମ ହରିପାଦାକୃତି ତିଳକ, ରାମାଦି ମନ୍ତ୍ର, ମନ୍ତ୍ରରାଜ ଇତ୍ୟାଦି ଦେଇ ଜଗନ୍ନାଥ ଦାସଙ୍କୁ ଦୀକ୍ଷିତ କରାଇଲେ।

ଶୁଣି ହରଷ ହରି ହେଲେ। ମତ୍ତ ବଳରାମ କହିଲେ।୧୨୬।
ଏହାଙ୍କୁ ଉପ୍‌ଦେଶ ଦିଅ। ରାମାଦି କୀର୍ତ୍ତନ କରାଅ।୧୨୭।
ଏହୁଟି ମତ୍ତ ବଳରାମ। ବୈଷ୍ଣବମାନଙ୍କ ଉତ୍ତମ।୧୨୮।
ସତ୍ତ୍ୱ ସାତ୍ତ୍ୱିକ ମହାଧୀର। ପ୍ରେମରସେ କିବା ସାଗର।୧୨୯।
ରାତ୍ର ଦିବସ ନ ଜାଣନ୍ତି। ନାମରେ ମତ୍ତ ହୋଇଥାନ୍ତି।୧୩୦।
ଆସ୍ୱାଦ କରି ନାମାମୃତ। ଆନନ୍ଦେ ରୋମ ପୁଲକିତ।୧୩୧।
ପ୍ରେମଭକ୍ତି ଦେଖି ତାଙ୍କର। କରୁଣା କଲେ କୃପାକର।୧୩୨।
ସେ ପ୍ରଭୁ ମତ୍ତ ବଳରାମ। ସିଦ୍ଧି କରି ବସି ଆସନେ।୧୩୩।
ହରିପାଦାକୃତି କରିଣ। ତିଳେକ କଲେ କପାଳେଣ।୧୩୪।
ଯେମନ୍ତ ଉପଦେଶ ବିଧି। ଦାସେ ପାଇଲେ ସର୍ବସିଦ୍ଧି।୧୫୧।

ଜଗନ୍ନାଥାମୃତର ୭ମ ଅଧ୍ୟାୟରେ ପୁନଶ୍ଚ ମତ୍ତବଳରାମଙ୍କ ନାମ ଲେଖାଅଛି। ସେଠାରେ ବର୍ଣ୍ଣନା ଅଛି ଯେ ଚୈତନ୍ୟ ଜଗମୋହନରେ ଭକ୍ତମାନଙ୍କୁ ହରିନାମ ତତ୍ତ୍ୱ ବୁଝାଉଥିବା ବେଳେ ଶ୍ରୋତାମାନଙ୍କ ମଧ୍ୟରେ ଗୌରୀଦାସ ପଣ୍ଡିତ ଓ ମତ୍ତବଳରାମ ଥିଲେ।

ଦିନେକ ଦେବ ଚଇତନ୍ୟ। ବିଜୟେ ଶ୍ରୀ ଜଗମୋହନ।
ଗଉରୀ ଦାସ ଯେ ପଣ୍ଡିତ। ମତ୍ତ ବଳରାମ ସଙ୍ଗତ।

ଦିବାକର ଦାସ ଅତିବଡ଼ଙ୍କ ଗୁରୁଙ୍କ ନାମ 'ନିତ୍ୟଗୁପ୍ତମଣି'ରେ ଠାଏଁ ଓ ଜଗନ୍ନାଥାମୃତରେ ପାଞ୍ଚଠା ଲେଖିଛନ୍ତି। ନାମଟି ସବୁଠାରେ ମତ୍ତ ବଳରାମ କୌଣସି ଗୋଟିଏ ସ୍ଥାନରେ ସୁଦ୍ଧା ତାହା ବଳରାମ ଦାସ ନୁହେଁ। ଅନ୍ୟପକ୍ଷରେ ବଳରାମ ଦାସ ତାହାଙ୍କ ରଚିତ ଗ୍ରନ୍ଥଗୁଡ଼ିକରେ କୌଣସିଠାରେ ମତ୍ତ ବଳରାମ ବା ମତ୍ତ ବଳରାମ ଦାସ ଭଣିତି ଦେଇ ନାହାନ୍ତି। ମତ୍ତ ବଳରାମ ଓ ବଳରାମ ଏକାବ୍ୟକ୍ତି ବୋଲି ଯେଉଁ ଧାରଣା ପରବର୍ତ୍ତୀ ସମୟରେ ପ୍ରଚାରିତ ହେଲା ସେଥିପାଇଁ ଦିବାକର ଦାସଙ୍କୁ ଦାୟୀ କରିହେବ ନାହିଁ। ଅଷ୍ଟାଦଶ ଶତାବ୍ଦୀର ଅଚ୍ୟୁତାନନ୍ଦ ଦାସ ପଞ୍ଚସଖାତତ୍ତ୍ୱ ଉଦ୍ଭାବନ କରି ପ୍ରଚାର କରିବା ପରେ ଈଶ୍ୱର ଦାସ ତାହାଙ୍କ 'ଚୈତନ୍ୟଭାଗବତ'ରେ ସୋମନାଥଙ୍କ ପୁଅ ବଳରାମ ଦାସ ଜଗନ୍ନାଥ ଦାସଙ୍କ ମନ୍ତ୍ରୋପଦେଶ ଦାତା ଗୁରୁ ବୋଲି ବର୍ଣ୍ଣନା କରିଗଲେ ଓ ଈଶ୍ୱର ଦାସଙ୍କର ଏହି ଭ୍ରମାତ୍ମକ ଧାରଣାଟିକୁ ପରବର୍ତ୍ତୀ ଆଲୋଚକମାନେ ସତ୍ୟମୂଳକ ବୋଲି ଗ୍ରହଣ କରି ଆସୁଛନ୍ତି।

ଦିବାକର ଦାସ କିନ୍ତୁ ଜାଣିଥିଲେ ଯେ ମତ୍ତ ବଳରାମ ବଳରାମ ଦାସ ନୁହନ୍ତି। ଜଗନ୍ନାଥାମୃତରେ ସେ ବଳରାମ ଦାସଙ୍କ ବିଷୟ ମଧ୍ୟ ଲେଖିଛନ୍ତି। ସେ ଜଗନ୍ନାଥାମୃତର ୨୪ଶ ଅଧ୍ୟାୟରେ କହିଛନ୍ତି:- ଦିନେ ଅତିବଡ଼ ଜଗନ୍ନାଥ ଦାସ ହରିଦାସଙ୍କ ସହ ମିଶି ସିଂହଦ୍ୱାରରେ ପ୍ରବେଶ ହେଲେ ଓ ସେଠାରେ ବଳରାମ ଦାସଙ୍କୁ ଭେଟିଲେ। ସେତେବେଳେ ବଳରାମ ଦାସଙ୍କୁ ଲୋକେ ଖୁବ୍ ଖାତିର କରୁଥିଲେ।

ବଳରାମ ଦାସ ଅତିବଡ଼ ଜଗନ୍ନାଥ ଦାସଙ୍କୁ ଦଣ୍ଡବତ ପ୍ରଣାମ ହେଲେ ଓ ଅତିବଡ଼ ତାଙ୍କୁ କଲ୍ୟାଣ କଲେ। ବଳରାମ ଦାସ ପ୍ରତ୍ୟହ ଅତିବଡ଼ଙ୍କୁ ଭେଟନ୍ତି। ଦିନେ ବଳରାମ ବଟତଳେ ବିଷ୍ଣୁଙ୍କୁ ପଚାରିଲେ, ସମସ୍ତେ ଜଗନ୍ନାଥ ଦାସଙ୍କୁ ଅତିବଡ଼ ବୋଲି ଡାକିବାର ରହସ୍ୟ କଣ? ବିଷ୍ଣୁ ବଳରାମ ଦାସଙ୍କୁ କହିଲେ ଯେ, ଜଗନ୍ନାଥ ଦାସ ନିତ୍ୟ ଗୋଲକର ରାଧାଙ୍କର ଅଂଶାବତାର ହୋଇଥିବା ଯୋଗୁଁ ସେ 'ଅତିବଡ଼' ଆଖ୍ୟାକୁ ଯୋଗ୍ୟ। ବିଷ୍ଣୁଙ୍କଠାରୁ ଏହା ଶୁଣିବା ପରେ ବଳରାମ ଦାସ ଅତିବଡ଼ ସ୍ୱାମିନୀଙ୍କୁ ସ୍ନେହ କଲେ।

ଦିନେ ଦ୍ରଶନେ ସ୍ୱାମୀ ଯାନ୍ତି। ହରିଦାସେ ସଙ୍ଗେ ଅଛନ୍ତି।
ସିଂହଦ୍ୱାରେ ପ୍ରବେଶ ହୋନ୍ତି। ବଳରାମ ଦାସେ ଭେଟନ୍ତି।
ବଳରାମ ଦାସଙ୍କ ରାଣ। ସେକାଳେ ସମସ୍ତେ ବଖାଣ।
ବଳରାମ ଦାସେ ଅଇଲେ। ସ୍ୱାମୀଙ୍କି ଦଣ୍ଡବତ କଲେ।
ଶୁଣି (ଜାଣି?)ହରଷ ସ୍ୱାମୀ ହେଲେ। ଭକ୍ତିଭାବେ କଲ୍ୟାଣ କଲେ।
ବଳରାମ ଦାସେ ନିତ୍ୟାନ। ସ୍ୱାମୀଙ୍କ କରନ୍ତି ଦ୍ରଶନ।
ଦିନେ (ସେ) ବଟତଳେ ଯାଇ। ବିଷ୍ଣୁଙ୍କୁ ପୁଚ୍ଛିଲେ ସେଠାଇଁ।
ଶ୍ରୀ ଅତିବଡ଼ ଜଗନ୍ନାଥ। ସ୍ୱମୀଙ୍କି ବୋଲନ୍ତି ଜଗତ।
ଏହାଙ୍କ ପୂର୍ବ ପ୍ରେମଭାବ। ଶ୍ରୀମୁଖେ ମୋତେ ଆଜ୍ଞାହେବ।
ଶୁଣି ଶ୍ରୀ ବିଷ୍ଣୁ ଆଜ୍ଞାଦେଇ। ଅତିବଡ଼ଙ୍କୁ ଯୋଗ୍ୟ ଏହି।
ନିତ୍ୟରାଧାଙ୍କ ଅଂଶୁ ଜାତ। ଏ ଘେନି ଅତିବଡ଼ ଖ୍ୟାତ।
ସେ ଦିନୁ ବଳରାମ ଦାସ। ସ୍ନେହ କଲେ ସ୍ୱାମିନୀ ପାଶ।

ଦିବାକର ଦାସଙ୍କ ଦ୍ୱାରା ବର୍ଣ୍ଣିତ ଏହି ବଳରାମ ଦାସ ହେଉଛନ୍ତି ରାମାୟଣକାର। ଏଠାରେ ଦିବାକର ପାଞ୍ଚବାର ବଳରାମ ଦାସ ନାମ ଲେଖିଛନ୍ତି କିନ୍ତୁ ଠାଏଁ ସୁଦ୍ଧା ତାଙ୍କୁ 'ମତ୍ତ' ଆଖ୍ୟା ଦେଇନାହାନ୍ତି। ଅଥଚ ସେ ଅନ୍ୟତ୍ର ଚାରି ଥର ଜଗନ୍ନାଥଙ୍କ ଗୁରୁଙ୍କ ନାମ ଲେଖିଛନ୍ତି ଓ ସବୁଠାରେ 'ମତ୍ତ' ଆଖ୍ୟା ଦେଇଛନ୍ତି। ବଳରାମ ଦାସ ବଟତଳେ ବିଷ୍ଣୁ ଅର୍ଥାତ୍ ଜଗନ୍ନାଥଙ୍କୁ ଅତିବଡ଼ ପଦର ରହସ୍ୟ ପଚାରି ବୁଝିଥିବା କଥା ଲେଖାଅଛି। ରାମାୟଣକାର ବଟତଳେ ଅନୁଷ୍ଠିତ ଦେବସଭାକୁ ଯାଇ ପାରୁଥିବା ବିଷୟ 'ବଟଅବକାଶ'ରେ ବର୍ଣ୍ଣିତ ହୋଇଛି। ରାମାୟଣକାର ବଳରାମ ଦାସ ଜଗନ୍ନାଥଙ୍କ ପ୍ରିୟପାତ୍ର ବୋଲି ଲୋକଙ୍କ ଧାରଣା ଥିଲା। ବଟ ଅବକାଶ, ଭାବସମୁଦ୍ର, ପଣସ ଚୋରି ଆଦିରେ ବର୍ଣ୍ଣିତ କାହାଣୀ ଓ ବଳରାମ ଦାସଙ୍କୁ ଜଗନ୍ନାଥ ହିଁ ରାମାୟଣ ଡାକି ଦେଇଥିବା ବର୍ଣ୍ଣନା ଉପରେ ଲୋକଙ୍କ ଧାରଣା ଆଧାରିତ। ଅତଏବ ସନ୍ଦେହ ରହୁନାହିଁ ଯେ ଦିବାକର ରାମାୟଣକାରଙ୍କ ବିଷୟ ହିଁ ଏଠାରେ ଲେଖିଛନ୍ତି। ସେ ଅତିବଡ଼ଙ୍କ ଦୀକ୍ଷାଗୁରୁ ହୋଇ ନ ପାରନ୍ତି। ସେ ଅତିବଡ଼ଙ୍କୁ ଦଣ୍ଡବତ ପ୍ରଣାମ କରିବା ଓ ଅତିବଡ଼ ତାଙ୍କୁ କଲ୍ୟାଣ କରିବା କଥା ଲେଖାଅଛି। ଅତିବଡ଼ ବଳରାମ ଦାସଙ୍କ

ଶିଷ୍ୟ ହୋଇଥିଲେ ବଳରାମ ଦାସଙ୍କୁ ଅତିବଡ଼ି ଦଣ୍ଡବତ ପ୍ରଣାମ କରିଥାନ୍ତେ । ବଳରାମ ଦାସ ନିଶ୍ଚୟ ଅତିବଡ଼ିଙ୍କଠାରୁ ଅଧିକ ବୟସ୍କ ହେଲେ ହେଁ ସେ ଅତିବଡ଼ିଙ୍କୁ ପ୍ରଣାମ କରିବା ସଦାଚାର ସେ ଯୁଗରେ ଥିଲା । କାରଣ, ଅତିବଡ଼ି ଜାତିରେ ବ୍ରାହ୍ମଣ କିନ୍ତୁ ବଳରାମ ଦାସ ଶୂଦ୍ର ।

ରାମାୟଣକାର ବଳରାମ ଦାସ ଶ୍ରୀଜଗନ୍ନାଥଙ୍କ ବିଶ୍ବସ୍ତ ଭକ୍ତ ହେବାରୁ ଶ୍ରୀ ଜଗନ୍ନାଥ ତାଙ୍କର ବଶ୍ୟ (ଭକ୍ତର ଭଗବାନ) ବୋଲି ଖ୍ୟାତି ଥିଲା । ବଙ୍ଗୀୟ କବି ଦେବକୀ ନନ୍ଦନ ବୈଷ୍ଣବ ବନ୍ଦନା ମଧ୍ୟରେ ତାହାଙ୍କ କଥା କହିଛନ୍ତି :-

ବନ୍ଦୁ ଉଡ଼ିଆ ବଳରାମ ଦାସ ମହାଶୟ ।
ଜଗନ୍ନାଥ-ବଳରାମ ଯାର ବଶ ହୟ ।

ବଳରାମ ଦାସଙ୍କୁ ଉଡ଼ିଆ ବୋଲି ଚିହ୍ନାଇବାର ତାତ୍ପର୍ଯ୍ୟ ଏହି ଯେ ସେହି ସମୟରେ ଅନ୍ୟ ଜଣେ ବଳରାମ ଦାସ ଥିଲେ, ଯେ କି ଗୌଡ଼ିଆ ଥିଲେ । ଏହି ଗୌଡ଼ିଆ ବଳରାମ ଦାସ ହିଁ ମତ୍ତ ବଳରାମ । ମତ୍ତ ବଳରାମଙ୍କର ଉଚ୍ଛ୍ବସିତ ପ୍ରଶଂସା କରି ବୃନ୍ଦାବନ ଦାସ ଲେଖିଛନ୍ତି :

ପ୍ରେମରସେ ମହାମତ୍ତ ବଳରାମ ଦାସ ।
ଯାହାର ବାତାସେ ସର୍ବ ପାପ ହୟ ନାଶ ।। (ଚୈତନ୍ୟ ଭାଗବତ ୩/୬)

ମତ୍ତ ବଳରାମ ଥିଲେ ନବଦ୍ୱୀପ ନିକଟବର୍ତ୍ତୀ ଦୋଗାଛିଆ ନିବାସୀ ବ୍ରାହ୍ମଣ । ସେ ଜଣେ ସଂଗୀତପ୍ରବୀଣ ପଦକର୍ତ୍ତାଥିଲେ । ତାହାଙ୍କ ରଚିତ କେତେକ ବଙ୍ଗଳା ଗୀତ ପଦକଳ୍ପତରୁ ଓ ଗୌରପଦତରଙ୍ଗିଣୀ ଆଦି ସଂକଳନରେ ସ୍ଥାନ ପାଇଛି । ସେ ନିତ୍ୟାନନ୍ଦଙ୍କର ବିଶେଷ କୃପାପାତ୍ର ଥିଲେ ଓ ନିତ୍ୟାନନ୍ଦ ନବଦ୍ୱୀପରେ ଥିବା ସମୟରେ ଦୋଗାଛିଆସ୍ଥ ଏହାଙ୍କ ବାସସ୍ଥାନକୁ ଯାଇଥିଲେ । ମତ୍ତ ବଳରାମଙ୍କ ଗୁରୁ ଓ ପରମଗୁରୁ ବୋଲି ଜଗନ୍ନାଥାମୃତରେ କଥିତ ହୃଦୟାନନ୍ଦ ଓ ଗୌରୀଦାସ ପଣ୍ଡିତ ମଧ୍ୟ ଥିଲେ ମତ୍ତ ବଳରାମଙ୍କ ପରି ଗୌଡ଼ିଆ ବୈଷ୍ଣବ । ସେମାନେ ମଧ୍ୟ ଉଭୟେ ନିତ୍ୟାନନ୍ଦ ଶାଖାର । ନିତ୍ୟାନନ୍ଦଙ୍କର ପତ୍ନୀ ଦ୍ୱୟଙ୍କର ପିତା ସୂର୍ଯ୍ୟଦାସ ସରଖେଲ ଥିଲେ ଗୌରୀଦାସ ପଣ୍ଡିତଙ୍କର ସାନଭାଇ । ଗୌରୀଦାସ ଅମ୍ବିକା କାଲ୍ନାଠାରେ ନିତାଇଗୌର ପୂଜା ପ୍ରବର୍ତ୍ତନ କରି ଶ୍ରୀପାଟ ସ୍ଥାପନ କରିଥିଲେ । ନିଜେ ଗୌରୀଦାସ ପଣ୍ଡିତ ନିତ୍ୟାନନ୍ଦ ଅନୁଗତ ଦ୍ୱାଦଶ ଗୋପାଳର ଅନ୍ୟତମ ଓ ବ୍ରଜଲୀଳାରେ ସେ ସୁବଳ ସଖା ଥିଲେ ବୋଲି କଥିତ ହୁଅନ୍ତି । ଓଡ଼ିଶାରେ ଖ୍ରୀ.୧୮ଶ ଶତାବ୍ଦୀରେ ପ୍ରବର୍ତ୍ତିତ 'ପଞ୍ଚସଖା' ତତ୍ତ୍ୱ ହେଉଛି ଗୌଡ଼ିଆ ଦ୍ୱାଦଶ ଗୋପାଳ ତତ୍ତ୍ୱର ଓଡ଼ିଆ ସଂସ୍କରଣ, ଯେଉଁଥିରେ ବଳରାମଦାସଙ୍କୁ ବ୍ରଜଲୀଳାର ସୁବଳ ସଖା ବୋଲି ଚିହ୍ନିତ କରାଯାଏ । ଗୌରୀଦାସଙ୍କ ପ୍ରସିଦ୍ଧ ଶିଷ୍ୟ ହୃଦୟାନନ୍ଦଙ୍କ ନାମାନ୍ତର ହୃଦୟଚୈତନ୍ୟ । ହୃଦୟାନନ୍ଦ ଥିଲେ ଚୈତନ୍ୟଙ୍କ ଅନ୍ତରଙ୍ଗ ସଖା ଗଦାଧରଙ୍କ ପୁତୁରା, ଗଦାଧରଙ୍କ

ବଙ୍ଗଭାଇ ବାଣୀନାଥଙ୍କ ପୁଅ। ହୃଦୟାନନ୍ଦଙ୍କ ଶିଷ୍ୟ ଶ୍ୟାମାନନ୍ଦ ଓଡ଼ିଶାରେ ଗୌଡ଼ିଆ ବୈଷ୍ଣବ ଧର୍ମର ଶ୍ରେଷ୍ଠ ପ୍ରଚାରକ। ଅତିବଡ଼ ଜଗନ୍ନାଥ ଦାସଙ୍କ ଗୁରୁ ମତ୍ତ ବଳରାମ ବୋଲି ନିରୂପଣ କରିବା ପାଇଁ ଦିବାକର ଦାସଙ୍କ ବିବରଣଟିକୁ ଗ୍ରହଣ କରିବାକୁ ପଡୁଛି। ଅନ୍ୟଥା ଅତିବଡ଼ଙ୍କ ଗୁରୁ ନିର୍ଣ୍ଣୟ କରିବା ପାଇଁ ଅନ୍ୟ ପ୍ରମାଣ ନାହିଁ। ମତ୍ତ ବଳରାମ ମଧ ତାହାଙ୍କ ଗୁରୁ ଓ ପରମଗୁରୁଙ୍କ ପରି ନିତ୍ୟାନନ୍ଦ ଶାଖାର ଗୌଡ଼ିଆ ବୈଷ୍ଣବ ହେବା ଅନୁମାନ ଯୁକ୍ତିଯୁକ୍ତ। ତେଣୁ, ଦିବାକର ଦାସଙ୍କ ଦ୍ୱାରା କଥିତ ମତ୍ତ ବଳରାମ ଓ ବଙ୍ଗଳା ଚୈତନ୍ୟ ଭାଗବତ ବର୍ଣ୍ଣିତ ମହାମତ୍ତ ବଳରାମ ଦାସ ଏକା ଲୋକ ଥିବା ଜଣା ଯାଉଛି। ଚୈତନ୍ୟ ଚରିତାମୃତ ଆଦିଲୀଳାର ୧୧ଶ ପରିଚ୍ଛେଦରେ ନିତ୍ୟାନନ୍ଦ ଶାଖାଭୁକ୍ତ ବୈଷ୍ଣବମାନଙ୍କ ବିବରଣ ମଧରେ ଏହି ପରମ ଉନ୍ମାଦୀ (ଅର୍ଥାତ୍ ମହାମତ୍ତ) ବଳରାମ ଦାସଙ୍କ ବିଷୟ ଲେଖାଅଛି :-

ବଳରାମ ଦାସ କୃଷ୍ଣପ୍ରେମ ରସାସ୍ୱାଦୀ।
ନିତ୍ୟାନନ୍ଦ ନାମେ ହୟ ପରମଉନ୍ମାଦୀ ॥

## ଦ୍ୱାରିକା ଦାସ

ଦ୍ୱାରିକା ଦାସ ବ୍ରହ୍ମଜ୍ଞାନ ବିଷୟକ ଯୋଗମାର୍ଗୀ ସାହିତ୍ୟର ଜଣେ ପ୍ରମୁଖ ସ୍ରଷ୍ଟା। ସେ ନିଜର ନାମ ଦେଇ ତ ଶିବପୁରାଣ, ପରଚେ ଗୀତା, ପ୍ରେମରସ ଚନ୍ଦ୍ରିକା, ଗୁପ୍ତଗୀତା ଆଦି ବିଂଶାଧିକ ଗ୍ରନ୍ଥ ପ୍ରଣୟନ କରିଛନ୍ତି। ଜଗନ୍ନାଥ ଦାସ, ବଳରାମ ଦାସ ଆଦି ଅତୀତର ବିଖ୍ୟାତ କବିମାନଙ୍କ ନାମରେ ଭଣିତ କରି ଅନେକ ଗୁଡ଼ିଏ ଗ୍ରନ୍ଥ ମଧ ଲେଖିଛନ୍ତି। ସେ 'ଛତିଶ ଗୁପ୍ତଗୀତା'ରେ ନିଜର ପରିଚୟ ଦେଇ କହିଛନ୍ତି ଯେ ସେ ବଳରାମ ଦାସଙ୍କ ଅବତାର। ତାହାଙ୍କ ବକ୍ତବ୍ୟକୁ ଧରି ନପାରି ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ପ୍ରମୁଖ ସେ ଦ୍ୱିତୀୟ ବଳରାମ ଦାସ ବୋଲି କହିଛନ୍ତି।

ଓଡ଼ିଶାରେ ଭକ୍ତିଧର୍ମର ପ୍ରସାର ବଢ଼ିବାରୁ ବ୍ରହ୍ମଜ୍ଞାନୀ ବୋଲାଉଥିବା ଯୋଗମାର୍ଗୀମାନଙ୍କ ସାମାଜିକ ପ୍ରଭାବ କ୍ଷୀଣମାଣ ହେବାକୁ ଲାଗିଲା। ଏହି ପ୍ରକ୍ରିୟାର ଗତିରୋଧ କରିବା ଲକ୍ଷ୍ୟରେ ଅନେକ ବ୍ରହ୍ମଜ୍ଞାନୀ କବି ଆପଣା ଆପଣାର ସାଂପ୍ରଦାୟିକ ମତବାଦର ବହୁଳତର ପ୍ରସାର ଲକ୍ଷ୍ୟରେ ପ୍ରସିଦ୍ଧ ଭକ୍ତିମାର୍ଗର କବିମାନଙ୍କ ନାମରେ ବ୍ରହ୍ମଜ୍ଞାନ ଓ ପିଣ୍ଡବ୍ରହ୍ମାଣ୍ଡବାଦ ବିଷୟକ ଗ୍ରନ୍ଥମାନ ରଚନା କଲେ ଓ ଲୋକଙ୍କ ମଧରେ ଜନପ୍ରିୟତା ଅର୍ଜନ କରିଥିବା ଭକ୍ତିଗ୍ରନ୍ଥଗୁଡ଼ିକର ବ୍ରହ୍ମଜ୍ଞାନାତ୍ମକ ଗୂଢ଼ ଅର୍ଥ ରହିଛି ବୋଲି ବୁଝାଇ 'ଟୀକା', 'ଗୀତା', 'ଅର୍ଥ', ଭୂଗୋଳ ଆଦି ଆଖ୍ୟା ଦେଇ ଉଦ୍ଭଟ ବ୍ୟାଖ୍ୟା ଗ୍ରନ୍ଥମାନ ଲେଖିଲେ। ଏହି ପ୍ରକାର ଜାଲିଆତି ଖ୍ରୀ.୧୬ଶ ଶତାବ୍ଦୀରେ ଆରମ୍ଭ ହୋଇ ଓ ୧୮ଶ ଶତାବ୍ଦୀରେ ଅଚ୍ୟୁତାନନ୍ଦ ଦାସଙ୍କ ଦ୍ୱାରା ପ୍ରବର୍ତ୍ତିତ 'ପଞ୍ଚସଖା' ପ୍ରକଳ୍ପ ଦ୍ୱାରା ପରିପୁଷ୍ଟ ହୋଇ ବର୍ତ୍ତମାନ୍ ସୁଦ୍ଧା ଚାଲିଅଛି। ମୁଖ୍ୟତଃ କଟକ, କେନ୍ଦ୍ରାପଡ଼ା ଓ ଜଗତ୍‌ସିଂହପୁର ଜିଲାରେ ଏ ପ୍ରକାର ଜାଲଜାଲିଆତି ଦିଆ ଲେଖାର ଭାଟି ରହିଛି। ପରେ 'ପଞ୍ଚସଖା : ପ୍ରବଞ୍ଚନାର ବ୍ୟୂହଭେଦ' ଅଧ୍ୟାୟରେ ଏ ବିଷୟ ନେଇ ଅଧିକ ଆଲୋଚନା କରିବି।

'ଛତିଶଗୁପ୍ତଗୀତା' ବଳରାମ ଦାସଙ୍କ ଭଣିତି ଯୁକ୍ତ ହୋଇ ରଚିତ ହୋଇଛି। ଏଥିରେ ଲେଖାଅଛି ଯେ କୃଷ୍ଣଙ୍କ ପୁଅ ପ୍ରଦ୍ୟୁମ୍ନ ଓ ନାତି ଅନିରୁଦ୍ଧ। ଅନିରୁଦ୍ଧ କଳିଯୁଗରେ ପ୍ରତାପରୁଦ୍ରଙ୍କର ରାଜତ୍ୱ ସମୟରେ ରାଜାଙ୍କ ପାତ୍ର ସୋମନାଥଙ୍କ ପୁତ୍ର ବଳରାମ ରୂପରେ ଅବତୀର୍ଣ୍ଣ ହେଲେ। ବଳରାମଦାସ ଗୁପ୍ତଗୀତାର ଅଧ୍ୟାୟେ ମାତ୍ର ଲେଖି ଦେହତ୍ୟାଗ କଲେ ଓ ପରେ ମୁକୁନ୍ଦଦେବଙ୍କ ଦୁଇ ଅଙ୍କରେ ଶୂଦ୍ର ରାମଦାସଙ୍କ ପୁତ୍ର ଦ୍ୱାରିକା ଦାସ ରୂପେ ଜନ୍ମଲାଭ କରି ଗୁପ୍ତଗୀତାର ଅବଶିଷ୍ଟ ୩୫ ଅଧ୍ୟାୟ ଲେଖିଲେ। ମୋଟ ୩୬ ଅଧ୍ୟାୟ ବିଶିଷ୍ଟ ହେବାରୁ ତାହା ଛତିଶଗୁପ୍ତଗୀତା ବୋଲାଇଲା।

ପ୍ରତାପରୁଦ୍ର ନାମେ ହେବ ରାୟ। କହଇ ତୋତେ ସେ କଳି ସମୟ।
ସୋମନାଥ ବୋଲି ପାତ୍ର ତାହାର। ଅନିରୁଦ୍ଧ ଜାତ ତାହାରି ଘର।
ଜମ୍ବୁବତୀ ନାମେ ତାର ଭାରିଯା। ଅନିରୁଦ୍ଧ ଜାତ ତାର ତନୁଜା।
ତାହାର ନାମ ବଳରାମ ଦାସ। ଗୁପତଗୀତା ଅଧ୍ୟାୟେ ପ୍ରକାଶ।
ସେ ପୁଣି ମୁକୁନ୍ଦଦେବ ଦ୍ୱିଅଙ୍କେ। ବଳରାମ ଦାସ ଜନ୍ମିବେ ଲୋକେ।
ରାମଦାସ ଯେ ହେବ ଶୂଦ୍ରଜାତି। ବଇଷ୍ଣବପଣେ ନିର୍ଗୁଣ ଅତି।
ତହିଁ ବଳରାମ ଦାସ ଜନମ। ତାହାର ହୋଇବ ଦ୍ୱାରିକା ନାମ।
ସେହି କରିବ ଏ ଗୀତା ପ୍ରକାଶ। ଭଣିତା ହେବ ବଳରାମ ଦାସ।(୩୫ ଅଧ୍ୟାୟ)

ବଳରାମ ଦାସଙ୍କ ମାତାଙ୍କ ନାମ ସୁଦ୍ଧା ତାଙ୍କର ଦ୍ୱାପର ଅବତାର ଭୁଲିଯାଇଛନ୍ତି!

ପ୍ରେମରସ ଚନ୍ଦ୍ରିକା, ଶିବ ପୁରାଣ ଓ ପରଚେ ଗୀତାରେ କବି ଦ୍ୱାରିକା ଦାସ ନିଜର ପିତାଙ୍କ ନାମ ରାମଦାସ ଥିବା କଥା ଜଣାଇଛନ୍ତି। ତେଣୁ ଛତିଶଗୁପ୍ତଗୀତାର କବି ସେହି ଦ୍ୱାରିକା ଦାସ ହେବା ହିଁ ସମ୍ଭବ। ଗ୍ରନ୍ଥଟିର ରଚନା କାଳ ମୁକୁନ୍ଦଦେବଙ୍କର ୨୭ ଅଙ୍କ ବୋଲି ଶେଷ ଅଧ୍ୟାୟରେ ଜଣାଇ ଦିଆଯାଇଛି। ତେଲଙ୍ଗା ମୁକୁନ୍ଦଦେବଙ୍କର ୨୭ଅଙ୍କ ନାହିଁ, ତେଣୁ ଦ୍ୱାରିକା ଦାସଙ୍କ ସମୟର ରାଜା ହେଉଛନ୍ତି ଖୋରଧାର ପ୍ରଥମ ମୁକୁନ୍ଦଦେବ ଯାହାଙ୍କର ରାଜତ୍ୱ ଖ୍ରୀ.୧୬୫୭ର ଶେଷ ଆଡ଼କୁ ଆରମ୍ଭ ହେଲା। ଏହି ପ୍ରକାରେ ଦ୍ୱାରିକା ଦାସଙ୍କର ଜନ୍ମ ଖ୍ରୀ.୧୬୫୮ର ପ୍ରଥମଭାଗ ଓ ଛତିଶଗୁପ୍ତଗୀତାର ରଚନା କାଳ ପ୍ରାୟ ଖ୍ରୀ.୧୬୭୯ର ଆରମ୍ଭ ହୋଇଥିବା ଜଣାଯାଏ।

ଦ୍ୱାପର ଯୁଗର କୃଷ୍ଣଙ୍କ ପୌତ୍ର ଅନିରୁଦ୍ଧ ହିଁ କଳିଯୁଗରେ ବଳରାମ ଦାସ ହେବା କଥା ଦ୍ୱାରିକା ଦାସ ଲେଖିଛନ୍ତି। ଓଡ଼ିଆ ସାହିତ୍ୟର ଇତିହାସ ଆଲୋଚକମାନଙ୍କୁ ଘାରିଥିବା ପଞ୍ଚସଖାଭୂତକୁ ଛଡ଼ାଇବା ଲାଗି ଦ୍ୱାରିକା ଦାସଙ୍କ ଏହି ଉକ୍ତି ମନ୍ତ୍ରବତ୍ କାମ ଦେବ। ଦ୍ୱାରିକା ଦାସଙ୍କ ବେଳକୁ 'ପଞ୍ଚସଖା' ବିଶ୍ୱାସର ଅସ୍ତିତ୍ୱ ଥିଲେ ଦ୍ୱାରିକା ଦାସ ବଳରାମ ଦାସଙ୍କର ଦ୍ୱାପର ଯୁଗର ଅବତାରଙ୍କ କୌଣସି ଜଣେ କୃଷ୍ଣସଖା କରିଥାନ୍ତେ ସିନା କୃଷ୍ଣଙ୍କ ପୌତ୍ରରୂପେ ତାଙ୍କୁ ପରିଚିତ କରାନ୍ତେ ନାହିଁ। 'ପଞ୍ଚସଖା' ତତ୍ତ୍ୱର ମୂଳ କଥା ହେଲା, କଳିଯୁଗର ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ,

ଯଶୋବନ୍ତ ଦାସ ଓ ଅନନ୍ତ ଦାସ ନାମଧେୟ ପାଞ୍ଚଜଣ ସଖା ବିଷ୍ଣୁ-ଜଗନ୍ନାଥଙ୍କ ସହିତ ଯୁଗେଯୁଗେ ସଖାଭାବରେ ଅବତୀର୍ଣ୍ଣ ହୋଇଛନ୍ତି। ପଞ୍ଚସଖା ଯୋଜନା ଅନୁସାରେ ଜଗନ୍ନାଥଙ୍କର ଯୁଗଯୁଗର ସଖା ବଳରାମ ଦାସ ଥିଲେ ସତ୍ୟଯୁଗରେ ନାରାୟଣଙ୍କ ସଖା, ମାର୍କଣ୍ଡେୟ, ତ୍ରେତା ଯୁଗରେ ରାମଙ୍କ ସଖା ସୁଷେଣ, ଦ୍ୱାପରରେ କୃଷ୍ଣଙ୍କ ସଖା ସୁବଳ ଓ କଳିଯୁଗରେ ଚୈତନ୍ୟଙ୍କ ସଖା ଗୌରୀଦାସ ପଣ୍ଡିତ। ପଞ୍ଚସଖା ଯୋଜନା ପ୍ରକାରେ ଏହି ଗୌରୀଦାସ ହିଁ ପରେ ବଳରାମ ଦାସ ରୂପରେ ଅବତୀର୍ଣ୍ଣ ହୋଇଥିଲେ। ଅଥଚ ଦ୍ୱାରିକା ଦାସ ବଳରାମ ଦାସ ଦ୍ୱାପରରେ କୃଷ୍ଣ-ପୌତ୍ର ଅନିରୁଦ୍ଧ ଥିବା କଥା କହିଛନ୍ତି। ଏଥିରୁ ସ୍ପଷ୍ଟ ହେଉଛି ଯେ ଛତିଶଗୁପ୍ତଗୀତାର ରଚନାକାଳ (ଖ୍ରୀ.୧୬୭୯) ସୁଦ୍ଧା ପଞ୍ଚସଖା ତତ୍ତ୍ୱ ଉଦ୍ଭାସିତ ହୋଇ ନଥିଲା। ଛତିଶଗୁପ୍ତଗୀତାର ରଚନା ପରେ ଦିବାକର ଦାସଙ୍କ 'ଜଗନ୍ନାଥାମୃତ'ର ରଚନା ହୋଇଛି। ଦିବାକର ଗୌରୀଦାସଙ୍କୁ ମତ୍ତବଳରାମଙ୍କ ଗୁରୁ ଓ ରାମାୟଣକାର ବଳରାମ ଦାସଙ୍କ ସମକାଳୀନ ରୂପେ ବର୍ଣ୍ଣନା କରିଥିବାରୁ ଦିବାକର ଦାସ ମଧ୍ୟ ପଞ୍ଚସଖା ତତ୍ତ୍ୱ ବିଷୟ ଅବହିତ ନ ଥିଲେ। ସେ ଜଣେ ସଖା ଥିବା ବିଶ୍ୱାସ ବିଦ୍ୟମାନ ଥିଲେ ତାଙ୍କୁ ଦ୍ୱାପରର ସୁବଳ ବା ଅନ୍ୟ କେହି କୃଷ୍ଣସଖା ଗୋପାଳ ସହିତ ଚିହ୍ନିତ କରାଯାଇଥାନ୍ତା। କୃଷ୍ଣଙ୍କ ପୌତ୍ର ତଥା ପ୍ରସିଦ୍ଧ ଚତୁର୍ବ୍ୟୂହର ଅନ୍ୟତମ ଅନିରୁଦ୍ଧ ସହିତ ସେ ଚିହ୍ନିତ ହେବା ସଙ୍ଗତ ହୁଅନ୍ତା ନାହିଁ। ଏ ବିଷୟ 'ପଞ୍ଚସଖା ! ପ୍ରବଞ୍ଚନାର ବ୍ୟୂହଭେଦ' ଅଧ୍ୟାୟରେ ଅଧିକ ବିଶଦଭାବରେ କରାଯାଉଛି।

**ଅନ୍ୟାନ୍ୟ ବଳରାମ ଦାସ**

ଅନେକ ଛୋଟ ବଡ଼ ଲେଖାର କବି ବଳରାମ ଦାସ ଥିବା କଥା ପୂର୍ବରୁ ଜଣାଇ ଦିଆଯାଇଛି। ତନ୍ମଧ୍ୟରୁ କେତେକର କବିଙ୍କର ପ୍ରକୃତ ନାମ ବଳରାମ ହୋଇଥାଇପାରେ ଓ ତାଙ୍କର କୌଳିକ ସାଂଜ୍ଞା ଦାସ ଥାଇପାରେ ବା ସେମାନେ ବୈଷ୍ଣବ ହେବା ଯୋଗେ ଦାସ ଆଖ୍ୟାକୁ ସ୍ୱୀକାର କରିଥାଇ ପାରନ୍ତି। ଆଉ କେତେଜଣ ସ୍ୱପୋଷିତ ଧର୍ମମତର ଅଧିକତର ପ୍ରସାର ଲକ୍ଷ୍ୟରେ ବଳରାମ ଦାସଙ୍କ ପରି ଜଣେ ଖ୍ୟାତିବନ୍ତ କବିଙ୍କ ନାମକୁ ଆତ୍ମସାତ୍ କରିଥିବା ମଧ୍ୟ ସମ୍ଭବପର। ବଳରାମ ଦାସଙ୍କ ନାମରେ ଭଣିତ ହୋଇ ଯେଉଁ ବ୍ରହ୍ମଜ୍ଞାନ, ପିଣ୍ଡବ୍ରହ୍ମାଣ୍ଡ ଓ ଶରୀରଭେଦ ବିଷୟକ ଲେଖା ସବୁ ମିଳୁଛି ସେଗୁଡ଼ିକ ରାମାୟଣକାରଙ୍କର ହୋଇ ନ ପାରେ ବୋଲି ଅନୁମାନ କରାଯାଇପାରେ। ଏ ଗୁଡ଼ିକରେ ବ୍ୟବହୃତ ଭାଷା ଓ ଶୈଳୀର ରୂପ ଷୋଡ଼ଶ ଶତାବ୍ଦୀର ଢ଼େର ପରବର୍ତ୍ତୀ ଥିବା ଜଣାପଡ଼େ। ପୁଣି, ଆଲୋଚିତ ଓ ପ୍ରତିପାଦିତ ବିଷୟ ଭକ୍ତିଧର୍ମର ପରିପନ୍ଥକ ହୋଇଥିବାରୁ ତାହା ରାମାୟଣକାରଙ୍କର ରଚନା ବୋଲି ଅନୁମିତ ହୁଏ ନାହିଁ।

ଛତିଶଗୁପ୍ତଗୀତା ଏହି ଶ୍ରେଣୀର ରଚନା। ତାହା ଦ୍ୱାରିକା ଦାସ ଲେଖିଥିଲେ ହେ ବଳରାମ ଦାସଙ୍କ ଭଣିତି ଦେଇଥିବା କଥା ଦର୍ଶାଇ ଦିଆଯାଇଛି। ବଳରାମ ଦାସଙ୍କ ନାମାଙ୍କିତ ବ୍ରହ୍ମଜ୍ଞାନ ବିଷୟକ ଲେଖାଗୁଡ଼ିକ ମଧ୍ୟରୁ ଆଉ କେତୋଟି ଦ୍ୱରିକା ଦାସ ଲେଖିଥାଇ ପାରନ୍ତି, କିନ୍ତୁ ସେଗୁଡ଼ିକର ପିତୃତ୍ୱ ନେଇ ନିର୍ଦ୍ଦିଷ୍ଟ ଭାବରେ କିଛିକହିହେଉ ନାହିଁ। ଏହି ଶ୍ରେଣୀର କେତୋଟି ରଚନାର ବିଚାର, 'ଭାତହାଣ୍ଡିରୁ ଗୋଟିଏ' ନ୍ୟାୟରେ, କଲେ ମୋ ବକ୍ତବ୍ୟ ସ୍ୱଚ୍ଛତର ହେବ ବୋଲି ଆଶା କରୁଛି।

'ବ୍ରହ୍ମାଣ୍ଡ ଭୂଗୋଳ' କଥା ବିଚାର କରାଯାଉ। ଓଡ଼ିଆରେ ଦୁଇଟି 'ବ୍ରହ୍ମାଣ୍ଡ ଭୂଗୋଳ' ରହିଛି, ଗୋଟିଏ ଜଗନ୍ନାଥ ଦାସଙ୍କ ଭଣିତି ନେଇ ଓ ଅନ୍ୟଟି ବଳରାମ ଦାସଙ୍କ ଭଣିତି ନେଇ। ଉଭୟ ପୁସ୍ତକରେ ଜଗନ୍ନାଥ ଦାସଙ୍କ ଭାଗବତର ପିଣ୍ଡବ୍ରହ୍ମାଣ୍ଡବାଦୀ ଛଳବ୍ୟାଖ୍ୟା ରହିଛି। ଜଗନ୍ନାଥ ଦାସଙ୍କ ନାମାଙ୍କିତ 'ବ୍ରହ୍ମାଣ୍ଡ ଭୂଗୋଳ'ରେ କେଶବ କୋଇଲି, ଗୋପୀଭାଷା ବା ଗୋପବୋଲି ଆଦି ଲୋକପ୍ରିୟ କବିତାର ବିକୃତ ବ୍ୟାଖ୍ୟା ମଧ୍ୟ ରହିଛି। ବଳରାମ ଦାସଙ୍କ ନାମାଙ୍କିତ ବ୍ରହ୍ମାଣ୍ଡ ଭୂଗୋଳରେ ଅର୍ଜୁନ କୃଷ୍ଣଙ୍କୁ ଜଗନ୍ନାଥ ଦାସଙ୍କ ରଚିତ ଓଡ଼ିଆ ଭାଗବତର (ବିଶେଷତଃ ତାହାର ୧୧ଶ ସ୍କନ୍ଧର) କେତେକ ସୁବୋଧ୍ୟ ପଦର ଅର୍ଥ ପଚାରିଛନ୍ତି ଓ କୃଷ୍ଣ ଏଥିରେ ପ୍ରକୃତରେ ବ୍ରହ୍ମଜ୍ଞାନ ବିବୃତ ହୋଇଛି ବୋଲି ବ୍ୟାଖ୍ୟା କରିଛନ୍ତି। ଏକାଦଶ ସ୍କନ୍ଧର ପ୍ରଥମ ପଦ 'ନମଇଁ ନୃସିଂହ ଚରଣ'ର ବ୍ୟାଖ୍ୟା କରି କୃଷ୍ଣ କହୁଛନ୍ତି :-

ନଅଟି ନିରାକାର ରୂପ। ମ ଅ ଯେ ମହାସୂକ୍ଷ୍ମ ରୂପ ॥
ଇକାର ଈଶ୍ୱର ପ୍ରମାଣ। ନ ଅଟି ଅର୍ଦ୍ଧମାତ୍ରା ଜାଣ ॥
ସି ଇରୁ ସିଷୁମ୍ନା ଜାତ। ହ ଅରୁ କ୍ଷରୁଛି (ହଉଛି ?) ଜଗତ ॥
ଚ ଅରୁ ଚରାଚର ହେଲା। ର ଅଟି ଶରୀରେ ରହିଲା ॥
ଣ ଅ ଅକ୍ଷର ମହାଶୂନ୍ୟ। ଅନ୍ତେ ହୋଇବ ତହିଁ ଲୀନ ॥ (ନବମ ଅଧ୍ୟାୟ)

ଏ ପ୍ରକାର ଅଜବ ବ୍ୟାଖ୍ୟା କରି ଗୋଟିଏ ଭକ୍ତିମୂଳକ ଗ୍ରନ୍ଥର ପଦଗୁଡ଼ିକରେ ଗୂଢ଼ ଅର୍ଥ ଥିବା କଥା ଲେଖାଅଛି। ସେହି ବ୍ରହ୍ମାଣ୍ଡ ଭୂଗୋଳର ୬୪ ଅଧ୍ୟାୟରେ ଅର୍ଜୁନ କୃଷ୍ଣଙ୍କୁ ମହାପୁରାଣର ଅର୍ଥ ପଚାରିଛନ୍ତି ଓ କୃଷ୍ଣ ପ୍ରାଞ୍ଜଳଭାବେ ବୁଝାଇଛନ୍ତି :-

ମାତାର ପଦ୍ମ ଗୋଟି ଥିଲା। ତହିଁରେ ବିନ୍ଦୁ ପୂରାଇଲା ॥
ମହାପୁରାଣ ତହୁଁହୋଇ। ବ୍ରହ୍ମାଣ୍ଡ ଭୂଗୋଳରେ କହି ॥

'ମାତା'ରୁ ମାଆ ହୋଇ 'ମହା'ହେଲା ଓ ତହିଁରେ ବୀର୍ଯ୍ୟବିନ୍ଦୁ ପୂରାଇବାରୁ ପୁରାଣ ହେଲା। ଉଭୟ ମିଶିବାରୁ ହେଲା ମହାପୁରାଣ। ଏପରି ହଯବରଲ ଜ୍ଞାନଚର୍ଚ୍ଚା ଓଡ଼ିଶାରେ ଖୁବ୍ ଚଳେ। ଏହି ଜାଲପାଣ୍ଡିତ୍ୟର ତାରିଫ୍ ପଲ୍ଲୀର ଅବିଦ୍ୟ ସମାଜରେ ଶୁଣିବାକୁ ମିଳୁଥିଲା। ଦୁଃଖର କଥା, ଏବେ କିଛି ବର୍ଷ ହେବ ପ୍ରଥମେ ପ୍ରାଚୀ ସମିତି ଓ ପରେ ଉତ୍କଳ ବିଶ୍ୱବିଦ୍ୟାଳୟର ଭ୍ରାନ୍ତ ଦିଗ୍‌ଦର୍ଶନ ଫଳରେ ଓଡ଼ିଶାର

ବିଶ୍ୱବିଦ୍ୟାଳୟ ତଥା ମହାବିଦ୍ୟାଳୟର ଅଧ୍ୟାପକ ବର୍ଗ ଏହାକୁ ଅସଲି-ପାଣ୍ଡିତ୍ୟ ଓ ଉତ୍କୃଷ୍ଟ ସମାଲୋଚନାର ଗୌରବ ଦେଇ ଚାଲିଛନ୍ତି। ଯେଉଁମାନେ ଜ୍ଞାନର ଆଦର କରିବା କଥା ସେମାନେ ଭଣ୍ଡପାଣ୍ଡିତ୍ୟର ଜୟଜୟକାର କରୁଛନ୍ତି। ଯେଉଁ ରାମାୟଣକାର ବଳରାମ ଦାସ ଭାଗବତର ରଚୟିତାଙ୍କ ଅପେକ୍ଷା ବୟୋଜ୍ୟେଷ୍ଠ ସେ ଭାଗବତର ଓଡ଼ିଆ ପଦଗୁଡ଼ିକର ଅସ୍ତିତ୍ୱ ମହାଭାରତ ଯୁଗରେ ଅର୍ଜୁନଙ୍କ ଜ୍ଞାତସାରରେ ଥିବା କଳ୍ପନା କରିପାରିବେ କି ?

'ବେଦାନ୍ତସାର ଗୁପ୍ତଗୀତା' ଏହି ପ୍ରକାରର ଅନ୍ୟ ଏକ ରଚନା। ଏଥିରେ ଲେଖାଅଛି ଯେ ପ୍ରତାପରୁଦ୍ର ଦେବଙ୍କର ୧୭ଅଙ୍କ ମାଘ ଶୁକ୍ଳ ଏକାଦଶୀ ଦିନ ପୁରୀର 'ମୁକ୍ତିମଣ୍ଡପ'ରେ ଏକ ଧର୍ମସଭା ଅନୁଷ୍ଠିତ ହୋଇଥିଲା। ବ୍ରାହ୍ମଣମାନେ ବେଦାନ୍ତତତ୍ତ୍ୱ ଆଲୋଚନା କରୁଥିଲେ। ସେଠାରେ ବଳରାମ ଦାସ ଉପସ୍ଥିତ ଥିଲେ। ସେ ବେଦାନ୍ତତତ୍ତ୍ୱ ବିଷୟରେ କିଛି କହିବାକୁ ଯିବାରୁ ବ୍ରାହ୍ମଣମାନେ ତାଙ୍କୁ ଶୂଦ୍ର ଓ ମୂଢ଼ ବୋଲି କହି ତିରସ୍କାର କଲେ ଓ ଜଣେ ଶୂଦ୍ରର ଏତାଦୃଶ ଔଦ୍ଧତ୍ୟ ବିରୋଧରେ ରାଜାଙ୍କ ଆଗରେ ଆପତ୍ତି ଜଣାଇଲେ। ରାଜା ଦାସଙ୍କ ବେଦାନ୍ତ ବିଷୟ କଣ ଜାଣନ୍ତି ବୋଲି ପଚାରିବାରୁ ବଳରାମ ଦାସ କହିଲେ, "ବେଦାନ୍ତ ବିଷୟରେ ମୁଁ କହିବାତ ବଡ଼ କଥା ନୁହେଁ, ମୁଁ ଯାହା ମୁଣ୍ଡରେ ହାତ ଦେବି ସେ ବେଦାନ୍ତ କହିପାରିବ"। ଦାସଙ୍କ ଦାବିର ସତ୍ୟତା ପରୀକ୍ଷା କରିବା ପାଇଁ ରାଜା ଏକ ସଭାର ଆୟୋଜନ କଲେ। ବ୍ରାହ୍ମଣମାନେ ହରିଦାସ ନାମକ ଜଣେ ଗଣ୍ଡମୂର୍ଖକୁ ଧରି ଆଣିଲେ। ବଳରାମ ଦାସ, ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କଲେ, ହରିଦାସ ମୁଣ୍ଡରେ ହାତ ରଖିଲେ। ହରିଦାସ ବେଦାନ୍ତ ଚର୍ଚ୍ଚା କଲା। ସଭାସ୍ଥଲୋକେ ସ୍ତବ୍ଧ ଚକିତ ହେଲେ। ସ୍ୱୟଂ ବଳରାମ ଦାସ ବେଦାନ୍ତ ବ୍ୟାଖ୍ୟାନ କରନ୍ତୁ ବୋଲି ସମସ୍ୱେତ ଅନୁରୋଧ କଲେ। ଦାସଙ୍କ ବେଦାନ୍ତ ବ୍ୟାଖ୍ୟା ଶୁଣି ରାଜା ପ୍ରତାପରୁଦ୍ର ସ୍ୱୀକାର କଲେ ଯେ ଚୈତନ୍ୟ ତାଙ୍କର ଗୁରୁ ଥିଲେ, ଏବେ ବଳରାମ ଦାସ ପରମଗୁରୁ ହେଲେ।

ପ୍ରତାପରୁଦ୍ର ମହାରାଜା। ଶୁଣି ସେ କଲା ସର୍ବତେଜ୍ୟା ॥
ପରମ ଗୁରୁ କରି ପୁଣ। ଧରି ପଚାରେ ସେ ଚରଣ ॥
ଭୋ ନାଥ ମୋ ପରମଗୁରୁ। ଦୀକ୍ଷା ପାଇଲି ମହାମେରୁ ॥
ଚୈତନ୍ୟ ଗୁରୁ ଯେ ମୋହର। ପରମ ଗୁରୁ ତୁମ୍ଭେ ମୋର ॥

ପ୍ରତାପରୁଦ୍ର 'ସରସ୍ୱତୀ ବିଳାସମ୍' ନାମକ ଧର୍ମଗ୍ରନ୍ଥର ରଚୟିତା ହେବାର ଡିଣ୍ଡିମ ପିଟୁଥିଲେ ହେଁ ନିତାନ୍ତ ବୋକା ଥିଲେ ନିଶ୍ଚୟ। ସେ ଜାଣିବା ଉଚିତ ଥିଲା ଯେ ଗୁରୁଙ୍କ ଗୁରୁଙ୍କୁ ପରମଗୁରୁ କୁହାଯାଏ। ଯଦି ସତରେ ଚୈତନ୍ୟ ଗୁରୁ ତେବେ ଯେ ପର୍ଯ୍ୟନ୍ତ ଚୈତନ୍ୟ ନିଜେ ବଳରାମ ଦାସଙ୍କୁ ଗୁରୁ ରୂପେ

ଗ୍ରହଣ କରି ନାହାନ୍ତି ପ୍ରତାପରୁଦ୍ର ବଳରାମ ଦାସଙ୍କ ଦୁଇ ଚରଣକୁ ଯେତେ ଦୃଢ଼ରେ ଧରିଲେ ହେଁ ସେ ପରମଗୁରୁ ହୋଇପାରିବେ ନାହିଁ।

ଏ କାହାଣୀଟି ଓଡ଼ିଆ ସାହିତ୍ୟର ଇତିହାସରେ ମାନ୍ୟତା ପାଇଥିଲେହେଁ ସଂପୂର୍ଣ୍ଣ ମନଗଢ଼ା। ପ୍ରତାପରୁଦ୍ର ଦେବ (ଖ୍ରୀ.୧୪୯୭-୧୫୩୮)ଙ୍କର ୧୭ଅଙ୍କର ମାଘ ମାସ ହେଉଛି ଖ୍ରୀ.୧୫୧୦ର ଜାନୁଆରି। ବିଜୟନଗରର ରାଜା କୃଷ୍ଣଦେବ ରାୟ ୧୫୧୦ର ଜୁନ୍ ମାସରେ ସିଂହାସନରେ ଅଭିଷିକ୍ତ ହେବା ପରେ ପ୍ରତାପରୁଦ୍ରଦେବ ଦାକ୍ଷିଣାତ୍ୟକୁ ଯାତ୍ରା କଲେ। ଖ୍ରୀ.୧୫୧୦ର ଜାନୁଆରି (ମାଘ ପୂର୍ଣ୍ଣିମା) ବେଳକୁ ପ୍ରତାପରୁଦ୍ର ଅଛନ୍ତି ସୁଦୂର ନେଲ୍ଲୋର ଜିଲ୍ଲାରେ। ସେ ଦାକ୍ଷିଣାତ୍ୟରୁ ଫେରିଲେ ସେ ବର୍ଷର ମାର୍ଚ୍ଚ ମାସରେ। ତେଣୁ, ପ୍ରତାପରୁଦ୍ରଙ୍କ ୧୭ଅଙ୍କ ମାଘମାସରେ ପ୍ରତାପରୁଦ୍ର ପୁରୀରେ ଥାଇ ବଳରାମ ଦାସଙ୍କ ଜ୍ଞାନ ପରୀକ୍ଷା କରୁଥିବା ବର୍ଣ୍ଣନାର କୌଣସି ସତ୍ୟତା ନାହିଁ। ଆଉ ମଧ, ଚୈତନ୍ୟ ସନ୍ନ୍ୟାସ ଗ୍ରହଣ କରିସାରିବା ପରେ ପୁରୀରେ ପଦାର୍ପଣ କଲେ ଖ୍ରୀ.୧୫୧୧ର ଫେବୃଆରି ମାସରେ (ଏହା ଖ୍ରୀ.୧୫୧୦ର ଫେବ୍ରୁଆରି ବୋଲି ବର୍ତ୍ତମାନ ସମସ୍ତେ ଗ୍ରହଣ କରୁଛନ୍ତି କିନ୍ତୁ ମୋ ଗଣନାରେ ତାହା ୧୫୧୧ର ଫେବୃଆରି)। ପୁରୀରେ ପହଞ୍ଚିବାର ଅଳ୍ପ କେତୋଟି ଦିନ ପରେ ସେ ଦାକ୍ଷିଣାତ୍ୟ ତୀର୍ଥାଟନରେ ଗଲେ। ଦାକ୍ଷିଣାତ୍ୟରୁ ଚୈତନ୍ୟ ଫେରିଲେ ଖ୍ରୀ.୧୫୧୨ର ମଧ୍ୟଭାଗରେ। ପ୍ରତାପରୁଦ୍ରଙ୍କ ସହିତ ଚୈତନ୍ୟଙ୍କ ସାକ୍ଷାତ୍କାର ସର୍ବପ୍ରଥମେ ହେଲା ଖ୍ରୀ.୧୫୧୩ର ରଥଯାତ୍ରା ବେଳେ। ତେଣୁ ଖ୍ରୀ ୧୫୧୦ର ଜାନୁଆରି ମାସରେ ପ୍ରତାପରୁଦ୍ର ବଳରାମ ଦାସଙ୍କୁ 'ଚୈତନ୍ୟ ମୋର ଗୁରୁ, ତୁମେ ପରମଗୁରୁ' କହିଥିବା ବର୍ଣ୍ଣନା ସଂପୂର୍ଣ୍ଣ ମିଥ୍ୟା। ପୁନଶ୍ଚ ଉଲ୍ଲେଖନୀୟ ଯେ ଚୈତନ୍ୟ ପ୍ରତାପରୁଦ୍ରଙ୍କର ଗୁରୁ ନଥିଲେ; ଏପରିକି ଚୈତନ୍ୟଙ୍କ ଅନୁଗତ ଗୌଡ଼ିଆ ବୈଷ୍ଣବମାନେ ମଧ ଚୈତନ୍ୟ ପ୍ରତାପରୁଦ୍ରଙ୍କ ଗୁରୁଥିବା କଥା ଲେଖିନାହାନ୍ତି। କେବଳ ପ୍ରତାପରୁଦ୍ର ଚୈତନ୍ୟଙ୍କ 'କୃପାପାତ୍ର' ହେବା କଥା ସେମାନେ କହନ୍ତି। ଯଦି ଯୁକ୍ତି ପାଇଁ ଧରି ନିଆଯାଏ ଯେ ପ୍ରତାପରୁଦ୍ର ଚୈତନ୍ୟଙ୍କ କୃପାପାତ୍ର ହେବା ଶିଷ୍ୟତ୍ୱ ତୁଲ୍ୟ ତେବେ ବି ଚୈତନ୍ୟଙ୍କ ଗୁରୁ ବଳରାମ ଦାସ ହେଲେହିଁ ସେ ପ୍ରତାପରୁଦ୍ରଙ୍କ ପରମଗୁରୁ ପଦବାଚ୍ୟ ହୋଇ ପାରିବେ। ଚୈତନ୍ୟ ବଳରାମ ଦାସଙ୍କ ଶିଷ୍ୟ ନୁହନ୍ତି କି ପ୍ରତାପରୁଦ୍ରଙ୍କ ଗୁରୁ ନୁହଁନ୍ତି। ଏ ସବୁ ମିଥ୍ୟା ଓ ଅମୂଳକ ଦାବି। ବେଦାନ୍ତସାର ଗୁପ୍ତଗୀତାରେ ଆଲୋଚିତ ଧର୍ମମତ ଚୈତନ୍ୟଙ୍କ ମତଠାରୁ ଶ୍ରେଷ୍ଠତର ବୋଲି ପ୍ରତିପାଦନ କରିବା ଲକ୍ଷ୍ୟରେ ଏହି ମିଥ୍ୟା ଆଖ୍ୟାନ ଉଦ୍ଭାବିତ ହୋଇଛି। ରାଜା ଗୋଟିଏ ଧର୍ମମତକୁ ଗ୍ରହଣ କରିଗଲେ ପ୍ରଜାମାନେ ତାହାକୁ ଗ୍ରହଣ କରିନିଅ। ଏଣୁ କହନ୍ତି ଧର୍ମ ରାଜାନୁଗତ। ଗୌଡ଼ିଆ ବୈଷ୍ଣବମାନେ ତାଙ୍କ ମତବାଦର ପ୍ରତିଷ୍ଠା ବର୍ଦ୍ଧନ ଲକ୍ଷ୍ୟରେ ପ୍ରତାପରୁଦ୍ରଙ୍କୁ ଚୈତନ୍ୟଙ୍କ ଏକାନ୍ତ ଅନୁଗତ ଓ କୃପାପାତ୍ର ରୂପେ ଚିତ୍ରଣ କରିଛନ୍ତି, ସପ୍ତଦଶ ଶତାବ୍ଦୀର ପ୍ରଥମ ପାଦରେ ରଚିତ 'ଚୈତନ୍ୟ ଚରିତାମୃତ'ରେ।

ଗୌଡ଼ିଆ ବୈଷ୍ଣବଙ୍କ ଏହି ଅପପ୍ରଚାରର ପ୍ରତିକାର ନିମ୍ନେ 'ବେଦାନ୍ତସାର ଗୀତା'ର ଏହି ମନଗଢ଼ା ଆଖ୍ୟାନ ସ୍ପଷ୍ଟ।

ବ୍ରହ୍ମାଣ୍ଡ ଭୂଗୋଳ, ବିରାଟ ଗୀତା, ଗୁପ୍ତ ଗୀତା (ପ୍ରକୃତ ନାମ ବୋଧହୁଏ ଗୁପ୍ତଟୀକା) ଓ ଅମରକୋଷ ଗୀତା ନାମକ ବ୍ରହ୍ମଜ୍ଞାନ ବିଷୟକ ପୁସ୍ତକ ଗୁଡ଼ିକର ରଚୟିତା ବଳରାମ ଦାସ ବୋଲି କଥିତ। ନୀଳମଣି ମିଶ୍ର 'ପ୍ରାଚୀନ ଓଡ଼ିଆ ଭାଷା, ଲିପି ଓ ସାହିତ୍ୟ' ପୁସ୍ତକରେ ଜନୈକ ଦୈବଜ୍ଞ ବଳରାମ ଅମରକୋଷ ଗୀତା ଲେଖିଥିବା ଜଣାଇଛନ୍ତି (ପୃ.୫୭)। ବଳରାମ ଦାସଙ୍କ ଭଣିତି ୨୦ ସ୍ଥାନରେ ବହନ କରି ପ୍ରକାଶ ପାଇଥିବା 'ଅମରକୋଷ ଗୀତା' ଓ ଦୈବଜ୍ଞ ବଳରାମଙ୍କ 'ଅମରକୋଷ ଗୀତା' ହୁଏତ ଗୋଟିଏ ଗ୍ରନ୍ଥ। ପ୍ରକାଶିତ ଅମରକୋଷ ଗୀତାରେ ଏହି ଗୀତା ଶୁଣି ରାଜା ପ୍ରତାପରୁଦ୍ର ବୈଷ୍ଣବଙ୍କ ପୂଜା କରିଥିବା ବିଷୟ ଲେଖାଅଛି: ''ପ୍ରତାପରୁଦ୍ର ମହାରାଜା। ବୈଷ୍ଣବେ କଲେ ଦିବ୍ୟପୂଜା''। ଏହି ଗୀତାଟିକୁ ବଳରାମ ଦାସ ଅତୀତରେ ଲେଖିଥିଲେ ବୋଲି ଏହାର ୬ଷ୍ଠ ଅଧ୍ୟାୟରେ ଲେଖାଅଛି:- ''ଥିଲା ଯେ ବଳରାମ ଦାସ, ଏ ଗୀତା କଲାକ ପ୍ରକାଶ''। ବଳରାମ ଦାସ ଅତୀତରେ ଥିଲା ବୋଲି ସ୍ୱୀକୃତ ହୋଇଥିବାରୁ ଏହାର କବି ବଳରାମ ଦାସ ନ ହୋଇ ତାଙ୍କର ପରବର୍ତ୍ତୀ କାଳୀନ ହେବା ନିଃସନ୍ଦେହ। ସେ ଦୈବଜ୍ଞ ଅର୍ଥାତ୍ ଗ୍ରହବିପ୍ର ଜାତିର କୌଣସି ବଳରାମ (ଆନୁମାନିକ ସମୟ ୧୮ଶ ଶତାବ୍ଦୀ) ହୋଇପାରନ୍ତି।

ଊନବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧିରେ ପିଣ୍ଡିକ ଦାସ ଆଗତ ଭବିଷ୍ୟତ ନାମକ ଏକ ମାଳିକା ରଚନା କରିଥିଲେ। ଏଥିରେ ଲେଖାଅଛି ଯେ ଜଗନ୍ନାଥ ଯେତେବାର ଅବତୀର୍ଣ୍ଣ ହୁଅନ୍ତି ତାଙ୍କ ସହିତ ପଞ୍ଚସଖା ସହିତ ତେରଭକ୍ତ ମଧ୍ୟ ଅବତୀର୍ଣ୍ଣ ହୁଅନ୍ତି। ପଞ୍ଚସଖା ମଧ୍ୟରେ ଜଣେ ବଳରାମ ଦାସ ଥିଲେ। ପିଣ୍ଡିକ ଦାସଙ୍କ ବିବରଣ ଅନୁସାରେ ତେର ଭକ୍ତଙ୍କ ମଧ୍ୟରେ ଆଉଜଣେ ବଳରାମଦାସ ଥିଲେ। ଜଗନ୍ନାଥ ମହାପ୍ରଭୁଙ୍କ ଉକ୍ତି ସେଥିରେ ବ୍ୟକ୍ତ ହୋଇଛି (୯ମ ଅଧ୍ୟାୟରେ):-

ଏମନ୍ତେ ଯେତେ ଅବତାର। ମୁଁ ଜନ୍ମ ହୁଅଇ ସଂସାର॥
ଏ ପଞ୍ଚସଖା ତେର ଭକ୍ତ। ମୋ ସଙ୍ଗେ ହୁଅନ୍ତି ଉଦିତ॥

ଆହୁରି ପରବର୍ତ୍ତୀ ସମୟରେ ପଞ୍ଚସଖା-ତେର ଭକ୍ତଙ୍କ ସହିତ ଷୋଳସର୍ଦ୍ଧାର ଓ ଚଉଷଠୀ ମହନ୍ତ ମଧ୍ୟ ଜନ୍ମ ହେବା କଳ୍ପନା ପ୍ରଚାରିତ ହୋଇଛି। ତେର ଭକ୍ତଙ୍କ ନାମ (ଓ ବାସସ୍ଥାନ) ଆଗତ ଭବିଷ୍ୟତରେ ପ୍ରଦତ୍ତ ହୋଇଛି:- ୧. ବଳରାମ ଦାସ (ବାଙ୍କି ମୁହାଣ), ୨. ବାଲି ଗାଁ ଦାସ (ସିଂହଦ୍ୱାର), ୩. ସାଲବେଗ (ସିଂହଦ୍ୱାର), ୪. ଦୀନକୃଷ୍ଣ ଦାସ (ସିଂହଦ୍ୱାର), ୫. ମଧୁସୂଦନ (ପୁରୀ); ୬. ଶ୍ରୀଚନ୍ଦନ (ବାଙ୍କି), ୭. ବନ୍ଧୁ ମହାନ୍ତି (ଯାଜପୁର), ୮. ପିଣ୍ଡିକ ଦାସ (ପୁରୀ),

୯. ଦ୍ୱାରିକା ଦାସ (ପୁରୀ), ୧୦. ବୀରଙ୍ଗ ଦାସ (ପିପିଲି), ୧୧. ଚନ୍ଦ୍ର ଦାସ (ବାରୁର?) ୧୨. ଅନନ୍ତ ଦାସ (ଖଣ୍ଡଗିରି) ଓ ୧୩. ଅଲେଖ ବାଇ (ରଥିପୁର)। ଲକ୍ଷ୍ୟ କରାଯାଇପାରେ ଯେ ପଞ୍ଚସଖା ଯେପରି ସମସାମୟିକ ନୁହନ୍ତି, ତେରଭକ୍ତ ମଧ୍ୟ ସେହିପରି। ଶିଶୁ ଅନନ୍ତ ଦାସଙ୍କ ରଚିତ 'ଗରୁଡ଼ ସଂବାଦ' ଅନୁଯାୟୀ ଜଣେ ବଳରାମ ଦାସଙ୍କ ନିବାସସ୍ଥାନ ହେଉଛି ସୁଆଙ୍ଗ ମୁଣୋଇ ବିଶି (ଓଡ଼ିଆ ଲେଖକ ପରିଚୟ ପୃ.୮୮)। ସପ୍ତରାଗିଣୀ ବନ୍ଧ ବା ସପ୍ତରାଗିଣୀ ଛନ୍ଦ ବନ୍ଧ ନାମକ ଏକ ପୁସ୍ତକରେ ପ୍ରଣେତା ଜଣେ ବଳରାମ ଦାସ। ଏହାଙ୍କ ପିତାଙ୍କ ନାମ ଜଗନ୍ନାଥ ଦାସ ଓ ନିବାସସ୍ଥାନ ସିଂହଭୂମ ଜିଲ୍ଲା। ଏହାଙ୍କ ସମୟ ବୋଧହୁଏ ଊନବିଂଶ ଶତାବ୍ଦୀ।

ଲଣ୍ଡନ ସ୍ଥିତ ଇଣ୍ଡିଆ ଅଫିସର ଗ୍ରନ୍ଥାଗାରରେ ଥିବା ତାଳପତ୍ର ପୋଥିଗୁଡ଼ିକ ମଧ୍ୟରେ ବଳରାମ ଦାସଙ୍କ ନାମରେ ଭଣିତ 'ବିଲଙ୍କା ରାମାୟଣ' ନାମକ ଏକ ପୋଥି ରହିଛି। ଏହିଟି ପ୍ରକୃତରେ ବାରାନିଧି ଦାସଙ୍କ ବିରଚିତ 'ଶ୍ରୀ ରାମାୟଣ ବିଲଙ୍କା କାଣ୍ଡ'। ଲେଖନକାର ବାରାନିଧି ବଦଳେ ବଳରାମ ଲେଖିଥିବାରୁ ଗ୍ରନ୍ଥାଗାରର ପ୍ରକାଶିତ ଗ୍ରନ୍ଥସୂଚୀରେ ବଳରାମ ଦାସ ବିଲଙ୍କା ରାମାୟଣର ପ୍ରଣେତା ବୋଲି ଭୁଲ୍‌ରେ ଲେଖାଅଛି।

ବ୍ରହ୍ମଜ୍ଞାନ, ପିଣ୍ଡବ୍ରହ୍ମାଣ୍ଡବାଦୀ, ଓଡ଼ିଶୀ ବୈଷ୍ଣବ ଆଦି ନାମରେ ପରିଚିତ ସଂପ୍ରଦାୟର କବିମାନେ ରାଶି ରାଶି ଜାଲିଆତି ରଚନା ସୃଷ୍ଟି କରି ଛାଡ଼ିଯାଇଛନ୍ତି। ଏହି ମାତବଳମ୍ୟୀମାନେ ଶତଶତ ବର୍ଷ ପୂର୍ବେ ଜୀବିତ ଥିବା ସାଧୁସନ୍ଥଙ୍କ ନାମାଙ୍କିତ କରି ନାନା ପୁସ୍ତକ ଲେଖିଛନ୍ତି। ବିଂଶ ଶତାବ୍ଦୀର ଶେଷ ଭାଗରେ ମଧ୍ୟ ଏମାନେ ଜାଲ ରଚନା ସୃଷ୍ଟି କରି ବଜାରକୁ ଛାଡୁଛନ୍ତି। ଏହିପରି ଜାଲିଆତି କାରବାରର ମୂଳପୀଠ କଟକ, କେନ୍ଦ୍ରପଡ଼ା ଓ ଜଗତସିଂହପୁର ଜିଲା। ଅତି ପରିତାପର କଥା ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓ ତାହାଙ୍କର ଶିଷ୍ୟ ପ୍ରଶିଷ୍ୟବର୍ଗ, ବହୁ କ୍ଷେତ୍ରରେ ଉତ୍କଳ ବିଶ୍ୱବିଦ୍ୟାଳୟର ମୋହର ମାରି, ଜାଲ ସୃଷ୍ଟିକୁ ଅସଲି ରୂପେ ଚଳାଇ ଦେଇଛନ୍ତି ଓ ଦେଉଛନ୍ତି। ଏହା ଜାଲିଆତିକୁ ପ୍ରୋତ୍ସାହିତ କରୁଛି। ପ୍ରାଚୀନ ଓଡ଼ିଆ ସାହିତ୍ୟର ନିଷ୍ଠାବାନ୍ ଅଧ୍ୟେତାମାନେ ଏହି ଅବସ୍ଥା ପ୍ରତି ସଚେତନ ରହି, ଗୁରୁବଚନ ଦ୍ୱାରା ମୁହ୍ୟମାନ ନହୋଇ, ସ୍ଥିର ଚିତ୍ତରେ ବିଚାର ବିମର୍ଶ କଲେ ହିଁ ଓଡ଼ିଆ ସାହିତ୍ୟର ପ୍ରକୃତ ଇତିହାସ ପ୍ରଣୟନ ପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇପାରିବ।

*ପଞ୍ଚମ ଅଧ୍ୟାୟ*

# ପଞ୍ଚସଖା : ପ୍ରବଞ୍ଚନାର ବ୍ୟୂହଭେଦ

## (ଏକ)

ଓଡ଼ିଶାର ଧର୍ମବିଶ୍ୱାସର ଓ ଓଡ଼ିଆ ସାହିତ୍ୟର ଇତିହାସର ଆଲୋଚକମାନେ ଅଚ୍ୟୁତାନନ୍ଦ ଦାସଙ୍କ ଦ୍ୱାରା ବର୍ଣ୍ଣିତ ପଞ୍ଚସଖା ବିଷୟକୁ ଏକ ନିର୍ବିବାଦ ସତ୍ୟ ରୂପେ ଗ୍ରହଣ କରି ଆସୁଥିଲେ। ଅଚ୍ୟୁତାନନ୍ଦଙ୍କ ବିଭିନ୍ନ ରଚନା ପାଠ ପରିବା ପରେ ପ୍ରାୟ ୪୦ ବର୍ଷ ପୂର୍ବେ ମୁଁ ଏହି 'ପଞ୍ଚସଖା' ଇତିହଟି ଅଳୀକ ଓ ଇତିହାସର ଖୋଳ ଦ୍ୱାରା ପ୍ରଚ୍ଛନ୍ନ ପ୍ରବଞ୍ଚନା ବୋଲି ବିମର୍ଶ ପ୍ରକାଶ କଲି। ମୋର ବିମର୍ଶ 'ପଞ୍ଚସଖା-ପରଂପରା-ପରୀକ୍ଷା' ନାମରେ ଝଙ୍କାର ସାହିତ୍ୟପତ୍ରର ୧୯୬୦ ମାର୍ଚ୍ଚମାସ ସଂଖ୍ୟାରେ ପ୍ରକାଶିତ ହେଲା। ମୋର ସିଦ୍ଧାନ୍ତର ତାତ୍ତ୍ୱିକ ଗୁରୁତ୍ୱ ସତ୍ତ୍ୱେ ମୋ ଲେଖାଟି ଓଡ଼ିଶାର ଜମାଟବନ୍ଧା ସାଂସ୍କୃତିକ ଚେତନାକୁ ଚହଲାଇ ପାରିଲା ନାହିଁ। ଓଡ଼ିଶାରେ ଅଭିନବ ମତ ଭାଗ୍ୟରେ ଯାହା ଜୁଟିବାର କଥା ସେହି ଉପେକ୍ଷା ହିଁ ମୋ ଲେଖା ଭାଗ୍ୟରେ ଜୁଟିଲା। କେହି ମୋ ଲେଖାରେ ଉପସ୍ଥାପିତ ଯୁକ୍ତିର ଖଣ୍ଡନ ତ କଲେ ନାହିଁ କେହି ତାର ସମର୍ଥନ ବି କଲେ ନାହିଁ। ଆଲୋଚକମାନେ ମୋ ଲେଖା ପ୍ରତି ଆଡ଼ ଆଖିରେ ସୁଦ୍ଧା ନ ଚାହିଁ ପୂର୍ବରୁ ପଡ଼ିଥିବା 'ପଞ୍ଚସଖା' ଗୁଳାରେ ଗଡ଼ିଚାଲିଲେ। ତେଣୁ ତାହାର ପ୍ରାୟ ୭ ବର୍ଷ ପରେ କିଛି ଅଧିକ ଅନୁସନ୍ଧାନ ସନ୍ନିବେଶିତ କରି 'ପଞ୍ଚସଖା ଏକ ପ୍ରବଞ୍ଚନା' ଶୀର୍ଷକ ଅନ୍ୟ ଏକ ପ୍ରବନ୍ଧ ପ୍ରସ୍ତୁତ କଲି, ଯାହା 'ଦିଗନ୍ତ' ସାହିତ୍ୟ ପତ୍ରର ୧୯୬୭ ସେପ୍ଟେମ୍ବର ସଂଖ୍ୟାରେ ପ୍ରକାଶ ପାଇଲା।

ଦିଗନ୍ତ ସଂପାଦକ ସଚ୍ଚିଦାନନ୍ଦ ରାଉତରାୟ ମୋର ପ୍ରତିପାଦନକୁ ସର୍ବଥା ସମର୍ଥନ ଜଣାଇ ଦିଗନ୍ତର ସଂପାଦକୀୟ ସ୍ତମ୍ଭରେ ବିତର୍କ ପାଇଁ ଆହ୍ୱାନ ଦେଲେ। ପରିଣାମରେ ଅଧ୍ୟାପକ କୃଷ୍ଣଚରଣ ସାହୁ ''ପଞ୍ଚସଖା ପ୍ରବଞ୍ଚନା ନୁହେଁ'' ଶୀର୍ଷକ ଏକ ପ୍ରବନ୍ଧ ପ୍ରସ୍ତୁତ କଲେ, ଯାହା 'ଦିଗନ୍ତ'ର ୧୯୬୮ ଫେବ୍ରୁଆରି ସଂଖ୍ୟାରେ ପ୍ରକାଶ ପାଇଲା। ଅଧ୍ୟାପକ ସାହୁଙ୍କର ପ୍ରବନ୍ଧର ଶୀର୍ଷକଟି ଭ୍ରମାତ୍ମକ ଧାରଣା ସୃଷ୍ଟି କରିପାରେ ଯେ ସେ ମୋର ଯୁକ୍ତିକୁ ଖଣ୍ଡନ କରିଛନ୍ତି। ସେ ସ୍ୱୀକାର କରିଛନ୍ତି ଯେ 'ପଞ୍ଚସଖା' ଧାରଣାଟି ଅଷ୍ଟାଦଶ ଶତାବ୍ଦୀର ଅଚ୍ୟୁତାନନ୍ଦ ଦାସଙ୍କ ଲେଖାରେ ହିଁ ମିଳେ, ପୂର୍ବରୁ ତାହାର ଅସ୍ତିତ୍ୱ ନ ଥିଲା। କିନ୍ତୁ, ସେ ଚୈତନ୍ୟଙ୍କ ସମୟରେ

ଜଣେ 'ଅଚ୍ଛୁତ' ଦାସ ଥିବା ଦର୍ଶାଇ, "ଷୋଡ଼ଶ ଶତାବ୍ଦୀରେ ଯେ ଯଶୋବନ୍ତ ନ ଥିବେ, ଏ କଥା ମଧ୍ୟ କହି ହେଉନାହିଁ" ଓ "ସବିଶେଷ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ଷୋଡ଼ଶ ଶତାବ୍ଦୀରେ ଅନନ୍ତ ଦାସଙ୍କ ଅସ୍ତିତ୍ୱ କେବଳ ଅନୁମାନ" ବୋଲି ଜଣାଇ ଜଗନ୍ନାଥ ଦାସ ଓ ବଳରାମ ଦାସ ନାମଧେୟ ଷୋଡ଼ଶ ଶତାବ୍ଦୀର କବି ଦ୍ୱୟଙ୍କୁ ମିଶାଇ 'ପଞ୍ଚସଖା' ଷୋଡ଼ଶ ଶତାବ୍ଦୀରେ ଥିବା କଥା କହିଛନ୍ତି। ଏହି ଅଚ୍ଛୁତ ଦାସ କେଉଁଠି କହିନାହାନ୍ତି ଯେ ସେ ଚୈତନ୍ୟଙ୍କ ସଖା ବା ପଞ୍ଚସଖାରୁ ଜଣେ। ଅଧ୍ୟାପକ ସାହୁ "ଷୋଡ଼ଶ ଶତାବ୍ଦୀରେ ପାଞ୍ଚଜଣ ମହାପୁରୁଷ ଜନ୍ମଲାଭ କରି ନିଜର ସାଧନା ଓ ସାହିତ୍ୟ ବଳରେ ପ୍ରସିଦ୍ଧ ହୋଇଥିଲେ ବି ସେମାନେ ଯେ ଚୈତନ୍ୟଙ୍କର ପଞ୍ଚସଖା ଏ କଥା କେବଳ ପରବର୍ତ୍ତୀ ସାହିତ୍ୟରେ ମିଳେ" ବୋଲି ଲେଖିଲା ବେଳେ ସେ ପଞ୍ଚସଖାଭୁକ୍ତ କରୁଥିବା ଯଶୋବନ୍ତ ଓ ଅନନ୍ତଙ୍କ ଷୋଡ଼ଶ ଶତାବ୍ଦୀରେ ପ୍ରସିଦ୍ଧି ତ ଦୂରର କଥା ସ୍ଥିତି ମଧ୍ୟ ପ୍ରମାଣିତ କରି ପାରି ନାହାନ୍ତି। ପଞ୍ଚସଖା ତତ୍ତ୍ୱକୁ ପଞ୍ଚତ୍ୱପ୍ରାପ୍ତିରୁ ବଞ୍ଚାଇବା ପାଇଁ ଅଭିନବ ପ୍ରବଞ୍ଚନାର ଆଶ୍ରୟ ଲୋଡ଼ି ଅଷ୍ଟାଦଶ ଶତାବ୍ଦୀର ଅଚ୍ୟୁତାନନ୍ଦ ନିଜକୁ ଷୋଡ଼ଶ ଶତାବ୍ଦୀର ଅଚ୍ୟୁତାନନ୍ଦଙ୍କ ଅବତାର ବୋଲି ପ୍ରଚାର କରିଥିବା କଥା ଅଧ୍ୟାପକ ସାହୁ ଲେଖିଛନ୍ତି। ଶୂନ୍ୟସଂହିତାକାର ଅଚ୍ୟୁତାନନ୍ଦ ବା ଆଉ କେହି ଚୈତନ୍ୟସଖା ଅଚ୍ୟୁତାନନ୍ଦଙ୍କ ଅବତାର ଥିବା କଥା ଅଧ୍ୟାପକ ସାହୁଙ୍କ ମଗଜରୁ ବାହାରିଛି, ଏହାର ସମର୍ଥନରେ ସେ କୌଣସି ପ୍ରମାଣ ଦେଇ ନାହାନ୍ତି କି ଦେଇପାରିବେ ନାହିଁ।

ବଳରାମ ଦାସ, ଅତିବଡ଼ ଓ ଭାଗବତକାର ଜଗନ୍ନାଥ ଦାସ ଦ୍ୱୟ ୧୬ଶ ଶତାବ୍ଦୀର ପ୍ରସିଦ୍ଧ କବି। ଅଚ୍ୟୁତାନନ୍ଦ ଯେଉଁ ବଳରାମଙ୍କୁ ପଞ୍ଚସଖାଭୁକ୍ତ କରିଛନ୍ତି ସେ ତନ୍ନାମକ ପ୍ରସିଦ୍ଧ କି ଅନ୍ୟ କିଏ ତାହା ଅଚ୍ୟୁତାନନ୍ଦଙ୍କ ଲେଖାରୁ ଜାଣି ହେଉନାହିଁ ଓ ସେ ପଞ୍ଚସଖା ଭୁକ୍ତ କରିଥିବା ଜଗନ୍ନାଥ ପ୍ରସିଦ୍ଧ ଜଗନ୍ନାଥ ଦାସ ଦ୍ୱୟଙ୍କ ମଧ୍ୟରୁ କେହି ନ ହୋଇ କୌଣସି ଅଖ୍ୟାତ ଶୂଦ୍ର ହେବା ଜଣାଯାଉଛି। ଏ ବିଷୟ ପରେ ଆଲୋଚିତ ହେବ।

ଅଧ୍ୟାପକ ସାହୁଙ୍କ ଲେଖା ପ୍ରକାଶ ପାଇବାର ସାତବର୍ଷ ପରେ ଡଃ ନଟବର ସାମନ୍ତରାୟ ୧୯୭୫ରେ ପ୍ରକାଶିତ 'ସଖାହୀନ ପଞ୍ଚସଖା' ନାମକ ପୁସ୍ତକରେ ପଞ୍ଚସଖା ଧାରଣାର ଉଦ୍ଭବ ଓ ତାତ୍ପର୍ଯ୍ୟ ବିଷୟରେ ବିଶଦ ବିଚାରାଲୋଚନା କରି ମୋତେ ଅନୁଗୃହୀତ କଲେ। ସେ ଏହି ପୁସ୍ତକରେ ଦର୍ଶାଇବାକୁ ଯାଇଛନ୍ତି ଯେ 'ପଞ୍ଚସଖା'ର ଦ୍ୱିବିଧ ଅର୍ଥ ରହିଛି। ତାଙ୍କ ଭାଷାରେ :- "ଏ ଶବ୍ଦର ଦୁଇଟି ଅର୍ଥ ଆମେ ସ୍ପଷ୍ଟତଃ ଅନୁଭବ କରିଥାଉଁ। ଯଥା-(କ) ଏ ପାଞ୍ଚଜଣ ଜଣେ ଜଣେ ଐତିହାସିକ ବ୍ୟକ୍ତି; ସେମାନେ ପରସ୍ପର ସଖା ଥିଲେ ଓ ଶ୍ରୀ ଚୈତନ୍ୟଙ୍କ ସଂକୀର୍ତ୍ତନ ମଣ୍ଡଳୀରେ ଯୋଗ ଦେଉଥିଲେ। କିନ୍ତୁ ଏମାନଙ୍କ ଏଇ ସମ୍ମିଳିତ ଐତିହାସିକ ବ୍ୟକ୍ତିତ୍ୱ ସଂପୂର୍ଣ୍ଣ ମିଥ୍ୟା।

କାରଣ ନିଜ ନିଜ ରଚନା ଦ୍ୱାରା ଅମର ହୋଇଥିଲେହେଁ ଏମାନେ ଏକ ସମୟରେ ଆବିର୍ଭାବ ଲାଭ କରି ନ ଥିଲେ। (ଖ) ଏ ପାଞ୍ଚ ମହାପୁରୁଷ ଭିନ୍ନ ସମୟରେ ଜନ୍ମ ଲାଭ କରିଥିଲେ ହେଁ ସ୍ୱୟଂବ୍ରହ୍ମ ଶ୍ରୀ ଜଗନ୍ନାଥଙ୍କ ଆଦେଶରେ ନିରାକାର ମନ୍ତ୍ର ପ୍ରଚାର କରିଥିବା ଅଭିମତ ଏକାନ୍ତ ସତ୍ୟ। କାରଣ, ଆଧ୍ୟାତ୍ମିକ ଚିନ୍ତା ଓ ଧର୍ମ-ଦର୍ଶନ ଦୃଷ୍ଟିକୋଣରୁ ଏମାନେ ପରସ୍ପର ସଖା। ଏମାନେ ବିଷ୍ଣୁ ଜଗନ୍ନାଥଙ୍କ ଅଂଶରେ ଜାତ ବୋଲି ପରଂପରା ଓ ଲୋକବିଶ୍ୱାସରେ ଗୃହୀତ ହୋଇ ଆସୁଥିବାରୁ ବିକ୍ରମାଦିତ୍ୟ ସଭାର 'ନବରତ୍ନ' ପରି ଏମାନଙ୍କ ସଖାତ୍ୱ ଏକ ସର୍ବବାଦି ସମ୍ମତ ସତ୍ୟ''. (ସଖାହୀନ ପଞ୍ଚସଖା, ପୃ ୮୫.୮୬)। ଉପରେ (କ) ଚିହ୍ନିତ ପ୍ରଥମ ଅର୍ଥ ସଂପର୍କରେ ଡଃ ସାମନ୍ତରାୟ ମୋର ସିଦ୍ଧାନ୍ତକୁ ସମର୍ଥନ ଦେଇ କହିଛନ୍ତି:- ''ଶୂନ୍ୟ ସଂହିତାରେ ଏମାନଙ୍କୁ ଶ୍ରୀ ଚୈତନ୍ୟଙ୍କର 'ପଞ୍ଚସଖା' ରୂପେ ଯେପରି ଚିତ୍ରଣ କରାଯାଇଛି, ଐତିହାସିକ ତଥ୍ୟ ଓ ବାସ୍ତବ ସତ୍ୟର ମାନଦଣ୍ଡରେ ସଚ୍ଚିଦାନନ୍ଦ ମିଶ୍ର ଏ ପଞ୍ଚସଖାଙ୍କୁ ଏକ ପ୍ରବଞ୍ଚନା ବୋଲି ପ୍ରମାଣ କରିଛନ୍ତି। ତାଙ୍କର ଅକାଟ୍ୟ ଓ ସୁଦୃଢ଼ ଯୁକ୍ତିକୁ କୌଣସି ଦିଗରୁ ଖଣ୍ଡନ ନ କରି ଅଧ୍ୟାପକ କୃଷ୍ଣଚରଣ ସାହୁ ଯେଉଁ ପ୍ରବନ୍ଧ ଲେଖିଲେ ତା'ର ନାମ ସେ ଦେଇଛନ୍ତି 'ପଞ୍ଚସଖା ପ୍ରବଞ୍ଚନା ନୁହେଁ'। ତାଙ୍କର ଏପରି ଏକ ଅବାନ୍ତର ଲେଖାକୁ ଆମେ ଅନ୍ୟ ଏକ ପ୍ରବଞ୍ଚନା ରୂପେ ଗ୍ରହଣ କରି ନେଇଛୁ'' (ପୃ.୮୫)।

ଡଃ ସାମନ୍ତରାୟ 'ପଞ୍ଚସଖା'ର ଯେଉଁ ଦ୍ୱିତୀୟ ଅର୍ଥ ବାହାର କରିଛନ୍ତି ତାହାର ଆତ୍ମଘାତୀ ସ୍ୱଭାବ ପୁସ୍ତକର ''ସଖାହୀନ ପଞ୍ଚସଖା' ନାମରେ ହିଁ ପ୍ରତିଫଳିତ ହେଉଛି। ଏହା 'ଅନୂଢ଼ାର ପତି' ପରି ଏକ ସଂକୁଳ ଅଭିବ୍ୟକ୍ତି ଯାହା ସଂସ୍କୃତର ଶ୍ଳୋକଟିଏ ମନେ ପକାଇ ଦିଏ :-

ଯାବଜ୍ଜୀବ ମହଂ ମୌନୀଂ ବ୍ରହ୍ମଚାରୀ ଚ ମେ ପିତା।
ମାତା ତୁ ମମ ବନ୍ଧ୍ୟୈବ ପୁତ୍ରହୀନଃପିତାମହଃ।।

ଦ୍ୱିତୀୟ ଅର୍ଥଟିର ସତ୍ୟତା ଦାରୁଭୂତ ଜଗନ୍ନାଥଙ୍କ ତଥାକଥିତ ''ଆଦେଶ''ର ସତ୍ୟତା ପରି ଏକ ଭେଲ୍‌କି ହାଇପାରେ। ପୁଣି, ଦ୍ୱିତୀୟ ଅର୍ଥରେ ନିହିତ ସଖାତ୍ୱକୁ ମାନିଲେ ବିଂଶ ଶତାବ୍ଦୀର ଗାନ୍ଧିଜୀ ବୁଦ୍ଧଙ୍କ ସଖା ଥିଲେ ବୋଲି ସତ୍ୟପାଠ କରାଯାଇ ପାରିବ ଓ ଯେତେ ସବୁ ବା ପରଂପରା ଓ ଲୋକବିଶ୍ୱାସରେ ଗୃହୀତ ତାହା ସବୁ 'ସର୍ବବାଦି ସମ୍ମତ' ସତ୍ୟ ହୋଇପଡ଼ିବ। ଡଃ ସାମନ୍ତରାୟଙ୍କ ମତର ଏ ସତ୍ୟଠୁ ବଳି ମିଥ୍ୟା ଆଉ କିଛି ନାହିଁ। ତାଙ୍କର ଅନ୍ୟଥା ଯୁକ୍ତିପୋଷକ ଚିତ୍ତବୃତ୍ତି କିପରି ଏପରି ମତ ଦେଇପାରିଲା, ତାହା ଭାବିଲେ ବିସ୍ମିତ ହେବାକୁ ହୁଏ।

ଦିବାକର ଦାସ ଅତିବଡ଼ ଜଗନ୍ନାଥ ଦାସଙ୍କ ମତ ବୋଲି ''ଜଗନ୍ନାଥାମୃତ''ରେ ଯାହା ଉପସ୍ଥାପିତ କରିଛନ୍ତି ତାହାକୁ ଡଃ ସାମନ୍ତରାୟ 'ପଞ୍ଚସଖା' ତତ୍ତ୍ୱ ମୋହର

ମାରି ବର୍ତ୍ତମାନ ଚଳାଇବାକୁ ବସିଛନ୍ତି। ଅଥଚ, ସେ ସ୍ୱୀକାର କରିଛନ୍ତି ଯେ ଦିବାକର ଦାସ 'ପଞ୍ଚସଖା' ନାମଟି ସୁଦ୍ଧା କଳ୍ପନା କରି ନଥିଲେ। ଦିବାକର ଦାସ ତାଙ୍କ ପ୍ରଚାରିତ ମତକୁ ଗୌଡ଼ିଆ ବୈଷ୍ଣବମାନେ ବିରୋଧ କରିଥିବା (କିନ୍ତୁ ଚୈତନ୍ୟ ସମର୍ଥନ ଜଣାଇଥିବା) ମତ ରୂପେ ବର୍ଣ୍ଣନା କରିଛନ୍ତି। ଏହି ମତକୁ ଷଡ଼୍‌ଗୋସ୍ୱାମୀଙ୍କ ଦ୍ୱାରା ପ୍ରଚାରିତ ବୃନ୍ଦାବନର ବୈଷ୍ଣବଙ୍କ ମତ ଓ ନିତ୍ୟାନନ୍ଦାଦିଙ୍କ ଦ୍ୱାରା ପୋଷିତ ଗୌଡ଼ ଦେଶର ବୈଷ୍ଣବଙ୍କ ମତ ଠାରୁ ପୃଥକ୍ କରି ଚିହ୍ନାଇବା ଲାଗି 'ଓଡ଼ିଶୀ ବୈଷ୍ଣବ ମତ' ଆଖ୍ୟା ଦେଇଥିଲେ ସଙ୍ଗତ ହୋଇଥାନ୍ତା। କିନ୍ତୁ, ପରବର୍ତ୍ତୀ କାଳରେ ଅଚ୍ୟୁତାନନ୍ଦଙ୍କ ଦ୍ୱାରା ଉଦ୍ଭାବିତ 'ପଞ୍ଚସଖା' ସହିତ ତାହାକୁ ଚିହ୍ନିତ କରିବା ଦ୍ୱାରା ଅଚ୍ୟୁତାନନ୍ଦଙ୍କ ମତକୁ ଇତିହାସରେ ପ୍ରାଚୀନତା ଦିଆଯାଇଛି।

ଦିବାକର ଦାସଙ୍କ ଜଗନ୍ନାଥାମୃତରେ ପ୍ରଖ୍ୟାପିତ ହଯବରଲ ମତ ଭିତରେ ଗୋଟିଏ ସଙ୍ଗତ ତତ୍ତ୍ୱର ସନ୍ଧାନ ନେବାକୁ ଡଃ ସାମନ୍ତରାୟ ବେଶ୍ କସରତ କରିଛନ୍ତି। କିନ୍ତୁ ଦିବାକରଙ୍କ ମତ ଦିବାକରଙ୍କର। ଅଚ୍ୟୁତାନନ୍ଦାଦିଙ୍କ ଦ୍ୱାରା ପୋଷିତ ମତ ସହିତ ତାହାର ମେଳ ଅପେକ୍ଷା ଅମେଳ ବେଶି। ପଞ୍ଚସଖାଭୁକ୍ତ ବଳରାମ, ଯଶୋବନ୍ତ ଓ ଅନନ୍ତଙ୍କର ମତର ସ୍ୱରୂପ ଜଣାନାହିଁ, ସେମାନଙ୍କର ପୃଥକ୍ ସଂପ୍ରଦାୟ ମଧ୍ୟ ନାହିଁ। ଏପରି ଅବସ୍ଥାରେ 'ପଞ୍ଚସଖା ମତ' ଏକ ବିଡ଼ମ୍ବନା। ଡଃ ସାମନ୍ତରାୟ ତାଙ୍କ ପୁସ୍ତକଟିର ଆରମ୍ଭରେ ସୂଚାଇ ଦେଇଛନ୍ତି ଯେ "ଓଡ଼ିଶାର ମୌଳିକ ଧର୍ମଦର୍ଶନ ପ୍ରଖ୍ୟାପନ ଆମର ଲକ୍ଷ୍ୟ ନ ଥିବାରୁ ଆମେ ଏହା ଉପରେ ବିଶେଷ ଭାବେ ଗୁରୁତ୍ୱ ଦେଇ ନାହୁଁ" (ପୃ.୧)। ସେ ନିଜେ ଗୁରୁତ୍ୱ ନ ଦେବା ବିଷୟ ନେଇ ଯାହା ସବୁ ଆଲୋଚନା କରିଛନ୍ତି ତାହା ନେଇ ତର୍କଣା ନ କରିବା ଉତ୍ତମ।

ମୋର ଅନୁସନ୍ଧିତ୍ସା ସାହିତ୍ୟର ଇତିହାସ ଓ ଇତିହାସ ଚର୍ଚ୍ଚାପାଇଁ ପ୍ରାସଙ୍ଗିକ କବିମାନଙ୍କ ସମୟ ନିର୍ଦ୍ଧାରଣ ଭିତରେ ଆବଦ୍ଧ। କବିଙ୍କ ସମୟ ଠିକ୍ ନ ହେଲେ ତାଙ୍କର ସୃଷ୍ଟିର ମୂଲ୍ୟାଙ୍କନ ହୋଇ ପାରିବ ନାହିଁ, ଏହା ହିଁ ମୋର ଚିନ୍ତା। ମୋର 'ପଂଞ୍ଚସଖା' ବିଷୟକ ଆଲୋଚନା ସାହିତ୍ୟର ଇତିହାସକୁ ଯୁକ୍ତିନିଷ୍ଠ, ପ୍ରମାଣ ସମର୍ଥିତ ଓ କାଳନିର୍ଦ୍ଦିଷ୍ଟ କରି ସଜାଡ଼ିବା ପାଇଁ ଉଦ୍ଦିଷ୍ଟ। ଧର୍ମବିଶ୍ୱାସ ଯୁକ୍ତି, ପ୍ରମାଣ ଓ କାଳକୁ ମାନେ ନାହିଁ। ତେଣୁ ଧର୍ମବିଶ୍ୱାସ ମଧ୍ୟରେ ଯେତେ ଯାହା ଅସଙ୍ଗତି, ଅଳୀକତା, ଅବୋଧ୍ୟତା ଓ ଅସମ୍ଭାବନୀୟତା ଅଛି ତାକୁ ମୋ ପରି ସାହିତ୍ୟିକ ଜଣେ ସଜାଡ଼ି ପାରିବ ନାହିଁ। ସେ ଧର୍ମପ୍ରଚାରକଙ୍କର ହୋଇପାରେ।

ଜଣେ ନିଦା ଭକ୍ତ କିପରି ଯୁକ୍ତିପ୍ରମାଣକୁ ଅବଜ୍ଞା କରି ଧର୍ମପ୍ରଚାରକଙ୍କ ପ୍ରଚାରରେ ବିମୁଗ୍ଧ ହୋଇ ସାହିତ୍ୟର ଇତିହାସ ଲେଖିବାକୁ ଯାଏ ତାହାର ନିଦର୍ଶନ ରୂପେ "ବ୍ରହ୍ମଶାଙ୍କୁଳି ଓ ଅଣାକାର ସଂହିତା"ର ମୁଖବନ୍ଧରେ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନିମ୍ନୋଦ୍ଧୃତ ମତକୁ ଉପସ୍ଥାପନ କରାଯାଇପାରେ :-"ଶୂନ୍ୟସଂହିତା ଓ ଗୁରୁଭକ୍ତି ଗୀତା ମହାପୁରୁଷ

ଅଚ୍ୟୁତାନନ୍ଦଙ୍କ ରଚିତ, ଏହା ଉଭୟ ଗ୍ରନ୍ଥର ଭଣିତାରୁ ସ୍ପଷ୍ଟ ଜଣାଯାଏ। କେହି କେହି କହି ପାରନ୍ତି, ଗୁରୁଭକ୍ତି ଗୀତା ଅଚ୍ୟୁତାନନ୍ଦଙ୍କ କୌଣସି ଶିଷ୍ୟପ୍ରଶିଷ୍ୟଙ୍କ ଦ୍ୱାରା ରଚିତ ହୋଇ ମହାପୁରୁଷଙ୍କ ନାମରେ ଭଣିତା ହୋଇଅଛି। ଏହା ସ୍ୱୀକାର୍ଯ୍ୟ ଯେ ଭକ୍ତ ବୈଷ୍ଣବମାନେ ପ୍ରଧାନ ପ୍ରଧାନ ମହାପୁରୁଷଙ୍କ ନାମରେ ଗ୍ରନ୍ଥ ରଚନା କରିଅଛନ୍ତି। ଏ କଳ୍ପନା ଏ କ୍ଷେତ୍ରରେ ସମ୍ଭବପର ନୁହେଁ। କାରଣ ଶୂନ୍ୟ ସଂହିତା ଓ ଗୁରୁଭକ୍ତିଗୀତା ସାଧାରଣ ବୈଷ୍ଣବ ସାଧକଙ୍କ ଦ୍ୱାରା ଲିଖିତ ହେବା ଅନୁମିତ ହେଉନାହିଁ। ଯେଉଁମାନେ ଏହି ଗ୍ରନ୍ଥଦ୍ୱୟ ବିଚାର ଓ ଶ୍ରମସ୍ୱୀକାର ପୂର୍ବକ ପାଠ କରିଅଛନ୍ତି ସେମାନେ ନିଶ୍ଚୟ କହିବେ ଯେ ଏହି ଦୁଇ ଗ୍ରନ୍ଥ ସେହି କ୍ଷଣଜନ୍ମାଯୋଗିପ୍ରବର ଭକ୍ତଶିରୋମଣି ସିଦ୍ଧ ପୁରୁଷ କୃଷ୍ଣଲୀଳାରସପାୟୀ ମହାପୁରୁଷ ଅଚ୍ୟୁତାନନ୍ଦ ଗୋସ୍ୱାମୀ ପ୍ରଣିତ''। ଶ୍ରୀ ମହାନ୍ତି ଓ ତାଙ୍କର ଗୁଣମୁଗ୍ଧ ଶିଷ୍ୟପ୍ରଶିଷ୍ୟମାନଙ୍କୁ ସୁଧାରିବା ସୁସାଧ୍ୟ ନୁହେଁ। ତଥାପି ପଞ୍ଚସଖା ବିଷୟକ ମୋର ପୂର୍ବ ପ୍ରକାଶିତ ବିଚାରକୁ କେତେକ ଅଧିକ ଯୁକ୍ତିପ୍ରମାଣ ସମନ୍ୱିତ କରି ନିମ୍ନରେ ଉପସ୍ଥାପନ କରୁଛି। ଯଦି ତଦ୍ୱାରା ମୁଁ ଉକ୍ତ 'ଗ୍ରନ୍ଥଦ୍ୱୟ ବିଚାର ଓ ଶ୍ରମସ୍ୱୀକାର ପୂର୍ବକ ପାଠ କରି' ନାହିଁ ବୋଲି ଅଭିଯୁକ୍ତ ହେବି ତେବେ ସେହି ଅଭିଯୋଗ 'ପଞ୍ଚସଖା ପ୍ରବଞ୍ଚନା ନୁହେଁ' ବୋଲି କହୁଥିବା ଅଧ୍ୟାପକ କୃଷ୍ଣଚରଣ ସାହୁଙ୍କ ପ୍ରତି ମଧ୍ୟ ଖାଟିବ। କାରଣ, ସେ ମଧ୍ୟ କହୁଛନ୍ତି ଯେ ଗ୍ରନ୍ଥଦ୍ୱୟ ଅଷ୍ଟାଦଶ ଶତାବ୍ଦୀର ଅଚ୍ୟୁତାନନ୍ଦଙ୍କ ରଚନା।

## (ଦୁଇ)

ଚୈତନ୍ୟଦେବଙ୍କ ଉତ୍କଳରେ ରହଣି କାଳରେ (ଅର୍ଥାତ୍ ଖ୍ରୀ.୧୫୧୦ ରୁ ୧୫୩୩ ମଧ୍ୟରେ) ତାହାଙ୍କର ଘନିଷ୍ଠ ସଖା ଭାବରେ ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଅନନ୍ତ ନାମଧେୟ ପାଞ୍ଚଜଣ ଧର୍ମପ୍ରଚାରକ ବୈଷ୍ଣବ ଭକ୍ତ ଥିବା ପରଂପରାଟି ପ୍ରାଚୀନ ଓଡ଼ିଆ ସାହିତ୍ୟର ଅଧେତାଙ୍କ ନିକଟରେ ସୁପରିଚିତ। ଏହି ପାଞ୍ଚଜଣଙ୍କୁ ସାଧାରଣତଃ 'ପଞ୍ଚସଖା' ଓ କ୍ୱଚିତ୍ ପଞ୍ଚସାଖା ବା ପଞ୍ଚଶାଖା କୁହାଯାଏ। ସାଖା ସଖାର ରୂପାନ୍ତର ବା ଶାଖାର ଅପପାଠ ହୋଇପାରେ। ଚୈତନ୍ୟ ଦେବଙ୍କର ତଥା ପରସ୍ପରର ସଖା ହୋଇଥିବା ବିଚାରରୁ ଏମାନଙ୍କୁ ପଞ୍ଚଶଖା କୁହାଯାଏ ଓ ଏମାନେ ପ୍ରତ୍ୟେକେ ଏକ ଏକ ଧର୍ମଶାଖାର ପ୍ରବର୍ତ୍ତକ ବା ପ୍ରଚାରକ ବୋଲି ଏମାନଙ୍କୁ ପଞ୍ଚସଖା କୁହାଯାଏ। ତୁଳନୀୟଭାବରେ ଉଲ୍ଲେଖନୀୟ ଯେ ଭକ୍ତିବୃକ୍ଷର ମୂଳରୂପ ଚୈତନ୍ୟଙ୍କ ଭକ୍ତମାନେ ମଧ୍ୟ ବିଭିନ୍ନ ଶାଖାରେ ବିଭକ୍ତ ହେବାର ବର୍ଣ୍ଣନା ଚୈତନ୍ୟ ଚରିତାମୃତ (୧/୯)ରେ ରହିଛି।

ଚୈତନ୍ୟଙ୍କ ଉତ୍କଳ ଅବସ୍ଥାନ କାଳରେ ତାଙ୍କ ସହିତ ପଞ୍ଚସଖାଙ୍କ ଘନିଷ୍ଠତା ଆଦି ବିଷୟ ଓ ସେହି ପ୍ରସଙ୍ଗରେ ପଞ୍ଚସଖାର ପାଞ୍ଚଜଣଯାକର ବୃତ୍ତାନ୍ତ କେତେକ

ଓଡ଼ିଆ ଲେଖାରେ ମିଳୁଛି। ପଞ୍ଚସଖାଭୁକ୍ତ ଅଚ୍ୟୁତାନନ୍ଦ ଶୂନ୍ୟ ସଂହିତା, ଗୁରୁଭକ୍ତି ଗୀତା, ଦଶପଟଳ ମାଳିକା, ଉଦୟ କାହାଣୀ ଆଦି ଗ୍ରନ୍ଥରେ ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତରେ; ମାଧବ ପଟ୍ଟନାୟକଙ୍କ ନାମରେ ରଚିତ ବୈଷ୍ଣବ ଲୀଳାମୃତରେ ଓ ନନ୍ଦ ଦାସଙ୍କ ଅଣାକାର ସଂହିତା ଆଦି ଗ୍ରନ୍ଥରେ ପଞ୍ଚସଖାଙ୍କ ବିଷୟ ସ୍ଥାନ ପାଇଛି। ଗୋଟିଏ ମାଦଳା ପାଞ୍ଜିରେ 'ପଞ୍ଚସଖା' ଶବ୍ଦଟି ନଥିଲେ ହେଁ ପାଞ୍ଚଜଣଙ୍କ ନାମ ଥାଇ ସେମାନଙ୍କୁ ଚୈତନ୍ୟଙ୍କ ସମସାମୟିକ ଭାବରେ ବର୍ଣ୍ଣନା କରାଯାଇଛି।

ପ୍ରାଚୀନ ଓଡ଼ିଆ ସାହିତ୍ୟର ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଓ ଶିଶୁଅନନ୍ତ ଦାସ ନାମରେ ଯେଉଁ ପାଞ୍ଚଜଣ କବି ଥିଲେ ତାଙ୍କୁ ନେଇ ହିଁ ପଞ୍ଚସଖା ଗଢ଼ା ହେବାର ବିଶ୍ୱାସ କରାଯାଏ। ପଞ୍ଚସଖା ବିଷୟ ଲେଖାଥିବା ଗ୍ରନ୍ଥରେ ପଞ୍ଚସଖା ଭୁକ୍ତ ବ୍ୟକ୍ତିମାନଙ୍କୁ କବି ଭାବରେ ବର୍ଣ୍ଣନା କରାଯାଇ ନଥିଲେ ହେଁ କବି ଅଚ୍ୟୁତାନନ୍ଦ ନିଜକୁ ପଞ୍ଚସଖାର ଅନ୍ୟତମ ବୋଲି ଚିହ୍ନାଇ ଥିବା ହେତୁ ଓ ପଞ୍ଚସଖାର ବଳରାମ ଦାସଙ୍କ ପିତାଙ୍କ ନାମ ସହିତ ଜଗମୋହନ ରାମାୟଣ ଓ ବଟ ଅବକାଶରେ ପ୍ରଦତ୍ତ କବି ବଳରାମ ଦାସଙ୍କ ପିତାଙ୍କ ନାମ ମିଳି ଯାଉଥିବା ହେତୁ ପଞ୍ଚସଖାର ଅନ୍ୟ ତିନିଜଣଯାକ କବି ଥିଲେ ବୋଲି ବିଶ୍ୱାସ କରାଯାଏ ଓ ଓଡ଼ିଆ ସାହିତ୍ୟର ଷୋଡ଼ଶ ଶତାବ୍ଦୀର ପୂର୍ବାର୍ଦ୍ଧ କାଳକୁ 'ପଞ୍ଚସଖା ଯୁଗ' ବୋଲି ଅଭିହିତ କରାଯାଏ ଓ ସାରଳାଦାସଙ୍କ ପରବର୍ତ୍ତୀ ସମୟର ବୈଷ୍ଣବ ଧର୍ମ ସଂପୃକ୍ତ - ବିଶେଷତଃ ପିଣ୍ଡବ୍ରହ୍ମାଣ୍ଡବାଦ, ନିରାକାର ଭଜନ, ଯୋଗମାର୍ଗ, ଯନ୍ତ୍ରମନ୍ତ୍ର, ବ୍ରହ୍ମଜ୍ଞାନ ଆଦି ସହିତ ସଂପୃକ୍ତ ସାହିତ୍ୟକୁ 'ପଞ୍ଚସଖା ସାହିତ୍ୟ' ଆଖ୍ୟା ଦିଆଯାଇଥାଏ।

### ସନ୍ଦେହ ଲାଗି ଅବକାଶ

ପଞ୍ଚସଖାଙ୍କ ଅସ୍ତିତ୍ୱ କଥା ବିଭିନ୍ନ ଗ୍ରନ୍ଥରେ ଲେଖା ହୋଇଥିବା ସତ୍ତ୍ୱେ ତାହା ନେଇ ସନ୍ଦେହ ପୋଷଣ କରିବା ଲାଗି ବହୁ କାରଣ ରହିଛି।

ପ୍ରଥମ କଥା, ପଞ୍ଚସଖା ଚୈତନ୍ୟଙ୍କର ଏକାନ୍ତ ଆପଣାର ବୋଲି ଦାବି କରାଯାଉଥିଲେହେଁ ଚୈତନ୍ୟଙ୍କର ଜୀବନବୃତ୍ତାନ୍ତର ବିସ୍ତୃତ ବିବରଣ ଲିପିବଦ୍ଧ କରୁଥିବା ବଙ୍ଗଳା ଓ ସଂସ୍କୃତ ଗ୍ରନ୍ଥଗୁଡ଼ିକରେ ପଞ୍ଚସଖା ପ୍ରସଙ୍ଗ ତ ଦୂରର କଥା ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କୁ ଛାଡ଼ିଲେ ପଞ୍ଚସଖାଭୁକ୍ତ ଅନ୍ୟ ତିନିଜଣଙ୍କର ନାମୋଲ୍ଲେଖ ପର୍ଯ୍ୟନ୍ତ ଦେଖିବାକୁ ମିଳେ ନାହିଁ। ଗୌଡ଼ ଦେଶାଗତ ବଙ୍ଗାଳୀ ବୈଷ୍ଣବମାନେ ସ୍ଥାନୀୟ ବୈଷ୍ଣବଙ୍କ ପ୍ରତି ବିପକ୍ଷଭାବ ପୋଷଣ କରିଥିବାରୁ ସେମାନେହିଁ ପ୍ରଣୟନ କରିଥିବା ବଙ୍ଗଳା ଓ ସଂସ୍କୃତ ଭାଷାର ଗ୍ରନ୍ଥଗୁଡ଼ିକରେ ଜାଣିକରି ଚୈତନ୍ୟଙ୍କ ସହିତ ଓଡ଼ିଆ ପଞ୍ଚସଖାଙ୍କୁ ସଂପୃକ୍ତ କରାଇ ନଥିବା କଥା କୁହାଯାଉଛି ଓ ଏହି ପ୍ରସଙ୍ଗରେ ଦିବାକର ଦାସ ପ୍ରଣୀତ 'ଜଗନ୍ନାଥାମୃତ'ରେ ବର୍ଣ୍ଣିତ ଚୈତନ୍ୟ ଓଡ଼ିଆ ବୈଷ୍ଣବ ଅତିବଡ଼ ଜଗନ୍ନାଥ ଦାସଙ୍କ

ପ୍ରତି ପ୍ରୀତିଭାବ ଦେଖାଇଥିବାରୁ ଈର୍ଷାପରବଶ ଗୌଡ଼ିଆ ବୈଷ୍ଣବମାନେ ଓଡ଼ିଶାକୁ (ତଥା ଚୈତନ୍ୟଙ୍କୁ) ତ୍ୟାଗ କରି ଭିନ୍ନ ପନ୍ଥାରେ ଯାଇଥିବା ବୃତ୍ତାନ୍ତ ଉପସ୍ଥାପିତ ହେଉଛି।

ଉଲ୍ଲେଖନୀୟ ଯେ ଦିବାକର ଦାସହିଁ ବର୍ଣ୍ଣନା କରିଥିବା ଏତାଦୃଶ ଗୌଡ଼ିଆ-ଓଡ଼ିଆ ବିରୋଧ ଭାବରେ କେତେକ ସତ୍ୟ ନିହିତ ଥିବା ସମ୍ଭାବନାକୁ ଅସ୍ୱୀକାର କରାଯାଇ ନ ପାରିଲେବି, ପଞ୍ଚସଖା ପ୍ରସଙ୍ଗ ସ୍ଥାନ ପାଇଥିବା ଓଡ଼ିଆ ରଚନାଗୁଡ଼ିକରେ ତଥା ଗୌଡ଼ିଆମାନଙ୍କ ଦ୍ୱାରା ପ୍ରଣୀତ ବଙ୍ଗଳା ଓ ସଂସ୍କୃତ ଭାଷାର ରଚନା ଗୁଡ଼ିକରେ ବିରୋଧଭାବର ଲେଶମାତ୍ର ସୂଚନା ସୁଦ୍ଧା ନାହିଁ। ବଙ୍ଗଳା ଭାଷାର ଚୈତନ୍ୟଚରିତ ବିଷୟକ ରଚନାଗୁଡ଼ିକରେ ରାୟ ରାମାନନ୍ଦ, ପ୍ରତାପରୁଦ୍ର ଦେବ ଆଦିଙ୍କ ବିଷୟ ଖୁବ୍ ପ୍ରଶଂସାଗର୍ଭକ ଭାଷାରେ ବର୍ଣ୍ଣିତ ହୋଇଛି। ଚୈତନ୍ୟଙ୍କ ପୁରୀ ଅବସ୍ଥାନ ବେଳର ଭକ୍ତଙ୍କ ମଧ୍ୟରୁ ଯେଉଁ ସାଢ଼େ ତିନିଜଣଙ୍କୁ 'ପାତ୍ର' ହେବାର ଗୌରବ ଖୋଦ୍ ଚୈତନ୍ୟ ଦେଇଥିଲେ ତନ୍ମଧ୍ୟରୁ ଅଢ଼େଇ ଜଣ ଓଡ଼ିଆ (ଏକ ରାୟ ରାମାନନ୍ଦ, ଦୁଇ ଶିଖୀ ମହାନ୍ତି ଓ ଅଧା ମାଧବୀ ଦାସୀ, ଯେ ବିଧବା ବୋଲି ଅଧା ଭାବରେ ଗଣା ହୋଇଥିଲେ ପରିହାସ-ପ୍ରିୟ ଚୈତନ୍ୟଙ୍କ ଦ୍ୱାରା) ଓ ମାତ୍ର ଜଣେ ନବଦ୍ୱୀପରୁ ଆଗତ ଦାମୋଦର ସ୍ୱରୂପ। ବଙ୍ଗଳା ଗ୍ରନ୍ଥଗୁଡ଼ିକରେ ମାଧବୀ ଦାସୀ, ତାଙ୍କ ଭାଇ ଶିଖୀ ମହାନ୍ତି, ଉଡ଼ିଆ ହରିଦାସ, କାହ୍ନୁ ଖୁଣ୍ଟିଆ, ଜଗନ୍ନାଥ ମହାନ୍ତି, କାଶୀମିଶ୍ର, କୃଷ୍ଣ ଦାସ, ଶ୍ରୀନାଥ ମିଶ୍ର, ପ୍ରଦ୍ୟୁମ୍ନ ମିଶ୍ର, ତୁଳସୀ ପରିଛା ଆଦି ଓଡ଼ିଆ ଭକ୍ତମାନଙ୍କ ପ୍ରସଙ୍ଗ ଜମାରୁ ଅବହେଳିତ ହୋଇନାହିଁ। ଚୈତନ୍ୟ ଚରିତାମୃତ ଆଦିଲୀଳାର ଦଶମ ପରିଚ୍ଛେଦରେ ଚୈତନ୍ୟଙ୍କ ସହିତ ପୁରୀରେ ରହିଥିବା ଗୌଡ଼ଦେଶାଗତ ଭକ୍ତମାନଙ୍କର ତାଲିକା ଦେବା ପରେ ପରେ ଯେଉଁମାନେ ପୁରୀରେହିଁ ଚୈତନ୍ୟଙ୍କ ସଂସ୍ପର୍ଶରେ ଆସିଥିଲେ ସେମାନଙ୍କ ନାମ ପୃଥକ୍ ଭାବରେ ଗଣନା କରାଯାଇଛି। ଏହି ତାଲିକାରେ ଓଡ଼ିଶାବାସୀ ଭକ୍ତଙ୍କ ସଂଖ୍ୟା ପ୍ରାୟ ୪୦ ଓ ତହିଁରୁ ଅଧିକାଂଶ ଓଡ଼ିଆ। ଡକ୍ଟର ବିମାନବିହାରୀ ମଜୁମଦାରଙ୍କ ଗଣନା ଅନୁସାରେ ଚୈତନ୍ୟଙ୍କ ଅନୁଗତଙ୍କ ସଂଖ୍ୟା ଥିଲା ୪୯୦ ଓ ସେଥିରୁ ୬୦ ଜଣ ଥିଲେ ଅଣବଙ୍ଗାଳୀ। ଅଣବଙ୍ଗାଳୀଙ୍କ ଭିତରୁ ୪୪ ଜଣ ଓଡ଼ିଶାର ଲୋକ। ଏହିମାନଙ୍କ ବିଷୟରେ ପ୍ରଶସ୍ତିବାଚକ ଉଲ୍ଲେଖ ବଙ୍ଗଳା ଚୈତନ୍ୟ-ଚରିତ ଗ୍ରନ୍ଥଗୁଡ଼ିକରେ ମିଳେ। ବୈଷ୍ଣବ ବନ୍ଦନାରେ ଦେବକୀନନ୍ଦନ ଯେଉଁ ଭାଷାରେ ବଳରାମ ଦାସ ଆଦି ଓଡ଼ିଆମାନଙ୍କୁ ବନ୍ଦନା କରିଛନ୍ତି ସେଥିରେ ତାଙ୍କଠାରେ ଓଡ଼ିଆ-ବିଦ୍ୱେଷ ଆରୋପ କରିବା ନିତାନ୍ତ ଅବିଚାର ହେବ। ତାଙ୍କ ପରି ଲୋକ ଅଚ୍ୟୁତାନନ୍ଦ ଆଦିଙ୍କ ନାମୋଲ୍ଲେଖ ନ କରିବାର କାରଣ ଓଡ଼ିଆଦ୍ୱେଷ ହୋଇନପାରେ।

ଏକା ତ ବଙ୍ଗଳା କି ସଂସ୍କୃତ ଗ୍ରନ୍ଥରେ ନୁହେଁ ଚୈତନ୍ୟ ସଂପୃକ୍ତ ବହୁ ଓଡ଼ିଆ ଗ୍ରନ୍ଥରେ ମଧ୍ୟ ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଅନନ୍ତଙ୍କ ନାମ ପର୍ଯ୍ୟନ୍ତ ମିଳେ ନାହିଁ। ମାଧବ ଦାସଙ୍କର 'ଚୈତନ୍ୟ ବିଳାସ' ପରି ଗ୍ରନ୍ଥମାନଙ୍କରେ ଏହି ତିନି ମୂର୍ତ୍ତିଙ୍କର ନାମ ନଥିବା

ଉଲ୍ଲେଖନୀୟ। ମାଧବ ଦାସ ଆଦି ଓଡ଼ିଆ ଭାଷୀ ହେଲେ ହେଁ ଗୌଡ଼ିଆଙ୍କ ଅନୁଗତ ବୋଲି କହି ସେ ପଞ୍ଚସଖାଙ୍କ ବିରୁଦ୍ଧ ପକ୍ଷର ଥିଲେ ବୋଲି ଏକ ରୋଚକ ପ୍ରସ୍ତାବ ପରିବେଷିତ ହୋଇପାରନ୍ତା ଓ ସେହି ଅନୁସାରେ ତାଙ୍କ ଦ୍ୱାରା ପଞ୍ଚସଖା-ଚର୍ଚ୍ଚା ନ ହେବାର କାରଣଟି ବୁଝିହୁଅନ୍ତା। କିନ୍ତୁ, ସେଥିରେ ଖୋଦ୍ ଦିବାକର ଦାସ, ଯେ କି ଓଡ଼ିଆ-ଗୌଡ଼ିଆ ବିବାଦର ଏକମାତ୍ର ପ୍ରଚାରକ, ପ୍ରତିବନ୍ଧକ ରୂପେ ଦେଖାଦିଅନ୍ତି। ଦିବାକରଙ୍କୁ ଆଉ ଗୌଡ଼ିଆଙ୍କ ପଟିଆ ବୋଲି ଚିହ୍ନାଇ ହେବ ନାହିଁ। ଦିବାକର ତାଙ୍କ ଜଗନ୍ନାଥମୃତରେ ଅତିବଡ଼ ଜଗନ୍ନାଥ ଦାସଙ୍କୁ ଅସଲି ଚୈତନ୍ୟ ମତବାଦୀ ବୋଲି ପ୍ରତିପାଦନ କରିଛନ୍ତି। ଗୌଡ଼ିଆଙ୍କର ଓଡ଼ିଆ ବୈଷ୍ଣବଙ୍କ ପ୍ରତି ଅସୂୟା ଓ ଚୈତନ୍ୟଙ୍କ ସହିତ ଓଡ଼ିଆ ଅତିବଡ଼ ଜଗନ୍ନାଥଙ୍କ ନିବିଡ଼ ସମ୍ପର୍କ ବିଷୟରେ ସେ, ହୁଏତ ମାତ୍ରାଧିକ, ସ୍ୱଦେଶ ବତ୍ସଳତା ପ୍ରକାଶ କରିଛନ୍ତି। ତଥାପି ସେ ମଧ୍ୟ ପଞ୍ଚସଖାଙ୍କ ଅସ୍ତିତ୍ୱ ବା ଅଚ୍ୟୁତ-ଯଶୋବନ୍ତ-ଅନନ୍ତଙ୍କ ନାମ ପର୍ଯ୍ୟନ୍ତ ଜାଣିଥିବା ଜଣାଯାଉନାହିଁ। ଯେ ବହୁ ସଂଖ୍ୟକ ଓଡ଼ିଆ-ଅଣଓଡ଼ିଆ ଭକ୍ତଙ୍କ କଥା ଜଗନ୍ନାଥାମୃତରେ ଲେଖିଛନ୍ତି, 'ପଞ୍ଚସଖା'ର ଭକ୍ତଙ୍କୁ ସେ ଉପେକ୍ଷା କରନ୍ତେ କି? ଅତିବଡ଼ ଜଗନ୍ନାଥ, ସେ ଯାହାର ଜୀବନଚରିତ ଲେଖିଛନ୍ତି, ପରା 'ପଞ୍ଚସଖା'ର ଏକତମ। ଜଗନ୍ନାଥାମୃତରେ ସର୍ବମୋଟ ୪୨ ଜଣଙ୍କୁ ଅତିବଡ଼ଙ୍କ ଜୀବନ ଚରିତ ସହିତ ସଂପୃକ୍ତ କରାଯାଇଛି। ଏଥିରୁ ୧୬ଜଣ ଅତିବଡ଼ଙ୍କ ଶିଷ୍ୟ (ଏହାଙ୍କ ମଧ୍ୟରୁ ଜଗନ୍ନାଥ ମହାସୁଆର, କୃଷ୍ଣଦାସ, କାହ୍ନୁ ଖୁଣ୍ଟିଆ ଓ ହରିଦାସ ଏହି ଚାରିଜଣଙ୍କ ନାମ ବଙ୍ଗଳା ଚୈତନ୍ୟଚରିତାମୃତରେ ଓଡ଼ିଶାର ବୈଷ୍ଣବ ରୂପେ ରହିଛି)। ଅବଶିଷ୍ଟ ୨୬ ଜଣଙ୍କ ମଧ୍ୟରୁ ୧୪ ଜଣଙ୍କ ନାମ ଗୌଡ଼ିଆ ବୈଷ୍ଣବ ଭାବରେ ଚୈତନ୍ୟ ଚରିତାମୃତରେ (ତଥା ଜଗନ୍ନାଥାମୃତରେ) ସ୍ଥାନ ପାଇଛି। ସେମାନେ ହେଲେ :- ଚୈତନ୍ୟଦେବ, ମଉବଳରାମ, ହୃଦୟାନନ୍ଦ, ଗୌରୀଦାସ ପଣ୍ଡିତ, ଜଗଦାନନ୍ଦ ଚକ୍ରବର୍ତ୍ତୀ, ମାଧୋ ଦାସ (ମାଧବ ଦାସ), ରୂପକ (ରୂପ), ସନାତନ, ନିତ୍ୟାନନ୍ଦ, ରଘୁନାଥ ଦାସ, ଗୋପାଳ ଦାସ (ଗୋପାଳ ଭଟ୍ଟ), ଜୀବକ (ଜୀବ), ରଘୁନାଥ ଭଟ୍ଟ ଓ ଅଦ୍ୱୈତ। ଆଉ ଛ ଜଣଙ୍କ ନାମ ଚୈତନ୍ୟ ଚରିତାମୃତରେ (ତଥା ଜଗନ୍ନାଥାମୃତରେ) ପୁରୀର ବୈଷ୍ଣବ ଭାବରେ ଲେଖାଅଛି :- ସାର୍ବଭୌମ ଭଟ୍ଟାଚାର୍ଯ୍ୟ, ତାଙ୍କ ଭାଇ ଗୋପୀନାଥ ଆଚାର୍ଯ୍ୟ, କାଶୀ ମିଶ୍ର, ରାମାନନ୍ଦ (ରାୟ), ପ୍ରତାପରୁଦ୍ର ଦେବ ଓ ବ୍ରହ୍ମାନନ୍ଦ ସନ୍ୟାସୀ, ଏଥିରୁ ଜଣାପଡୁଛି :-(କ) ଜଗନ୍ନାଥ ଦାସଙ୍କ ଶିଷ୍ୟମାନଙ୍କ ନାମ ମଧ୍ୟରୁ ଅଳ୍ପାଂଶ ଚୈତନ୍ୟ ଚରିତାମୃତରେ ଅଛି ଓ (ଖ) ଅନ୍ୟମାନଙ୍କ ନାମ ମଧ୍ୟରୁ ଅଧିକାଂଶଙ୍କ ନାମ ଚୈତନ୍ୟ ଚରିତାମୃତରେ ସ୍ଥାନ ପାଇଛି। ଗୌଡ଼ିଆ-ଓଡ଼ିଆ ବିବାଦ ଯୋଗୁଁ ଉଭୟ ପକ୍ଷ ଅପରପକ୍ଷର ଲୋକଙ୍କ ନାମକୁ ଉଲ୍ଲେଖ କରିନଥିବା ଅଭିଯୋଗଟି ନିରାଧାର। ଯଦି 'ପଞ୍ଚସଖା'ଙ୍କର ଅସ୍ତିତ୍ୱ ଥାଆନ୍ତା ତେବେ ଦିବାକର ଦାସ ଅଚ୍ୟୁତ-ଯଶୋବନ୍ତ-ଅନନ୍ତଙ୍କ ନାମ ଅତିବଡ଼ଙ୍କ ସଖାଭାବରେ ଉଲ୍ଲେଖ କରନ୍ତେ ନାହିଁ?

**ହଣ୍ଟରଙ୍କ ମତ**

ଉଇଲିୟମ୍ ହଣ୍ଟର ତାଙ୍କର 'ଓଡ଼ିଶା' (ଇଂରାଜି) ଗ୍ରନ୍ଥ ରଚନା .ବେଳେ ଓଡ଼ିଶାର ସାହିତ୍ୟର ଏକ ବିବରଣ ଯୋଗାଇବାକୁ ଓଡ଼ିଶାର ତତ୍କାଳୀନ କମିସନର ରେଭେନ୍‌ସାଙ୍କୁ କହିଥିଲେ । ରେଭେନ୍‌ସାଙ୍କ ଅନୁରୋଧ କ୍ରମେ ଜିଲା କଲେକ୍ଟର ଜନ୍‌ବୀମ୍‌ସ ଓଡ଼ିଶାର ୧୦୭ଜଣ ଲେଖକଙ୍କ ବିଷୟରେ ଯେଉଁ ସୂଚନାତ୍ମକ ବିବରଣ ପ୍ରସ୍ତୁତ କରିଥିଲେ ତାହା ଖ୍ରୀ.୧୮୭୧ରେ ପ୍ରକାଶ ପାଇଥିବା 'ଓଡ଼ିଶା' ଗ୍ରନ୍ଥର ଦ୍ୱିତୀୟ ଖଣ୍ଡର ନବମ ପରିଶିଷ୍ଟ ଭାବରେ ପ୍ରକାଶ ପାଇଛି । ଏଥିରେ ଓଡ଼ିଶାର ଲେଖକଙ୍କ ତାଲିକା ମଧ୍ୟରେ ଯଶୋବନ୍ତ ଦାସ ଓ ଶିଶୁଅନନ୍ତଙ୍କ ନାମ ସ୍ଥାନ ପାଇନାହିଁ । ଅବଶିଷ୍ଟ ତିନିଜଣଙ୍କର ସମୟ ଓ କୃତିଗୁଡ଼ିକର ବିବରଣ ଦିଆଯାଇଛି । ତଦନୁସାରେ ଏମାନେ ସମକାଳୀନ ନୁହନ୍ତି । ବୀମ୍‌ସଙ୍କ ମତରେ ଜଗନ୍ନାଥ ଦାସ ସାଢ଼େ ତିନିଶହ ବର୍ଷ ପୂର୍ବର ବ୍ୟକ୍ତି ("Lined 350 years ago")ଅର୍ଥାତ୍ ଖ୍ରୀ. ୧୮୭୦-୩୫୦=୧୫୨୦ ବେଳକୁ ଜଗନ୍ନାଥ ଦାସ ଜୀବିତ ଥିଲେ । ଏ କାଳନିର୍ଦ୍ଧାରଣ ମୋଟାମୋଟି ଅଭ୍ରାନ୍ତ । ବୀମ୍‌ସ ବଳରାମ ଦାସ ତିନି ଶହ ବର୍ଷ ପୂର୍ବେ ଜୀବିତ ଥିବା ସୂଚାଇ ("lined 300 years ago") ତାଙ୍କୁ ଜଗନ୍ନାଥ ଦାସଙ୍କ ଅପେକ୍ଷା ୫୦ ବର୍ଷ କନିଷ୍ଠତର କରାଇଅଛି, ଏ ନିର୍ଦ୍ଧାରଣ ନିର୍ଭୁଲ ନୁହେଁ । ତଥାପି ବୀମ୍‌ସ୍ ଉଭୟଙ୍କୁ ଷୋଡ଼ଶ ଶତାବ୍ଦୀର ବ୍ୟକ୍ତି କରିଛନ୍ତି ଅଥଚ ଅଚ୍ୟୁତାନନ୍ଦ ମାତ୍ର ଶହେ ବର୍ଷ ପୂର୍ବର ଲୋକ "(Lived about 100 years ago") ବୋଲି ଜଣାଇଛନ୍ତି ।

**'ଦାର୍ଢ୍ୟତାଭକ୍ତି'ରେ ପଞ୍ଚସଖା ପରିତ୍ୟକ୍ତ**

କବି ରାମ ଦାସ ବିଭିନ୍ନ ସମୟର ଅର୍ଦ୍ଧଶତାଧିକ ଭକ୍ତମାନଙ୍କ ଚରିତ ସଂବଳିତ 'ଦାର୍ଢ୍ୟତାଭକ୍ତି' ନାମକ ଗ୍ରନ୍ଥକୁ ଅଷ୍ଟାଦଶ ଶତାବ୍ଦୀର ସପ୍ତମ ଦଶନ୍ଧିରୁ ଊନବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧି ମଧ୍ୟରେ ରଚନା କରିଥିଲେ । ଏଥିରେ ସେ ଓଡ଼ିଶାରେ ଜନ୍ମଲାଭ କରିଥିବା ୧୬ଜଣ ବୈଷ୍ଣବ ଭକ୍ତଙ୍କର ବୃତ୍ତାନ୍ତ ଚର୍ଚ୍ଚା କରିଛନ୍ତି । ଏହି ଭକ୍ତମାନଙ୍କ ମଧ୍ୟରେ ବଳରାମ ଦାସ (୧୪ ଅଧ୍ୟାୟ) ଓ ଜଗନ୍ନାଥ ଦାସ (୧୫ ଅଧ୍ୟାୟ) ସ୍ଥାନ ପାଇଛନ୍ତି । ଏହି ଦୁଇ କବିଙ୍କ ଜୀବନ ଚରିତ ମଧ୍ୟରେ 'ପଞ୍ଚସଖା' ନାମ କି ଅଚ୍ୟୁତାନନ୍ଦ-ଯଶୋବନ୍ତ-ଅନନ୍ତଙ୍କ ନାମ ଉଚ୍ଚାରିତ ହୋଇ ନାହିଁ । ଭକ୍ତଙ୍କ ଜୀବନଚରିତ କରିଥିବା ରାମଦାସ ଅଚ୍ୟୁତାନନ୍ଦ ଯଶୋବନ୍ତଙ୍କ ପରି ଅଦ୍ଭୁତ କର୍ମସାଧକଙ୍କ ବିଷୟରେ କିଛି ଶୁଣି ପାରିନଥିବା ସୂଚାଉଛନ୍ତି ଯେ ବଳରାମ-ଜଗନ୍ନାଥ ଭିନ୍ନ ପଞ୍ଚସଖାର ଅନ୍ୟ ତିନି ଜଣ ସେତେ ପ୍ରାଚୀନ ନୁହନ୍ତି ତେଣୁ ସୁପ୍ରଚାରିତ ହୋଇ ପାରିନାହାନ୍ତି ।

**ଭଗବାନଙ୍କ ଶାଶ୍ୱତ ସଖା**

ଏହି ସବୁ କଥା ବିଚାର କଲେ ପଞ୍ଚସଖାଙ୍କର ଚୈତନ୍ୟଙ୍କ ସମୟରେ ବିଦ୍ୟମାନତା ସନ୍ଦେହଜନକ ହୋଇପଡୁଛି ।

'ପଞ୍ଚସଖା' ପ୍ରକଳ୍ପନାର ଏକ ସଂପ୍ରସାରଣ ଏହି ଯେ ପଞ୍ଚସଖା ନିତ୍ୟ ଗୋଲୋକରେ ଶ୍ରୀକୃଷ୍ଣଙ୍କ ସଖା ଭାବରେ ଥାଆନ୍ତି ("ଶ୍ରୀଦାମ ସୁଦାମ ବସୁଦାମରେ ନନ୍ଦ ସୁନନ୍ଦ ନିତ୍ୟ ଗୋଲୋକରେ"-ଉଦୟକାହାଣୀ) ଓ ଶ୍ରୀକୃଷ୍ଣ ସତ୍ୟାଦି ଚାରି ଯୁଗରେ ଅବତାର ହେଲେ ପଞ୍ଚସଖା ତାଙ୍କ ସହିତ ଅବତୀର୍ଣ୍ଣ ହୁଅନ୍ତି। କୃଷ୍ଣ ଦ୍ୱାପରର ସଖା ସୁଦାମଙ୍କୁ କହିଥିବା କଥା ଅଚ୍ୟୁତାନନ୍ଦ 'ଶୂନ୍ୟସଂହିତା'ରେ ଲେଖିଛନ୍ତି।

ତୁମ୍ଭେ ପଞ୍ଚସଖାକୁ ମୋ ଜନ୍ମେ ଜନ୍ମେ ଆଶ।
ତୁମ୍ଭ ପାଇଁ ଅବତାର ଲୀଳା ଅଭିଳାଷ ॥ (୯ମ ଅଧ୍ୟାୟ)

ସେହି ଶୂନ୍ୟସଂହିତାରେ ଅଚ୍ୟୁତାନନ୍ଦ କହିଛନ୍ତି :-

ଶ୍ରୀକୃଷ୍ଣ ଜନ୍ମ ହୋଇଲେ ସଙ୍ଗେ ସଙ୍ଗେ ଥାଉ।
ଶ୍ରୀକୃଷ୍ଣ ମହିମା ଗୀତ କରିଣ ଯେ ଗାଉ ॥(୪ର୍ଥ ଅଧ୍ୟାୟ)

ପଞ୍ଚସଖା କେଉଁ ଯୁଗରେ କେଉଁ ଅବତାର ସହିତ ଥିଲେ ତାହା ଶୂନ୍ୟ ସଂହିତାରେ ଲେଖା ହୋଇନାହିଁ (କେବଳ ଅଚ୍ୟୁତାନନ୍ଦ ଦ୍ୱାପରରେ ବ୍ରଜର ସୁଦାମ ଥିବା କଥା ଲେଖାଅଛି) କିନ୍ତୁ ତାହା ୧. ଈଶ୍ୱର ଦାସଙ୍କ 'ଚୈତନ୍ୟଭାଗବତ', ୨. ଯଶୋବନ୍ତ ଦାସଙ୍କ 'ଟୀକା ମାଳିକା' ଓ ୩. ଅଚ୍ୟୁତାନନ୍ଦଙ୍କ ଉଦୟକାହାଣୀ ବା ବର୍ଣ୍ଣଟୀକାରେ ଲେଖାଅଛି। ତାହା ନିମ୍ନ ତଥ୍ୟପର୍ବରେ (ମତାନ୍ତର ସହ) ସୂଚାଇ ଦିଆଯାଇଛି :-

| | | | | | |
|---|---|---|---|---|---|
| ସତ୍ୟ (୧.ଜଗନ୍ନାଥ) | ନାରଦ | ମାର୍କଣ୍ଡ | ୧. କୃପାଚାର୍ଯ୍ୟ<br>୨. ଗାର୍ଗବ<br>୩. କୃପାଜଳ | ୧. ଗାର୍ଗବ<br>୨. କୃପାଳୁ | ୧. ପଦ୍ମଯୋନି<br>୨. ଶମ୍ଭୁ<br>୩. ସ୍ୱୟମ୍ଭୁ |
| ତ୍ରେତା (ରାମ) | ୧.୨. ସୁଷେଣ<br>୩. ନୀଳ | ୧.୩. ହନୁମାନ<br>୨. ନଳ | ୧.୨. ନୀଳ<br>୩. ନଳ | ୧.୩. ଜାମ୍ବବ<br>୨. ହନୁମାନ | ୧. ନଳ<br>୨. ଜାମ୍ବବ<br>୩. ସୁଷେଣ |
| ଦ୍ୱାପର (କୃଷ୍ଣ) | ୧.୨ ସୁବଳ<br>୩. ଦାମ | ୧. ଶ୍ରୀବସ<br>୨. ଦାମ<br>୩. ସୁବଳ | ସୁଦାମ | ସୁବାହୁ | ୧. ଦାମ<br>୨.୩. ଶ୍ରୀବସ |
| କଳି (ଚୈତନ୍ୟ) | ବଳରାମ | ଜଗନ୍ନାଥ | ଅଚ୍ୟୁତାନନ୍ଦ | ଯଶୋବନ୍ତ | ଶିଶୁ ଅନନ୍ତ |

ଏହା କାହାରିକୁ ଅବିଦିତ ନୁହେଁ ଯେ ଧର୍ମ ପ୍ରଚାରକମାନେ ନିଜର ଗୁରୁତ୍ୱକୁ ସ୍ଫୀତୀକୃତ କରାଇ ଲୋକରେ ସ୍ୱମତର ଗ୍ରହଣୀୟତାକୁ ବଢ଼ାଇବା ପାଇଁ ନାନା କୌଶଳ ଅବଲମ୍ବନ କରିଥାନ୍ତି। ଶିଷ୍ୟମାନେ ମଧ୍ୟ ଗୁରୁଙ୍କ ଗୁରୁତ୍ୱ ବଢ଼ାଇ ସ୍ୱସଂପ୍ରଦାୟର ପ୍ରସାରକାମୀ ହୁଅନ୍ତି। 'ପଞ୍ଚସଖା' ପ୍ରପଞ୍ଚର ପ୍ରବକ୍ତାମାନେ ଧର୍ମପ୍ରଚାରକ ହୋଇଥିବାରୁ ଏହି ନିୟମର ବ୍ୟତିକ୍ରମ ହୋଇ ନପାରନ୍ତି। ଭକ୍ତମାନେ (ଓ ତାଙ୍କ ପ୍ରଚାରରେ ବିମୁଗ୍ଧ ଓଡ଼ିଆ ଅଧ୍ୟାପକମାନେ) ଏମାନଙ୍କୁ କ୍ଷଣଜନ୍ମା ଯୋଗିପ୍ରବର ଭକ୍ତଶିରୋମଣି ସିଦ୍ଧଗୁରୁ ମହାପୁରୁଷ ଆଦି ବିଶେଷଣ ବିଶିଷ୍ଟ କରିବା ଦ୍ୱାରା ସେମାନଙ୍କର ଆତ୍ମପ୍ରଚାର ଚରିତ୍ରକୁ ଆଚ୍ଛନ୍ନ କରିପକାନ୍ତି। ବଳରାମ ଦାସ ଓ ଜଗନ୍ନାଥ ଦାସ ସତ୍ୟଯୁଗରେ ନାରଦ ଓ ମାର୍କଣ୍ଡ ଥିବା (ଯେପରିକି ନାରଦ ତ୍ରେତା ଓ ଦ୍ୱାପର ବେଳକୁ ଲୋପ ପାଇ ଯାଇଥିଲେ ଓ ମାର୍କଣ୍ଡେୟ ଚିରଂଜୀବୀ ମଧ୍ୟରୁ ଏକତମ ନୁହନ୍ତି) ଦାବିଠାରୁ ଅଚ୍ୟୁତାନନ୍ଦ ଦ୍ୱାପରରେ ସୁଦାମ ଥିବା ଦାବି କଣ ଅଧିକ ସତ୍ୟାଶ୍ରିତ ? ଏ ପ୍ରକାର ଦାବି ଯେଉଁମାନେ କରି ସରଳ ବିଶ୍ୱାସୀ ଜନତାଙ୍କୁ ନିଜ ମତାବଲମ୍ବୀ କରାଇ ପାରନ୍ତି ସେମାନେ ନିଜକୁ ଚୈତନ୍ୟଙ୍କ ସଖା ବୋଲି ଦାବି କରିବା ସ୍ୱାଭାବିକ କଥା ନୁହେଁ କି ? ସେହି ଦୃଷ୍ଟିଭଙ୍ଗୀ ନେଇ ଏମାନଙ୍କ ଦାବି ଅନ୍ୟ ଐତିହାସିକ ପ୍ରମାଣ ଦ୍ୱାରା ସମର୍ଥିତ ହେଉଛି କି ନାହିଁ ପରୀକ୍ଷା କରିବା ଆବଶ୍ୟକ। ଏମାନେ ତ୍ରିକାଳଦର୍ଶୀ ସତ୍ୟବାଦୀ ବୋଲି ଧରିନେଲେ ଏମାନେ ଲେଖୁଥିବା ପୂର୍ବଜନ୍ମର ସୂଚନାର ଏତେ ଭେଦ କାହିଁକି ରହୁଛି ବୁଝେଇ ହେବ ନାହିଁ।

ପଞ୍ଚସଖା ପ୍ରଚାରର ମୂଳଦୁଆ ଯେ ଅଚ୍ୟୁତାନନ୍ଦ ପକାଇଥିଲେ ତାହା ଅନୁମାନ କରିବା ପାଇଁ ବିଶେଷ ବୁଦ୍ଧିର ପ୍ରୟୋଜନ ନାହିଁ। ଯେ ପ୍ରଚାର ଆରମ୍ଭ କରେ ସେ ସବିଶେଷ ବିବରଣ ଦିଏ, ଅନ୍ୟମାନେ ପ୍ରଚାରରେ ଯୋଗ ଦେଲେହେଁ ସବିଶେଷ ବିବରଣ ଦେବା ଆବଶ୍ୟକ ହୁଏ ନାହିଁ। ଅଚ୍ୟୁତାନନ୍ଦହିଁ ସବିଶେଷ ବିବରଣ ଦେଇଛନ୍ତି 'ଶୂନ୍ୟସଂହିତା'ରେ। ଅନ୍ୟମାନେ 'ପଞ୍ଚସଖା' ସହ ଚୈତନ୍ୟଙ୍କ ସଖ୍ୟର ବିଶଦ ଚର୍ଚ୍ଚା କରି ନଥିବାର ଜଣାପଡୁଛି। 'ଶୂନ୍ୟସଂହିତା' ରଚନା ପରେ 'ପଞ୍ଚସଖା' ବିଷୟ ଲେଖାଥିବା ଅନ୍ୟାନ୍ୟ ଗ୍ରନ୍ଥ ରଚିତ ହୋଇଛି। ଏହି କାରଣରୁ ଅଚ୍ୟୁତାନନ୍ଦଙ୍କର ସମୟ ନିର୍ଦ୍ଧାରଣ ସହିତ ତାଙ୍କର ଦାବିର ଐତିହାସିକତାର ପରୀକ୍ଷା ପ୍ରଥମେ କରାଯିବା ଉଚିତ। ଏହି ପ୍ରବନ୍ଧର ପରବର୍ତ୍ତୀ (ତୃତୀୟ) ଭାଗରେ ତାହା କରାଯାଉଛି।

## (ତିନି)

ଚୈତନ୍ୟଙ୍କ ସମୟରେ ପଞ୍ଚସଖା ଅବତୀର୍ଣ୍ଣ ହୋଇଥିବା ଦାବିର ସତ୍ୟତା ସେମାନେ ଚାରିଯୁଗରେ ବିଷ୍ଣୁଙ୍କ ଅବତାରର ସଖା ହୋଇଥିବା ଦାବିର ସତ୍ୟତା ଠାରୁ ଅଧିକ ନୁହେଁ। ସରଳବିଶ୍ୱାସୀ ଧର୍ମଭୀରୁ ଜନତାଙ୍କୁ ଭୁଲାଇ ଚୈତନ୍ୟପଛାର

ବର୍ଦ୍ଧିଷ୍ଣୁ ଲୋକପ୍ରିୟତାକୁ ଆତ୍ମସାତ୍ କରିବା ଲକ୍ଷ୍ୟ ଏଥିରେ ନିହିତ। ପୁରାଣାଦି ବହୁ ପ୍ରାଚୀନ୍ ଗ୍ରନ୍ଥରେ ବିଷ୍ଣୁଙ୍କ ରାମକୃଷ୍ଣାଦି ଅବତାରମାନଙ୍କ ବିଷୟରେ ବିଶଦ ଆଲୋଚନା ରହିଛି। କିନ୍ତୁ, ବିଷ୍ଣୁଙ୍କ ଅବତାର ସହ ତାଙ୍କର ପାଞ୍ଚଜଣ ସଖା ଜନ୍ମଥିବା କଥା କେଉଁଠି ଲେଖାନାହିଁ। ଏହି ସକାଶେ ଶୂନ୍ୟସଂହିତାଦି ଗ୍ରନ୍ଥରେ ବର୍ଣ୍ଣିତ 'ପଞ୍ଚସଖା' ବିଷୟରେ ବିଶ୍ୱସନୀୟତାକୁ ପରୀକ୍ଷା କରିନେବା ଉଚିତ।

**ଶୂନ୍ୟସଂହିତାକାରଙ୍କ ଚରିତ**

ଅଚ୍ୟୁତାନନ୍ଦ ତାଙ୍କର ଜୀବନ-ଚରିତ ଶୂନ୍ୟସଂହିତାର ଗ୍ରନ୍ଥାରମ୍ଭରେ ଲେଖିଛନ୍ତି (ଗ୍ରନ୍ଥାରମ୍ଭଟି ଦଉପ୍ରେସ୍‌ରେ ମୁଦ୍ରିତ ଶୂନ୍ୟସଂହିତାରେ ସ୍ଥାନ ପାଇଥିଲା; କିନ୍ତୁ ଓଡ଼ିଶା ଜଗନ୍ନାଥ କମ୍ପାନୀଦ୍ୱାରା ପ୍ରକାଶିତ ଶୂନ୍ୟସଂହିତାରେ ତାହାକୁ ସ୍ଥାନ ଦିଆଯାଇନାହିଁ)। ଏହି ମୁଖବନ୍ଧରୂପୀ ଗ୍ରନ୍ଥାରମ୍ଭରେ ଅଚ୍ୟୁତାନନ୍ଦ ନିଜର ଜୀବନଚରିତ ନିମ୍ନଲିଖିତ ପ୍ରକାରେ ଥିବା ଜଣାଇଛନ୍ତି :-

ଶୂଦ୍ରକୁଳର ଦୀନବନ୍ଧୁ ଖୁଣ୍ଟିଆଙ୍କ ପତ୍ନୀ ପଦ୍ମାବତୀଙ୍କ ଗର୍ଭରୁ ମୁଁ ଜାତହେଲି। ପାଞ୍ଚ ବର୍ଷ ବୟସରେ ପାଠପଢ଼ା ଆରମ୍ଭ କଲି। କିନ୍ତୁ, ପାଠରେ ମନ ଲାଗିଲା ନାହିଁ, ଉଦାସୀ ହୋଇ ବୁଲିଲି। କିଛି କାଳ ପରେ ପିତାଙ୍କ ସହିତ ପୁରୀ ଯାଇଥିଲା ବେଳେ ବଡ଼ଦାଣ୍ଡରେ ଚୈତନ୍ୟଙ୍କୁ ଦେଖିଲି। ଚୈତନ୍ୟ ମୋତେ ମନ୍ତ୍ର ଉପଦେଶ ଦେବାକୁ ସନାତନ ଗୋସ୍ୱାମୀଙ୍କୁ କହିଲେ। ସନାତନ ମୋତେ ହରିମନ୍ଦିର ତିଳକ ଓ ଶ୍ୟାମ ପଞ୍ଚାକ୍ଷର ମନ୍ତ୍ର ଦେଇ ଗୁରୁପରଂପରା ଏହିପରି କହିଥିଲେ :-

ଆମ୍ଭେ ତୋର ଗୁରୁ ମୋ ଗୁରୁ କେଶବ ତାଙ୍କ ଗୁରୁ ରାମକୃଷ୍ଣ।
ତାଙ୍କ ଗୁରୁ ଶ୍ୟାମ ଘୋଷ ସାରଙ୍ଗ ଯେ ଘୋଷ ତାଙ୍କ ଗୁରୁବ୍ରହ୍ମ॥
ସାରଙ୍ଗ ଘୋଷ ଗୋସାଇଁ ପରିବାର ଚୈତନ୍ୟ ଚରଣେ ମିଳି।

ମନ୍ତ୍ରୋପଦେଶ ପରେ ପିତା ମୋତେ ଧରି ତ୍ରିପୁର ଗ୍ରାମକୁ ଫେରିଲେ। ମୋର ଉଦାସ ସ୍ୱଭାବ ଯୋଗୁଁ ପିତା ମୋ ପ୍ରତି ରୁଷ୍ଟ ହେଲେ ଓ ମୋତେ ଅବହେଳା କଲେ। ମୋତେ ଦଶବର୍ଷ ଦଶ ମାସ ବୟସ ହୋଇଥିବା ବେଳେ ଗୁରୁବ୍ରହ୍ମ ସ୍ୱପ୍ନରେ ଦେଖା ଦେଇ କହିଲେ : ତୁ ସୁଦାମର ଙ୍କାରେ ଜାତ। ସୁଦାମ କଳିଯୁଗରେ ମୋ ସଙ୍ଗେ ନବଦ୍ୱୀପରେ ଜନ୍ମିବ, ସୁନ୍ଦରା ନାମ ଗ୍ରହଣ କରି ନୀଳାଚଳକୁ ଆସିବ ଓ ତାହା ପରେ ଅଚ୍ୟୁତ ନାମ ଗ୍ରହଣ କରିବ ବୋଲି ପୂର୍ବରୁ ନିର୍ଦ୍ଦିଷ୍ଟ ହୋଇଛି।" ଗୁରୁବ୍ରହ୍ମଙ୍କୁ ସ୍ୱପ୍ନରେ ଦେଖିବା ପରେ ମୋର କବିତ୍ୱ ଶକ୍ତିର ବିକାଶ ସହ ଜ୍ଞାନୋଦୟ ହେଲା। ମୁଁ ନୀଳାଚଳ ଗଲି ଓ "ଶ୍ରୀ ଚୈତନ୍ୟ" ମହାପ୍ରଭୁଙ୍କ ଆଜ୍ଞାରେ ଡୋର କଉପୀନ ନେଲି।

ତାହାପରେ ମୁଁ ଉତ୍ତର ଭାରତର ବହୁସଂଖ୍ୟକ ତୀର୍ଥ ପର୍ଯ୍ୟଟନ କରି ପୁରୀକୁ ଫେରିଲି। ରଥଯାତ୍ରା ହେଉଥାଏ, ଶ୍ରୀ ଗୌରଚନ୍ଦ୍ର ବଡ଼ଦାଣ୍ଡରେ ବିଜେ ହୋଇଥାନ୍ତି।

"ଅନନ୍ତ ଯେ ଯଶୋବନ୍ତ ବଳରାମ ଶ୍ରୀବସ୍ତ ମିଳିଲେ ଆସି ।।
ଜଗନ୍ନାଥ ଦାସ ଘେନି ପଞ୍ଚସଖା ଉଦୟ ହୋଇଲେ ତହିଁ ।"

ଚୈତନ୍ୟଙ୍କ ଗହଣରେ ମୁଁ କେତେ ଦିନ ବିତାଇବା ପରେ ଦିନେ ଚୈତନ୍ୟ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଅଙ୍ଗରେ ଲୀନ ହୋଇଗଲେ । ଚୈତନ୍ୟଙ୍କ ଦେହାନ୍ତ ପରେ ମୋତେ ସ୍ୱପ୍ନାଦେଶ ହେଲା : 'ତୁ ଗୀତା ଲେଖ' । ମୁଁ ଶୂନ୍ୟ ସଂହିତା ରଚନା କଲି ।

'ଶୂନ୍ୟସଂହିତା'ର ଗ୍ରନ୍ଥାରମ୍ଭର ଉଲ୍ଲିଖିତ ବିବରଣ ଠାରୁ ଗ୍ରନ୍ଥ ମଧ୍ୟରେ ପ୍ରଦତ୍ତ ବିବରଣ ଠାଏଁ ଠାଏଁ ଭିନ୍ନ । ପ୍ରଥମ ଅଧ୍ୟାୟରେ ଅଚ୍ୟୁତାନନ୍ଦ ତାଙ୍କ ପୂର୍ବ ଜନ୍ମର ବୃତ୍ତାନ୍ତ ନିମ୍ନ ଲିଖିତ ପ୍ରକାରେ ଦେଇଛନ୍ତି :-

ପ୍ରଭୁ (ଚୈତନ୍ୟ) ନିତ୍ୟାନନ୍ଦଙ୍କ ସହିତ ନବଦ୍ୱୀପରେ ଜାତ ହେଲେ ଓ "ତାହାଙ୍କ ସଙ୍ଗରେ ମୋତେ ଜନମ ଯେ କଲେ" । ସେ ବୈରାଗୀ ହୋଇ ପୃଥିବୀ ପର୍ଯ୍ୟଟନ କରିସାରି ସନାତନ, ଜୀବ, ରୂପ, ଗୋପାଳ ଭଟ୍ଟ ଓ ରଘୁନାଥ ଦାସ ଏହି 'ପଞ୍ଚ ମହାଜନ'ଙ୍କୁ ଧରି ପୁରୀକୁ ଆସିଲେ । ମୋତେ ତାହିଁ କହିଲେ 'ହେ ଅଚ୍ୟୁତ, ତୁମର ଏ ଦେହକୁ ଲୋପ କରି ଶୂଦ୍ରକୁଳରେ ଜାତ ହୁଅ ଓ ବ୍ରହ୍ମଗୋପାଳ ବଂଶରେ ଗୋକୁଳଙ୍କୁ ଉଦ୍ଧାର କର ।'

"ଏ ଅଙ୍ଗକୁ ଲୋପକରି ଶୂଦ୍ରକୁଳେ ଜାତ ।
ରାସ ଯେ ରଚିବ ବେଗେ ଯାଅ, ହେ ଅଚ୍ୟୁତ ।।"

ମୁଁ ଜାତିସ୍ମର ହୋଇ ଶୂଦ୍ରକୁଳରେ ଜନ୍ମିଲି । "ସିନ୍ଦୁରାନନ୍ଦ ନାମ ମୋ ଗୁପତ ହୋଇଲା, ଦୀନ ପାମର ଅଚ୍ୟୁତ ନାମ ଖ୍ୟାତ ହେଲା ।"

ଜଣାପଡୁଛି, ଅଚ୍ୟୁତ ନିଜକୁ ଚୈତନ୍ୟଙ୍କ ସମସାମୟିକ ସୁନ୍ଦରାନନ୍ଦ ଠାକୁରଙ୍କ ଠାରୁ ଭିନ୍ନ ନୁହନ୍ତି ବୋଲି ଜଣାଉଛନ୍ତି । ତେଣୁ, ସୁନ୍ଦରାନନ୍ଦଙ୍କୁ ଚୈତନ୍ୟ 'ଅଚ୍ୟୁତ' ନାମରେ ସଂବୋଧନ କରୁଛନ୍ତି ।

ଶୂନ୍ୟ ସଂହିତାର ୮ମ ଅଧ୍ୟାୟରେ ରାଜା ପ୍ରତାପରୁଦ୍ର ଅଚ୍ୟୁତାନନ୍ଦଙ୍କର ଶୂନ୍ୟ-ଭଜନର ପରୀକ୍ଷା ଲୋଡ଼ିଥିବା ଓ ଅଚ୍ୟୁତାନନ୍ଦ ନିରାକାର ଶୂନ୍ୟଭଜନର ତତ୍ତ୍ୱ ବୁଝାଇଥିବା କଥା ଲେଖାଅଛି ।

ଶୂନ୍ୟ ସଂହିତାର ୯ମ ଅଧାରେ ଶ୍ରୀକୃଷ୍ଣ ସୁଦାମାଦି ପଞ୍ଚସଖା କଳିଯୁଗରେ ପ୍ରତାପରୁଦ୍ରଙ୍କ ଅମଳରେ ଜନ୍ମହେବେ ବୋଲି ସୁଦାମଙ୍କୁ କହିଥିବା କଥା ଲେଖାଅଛି :-

"ତୁମ୍ଭେ ପଞ୍ଚସଖା ଥିବ ଆମ୍ଭର ସଙ୍ଗରେ । ତହିଁ ତୁମ୍ଭ ଆମ୍ଭ ଭେଟ କଳପ ବଟରେ ।।
ପ୍ରତାପରୁଦ୍ର ନୃପତି ରାଜନ ହୋଇବେ । ପଞ୍ଚସଖା ପ୍ରଚ୍ଛନ୍ନେ ପରଚେ ସ୍ଥାନ ଦେବେ ।।"

ଶ୍ରୀକୃଷ୍ଣ ସୁଦାମଙ୍କୁ ଆଉ ମଧ୍ୟ କହିଥିଲେ ଯେ ତୁମ୍ଭର ମୋର ଭେଟ ପୁଣି କଳିଯୁଗରେ ହେବ । ମୁଁ ବୌଦ୍ଧ ରୂପରେ ପ୍ରକଟ ହେବି ଓ ତୁମ୍ଭର ନାମ ହେବ ସୁନ୍ଦରାନନ୍ଦ । ମୁଁ ନଦିଆରେ ଚୈତନ୍ୟ ଭାବେ ଜନ୍ମିବି । ତୁମେ ମୋ ସଙ୍ଗରେ ଥିବ ଓ ଅଚ୍ୟୁତ ନାମ ଗ୍ରହଣ କରି ଗୋକୁଳଙ୍କୁ ଉଦ୍ଧାର କରିବ ।

ସୁନ୍ଦରାନନ୍ଦ-ଅଚ୍ୟୁତାନନ୍ଦ ମଧ୍ୟରେ ଅଭେଦତ୍ୱ ଘୋଷଣା କରାଯାଉଥିଲେହେଁ ସୁନ୍ଦରାନନ୍ଦ ନବଦ୍ୱୀପରେ ଜନ୍ମିଥିବା ଓ ଅଚ୍ୟୁତାନନ୍ଦ ଓଡ଼ରାଷ୍ଟ୍ରରେ ଜନ୍ମିଥିବା ଶୂନ୍ୟସଂହିତା ମାନୁଛି। ଅଚ୍ୟୁତାନନ୍ଦଙ୍କ ଜନ୍ମସ୍ଥାନ ତିଳକଣା ('ତିଳକଣାରେ ମୁଁ ଜନମ ଲଭିଲି-୧୭· ଅଧ୍ୟାୟ) ଓ ନିବାସସ୍ଥାନ ନେମାଳ ('ନେମାଳ ମୋ ନିଜସ୍ଥାନ'-୧୭ଅଧ୍ୟାୟ)।

ଶୂନ୍ୟସଂହିତାକାର ନିଜକୁ ହିଁ ଚୈତନ୍ୟଙ୍କ ସମସାମୟିକ 'ପଞ୍ଚସଖା'ର ଏକତମ ବୋଲି କହିଛନ୍ତି। ସେ ନିଜର ଗୁରୁପରଂପରା ଦେଇଛନ୍ତି ଓ ନିଜେ ହିଁ ତୀର୍ଥ ପର୍ଯ୍ୟଟନ କରିବା କଥା ଲେଖିଛନ୍ତି। ଡଃ କୃଷ୍ଣଚରଣ ସାହୁ ଅଚ୍ୟୁତାନନ୍ଦଙ୍କ ଏହି ଦାବି ସତ୍ୟାଶ୍ରିତ ନୁହେଁ ବୋଲି ମୋର ଯୁକ୍ତିକୁ ଖଣ୍ଡନ ନ କରି ୧୬ଶ ଶତାବ୍ଦୀର ପ୍ରଥମ ପାଦରେ ଜଣେ ଅଚ୍ୟୁତ ଦାସ ଥିବା ଦର୍ଶାଇ ଲେଖିଛନ୍ତି :- ''ଶୂନ୍ୟସଂହିତା, ଗୁରୁଭକ୍ତି ଗୀତା ପ୍ରଭୃତିର ଲେଖକ ନିଜକୁ ଚୈତନ୍ୟଙ୍କ ସମକାଳୀନ ଅଚ୍ୟୁତାନନ୍ଦଙ୍କ ଅବତାର ରୂପେ ପ୍ରଚାର କରି ଥିବାରୁ ନିଜ ଜୀବନର ବହୁ ଘଟନାକୁ ପୂର୍ବ ଅଚ୍ୟୁତଙ୍କ ସହ ମିଶାଇ ବର୍ଣ୍ଣନା କରିଛନ୍ତି। ଫଳରେ ଶୂନ୍ୟସଂହିତା ବା ଅନ୍ୟାନ୍ୟ ଗ୍ରନ୍ଥରୁ ମିଳୁଥିବା ଉପାଦାନ ଷୋଡ଼ଶ ଶତାବ୍ଦୀରେ ଥିବା ଅଚ୍ୟୁତାନନ୍ଦଙ୍କର କି ଅଷ୍ଟାଦଶ ଶତାବ୍ଦୀରେ ଥିବା ଅଚ୍ୟୁତାନନ୍ଦଙ୍କର ତାହା କହିବା ବର୍ତ୍ତମାନ ପାଇଁ କଷ୍ଟକର''। (ଦିଗନ୍ତ, ୧୯୬୮ ଫେବ୍ରୁଆରି)। ଅଚ୍ୟୁତ ଦାସଙ୍କର ଗୋଟିଏ ମାତ୍ର ରଚନା 'ଶବ୍ଦବ୍ରହ୍ମସଂହିତା' ଡଃ ସାହୁ ଲୋକଲୋଚନକୁ ଆଣିଛନ୍ତି। ସେଥିରେ ଅଚ୍ୟୁତ ଦାସ ନିଜକୁ ପଞ୍ଚସଖା ଭୁକ୍ତ କରି ନାହାନ୍ତି କି ଚୈତନ୍ୟଙ୍କ ସହିତ ସଂପୃକ୍ତ କରିନାହାନ୍ତି। ଡଃ ସାହୁ 'ପଞ୍ଚସଖା'କୁ ପଞ୍ଚତ୍ୱ ପ୍ରାପ୍ତିରୁ ବଞ୍ଚାଇବା ପାଇଁ ଅସତ୍ୟର ଆଶ୍ରୟ ନେଇ କହିଛନ୍ତି : ''ଶୂନ୍ୟସଂହିତାର ରଚୟିତା ଦୀନ ପାମର ଅଚ୍ୟୁତ ନିଜକୁ ପୂର୍ବ ଅଚ୍ୟୁତଙ୍କ ଅବତାର ରୂପେ ବର୍ଣ୍ଣନା କରିଥିଲେହେଁ ଓଡ଼ିଶା ସାହିତ୍ୟର ସମାଲୋଚକମାନେ ପରଂପରାଗତ ବିଶ୍ୱାସର ବଶବର୍ତ୍ତୀ ହୋଇ ଲେଖକଙ୍କର ଏ ସଂକେତକୁ ଠଉରେଇ ପାରି ନାହାନ୍ତି'' (ତତ୍ରତ୍ୟ)। ଶୂନ୍ୟସଂହିତାକାର ନିଜକୁ କୁତ୍ରାପି ଅନ୍ୟ କୌଣସି ଅଚ୍ୟୁତଙ୍କର ଅବତାର ବୋଲି ଜଣାଇନାହାନ୍ତି, ସେ ସବୁଠାରେ ନିଜକୁ ଚୈତନ୍ୟଙ୍କ ସମସାମୟିକ ସୁନ୍ଦରାନନ୍ଦଙ୍କ ଘଟାନ୍ତର ବୋଲି ହିଁ ପ୍ରକାଶ କରିଛନ୍ତି। ପଞ୍ଚସଖାର ଅଚ୍ୟୁତଙ୍କର ଅବତାର ହେଉଛନ୍ତି ଶୂନ୍ୟସଂହିତାକାର ଅଚ୍ୟୁତାନନ୍ଦ, ଏହା ଡଃ ସାହୁଙ୍କର ନିରାଧାର କଳ୍ପନା।

## 'ଶୂନ୍ୟସଂହିତା'ର ରଚନାକାଳ

ଶୂନ୍ୟସଂହିତାକାର ନିଜେ ଚୈତନ୍ୟଙ୍କ ସମୟର ବୋଲି ଆସ୍ଫାଳନ କରିଥିବା ସତ୍ତ୍ୱେ ତାଙ୍କ ରଚନାଟି ଅଷ୍ଟାଦଶ ଶତାବ୍ଦୀ ପୂର୍ବରୁ ରଚିତ ହୋଇ ନଥିବା ନିଃସନ୍ଦେହ।

୧. ଶୂନ୍ୟ ସଂହିତାରେ କଲମ, ଅଲେଫ୍, ହକିକତ୍, ଜମି, ବେଶି ଆଦି ଅନେକଗୁଡ଼ିଏ ଯାବନିକ ଶବ୍ଦର ପ୍ରୟୋଗ ରହିଛି ଯାହାର ବ୍ୟବହାର ଓଡ଼ିଶାରେ ମୋଗଲ ଶାସନର ପୂର୍ବରୁ ଓଡ଼ିଆ ସାହିତ୍ୟରେ ନଥିଲା।

୨. ଶୂନ୍ୟସଂହିତାର ପଞ୍ଚମ ଅଧ୍ୟାୟରେ ହିନ୍ଦୁର ଅଲେଖ ଓ ତୁରୁକ (ମୁସଲମାନ)ର ଅଲେଫ୍‌ର ଏକତ୍ୱ ଦର୍ଶାଯାଇଛି :-

ହିନ୍ଦୁଭାବେ ଅଲେଖ ତୁରୁକ ଅଲେଫ ଯେ ।
ଏଣୁ ଅଲେଫ ତେଜ ଅଲେଖ ହିନ୍ଦୁ ଭଜେ ।।

ଷୋଡ଼ଶ ଶତାବ୍ଦୀରେ ହିନ୍ଦୁ ଶବ୍ଦର ପ୍ରଚଳନ ଓଡ଼ିଶାରେ ନଥିଲା, ସପ୍ତଦଶ ଶତାବ୍ଦୀର କୌଣସି ଓଡ଼ିଆ ଲେଖାରେ ବି ହିନ୍ଦୁ ଶବ୍ଦ ବ୍ୟବହୃତ ହୋଇନାହିଁ। ଉଦ୍ଧୃତିରେ ଅଲେଫଙ୍କ ତେଜ ଅଲେଖ ବୋଲି କୁହାଯାଇଛି। ଆକବରଙ୍କ 'ଦିନ୍‌ଇଲାହି' ଧର୍ମର ପରବର୍ତ୍ତୀ ରୂପାନ୍ତର 'ସତ୍ୟଷୀ'ର ଧର୍ମ ବଙ୍ଗଳାରୁ ଓଡ଼ିଶାକୁ ଚଲାନ୍ ହୋଇ ଆସିଲା ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିରେ ଓଡ଼ିଶାର ତତ୍‌କାଳୀନ ଶାସକ ସୁଜାଉଦ୍ଦିନ୍‌ଙ୍କ ଦ୍ୱାରା। ଶୂନ୍ୟ ସଂହିତାର ଏହି ଉଦ୍ଧୃତି ଜଣାଉଛି ଯେ ତାହାର ରଚନା ଖ୍ରୀ-୧୭୨୦ ପରେ ହିଁ ହେବା ସମ୍ଭବ।

୩. ଶୂନ୍ୟ ସଂହିତାର ୧ ରୁ ୨୯ ଅଧ୍ୟାୟକୁ ଓ ପରବର୍ତ୍ତୀ ୧୨ ଅଧ୍ୟାୟକୁ, ଯଥାକ୍ରମେ, ପ୍ରଥମ ଓ ଦ୍ୱିତୀୟଭାଗ ରୂପେ ନାମିତ କରାଯାଇଛି। ପ୍ରଥମେ ଗ୍ରନ୍ଥାରମ୍ଭ ସହିତ ୧ ରୁ ୨୯ ଅଧ୍ୟାୟକୁ ସଂପୂର୍ଣ୍ଣ ଶୂନ୍ୟସଂହିତା ଭାବରେ ପ୍ରକାଶ କରାଯାଇଥିଲା। ପରେ ଗ୍ରନ୍ଥାରମ୍ଭକୁ ତ୍ୟାଗ କରି ପ୍ରଥମ ଓ ଦ୍ୱିତୀୟ ଭାଗରେ ୪୧ ଅଧ୍ୟାୟକୁ ଏକତ୍ର ଶୂନ୍ୟସଂହିତା ନାମରେ ପ୍ରକାଶ କରାଗଲା। ଉଭୟ ଭାଗର ଭଣିତି ଅଚ୍ୟୁତଙ୍କ ନାମରେ ହୋଇଛି। ଦ୍ୱିତୀୟ ଭାଗର ରଚୟିତା ମଧ ସେହି ଚିତ୍ରୋତ୍ପଳା ତଟବର୍ତ୍ତୀ ନେମାଳର ବାସିନ୍ଦା ବୋଲି ଲେଖାଅଛି :-

''ଶୁଣରେ କୁମର, ଲେମ୍ବାଳେ ମୋର, ଆଶ୍ରମ ଅଟେ ଚିତ୍ରୋତ୍ପଳା ତୀର'' (୩୬ ଅଧ୍ୟାୟ)। ଏହି ୪୧ ଅଧ୍ୟାୟରେ 'ଶୂନ୍ୟସଂହିତା' ସରିନାହିଁ, ଏହାର ପରବର୍ତ୍ତୀ ବହୁ ଅଧ୍ୟାୟ ଅପ୍ରକାଶିତ ରହିଛି। ଅନ୍ଦାଜ ଖ୍ରୀ. ୧୮୯୫ରେ ରଚିତ ଅଚ୍ୟୁତାନନ୍ଦ ଭଣିତିଯୁକ୍ତ 'ତତ୍ତ୍ୱବୋଧିନୀ'ର ୧୦ମ ଅଧ୍ୟାୟ ଅନୁଯାୟୀ ସେତେବେଳକୁ ଶୂନ୍ୟ ସଂହିତାରେ ୬୪ ଅଧ୍ୟାୟ ଯୋଡ଼ା ହୋଇ ସାରିଲାଣି। ଏବେ ବି ଅଚ୍ୟୁତାନନ୍ଦ ଶୂନ୍ୟସଂହିତା ନେମାଳରେ ବସି ଲେଖୁଥିବେ! କିନ୍ତୁ, ୨୯ ଅଧ୍ୟାୟର ୩୭ ପଦ ମଧ୍ୟରୁ ୩୩ ପଦ ଅଚ୍ୟୁତାନନ୍ଦଙ୍କ ଅନ୍ୟତମ ରଚନା 'ଅଣାକାର ସଂହିତା'ର ନକଲ ମାତ୍ର। ଏହାର ଶେଷ ତିନି ପଦରେ ଗ୍ରନ୍ଥର ପ୍ରଶଂସା ସହିତ ତାହାକୁ ପୂଜା କରିବା ପାଇଁ ସୁପାରିସ୍ ରହିଥିବାରୁ ଗ୍ରନ୍ଥଟି ମୂଳରେ ୨୯ ଅଧ୍ୟାୟରେ ସରିଥିବା ଓ ଅବଶିଷ୍ଟ ଅଧ୍ୟାୟ ଗୁଡ଼ିକ ପରେ ଯୋଡ଼ା ଯାଇଥିବା ଅନୁମିତ ହୁଏ।

ଶୂନ୍ୟ ସଂହିତାର ୩୯ ଅଧ୍ୟାୟରେ ଓଡ଼ିଶାର ଇତିହାସର ଯେତିକି ସୂଚନା ରହିଛି ତାହା ପ୍ରମାଣିତ କରୁଛି ଯେ ଖ୍ରୀ.୧୮୦୩ପରେ ଦ୍ୱିତୀୟ ଭାଗ ରଚିତ।

ଯବନ ବଳେଣ ଓଡ଼ିଶା ନେବ। ଏମନ୍ତେ କେତେଦିନ ବହିଯିବ।
ମରହଟ୍ଟା ପୁଣ ବସିବେ ମାଡ଼ି। ଯବନ ଯିବେ ଓଡ଼ିଶାକୁ ଛାଡ଼ି।।

ମରହଟ୍ଟାଙ୍କ ଓଡ଼ିଶା ଅଧିକାର ଖ୍ରୀ.୧୭୪୨ ପରବର୍ତ୍ତୀ ଘଟନା। ଶୂନ୍ୟସଂହିତାର ଏହି ଅଧ୍ୟାୟରେ "ଚାରି ସହସ୍ର ନବଶତ ଚାରି, କଳିଯୁଗେ ଯେ ଯିବ ଅପସରି" ଲେଖାଅଛି। କଲ୍ୟତୀତ ୪୯୦୪ ଅବ୍ଦ ହେଉଛି ଖ୍ରୀ.୧୮୦୩ (ଓଡ଼ିଶା ଇଂରାଜିଙ୍କ ଶାସନାଧୀନ ହେବା ବର୍ଷ)।

ଏଥିରୁ ପ୍ରତିପନ୍ନ ହୁଏ ଯେ ନିଜକୁ ଷୋଡ଼ଶ ଶତାବ୍ଦୀର ଚୈତନ୍ୟ ଓ ପ୍ରତାପରୁଦ୍ରଙ୍କ ସମୟର ବୋଲି ଦାବି କରୁଥିବା ଅଚ୍ୟୁତାନନ୍ଦ ଅଷ୍ଟାଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ହୋଇ ନ ପାରନ୍ତି। ତାଙ୍କର ଏ ଭଣ୍ଡାମିକୁ ଧରି ନପାରି କେତେକ ଓଡ଼ିଆ ଅଧ୍ୟାପକ, ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଅନୁଗାମୀ ହୋଇ, ମାୟାପୁରୁଷକୁ ମହାପୁରୁଷ ଆଖ୍ୟା ଦେଇ ଚାଲିଛନ୍ତି। ଅଚ୍ୟୁତାନନ୍ଦ ନିଜର ଭଣ୍ଡାମିକୁ ଲୁଚାଇବା ପାଇଁ ତାଙ୍କର ମିଥ୍ୟା ଦାବି ସଂବଳିତ ଗ୍ରନ୍ଥକୁ ପଣ୍ଡିତମାନଙ୍କ ଆଗରେ ପ୍ରକାଶ ନ କରିବା ପାଇ ନିଷେଧାଜ୍ଞା ଜାରି କରିଛନ୍ତି:-

"ପଣ୍ଡିତ ଲୋକଙ୍କୁ ଏହା କେଭେ ନ କହିବ"। (୧ମ ଅଧ୍ୟାୟ)
"ପଣ୍ଡିତ ଆଗରେ ଏହା ନ କରି ପ୍ରକାଶ" (୪ର୍ଥ ଅଧ୍ୟାୟ)
"ପଣ୍ଡିତ ଆଗରେ ଏହା କେବେ ନ କହିବ" (୫ମ ଅଧ୍ୟାୟ)
"ଅତି ଗୁପତ ପ୍ରଘଟ ନ କର" (୭ମ ଅଧ୍ୟାୟ)
"ଦାମ୍ଭିକ ପଣ୍ଡିତେ ଥିବୁ ଲୁଚାଇ" (୧୧ଶ ଅଧ୍ୟାୟ)

ଅଚ୍ୟୁତାନନ୍ଦ, ବୋଧହୁଏ, ଜାଣିଥିଲେ ଯେ ତାଙ୍କ ରଚନାକୁ ବିଶ୍ୱାସ କରିବା ଲୋକ ମୂର୍ଖ ହିଁ ହେବ!

## ଗୁରୁ ପରଂପରାରୁ କାଳନିର୍ଣ୍ଣୟ

ଶୂନ୍ୟ ସଂହିତାର ଗ୍ରନ୍ଥାରମ୍ଭରେ ଅଚ୍ୟୁତାନନ୍ଦ ତାଙ୍କ ଗୁରୁ ପରଂପରାଟିକୁ ନିମ୍ନ ପ୍ରକାରେ ପ୍ରକାଶ କରିଛନ୍ତି। ଅଚ୍ୟୁତାନନ୍ଦଙ୍କ ଗୁରୁ ସନାତନ, ସନାତନଙ୍କ ଗୁରୁ କେଶବ କେଶବଙ୍କ ଗୁରୁ ରାମକୃଷ୍ଣ, ରାମକୃଷ୍ଣଙ୍କ ଗୁରୁ ଶ୍ୟାମ ଘୋଷ, ଶ୍ୟାମଘୋଷଙ୍କ ଗୁରୁ ସାରଙ୍ଗ ଘୋଷ ଓ ସାରଙ୍ଗ ଘୋଷଙ୍କ ଗୁରୁ ଚୈତନ୍ୟ। ଏମାନେ ମଧ୍ୱାଚାର୍ଯ୍ୟ ପନ୍ଥାର। ଏହି ଗୁରୁ ପରଂପରାଟି ଅଚ୍ୟୁତାନନ୍ଦଙ୍କ ଗୁରୁଭକ୍ତିଗୀତାର ୧ମ ଅଧ୍ୟାୟରେ ମଧ୍ୟ ପ୍ରଦତ୍ତ ହୋଇଛି। ପାର୍ଥକ୍ୟ ଏତିକି, ସତାନଙ୍କ ଗୁରୁଙ୍କ ନାମ ଶୂନ୍ୟସଂହିତାରେ କେଶବ କିନ୍ତୁ ଗୁରୁ ଭକ୍ତିଗୀତାରେ ନବକିଶୋର। ଅନୁମିତ ହୋଇପାରେ ଶୂନ୍ୟସଂହିତାରେ ମୂଳରେ 'କିଶୋର' ଲେଖାଥିଲା କିନ୍ତୁ ଅନୁଲେଖକ ତାହାକୁ କେଶବ ବୋଲି ଭୁଲରେ ପଢ଼ିଲା। ସେ ଯାହାହେଉ, ଚୈତନ୍ୟ ଓ ଅଚ୍ୟୁତାନନ୍ଦଙ୍କ ମଧ୍ୟରେ ଗୁରୁ ପ୍ରଣାଳୀରେ ଛଅ ପୁରୁଷର ବ୍ୟବଧାନ ରହିଛି। କବି ଦାଶରଥି ଦାସ ଖ୍ରୀ. ୧୭୩୧ରେ ସାରିଥିବା 'ବ୍ରଜବିହାର'ର ତୃତୀୟ ବୋଲିରେ ନିଜର ଗୁରୁପରଂପରା ଦେଇଛନ୍ତି ଓ ସେଥିରେ ମଧ୍ୟ ଚୈତନ୍ୟ ଓ ଦାଶରଥି ଦାସଙ୍କ ମଧ୍ୟରେ ଛଅ ପରୁଷ ଗୁରୁଙ୍କ ବ୍ୟବଧାନ ରହିଛି:-

୧. ଚୈତନ୍ୟ ୨. ବକ୍ରେଶ୍ୱର ୩. ଗୋପାଳଗୁରୁ ୪. ଧ୍ୟାନାନନ୍ଦ ୫. ପୁରୁଷୋତ୍ତମ ୬. କୃଷ୍ଣ ଦାସ ୭. ଦାଶରଥି (କବି)। ଛଅ ପୁରୁଷ ଗୁରୁଙ୍କ ବ୍ୟବଧାନ ଯୋଗୁଁ ଅଚ୍ୟୁତାନନ୍ଦ ମଧ୍ୟ ଦାଶରଥି ଦାସଙ୍କ ପରି ଅଷ୍ଟାଦଶ ଶତାବ୍ଦୀର ବ୍ୟକ୍ତି ହେବେ। ଅଚ୍ୟୁତାନନ୍ଦ ନିଜକୁ ଚୈତନ୍ୟଙ୍କ ସମୟର ବୋଲି ଦାବି କଲେହେଁ ମଝିରେ ଛଅ ପୁରୁଷ ଗୁରୁଙ୍କ ବ୍ୟବଧାନକୁ ସ୍ୱୀକାର କରିବାର କାରଣ ଏହା ହିଁ ହୋଇପାରେ ଯେ ଗୁରୁ ପ୍ରଣାଳୀଟିକୁ ଅସ୍ୱୀକାର କରିବା ଜଣେ ଧର୍ମ ପ୍ରଚାରକ ପକ୍ଷେ ସମ୍ଭବ ନୁହେଁ। କିନ୍ତୁ, ପରବର୍ତ୍ତୀ କାଳରେ ଏହି ଗୁରୁପ୍ରଣାଳୀ ଯୋଗୁଁ ଗୁରୁଙ୍କ ଦାବିର ଅଳୀକତା ଧରା ପଡ଼ିଯିବା ଆଶଙ୍କା ଜନ୍ମିବା ହେତୁରୁ ଅଚ୍ୟୁତାନନ୍ଦଙ୍କ ଶିଷ୍ୟମାନେ ଗୁରୁଙ୍କୁ ସୁରକ୍ଷା ଦେବା ପାଇଁ ଗୁରୁ ପ୍ରଣାଳୀକୁ ଲୋପ କରି ସ୍ୱୟଂ ଚୈତନ୍ୟ ଅଚ୍ୟୁତାନନ୍ଦଙ୍କୁ କର୍ଣ୍ଣମନ୍ତ୍ର ଦେବା କଥା ଗୁରୁଭକ୍ତି ଗୀତାର ତୃତୀୟ ଖଣ୍ଡର ନବମ-ଦଶମ ପଟଳରେ ଲେଖିଛନ୍ତି।

**ଶୂନ୍ୟ ସଂହିତାରେ ଯଦୁବଂଶ**

ଶୂନ୍ୟ ସଂହିତାର ୨୩ ଅଧ୍ୟାୟରେ ଲେଖା ଅଛି ଯେ କୃଷ୍ଣ ଦାରୁରୂପରେ ନିଜ ବଂଶ ଦ୍ୱାରା ପୂଜାପାଇବେ। କୃଷ୍ଣଙ୍କ ବଚନ ଭାବରେ ଲେଖାଅଛି :-

"ମୋହବଂଶ ମୋତେ ନିରତେ ପୂଜିବେ ନିଯୋଗ ଦେବେ ଯୋଗାଇ"

ଖୋରଧାର ରାମଚନ୍ଦ୍ର ଦେବଙ୍କ ବଂଶଜମାନେ ଯଦୁବଂଶ ନାମରେ ଅଭିହିତ ଥିଲେ : 'ଯଦୁବଂଶ ରାଜାଏ ଏଣେ ଉଦିତ ହୋଇଲେ' (ମାଦଳା ପାଞ୍ଜୀ ପ୍ରାଚୀ ୧୮)। ଉଦ୍ଧୃତିର 'ମୋହବଂଶ' ଯଦୁବଂଶକୁ ସୂଚାଉଛି ତେଣୁ ରଚନାକାଳ ଖ୍ରୀ.୧୫୯୨ର ପରବର୍ତ୍ତୀ।

**ଗୁରୁଭକ୍ତିଗୀତାକାରଙ୍କ ଚରିତ**

ଅଚ୍ୟୁତାନନ୍ଦ ଭଣିତିଯୁକ୍ତ ଗୁରୁଭକ୍ତିଗୀତା ତିନି ଖଣ୍ଡରେ ବିଭକ୍ତ। ଭଣିତିର ସମାନତା ସତ୍ତ୍ୱେ ଖଣ୍ଡଗୁଡ଼ିକ ଏକା ସମୟର ରଚନା ନୁହେଁ। ପ୍ରଥମ ଖଣ୍ଡରେ ୬୨ଟି ଛାନ୍ଦ। ଦ୍ୱିତୀୟରେ ୧୮ ପଟଳ (ଛାନ୍ଦ) ଓ ତୃତୀୟରେ ୫୪ଟି ପଟଳ ରହିଛି।

ଏହାର ପ୍ରଥମ ଖଣ୍ଡର ୧୮ ଅଧ୍ୟାୟରେ ଅଚ୍ୟୁତାନନ୍ଦ ତାଙ୍କର ଗୁରୁପ୍ରଣାଳୀ ସହିତ ଶିଷ୍ୟ ପ୍ରଶିଷ୍ୟଙ୍କ ନାମ ଜଣାଇଛନ୍ତି (ନାମଗୁଡ଼ିକୁ ମୁଁ ଅଧୋରେଖାଙ୍କିତ କରିଛି) :-

ଏ ନାମ ଚୈତନ୍ୟ ଠାକୁର। ସାରଙ୍ଗ ଗୋସାଇଁ କର୍ଣ୍ଣର ।।
ଶ୍ୟାମ ଗୋସାଇଁ କର୍ଣ୍ଣମୂଳେ। ସାରଙ୍ଗ ଗୋସାଇଁ କହିଲେ ।।
ରାମକୃଷ୍ଣ ଯେ ଗୋସାଇଁରେ। ଶ୍ୟାମ ଗୋସାଇଁ କୃପାକରେ ।।
ନବକିଶୋର କର୍ଣ୍ଣମୂଳେ। ରାମକୃଷ୍ଣ ଯେ ଗୁରୁ ଦେଲେ ।।
ସନାତନ ଯେ ଦାସକୁ ହିଁ। ନବକିଶୋର ଦେଲେ କହି ।।
ମୁଁ ଅଟେ ଅଚ୍ୟୁତ ଯେ ଦେହୀ। ସନାତନ ଯେ କୃପା ହୋଇ ।।
ଅଚ୍ୟୁତାନନ୍ଦ ମୁହିଁ ପୁଣ। କହିଲି ଯେ ରାମ କର୍ଣ୍ଣେଣ ।।
ରାମ କହିଲେ ମୁକୁନ୍ଦରେ। ରାହାସଗୋପାଳ କର୍ଣ୍ଣେତେ ।।

ଏହି ଗୁରୁପ୍ରଣାଳୀରେ ଅଚ୍ୟୁତାନନ୍ଦଙ୍କ ପ୍ରଶିଷ୍ୟ ମୁକୁନ୍ଦ ଓ ରାହାସଗୋପାଳଙ୍କ ନାମ ଥିବାରୁ ଏହା ଶୂନ୍ୟସଂହିତାର ପରବର୍ତ୍ତୀ ବୋଲି ଅନୁମିତ ହୁଏ। ଶୂନ୍ୟ ସଂହିତାରେ ଅଚ୍ୟୁତଙ୍କ ପରମଗୁରୁଙ୍କ ନାମ କେଶବ ଥିବା ସ୍ଥଳେ ଏଠାରେ ନବ କିଶୋର। ମୋର ଅନୁମାନ ଅନୁଲେଖକ କିଶୋର (ନବକିଶୋରର ସଂକ୍ଷିପ୍ତରୂପ)କୁ କେଶବ ବୋଲି ପଢ଼ିଛି।

ଗୁରୁ ଭକ୍ତିଗୀତାକାରଙ୍କ ଜନ୍ମସ୍ଥାନ ନେମାଳର ଉତ୍ତର ଦିଗସ୍ଥ ସୁହାଙ୍ଗ ଯାହା ଚିତ୍ରୋତ୍ପଳା ନଦୀର ତୀରବର୍ତ୍ତୀ ବୋଲି ଲେଖାଅଛି (ଅନ୍ୟତ୍ର ୨୦ ଛାନ୍ଦରେ ଚିତ୍ରୋତ୍ପଳାର ନାମ ଚିତ୍ରାଙ୍ଗୀ ବୋଲି ଲେଖାଅଛି) :-

ଚିତ୍ରଉତ୍ପଳା ନଦୀ ତୀର। ସୁହାଙ୍ଗ ନେମାଳ ଉତ୍ତର।।
ସେ ସ୍ଥଳେ ଜନମ ଲଭିଲି। ଦୀନ ଅଚ୍ୟୁତ ଭାବେ ଭୁଲି।।

ଅଚ୍ୟୁତ 'ଭାବ'ରେ ଜନ୍ମସ୍ଥାନକୁ ଭୁଲି ଯାଇଥିବା ସ୍ୱୀକାର କରୁଛନ୍ତି। କିନ୍ତୁ, ତିଳକଣା, ତ୍ରିପୁର ଓ ସୁହାଙ୍ଗ ଏତିନି ମଧ୍ୟରୁ କେଉଟି ଠିକ୍ କି ସବୁଗୁଡ଼ିକ ଭୁଲ୍ ତାହା ଅନ୍ୟ କେହି କହିବା ଅସମ୍ଭବ। ତେବେ, ଗୋଟିଏ କଥା ସ୍ୱୀକାର୍ଯ୍ୟ ସତ କହିବା ଲୋକ ସବୁବେଳେ ଏକାପରି କହିବାକୁ ବାଧ୍ୟ, କିନ୍ତୁ ମିଛ କହିବା ଲୋକର ସ୍ୱାଧୀନତା ଅଛି ଯେ ଯେତେବେଳେ ଯାହା ପାରି ତାହା କହିପାରେ।

ଅଷ୍ଟମ ଅଧ୍ୟାୟରେ ଅଚ୍ୟୁତାନନ୍ଦଙ୍କ ଗୁରୁ ସନାତନଙ୍କ ବାସସ୍ଥାନ ଦୋଲି ଗ୍ରାମ ଓ ଅଚ୍ୟୁତାନନ୍ଦଙ୍କ ଛଡ଼ା ତାଙ୍କର ଅନ୍ୟ କେହି ଶିଷ୍ୟ ନ ଥିବା କଥା ଜଣାଇ ଦିଆଯାଇଛି। ସନାତନଙ୍କ ସମାଧି ପୁରୀର ଭଜନ କୁଟୀ ନିକଟରେ ବୋଲି ଜଣାଇ ଦିଆଯାଇଛି। ଏଠାରେ ଅଚ୍ୟୁତାନନ୍ଦଙ୍କର ସ୍ମରଣ ହୋଇଛି ଯେ ସେ ପୂର୍ବରୁ ଗୁରୁଙ୍କ ନାମ ସନାତନ ବୋଲି ଲେଖିଥିଲେହେଁ ତାଙ୍କର ପ୍ରକୃତ ନାମ ଶ୍ରୀ ଚରଣ ଦାସ : "ସନାତନ ନାମ ତାଙ୍କ ଶ୍ରୀଚରଣ ଦାସ" (୧୦ମ ଛାନ୍ଦ)।

ଗୁରୁ ଭକ୍ତିଗୀତାକାର ନିଜେ ଚୈତନ୍ୟଙ୍କ ପାଖରେ 'ସୁନ୍ଦରାନନ୍ଦ' ଭାବରେ ରହିଥିବା ଓ ପରେ ଓଡ଼ରାଷ୍ଟ୍ରର ନେମ୍ଭାଳ-ସ୍ଥଳରେ (ତିଳକଣା, ତ୍ରିପୁର ଓ ସୁହାଙ୍ଗକୁ ଭୁଲିଯାଇ) ଜନ୍ମଲାଭ କରିବାପାଇଁ ଆଜ୍ଞା ପାଇଥିବା କଥା ଜଣାଇଛନ୍ତି।

ସୁନ୍ଦରାନନ୍ଦ ହୋଇଲି ଚଇତନ୍ୟ ଠାରେ। ସେ ଜନ୍ମ ଅନ୍ତର କଲୁ ଗୋଲକ ହେତୁରେ।।
ନୀଳାଚଳ ଭଜନରେ ଠାକୁର ଅନ୍ତର। ଆଜ୍ଞା କଲେ ସୁନ୍ଦରାନନ୍ଦ ହେ ହେତୁ କର।।
ଏହୁ ଓଡ଼ରାଷ୍ଟ୍ରେ ବଡ଼ ଅଟନ୍ତି ଯେ ମେଳ। ତୁମ୍ଭେ ଜାତ ହୁଅ ଏବେ ନେମ୍ଭାଳ ଯେ ସ୍ଥଳ।।(୨୫ ଛାନ୍ଦ)

ତ୍ରିଂଶ ଅଧ୍ୟାୟରେ ଅଚ୍ୟୁତାନନ୍ଦଙ୍କର ଉପର ୬୯ ପୁରୁଷ ଓ ତଳ ଦୁଇ ପୁରୁଷ ଶିଷ୍ୟଙ୍କ ଦୀର୍ଘ ତାଲିକା ଦିଆଯାଇଛି। ପ୍ରଥମ ଅଧ୍ୟାୟର ଗୁରୁ ତାଲିକାଠାରୁ ଏହାର ପାର୍ଥକ୍ୟ ହେଲା ଏଠାରେ ଅଚ୍ୟୁତାନନ୍ଦଙ୍କ ଗୁରୁଙ୍କ ନାମ ଶ୍ରୀଚରଣ ଗୋସାଇଁ ରହିଛି।

ଫଳରେ ଅଚ୍ୟୁତାନନ୍ଦ ଶୂନ୍ୟ ସଂହିତାରେ ଦେଇଥିବା ଗୁରୁ ଓ ପରମଗୁରୁଙ୍କ ନାମକୁ ଏଠାରେ ସ୍ଥାନ ଦେଇନାହାନ୍ତି। ଏହା କଣ 'ଭାବେଭୁଲି'? ଏହି ଅଧ୍ୟାୟରେ ଅଚ୍ୟୁତାନନ୍ଦ ଆତ୍ମପରିଚୟ ଦେଇ କହିଛନ୍ତି :-

ଶ୍ରୀ ଚରଣ ଗୋସାଇଁଙ୍କ ଚରଣକୁ ଆଶ। ଗୁରୁଙ୍କୁ ପ୍ରଣାମ ତାଙ୍କ ମୁଖରୁ ପ୍ରକାଶ ॥
ସେ ଯାହା କହିଲେ ମୁଖେ ତାହା ମୁଁ ଲେଖିଲି। ତିଳକଣା ଗ୍ରାମରେ ମୁଁ ଉପଦେଶୀ ହେଲି ॥
ଦୀନବନ୍ଧୁ ଖୁଣ୍ଟିଆ ଯେ ମୋହର ପିଅର। ଶୁଦ୍ରାନାରୀ ପଦ୍ମାମାତା ଅଟନ୍ତି ମୋହର ॥
ଲବଣଧାର ଚିତ୍ର ଉତ୍ପଳାର ତୀର। ପଦ୍ମବନ ଲେମ୍ବାଳ ତହିଁ ମୋର ଆଳ ॥

ଉଦ୍ଧୃତିର ପ୍ରଥମ ପଦର 'ଗୁରୁଙ୍କୁ ପ୍ରଣାମ'ର ଶୁଦ୍ଧ ପାଠ 'ଗୁରୁଙ୍କ ପ୍ରଣାଳୀ' ହେବା ଅନୁମେୟ। ଶୂନ୍ୟ ସଂହିତାକାରଙ୍କ ପିତାମାତଙ୍କ ନାମ ଗୁରୁଭକ୍ତିଗୀତାର ପିତାମାତଙ୍କ ନାମ ସହିତ ମିଳି ଯାଉଥିବାରୁ ଉଭୟ ଗ୍ରନ୍ଥର ପ୍ରଣେତା ଜଣେ ବୋଲି ଜଣାଉ ଦିଆଯାଉଛି। ଅଥଚ ଗୁରୁ ପରମଗୁରୁଙ୍କ ନାମ ଓ ଉପଦେଶ ସ୍ଥଳର ନାମ ଭିନ୍ନ ଭାବରେ ପ୍ରଦତ୍ତ ହେଉଛି। ମନ୍ତ୍ରୋପଦେଶ ଚରିତ ସତ୍ୟ ହୋଇଥିଲେ ବିବରଣ ପୃଥକ୍ ହୁଅନ୍ତା ନାହିଁ।

ଗୁରୁଭକ୍ତିଗୀତାର ତୃତୀୟ ଖଣ୍ଡର ଦଶମ ପଟଳରେ ଅଚ୍ୟୁତାନନ୍ଦ ତାଙ୍କ ଜୀବନଚରିତରେ ଆଉ କିଛି ପରିବର୍ତ୍ତନ ଆଣିବା ଆବଶ୍ୟକ ବୋଧ କରିଛନ୍ତି। ତଦନୁସାରେ :-

ଚିତ୍ରୋତ୍ପଳନଦୀରୁ ବାହାରିଥିବା ଲୁଣାଧାର କୂଳରେ 'ତିଳକଣା ନଗର'। ଏଠାରେ ମୋ ପିତା ଦୀନବନ୍ଧୁ ଓ ମାତା ପଦ୍ମାଙ୍କ ନିବାସ। ମୁଁ ଓସ୍ତଗଛ ମୂଳରେ ଚାରିଜଣ ସହପାଠୀଙ୍କ ସହିତ ଥିବାବେଳେ ଗୌରସୁନ୍ଦର ସେଠାରେ ଉପସ୍ଥିତ ହେଲେ। ସେ ମୋର ପିତାଙ୍କୁ ଡକାଇଲେ। ପିତା ଆସିବାରୁ ପିତାଙ୍କୁ କହିଲେ ଯେ ସେ ମୋତେ ଦୀକ୍ଷା ଦେବାକୁ ଚାହୁଁଛନ୍ତି। ପିତା ସମ୍ମତ ହେବାରୁ ସେ ମୋତେ ହରିନାମ ଦେଲେ। ପିତା ତାଙ୍କର ପରିଚୟ ଜିଜ୍ଞାସା କଲେ। ସେ ଜଣାଇଲେ :-

ଆମ୍ଭ ଅଟୁ ଶଚୀସୁତ ଚୈତନ୍ୟଠାକୁର। ଶରଧା ବଳିଲା ଆମ୍ଭ ପୁତ୍ରଠାରେ ତୋର ॥
ଅନ୍ତରୀକ୍ଷେ ନୀଳଗିରିଠାବରୁ ଅଇଲୁ। ଓଡ୍ରରାଷ୍ଟ୍ର ଉଦ୍ଧାରଣେ ଏ ପୁତ୍ରକୁ କଲୁ ॥

ଚୈତନ୍ୟ ତାଙ୍କର ଷଡ଼ଭୁଜ ରୂପ ଦେଖାଇଲେ। ଅଚ୍ୟୁତାନନ୍ଦ ଏଠାରେ ପୂର୍ବେ ପ୍ରଦତ୍ତ ଗୁରୁ ପ୍ରଣାଳୀଗୁଡ଼ିକୁ ରଦ୍ଦ କରି, ଚୈତନ୍ୟ ଓ ତାଙ୍କ ମଧ୍ୟର ପାଞ୍ଚ ପୁରୁଷ (ସାରଙ୍ଗ, ଶ୍ୟାମ, ରାମକୃଷ୍ଣ, କେଶବ ବା ନବକିଶୋର ଓ ସନାତନ ବା ଶ୍ରୀ ଚରଣ) ଗୁରୁଙ୍କୁ ଉଚ୍ଛେଦ କରି ନିଜକୁ ଚୈତନ୍ୟଙ୍କ ଖୋଦ୍ ଶିଷ୍ୟ କରାଇଛନ୍ତି :

"ଆମ୍ଭେ ଗୁରୁ ଗୋରାଚାନ୍ଦ ରାମ ଆମ୍ଭ ଶିଷ୍ୟ" (୧୦ମ ପଟଳ)।

ଅଚ୍ୟୁତାନନ୍ଦଙ୍କ ପିତାମାତା ବଦଳୁ ନାହାନ୍ତି କିନ୍ତୁ ଅନ୍ୟାନ୍ୟ ବିବରଣ ବଦଳୁଛି, କାରଣ ପିତାମାତା ହିଁ ସତ୍ୟ, ବାକି ସବୁ ମିଛ। ଗ୍ରନ୍ଥ ପ୍ରକାଶ ପାଇଲେ ମିଛ ଧରା ପଡ଼ିଯିବା ଆଶଙ୍କା ଥିବାରୁ ଅଚ୍ୟୁତାନନ୍ଦ ଶୂନ୍ୟସଂହିତା ପରି ଗୁରୁ ଭକ୍ତିଗୀତାକୁ ମଧ୍ୟ ପ୍ରଚାର ନ କରିବା ଲାଗି ବାରଂବାର ଆଜ୍ଞା ଦେଇଛନ୍ତି :-

"ଗୁପତ କରିଣ ରଖିବ" (ପଞ୍ଚମ ଛାନ୍ଦ)।

ଗୁପତ ଗୁପତ ଗୁପତ, ଏ କେବେହେଁ ନ କର ଉକତ ।। (ଷଷ୍ଠଛାନ୍ଦ)।

ଗୁପତ ଗୁପତ ଏହୁ ଅତି ଏ ଗୁପତ (ଷୋଡ଼ଶ ଛନ୍ଦ)।

'ମହାପୁରୁଷ' ଅଚ୍ୟୁତାନନ୍ଦଙ୍କ ଏପରି ସ୍ପଷ୍ଟ ନିଷେଧାଦେଶକୁ ଅବଜ୍ଞା କରି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କର ଗୋପନୀୟ ଗ୍ରନ୍ଥଗୁଡ଼ିକୁ ପ୍ରକାଶିତ କରାଇ କିଛି ଭଲ କାମ କରିନାହାନ୍ତି।

**ଜଗନ୍ନାଥ ଦାସ ବହିଷ୍କୃତ**

ଶୂନ୍ୟ ସଂହିତା ଓ ଗୁରୁ ଭକ୍ତିଗୀତାର ଆଦ୍ୟାଂଶ ଗୁଡ଼ିକ ଏକା ଲୋକର କିନ୍ତୁ ଏକା ସମୟର ରଚନା ନୁହେଁ। ଆଗେ ଶୂନ୍ୟସଂହିତା ଲେଖାହେଲା, ପଛେ ଗୁରୁଭକ୍ତିଗୀତା। 'ଶୂନ୍ୟସଂହିତା'ର ପଞ୍ଚସଖା ଗୁରୁଭକ୍ତିଗୀତାରେ ନାହାନ୍ତି, ପଞ୍ଚସଖା ବଦଳେ ସେଠି ମାତ୍ର ଚାରିସଖା ଅଛନ୍ତି। ପଞ୍ଚସଖା ମଧ୍ୟରେ ଜଣେ ଜଗନ୍ନାଥ ଦାସ ଥିଲେ, ତାଙ୍କର ଜାତି କଣ ଥିଲା ତାହା ଶୂନ୍ୟସଂହତାରେ ଲେଖା ନଥିଲେ ହେଁ ଚୈତନ୍ୟଙ୍କ ସମୟର ବ୍ରାହ୍ମଣ ଅତିବଡ଼ ଜଗନ୍ନାଥ ଭାବରେ ତାଙ୍କୁ ଗଣାଯିବା ସମ୍ଭାବନା ଥିଲା। ଗୁରୁଭକ୍ତିଗୀତାରେ ତାଙ୍କୁ ବାଦ୍ ଦିଆଯାଇ ଚାରିସଖାଙ୍କୁ ରଖାଗଲା।

ଶ୍ରୀ ଚୈତନ୍ୟ କଳିଯୁଗେ କୃଷ୍ଣହେଲେ ଜାତ।
ତାଙ୍କ ସଙ୍ଗେ ଚାରିସଖା ହୋଇଲୁ ଯେ ଜାତ ।।

ଗୁରୁଭକ୍ତିଗୀତାର ୩୨ ଅଧ୍ୟାୟରେ ଅଚ୍ୟୁତାନନ୍ଦ ଲେଖିଛନ୍ତି ଯେ ଏହିଚାରି ସଖା ଭିନ୍ନ ଭିନ୍ନ ଯୁଗରେ ଭିନ୍ନ ଭିନ୍ନ ବ୍ୟକ୍ତିଥିଲେ ଓ ସେମାନଙ୍କର ବୈଷ୍ଣବ ମତ ପୃଥକ୍ ସଂପ୍ରଦାୟ ଅନୁସାରୀ ଥିଲା। ନିମ୍ନ ତଥ୍ୟଫର୍ଦ୍ଦରେ ତାହା ସୂଚିତ ହେଉଛି :-

| ୧ | ୨ | ୩ | ୪ | ୫ | ୬ |
|---|---|---|---|---|---|
| ଚାରି ସଖା (କଳି) | ଚୈତନ୍ୟସଖା | କୃଷ୍ଣସଖା (ଦ୍ୱାପର) | ରାମସଖା (ତ୍ରେତା) | ନାରାୟଣ (ସତ୍ୟ) | ବୈଷ୍ଣବ ସଂପ୍ରଦାୟ |
| ୧. ବଳରାମ | ଗୌରୀଦାସ | ସୁବଳ | ସୁଷେଣ | ମାର୍କଣ୍ଡ | ବିଷ୍ଣୁସ୍ୱାମୀ |
| ୨. ଅଚ୍ୟୁତାନନ୍ଦ | ସୁନ୍ଦରାନନ୍ଦ | ସୁଦାମ | ନଳ | କୃପାଜଳ | ନିମାନନ୍ଦ |
| ୩. ଯଶୋବନ୍ତ | ଉଦ୍ଧବଦତ୍ତ | ସୁବାହୁ | ଜାମ୍ବବ | ଗାର୍ଗବ | ମଧ୍ୱାଚାର୍ଯ୍ୟ |
| ୪. ଶିଶୁଅନନ୍ତ | ଅଭିରାମ | ଦାମ | ନୀଳ | ନାରଦ | ରାମାନନ୍ଦ |

ଅଚ୍ୟୁତାନନ୍ଦ 'ଶୂନ୍ୟସଂହିତା'ରେ 'ପଞ୍ଚସଖା' ପ୍ରପଞ୍ଚ ଗଢ଼ିବା ପରେ ଗୁରୁଭକ୍ତି ଗୀତାରେ ସଖାପଞ୍ଚକ ମଧ୍ୟରୁ ଜଣକୁ ବାଦ୍ ଦେଇ 'ଚାରିସଖା' ତତ୍ତ୍ୱ ଉପସ୍ଥାପନ

କରିବା ତାତ୍ପର୍ଯ୍ୟ ପୂର୍ଣ୍ଣ। ଅଚ୍ୟୁତାନନ୍ଦ ତ୍ରିକାଳଦର୍ଶୀ ବୋଲି ଡିଣ୍ଡିମ ପିଟୁଥିବା ଆଲୋଚକମାନେ କହିପାରନ୍ତି ଯେ କାଳେ ଡଃ ନଟବର ସାମନ୍ତରାୟ 'ସଖାହୀନ ପଞ୍ଚସଖା' ପୁସ୍ତକ ଲେଖି ସଖାମାନଙ୍କ ସମକାଳୀନ ବିଦ୍ୟମାନତାକୁ ଅସ୍ୱୀକାର କଲେହେଁ ଅତିବଡ଼ ଜଗନ୍ନାଥ ଦାସଙ୍କ ପନ୍ଥାବଲମ୍ବୀ ଦିବାକର ଦାସଙ୍କ ମତକୁ ଅସଲି ପଞ୍ଚସଖା ମୋହର ମାରି ଚଳାଇ ଦେବେ ବୋଲି ଜାଣିପାରି 'ମୂଳୁ ମାଇଲେ ଯିବ ସରି' ବିଚାରି ଜଗନ୍ନାଥ ଦାସଙ୍କୁ ପଞ୍ଚସଖାରୁ ବହିଷ୍କାର କରି ଦେଲେ ଓ ଅବଶିଷ୍ଟ ଚାରି ସଖା ଚାରି ପୃଥକ୍ ବୈଷ୍ଣବ ଶାଖାର ବୋଲି ନିର୍ଣ୍ଣୟ କଲେ। କିନ୍ତୁ, ଅଚ୍ୟୁତାନନ୍ଦ ଜଣେ ପ୍ରବଞ୍ଚକ ବୋଲି ନିଷ୍କର୍ଷରେ ପହଞ୍ଚିବା ଏହି ଲେଖକର ନିର୍ଣ୍ଣୟ ତାହା ନୁହେଁ। ଅତିବଡ଼ ଜଗନ୍ନାଥ ଦାସ ଅତିବଡ଼ୀ ବୈଷ୍ଣବ ସଂପ୍ରଦାୟର ପ୍ରବର୍ତ୍ତକ ଭାବରେ ଓଡ଼ିଶାରେ ସୁପରିଚିତ ଥିଲେ। ଯେତେବେଳେ ଅଚ୍ୟୁତାନନ୍ଦ ଗୋପାଳ ବୈଷ୍ଣବ ସଂପ୍ରଦାୟର ପ୍ରବର୍ତ୍ତନ ବେଳେ 'ପଞ୍ଚସଖା' ଧାରଣା ସୃଷ୍ଟି କଲେ ସେ ନିଜକୁ ଅତିବଡ଼ଙ୍କ ଅପେକ୍ଷା ଚୈତନ୍ୟଙ୍କ ଅଧିକ ନିକଟତର ବୋଲି ଦେଖାଇବାକୁ ଜଗନ୍ନାଥ ନାମଟିକୁ ପଞ୍ଚସଖାରେ ରଖିଥିଲେ। ଅତିବଡ଼ଙ୍କୁ ପଞ୍ଚସଖା ରଜ୍ଜୁରେ ବାନ୍ଧିବା ପାଇଁ ଉଦ୍ୟମ ହେଉଥିବାର ସନ୍ଦେହ କରି ଅତିବଡ଼ୀ ବୈଷ୍ଣବମାନେ ପ୍ରତିବାଦୀ ହେବାରୁ ବା ପ୍ରତିବାଦର ଆଶଙ୍କା ଥିବାରୁ ଜଗନ୍ନାଥ ଦାସଙ୍କୁ ପଞ୍ଚସଖାରୁ ନିଷ୍କୃତି ଦିଆଯାଇଥାଇ ପାରେ। ଅତିବଡ଼ୀଙ୍କ ଗ୍ରନ୍ଥ ଜଗନ୍ନାଥାମୃତ ପଞ୍ଚସଖା ତତ୍ତ୍ୱର ପରିପନ୍ଥକ ହେବା ଯୋଗୁଁ ଜଗନ୍ନାଥଙ୍କୁ ଛାଡ଼ିବାକୁ ହିଁ ପଡ଼ିଥିବ। ଏ କଥାର ସୂଚନା ଗୁରୁଭକ୍ତିଗୀତା (୨/୧୩୦)ରେ ନିମ୍ନରୂପରେ ରହିଛି:-

ପଞ୍ଚସଖା ଏକ ସଖା ନ ଜାଣେ ଏ ରସ। ଶୂନ୍ୟରାହାସରେ ଆମ୍ଭ ବଳିଲା ମୁହାଁସ।।

ଏହାର ଅର୍ଥ ପଞ୍ଚସଖାରୁ ଜଣେ (ଅର୍ଥାତ୍ ଜଗନ୍ନାଥ ଦାସ) ଶୂନ୍ୟରାସ ବିଷୟ ଜାଣନ୍ତି ନାହିଁ, ଆମେ ଅବଶିଷ୍ଟ ଚାରି ଜଣ ସେଥିପ୍ରତି ଆକୃଷ୍ଟ। ଏହି ଚାରିଜଣ ମଧ୍ୟରୁ ଅଚ୍ୟୁତାନନ୍ଦଙ୍କୁ ଛାଡ଼ିଲେ ଅନ୍ୟ କାହାରି ପୃଥକ୍ ଧର୍ମ ସଂପ୍ରଦାୟ ନ ଥିବାରୁ ସେମାନଙ୍କ ମୃତ ବିଷୟରେ ଅଚ୍ୟୁତାନନ୍ଦ ଯାହା କିଛି କହିଲେ ପ୍ରତିବାଦର ଆଶଂକା ନଥିଲା। ଗୁରୁଭକ୍ତିଗୀତା (୧/୩୩)ରେ ଜଣାଇ ଦିଆଯାଇଛି :-

"ଶିଶୁ ଯେ ଅଚ୍ୟୁତ ଯଶୋବନ୍ତ ବଳରାମ। ଶୂଦ୍ରକୁଳ ଉଦ୍ଧାରିବୁ ଆମ୍ଭେ ଚାରିଜନ।।"

ଅଚ୍ୟୁତାନନ୍ଦ ପଞ୍ଚସଖାର ଜଗନ୍ନାଥ ବ୍ରାହ୍ମଣ ବୋଲି କୁତ୍ରାପି ଲେଖି ନଥିଲେ ହେଁ ବ୍ରାହ୍ମଣ ଜଗନ୍ନାଥ ଦାସହିଁ ଚୈତନ୍ୟଙ୍କ ସମୟର ବୋଲି ଜଣାଥିବାରୁ ପଞ୍ଚସଖାର ଜଗନ୍ନାଥ ଦାସ ବ୍ରାହ୍ମଣ ବୋଲି ପରବର୍ତ୍ତୀ ସମୟରେ ନିର୍ଦ୍ଧାରିତ ହୋଇଥିଲା।

ଗୁରୁଭକ୍ତି ଗୀତାର ୨ୟ ଖଣ୍ଡ ୯ମ ପଟଳରେ ବର୍ଣ୍ଣିତ ହୋଇଛି ଯେ ଅଚ୍ୟୁତଙ୍କ ଶିଷ୍ୟମାନେ ମଧ୍ୟ ନୀଳାଚଳ ଯାଇଥିବା ସମୟରେ ଚୈତନ୍ୟ ସେମାନଙ୍କୁ ସିଂହଦ୍ୱାର ନିକଟରେ ଖୋଳ-କରତାଳ ଧରାଇଥିଲେ। ଏହାର ତାତ୍ପର୍ଯ୍ୟ ହେଲା, ଚୈତନ୍ୟଙ୍କ ଜୀବଦ୍ଦଶାରେ ମଧ୍ୟ ଅଚ୍ୟୁତାନନ୍ଦ ଶିଷ୍ୟ ସଂଗ୍ରହ କରିସାରିଥିଲେ ବୋଲି କହାଯାଉଛି।

**ବିକଳ୍ପ ପଞ୍ଚସଖା**

ଗୁରୁଭକ୍ତିଗୀତା (୨/୧୬)ରେ ଶୂନ୍ୟ ସଂହିତାର ପଞ୍ଚସଖା ସ୍ଥାନରେ ଆଉଥାକେ ପଞ୍ଚସଖା ପ୍ରସ୍ତାବ ରହିଛି। ଏହି ଦ୍ୱିତୀୟ ପୀଢ଼ିର ପଞ୍ଚସଖା ସମସ୍ତେ ଏକମାତ୍ର ଅଚ୍ୟୁତାନନ୍ଦଙ୍କ ଶିଷ୍ୟ, ପ୍ରଥମ ପୀଢ଼ି ପଞ୍ଚସଖାର ଅନ୍ୟ କାହାର ଶିଷ୍ୟ ନୁହନ୍ତି। ପଞ୍ଚସଖା ପ୍ରପଞ୍ଚଟି ଉପରେ ତାହାର ଉଦ୍ଭାବକଙ୍କର ସ୍ୱତ୍ୱାଧିକାର ରହିବାର କଥା। ବିକଳ୍ପ ପଞ୍ଚସଖାଙ୍କ ନାମ ସହିତ ସ୍ଥାନର ପରିଚୟ ମଧ୍ୟ ସେଠାରେ ସୂଚାଇ ଦିଆଯାଇଛି। ସେମାନେ ହେଲେ:- ୧. ରାମ (ନେମ୍ପାଳ) ୨. ଭରତ (ଖଦିରବନ) ୩. ବକ୍ର (ଚନ୍ଦ୍ରଭାଗା), ୪. ଧର୍ମୁ (ଏକାମ୍ରକାନନ) ଓ ୫. ବିଷ୍ଣୁ (ବନଖଣ୍ଡି)। ଗୁରୁଭକ୍ତି ଗୀତାର ୩ୟ ଖଣ୍ଡରେ ମଧ୍ୟ ଏହି ଦ୍ୱିତୀୟ ଥାକ ପଞ୍ଚସଖାଙ୍କ ବିଷୟ ବର୍ଣ୍ଣିତ ହୋଇଛି ସିନା ଶୂନ୍ୟସଂହିତାର ପ୍ରଥମ ଥାକ ପଞ୍ଚସଖାଙ୍କ ବିଷୟ ଲେଖା ହୋଇନାହିଁ।

> "ଆମ୍ଭର ଯେ ପଞ୍ଚଶାଖା ତୁମ୍ଭେ ଥାଅ ଶୁଣି॥"
>
> "ରାମ, ଭ୍ରଥ, ଧର୍ମୁ ବିଷ୍ଣୁ, ବକ୍ର ପାଞ୍ଚଜଣ।"

ଶୂନ୍ୟସଂହିତାର ପଞ୍ଚସଖା ବିଷ୍ଣୁଙ୍କ ଅବତାର ଚୈତନ୍ୟଙ୍କର ସଖା ଥିଲେ। ଗୁରୁଭକ୍ତିଗୀତାର ୨ୟ ଥାକ ପଞ୍ଚସଖା ଅଚ୍ୟୁତାନନ୍ଦଙ୍କର ପଞ୍ଚସଖା। ପଞ୍ଚସଖାମାନେ ବିଷ୍ଣୁଙ୍କ ଅବତାରର ସଖା ବୋଲି ପୂର୍ବ ପ୍ରଚାର ସହିତ ଏହାକୁ ପଢ଼ିଲେ ଜଣାଯିବ ଯେ ଅଚ୍ୟୁତାନନ୍ଦ ନିଜର ପଦୋନ୍ନତି ଚୈତନ୍ୟ ସ୍ତରକୁ କରାଇ ଦେଇଛନ୍ତି।

**ଗୁରୁଭକ୍ତିଗୀତାର ରଚନାକାଳ**

ଗୁରୁଭକ୍ତିଗୀତାରେ କମାଇବା (ଅର୍ଜିବା ଅର୍ଥରେ), ହୁକୁମ, କାଗଜ, ଦରାଜ, ଖର୍ଚ୍ଚ, ପଖାଉଜ, ରବା (ବାଦ୍ୟଯନ୍ତ୍ର), ସେର, ମାଫିକେ, ଅମଳ, ଚଉକି, ହଜାର ଆଦି ବହୁ ସଂଖ୍ୟକ ଯାବନିକ ଶବ୍ଦର ପ୍ରୟୋଗ ମିଳେ। ଫଳରେ ଏହାର ରଚନା କାଳ ମୁସଲମାନ ଶାସନର ପୂର୍ବବର୍ତ୍ତୀ ହୋଇ ନପାରେ। ଏହାର ଭିନ୍ନ ଭିନ୍ନ ସ୍ଥାନରେ କେତେକ ଐତିହାସିକ ଘଟନାର ବର୍ଣ୍ଣନା ରହିଛି ଯାହା ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଘଟିଥିଲା।

*୧. ପ୍ରଥମ ଖଣ୍ଡ ୯ମ ଛାନ୍ଦରେ ଲେଖାଅଛି:-*

> ପ୍ରତାପ ନୃପତି ଯାଏଁ ପୂଜାର ଧାରଣା। ପ୍ରତାପ ଠାବରୁ ମୁକୁନ୍ଦରେ କିଛି ପୁଣ।
> ମୁକୁନ୍ଦ ଠାବରୁ ଦିବ୍ୟ କଳିର ବିଚାର। ଦିବ୍ୟ ଗୋପୀନାଥ କାଳେ ଅରଷ୍ଟିର ଗୋଳ॥

ଏଥିରେ ପ୍ରତାପ (ସୂର୍ଯ୍ୟବଂଶୀ ପ୍ରତାପରୁଦ୍ର ବା ଭୋଇ ଚକ୍ରପ୍ରତାପ), ମୁକୁନ୍ଦ (ଚାଲୁକ୍ୟ ମୁକୁନ୍ଦଦେବ ବା ଖୋରଧା ରାଜା ମୁକୁନ୍ଦଦେବ, ୧୬୫୭-୧୬୮୯), ଦିବ୍ୟ (ଦିବ୍ୟସିଂହ, ୧୬୮୯-୧୭୧୬) ଓ ଗୋପୀନାଥ (୧୭୨୦-୧୭୨୭) ସ୍ଥାନ ପାଇଥିବାରୁ ଏହାର ରଚନା କାଳ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ପୂର୍ବର ନୁହେଁ।

୨. ତୃତୀୟ ଖଣ୍ଡର ୮ମ ପଟଳରେ ଗୁରୁଭକ୍ତିଗୀତାର ରଚନାକାଳ ଲେଖାଅଛି :-
ହରେକୃଷ୍ଣ ବୋଲିଣ ଯେ ରାଜନ ହୋଇବ। ସେ ରାଜନ କାଳେ ଏହି ଗ୍ରନ୍ଥ ପ୍ରକାଶିବ ॥

ଏ ହରେକୃଷ୍ଣ ଖୋରଧା ରାଜା ହରେକୃଷ୍ଣ, ୧୭୧୬-୧୭୨୦। ପୂର୍ବରୁ ପ୍ରଥମ ଖଣ୍ଡରେ ହରେକୃଷ୍ଣଙ୍କ ଉତ୍ତରାଧିକାରୀ ଗୋପୀନାଥଙ୍କ ନାମ ସ୍ଥାନ ପାଇଥିବାରୁ ଗ୍ରନ୍ଥକୁ ପ୍ରାଚୀନ ପ୍ରତିପାଦିତ କରିବା ଲକ୍ଷ୍ୟରେ ଏପରି କାଳନିର୍ଦ୍ଧେଶ କରାଯାଇଥାଇପାରେ।

୩. ତୃତୀୟ ଖଣ୍ଡର ୯ମ ପଟଳରେ ବୀରକେଶରୀ ଦେବଙ୍କ ନାମ ରହିଛି ଯେ ଖ୍ରୀ. ୧୭୩୯ରେ ଖୋରଧା ରାଜା ହୋଇଥିଲେ।

କଳି ମଧ୍ୟେ ଯୁଗ୍ମ ମଧ୍ଯୁ ପଡ଼ିବ ଯେ ପୁଣ। ବୀରକିଶୋର ରାଜା ଯେ ହୋଇଥିବ ଜାଣ ॥
କଳଙ୍କି ଜନମ ହେବେ ସେକାଳେ ଗୋସାଇଁ। ମୁକୁନ୍ଦ ରାଜନ ହେବ ଏକଚାଳିଶହିଁ।

ଉଦ୍ଧୃତିର "ମୁକୁନ୍ଦ ରାଜନ ହେବ ଏକଚାରିଶହିଁ" ବୁଝି ହେଉନାହିଁ। କିନ୍ତୁ, ବୀରକେଶରୀଙ୍କ ନାମ ଥିବାରୁ ଏହାର ରଚନା ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ପୂର୍ବରେ ହୋଇ ନ ପାରେ।

୪. ପାରଳାଖେମୁଣ୍ଡିର ରାଜା ଜଗନ୍ନାଥ ନାରାୟଣ ଦେବ ଖ୍ରୀ. ୧୭୬୧ରେ ଖୋରଧା ଉପରେ ଚଢ଼ାଉ କରିଥିବା ବର୍ଣ୍ଣନା ଗୁରୁଭକ୍ତିଗୀତାର ୩ୟ ଖଣ୍ଡର ୯ମ ପଟଳରେ ରହିଛି :-

ବୀରକିଶୋର କାଳେ ଉତ୍କଳ ଯେ ଦେଶ।
ପଶ୍ଚିମ ଦିଗରେ ଘୋଡ଼ା ହୋଇବ ପ୍ରବେଶ ॥
ଦକ୍ଷିଣ ଦିଗୁଁ ଆସିବେ ତେଲଙ୍ଗା ଯେ ଜାଣ।
ଉତ୍ତର ଦିଗରେ ଜଗିଥିବେ ଯେ ପଠାଣ ॥

ଏଠାରେ ପାରଳାଖେମୁଣ୍ଡି ରାଜାଙ୍କୁ ତେଇଙ୍ଗା ବୋଲି କୁହାଯାଇଛି।

୫. ରାଜା ରାମଚନ୍ଦ୍ର (୧୭୨୭-୧୭୩୬)ଙ୍କ ମୃତ୍ୟୁ, ମରହଟ୍ଟା ଓଡ଼ିଶା ଅଧିକାର (୧୭୪୪) ଓ ବୀରକେଶରୀଙ୍କ ରାଜତ୍ୱ କଥା ତୃତୀୟଖଣ୍ଡର ୧୧ ପଟଳରେ ମଧ୍ୟ ବର୍ଣ୍ଣିତ ହୋଇଛି :-

ରାମଚନ୍ଦ୍ରର ଅଂଶ ଯିବ। ମରହଟ୍ଟାର ରାଜ୍ୟ ହେବ ॥୩୦॥
ବୀରକେଶରୀ ରାଜାଠାରୁ। କଳଙ୍କି ସଂସାର ବିହରୁ ॥୩୩॥

୬. ତୃତୀୟ ଖଣ୍ଡର ୪୨ ପଟଳରେ ଖୋରଧା ରାଜା ରାମଚନ୍ଦ୍ର (୧୮୧୭-୧୮୫୫)ଙ୍କ ରାଜତ୍ୱ ମଧ୍ୟ ଉଲ୍ଲିଖିତ ହୋଇଛି :-

ପ୍ରତାପ ଠାରୁ ବୀରଯାଏ। ଦମ୍ଭେଣ ବଞ୍ଚିବେ ଥୋକାଏ ॥
ବୀର ଠାବରୁ ରାମ ଯାଏ। ଦମ୍ଭ ଆରମ୍ଭ ଜନ ରହେ ॥

ଏଥିରେ ବର୍ଣ୍ଣିତ 'ବୀର' ଖୋରଧା ରାଜା ବୀରକେଶରୀହିଁ ହେବେ ଓ ରାମ ବୀରକେଶରୀଙ୍କ ପରବର୍ତ୍ତୀ ରାମଚନ୍ଦ୍ର ଦେବ ଭିନ୍ନ ଅନ୍ୟ କେହି ନୁହନ୍ତି। ତେଣୁ ଏହାର ରଚନାକାଳ ଖ୍ରୀ. ୧୮୨୦ର ପୂର୍ବବର୍ତ୍ତୀ ହୋଇ ନପାରେ।

ଗୁରୁଭକ୍ତିଗୀତା, ଶୂନ୍ୟସଂହିତା ପରି, ଭିନ୍ନ ଭିନ୍ନ ସମୟର ସୃଷ୍ଟି। ଏହାର ପ୍ରଥମ ଖଣ୍ଡର ୩୦ ଅଧ୍ୟାୟ ଶେଷରେ କବି ଭଣିତି ଦେଇ ଜଣାଇଛନ୍ତି :-

ପାମର ଅଚ୍ୟୁତ ଗୁରୁଚରଣକୁ ଆଶ। ଇତି ଗୁରୁଭକ୍ତିଗୀତା କଲଇଁ ପ୍ରକାଶ।

ଓଡ଼ିଶାର ଚଳଣି ଅନୁସାରେ 'ଇତି' ଶବ୍ଦ ରଚନା ଶେଷରେ ହିଁ ରହେ। 'ଇତି ଗୁରୁଭକ୍ତିଗୀତା' ସୂଚାଉଛି ଯେ ଅଚ୍ୟୁତାନନ୍ଦ ସେତିକିରେ ଗୁରୁଭକ୍ତିଗୀତା ସାରିଥିଲେ। ଅବଶିଷ୍ଟାଂଶ ପରେ ସଂଯୁକ୍ତ ହୋଇଛି। ସଂଯୋଗ ନିଜେ ଅଚ୍ୟୁତାନନ୍ଦ କରି ନଥାଇ ପାରନ୍ତି କାରଣ ପରବର୍ତ୍ତୀ ଅଂଶରେ ଅଚ୍ୟୁତାନନ୍ଦଙ୍କ ଗୁରପ୍ରଣାଳୀକୁ ଲୋପ କରି ତାଙ୍କୁ ଖୋଦ୍ ଚୈତନ୍ୟଙ୍କ ଶିଷ୍ୟରେ ପରିଣତ କରାଯାଇଛି। ଅଚ୍ୟୁତାନନ୍ଦଙ୍କ ସଂପ୍ରଦାୟର ଲୋକେ, ମାଳିକା ବିଶ୍ୱାସୀ କେତେକ ବିଶ୍ୱବିଦ୍ୟାଳୟ ଉପାଧିବନ୍ତଙ୍କ ସହଯୋଗରେ, ଏବେ ବି ଅଚ୍ୟୁତାନନ୍ଦଙ୍କ ନାମରେ ଯେ ଗ୍ରନ୍ଥ ରଚନା କରି ଚାଲିଛନ୍ତି ଏକଥା ଲୁଚାଛପା କଥା ନୁହେଁ। ଊନବିଂଶ ଶତାବ୍ଦୀରେ ଏପରି ଜାଲିଆତି କାମ ନେମାଳକୁ କେନ୍ଦ୍ର କରି କମ୍ ହେଉନଥିଲା।

ଏଥିରୁ ଜଣାପଡୁଛି ଯେ ଯେଉଁ ଅଚ୍ୟୁତାନନ୍ଦ ନିଜକୁ ଚୈତନ୍ୟଙ୍କ ସଖା ବୋଲି ଓ ତାଙ୍କ ସହିତ ଆଉ ଚାରିଜଣ ସଖା ଥିଲେ ବୋଲି ପ୍ରଥମେ ପ୍ରଚାର କଲେ ତାଙ୍କ ସମୟ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ପୂର୍ବର ନୁହେଁ। ଆଉ ମଧ୍ୟ ଜଣାପଡୁଛି ଯେ ଅଚ୍ୟୁତାନନ୍ଦଙ୍କ ରଚନାରେ ତାଙ୍କ ସଂପ୍ରଦାୟର ଲୋକେ ଆଉ କିଛି କିଛି ଅଂଶ ପରବର୍ତ୍ତୀକାଳରେ ସଂଯୋଗ କରିଲାଗିଛନ୍ତି। ଇଂରାଜି ଲୋକଙ୍କର ରାଜା କେବେହେଲେ ମରନ୍ତି ନାହିଁ (The king never outs) ଓଡ଼ରାଷ୍ଟ୍ରର ଅଚ୍ୟୁତାନନ୍ଦ କେବେହେଲେ ମରନ୍ତି ନାହିଁ।

### ଅଚ୍ୟୁତାନନ୍ଦଙ୍କ ଅନ୍ୟାନ୍ୟ ରଚନାର କାଳ

ବୋଧହୁଏ ଶୂନ୍ୟସଂହିତାକାର ଅଚ୍ୟୁତାନନ୍ଦ ଅନ୍ୟ କେତୋଟି ରଚନାରେ ମଧ୍ୟ ପଞ୍ଚସଖା ବିଷୟ ଲେଖିଛନ୍ତି। ପରବର୍ତ୍ତୀ ସମୟରେ ତାଙ୍କ ନାମରେ ଜାଲ୍‌ରଚନା ସୃଷ୍ଟି କରିଥିବା ଅନେକ ଲୋକ ବି 'ପଞ୍ଚସଖା' ବିଷୟ ଲେଖିଛନ୍ତି। କିନ୍ତୁ ଅଚ୍ୟୁତାନନ୍ଦ ଭଣିତିଯୁକ୍ତ ଯେଉଁ ସବୁ ରଚନାରେ 'ପଞ୍ଚସଖା' କଥାର ସୂଚନା ଅଛି ତାହା ଭିତରୁ ଗୋଟିଏ ବି ଅଷ୍ଟାଦଶ ଶତାବ୍ଦୀ ପୂର୍ବର ଲେଖା ନୁହେଁ।

### ୧. ଦଶପଟଳ ମାଳିକା :-

ଅଚ୍ୟୁତାନନ୍ଦ ଓ ତାଙ୍କ ଶିଷ୍ୟ ରାମଚନ୍ଦ୍ରଙ୍କ ମଧ୍ୟରେ କଥୋପକଥନ ଏଥିରେ ବର୍ଣ୍ଣିତ। ପଞ୍ଚସଖା ଭିନ୍ନ ଭିନ୍ନ ଯୁଗରେ ନିରଞ୍ଜନ (ସତ୍ୟ), ରାମ (ତ୍ରେତା), କୃଷ୍ଣ (ଦ୍ୱାପର) ଓ ଜଗନ୍ନାଥ (କଳି)ଙ୍କ ସଖା ହେବାର ବର୍ଣ୍ଣନା ଏଥିରେ ରହିଛି। ଏହାର ବିଶେଷତ୍ୱ ହେଲା ଚୈତନ୍ୟଙ୍କ ସମୟର ପଞ୍ଚସଖା ଏଥିରେ ନାହିଁ। ଏଥିରେ ଜଗନ୍ନାଥ ମହାପ୍ରଭୁଙ୍କର ପଞ୍ଚସଖା କଳକି ଅବତାରକୁ ଧ୍ୟାନ କରି ରହିଛନ୍ତି :-

କଳିଯୁଗରେ ସେହି ପାଞ୍ଚଜଣ। କଳିଙ୍କି ରୂପକୁ କରିଛୁ ଧ୍ୟାନ॥

ଏଥିରେ ରାଜା ବୀରକେଶରୀଙ୍କ ରାଜତ୍ୱ କାଳରେ କଳ୍କି ଅବତାର ପଞ୍ଚସଖାଙ୍କୁ ଧରି ଅବତୀର୍ଣ୍ଣ ହେବା କଥା ଅଛି। ବୀରକେଶରୀ ବନ୍ଧନରେ ପଡ଼ିଥିବାର ବର୍ଣ୍ଣନା ଏପରି ଅଛି:-

ରାଜା ବନ୍ଧନେ ପଡ଼ିଥିବେ ସହି। ଶ୍ରୀବତ୍ସ ବୀରକେଶରୀଙ୍କି କହି ।।
ନଥିବ କିଛି ରାଜନୀତିମାନ। ଦୁଃଖ ପାଉଥିବ ଧରାହୋଇଣ ।।XXX
ଅଣତ୍ରିଂଶକୁ ଦୃଷ୍ଟି ଦେଇଥାଅ। ଶୂନ୍ୟ ଉପରକୁ ଅନାଇ ରହ ।।
ସେଠାରେ ଶୂନ୍ୟ ଯେବେ ବକ୍ର ହେବ। ନିଶ୍ଚୟ କାର୍ଯ୍ୟ ସଫଳହୋଇବ ।।(୮ମ ପଟଳ)

ବୀରକେଶରୀ ଖ୍ରୀ. ୧୭୩୯ରେ ରାଜଗାଦି ପାଇଥିଲେ ହେଁ ୧୭୩୬ରୁ ଅଙ୍କଗଣନା ଆରମ୍ଭ କରିଥିଲେ, ପଟିଆ ରାଜା ପଦ୍ମନାଭଙ୍କ ୩ବର୍ଷ ଅନଧିକାର ରାଜତ୍ୱକୁ ଗଣନା ନ କରିବା ଉଦ୍ଦେଶ୍ୟରେ। ବୀରକେଶରୀ ମରହଟ୍ଟା ଆକ୍ରମଣ ଆଦି କାରଣରୁ ଖୁରୁଧା ଶ୍ରୀନଅରରେ ଯଥାବିଧି ଅଭିଷିକ୍ତ ହୋଇପାରି ନଥିଲେ। ସେ ତାଙ୍କର ୨୯ ଅଙ୍କ ଖ୍ରୀ ୧୭୬୦ରେ ଅଭିଷେକ ଯୋଗାଡ଼ କରିବାବେଳେ ପାରଳାଖେମୁଣ୍ଡିର ରାଜା ଜଗନ୍ନାଥ ନାରାୟଣ ଦେବ ଖୋରଧା ଉପରେ ଚଢ଼ାଉ କଲେ। ଏହା ମାଦଳାପାଞ୍ଜୀରେ ବର୍ଣ୍ଣିତ ହୋଇଛି: 'ଏ ରାଜା ରାଜଗାଦିରେ ଅଭିଷେକ ହେବା ସମୟେ ଖେମଣ୍ଡି ରାଜା ଓଡ଼ିଶାର ଉତ୍ତରାଧିକାରୀ ବୋଲି ବୀରକେଶରୀ ଦେବଙ୍କ ସଙ୍ଗେ ଯୁଦ୍ଧ କରି ଓଡ଼ି ଛଡ଼ାଇ ନେଲେ। ବୀରକେଶରୀ ଦେବ ମରହଟ୍ଟାଙ୍କୁ ଆଶ୍ରୟ କରିବାରୁ ମରହଟ୍ଟା ଖେମୁଣ୍ଡି ରାଜାଙ୍କୁ ପରାଜୟ କଲେ ଓ ଓଡ଼ିଶାରୁ ତଡ଼ି ଦେଲେ'' (ପ୍ରାଚୀ ସଂସ୍କରଣ, ୧ମ ପାଞ୍ଜୀ)।

ଏହି ଘଟନା ୯ମ ପଟଳରେ ମଧ୍ୟ ''କଳିଙ୍ଗ ମାଡ଼ି ବସିବଟି ଦେଶ, ତେର ଦିନ ସେହି ଭୋଗ କରିବ'' ବୋଲି ବର୍ଣ୍ଣିତ ହୋଇଛି। ୨୯ଅଙ୍କ ପରେ ୩୧ଅଙ୍କ, ତିରିଶି ଅଙ୍କ ଗଣନା ନାହିଁ, ଏହାକୁ ଶୂନ୍ୟ (ତିରିଶିର ଶୂନ୍) ଉପରକୁ (ତିରିଶି ଉପର ୩୧) ବୋଲି କୁହାଯାଇଛି। ସେଠାରେ ଶୂନ୍ୟ (ତିରିଶି ଶୂନ୍) ବକ୍ର (ବକ୍ରକାର ୧) ହେବ ବୋଲି ଲେଖା ଅଛି। ବୀରକେଶରୀ ୩୧ ଅଙ୍କରେ ରାଜ୍ୟ ଫେରି ପାଇଥିବା ସୂଚନା ଏଥିରୁ ମିଳେ।

ଏହି କାରଣରୁ 'ଦଶପଟଳ ମାଳିକା' ଅଷ୍ଟାଦଶ ଶତାବ୍ଦୀର ତୃତୀୟ ପାଦର ରଚନା ବୋଲି ସ୍ଥିର କରାଯାଇପାରେ।

**୨. ଗରୁଡ଼ ଗୀତା**

ଏହାର କବି ଅଚ୍ୟୁତାନନ୍ଦ ନିଜର ବାସସ୍ଥାନ ''ଚିତ୍ରୋତ୍ପଳା ନଦୀ କୂଳରେ ଯେ ଗ୍ରାମ ନାମ ନେମାଳୋ ଅଟଇ'' ବୋଲି ଲେଖି ବିଷ୍ଣୁଙ୍କୁ ଜଣାଉଛନ୍ତି: ''ତୋର ପଞ୍ଚସଖା ମଧ୍ୟରେ ମୁଁ ଲେଖା ତୋର ସଞ୍ଚଳାଟି ମୁହିଁ''।

ଏଥିରେ କଳିକାଳର ବର୍ଣ୍ଣନା ମଧ୍ୟରେ ତେଲଙ୍ଗା ମୁକୁନ୍ଦଦେବ ବାରବାଟି ଦୁର୍ଗ ତୋଳାଇବା କଥା ଲେଖାଅଛି :-

ତେଲଙ୍ଗୀ ମୁକୁନ୍ଦ ବୋଲି ଏକ ରାଜା ଗଉଡ଼ ଦେଶରେ ହେବ।
ବାରବାଟୀ କିଲ୍ଲା ସେହି ତୋଳାଇବ କୀରତି ସେ ରଖିଯିବ॥

ଏଥିରେ ବ୍ୟବହୃତ କିଲ୍ଲା ଶବ୍ଦ ମୋଗଲ ଶାସନର ପରବର୍ତ୍ତୀ ସମୟକୁ ସୂଚାଉଛି ପୁଣି ମୁକୁନ୍ଦଦେବ ନିର୍ମିତ ଦୁର୍ଗଟି କୀର୍ତ୍ତିସ୍ତରକୁ ଆସିବାପରେ ହିଁ ବିରାଟ ଗୀତା ରଚିତ ହୋଇଥିବା ସମ୍ଭବପର।

ଗରୁଡ଼ଗୀତାର ଦ୍ୱିତୀୟ ଅଧ୍ୟାୟରେ ଲେଖାଅଛି : "କ୍ଷେତ୍ରର ମହିମା ପାଞ୍ଚକୋଶ ସୀମା ସତ୍ୟବାଦୀ ପରିଯନ୍ତେ"। ସୂର୍ଯ୍ୟବଂଶର ପୁରୁଷୋତ୍ତମ ଦେବ କାଞ୍ଚି ଅଭିଯାନରୁ ଆଣିଥିବା ଗୋପାଳମୂର୍ତ୍ତି ସାକ୍ଷୀଗୋପାଳ ଓ ସତ୍ୟବାଦୀ ନାମରେ ପରିଚିତ। ଗୋପାଳ ମୂର୍ତ୍ତି ପୁରୀ, କଟକ, ରଥିପୁର ଆଦି ବିଭିନ୍ନ ସ୍ଥାନରେ ରହି ପୂଜିତ ହେବାପରେ ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁହିଁ ଜଗନ୍ନାଥ ସଡ଼କ କଡ଼ ଫୁଲଅଳସା ଗ୍ରାମରେ ସ୍ଥାୟୀ ଭାବରେ ଅବସ୍ଥାପିତ ହେଲେ। ସେହି ସମୟରୁ ପୁରୀରୁ ପାଞ୍ଚ କୋଶ ଦୂରରେ ଥିବା ଏହି ସ୍ଥାନଟିର ନାମ ସତ୍ୟବାଦୀ ହେଲା। ତେଣୁ ଗରୁଡ଼ଗୀତା ଅଷ୍ଟାଦଶ ଶତାବ୍ଦୀ ପରେ ଲେଖା ହୋଇଥିବା ଜଣାପଡୁଛି।

୩. ବର୍ଷଟୀକା

ଏହାର ପ୍ରଣେତା ଅଚ୍ୟୁତାନନ୍ଦ ନିଜ ଜନ୍ମସ୍ଥାନର ବର୍ଣ୍ଣନା ଦେଇ ଲେଖିଛନ୍ତି :-

ଶୁଣ ବାବୁ ତୁମ୍ଭେ ବିପ୍ର କୁମର। ମୋର ଜନ୍ମସ୍ଥାନ ଅଟେ ତ୍ରିପୁର।
ନିତ୍ୟ ନୀଳାଚଳ ପୂର୍ବ ଦ୍ୱାରରେ। ସ୍ତମ୍ଭ ଗୋଟିକ ଅରୁଣ ନାମରେ।

ଅନୁମିତ ହେଉଛି କବି 'ଶ୍ରୀମନ୍ଦିର'କୁ ହିଁ ତ୍ରିପୁର ନାମରେ ଚିହ୍ନାଉଛନ୍ତି। 'ଶ୍ରୀ' ରୁ 'ତ୍ରି' ଓ ମନ୍ଦିରରୁ 'ପୁର' ହୋଇଥିବା ସମ୍ଭବ। ନୀଳାଚଳ ହିଁ ନିତ୍ୟଲୋକ। ଏହି ସଂକେତ ନିତ୍ୟ ନୀଳାଚଳରେ ରହିଛି। ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ ଦିବ୍ୟସିଂହ ଦେବ (ଖ୍ରୀ.୧୭୯୩-୧୭୯୮) "କୋଣାର୍କ କ୍ଷେତ୍ରରୁ ମୁଗୁନି ପଥର ଖମ୍ବ ଆଣି ସିଂଘଦ୍ୱାର ଚକଡ଼ାରେ ରଖାଇଲେ" (ମାଦଳାପାଞ୍ଜୀ, ପ୍ରାଚୀ.୧ମ)। ତାହା ପୂର୍ବରୁ ଅରୁଣ ସ୍ତମ୍ଭ ପୁରୀ ସିଂହଦ୍ୱାରରେ ନଥିଲା, ଥିଲା କୋଣାର୍କରେ। ତେଣୁ ଏହି ଘଟନାର ବହୁ ବର୍ଷ ପରେ ବର୍ଷଟୀକା ଲେଖା ହୋଇଥିବା ବିଷୟ ନିଃସନ୍ଦେହ।

୪. ଜ୍ଞାନ ପ୍ରଦୀପ ଗୀତା

ଏହାର ସପ୍ତମ ଅଧ୍ୟାୟରେ ଶ୍ରୀମନ୍ଦିରର ପ୍ରାଧାନ୍ୟ କୃଷ୍ଣଙ୍କ ମୁଖରେ ଏହିପରି ବର୍ଣ୍ଣିତ ହୋଇଛି :-

"ପ୍ରତିମାମାନ ଭଗ୍ନ ହୋଇଗଲେ। ସେ ସ୍ଥାନ ମୁହିଁ ନ ଛାଡ଼ଇ ଭଲେ।"

କଳାପାହାଡ଼ର ଆକ୍ରମଣ ଠାରୁ ଅଷ୍ଟାଦଶ ଶତାବ୍ଦୀର ଆରମ୍ଭ ଯାଏଁ ପୁରୀ ମନ୍ଦିର ଉପରେ ମୁସଲମାନ ଶାସକ ଦ୍ୱାରା ପ୍ରରୋଚିତ ଆକ୍ରମଣ ଲାଗି ରହିଥିଲା। ଆକ୍ରମଣକାରୀ ଦଳ ଶ୍ରୀମନ୍ଦିରର ପ୍ରତିମାମାନଙ୍କୁ ଭାଙ୍ଗିବାରେ ଲାଗିଥାନ୍ତି। 'ଜ୍ଞାନ ପ୍ରଦୀପ ଗୀତା'ରେ ଶ୍ରୀମନ୍ଦିରର ପ୍ରତିମାମାନ ଭଙ୍ଗାଯିବା କଥା ଲେଖାଥିବାରୁ ତାହାର ରଚନା ସପ୍ତଦଶ ଶତାବ୍ଦୀ ବା ତାହାର ପରବର୍ତ୍ତୀ ସମୟରେ ହୋଇଥିବା ଅନୁମେୟ। ଗ୍ରନ୍ଥମଧ୍ୟରେ ମାଡ଼ିକରେ, ତଲାସିଲେ, ଆସ୍ତେଆସ୍ତେ, ବାକି (ଅବଶେଷ ଅର୍ଥ) ଆଦି ବହୁ ଯାବନିକ ଶବ୍ଦର ବ୍ୟବହାର ଥିବାରୁ ଏହାର ରଚନାକାଳ ସପ୍ତଦଶ ଶତାବ୍ଦୀର ପୂର୍ବ ନ ହେବା ଜଣାପଡୁଛି।

**୫. ଶିବକଳ୍ପ**

ଅଚ୍ୟୁତାନନ୍ଦ ଓ ପଞ୍ଚସଖାର ଅନ୍ୟମାନଙ୍କ ନାମ ଯୋଡ଼ି ଜାଲଗ୍ରନ୍ଥମାନ ତିଆରି କରିବାରେ ଅଚ୍ୟୁତାନନ୍ଦଙ୍କ ଭକ୍ତମାନେ ଧୁରନ୍ଧର। ଏହି ଜାଲସୃଷ୍ଟିରୁ କିଛି କିଛି "ମହାପୁରୁଷ ଅଚ୍ୟୁତାନନ୍ଦ କୃତ" ଆଖ୍ୟା ଧରି ପ୍ରକାଶ ପାଉଛି, ଆହୁରି ଅନେକ ଅପ୍ରକାଶିତ ରହିଥିବା ସମ୍ଭବ। 'ଭାତ ହାଣ୍ଡିରୁ ଗୋଟିଏ' ନ୍ୟାୟରେ ଅଚ୍ୟୁତ ଭଣିତି ଧରି ପ୍ରକାଶିତ 'ଶିବକଳ୍ପ' କୁ ନିଆଯାଇପାରେ। ଏହାର କବି ନିଜକୁ ପଞ୍ଚସଖା ଭୁକ୍ତ କରାଇ "ଆମ୍ଭେ ପଞ୍ଚସଖା ଗହଣେ ଖଟିଲୁ" ବୋଲି କହି "ନେମାଳ ଗ୍ରାମରେ ଅଚ୍ୟୁତ ମୋ ନାମ" (ପୃ.୧୧) ବୋଲି ଜଣାଇଛନ୍ତି। ଶିବକଳ୍ପରେ କରମଳାର ଅଭିରାମ ପରମହଂସ ଠାକୁରଙ୍କ ପ୍ରତି କଟାକ୍ଷ (ପୃ.୧୬), ହିଟଲରଙ୍କ ବିଷୟ (ପୃ.୩୩ ଓ ୭୯) ଓ ସୁଭାଷ ଗୁମ୍ଫିଆରେ ରହିଥିବା କଥା ଲେଖାଅଛି। ହେଲେହେଁ, ଏହାର ଗୁରୁଭକ୍ତିଗୀତା ରଚିତ ହେବାର ପୂର୍ବରୁ ହୋଇଥିବା କଥା ଅଚ୍ୟୁତାନନ୍ଦ ତାଙ୍କ ଶିଷ୍ୟଙ୍କୁ କହୁଛନ୍ତି :-

ଗୁରୁଭକ୍ତିଗୀତା ଗୋଟି ତୁମ୍ଭଙ୍କୁ କାରଣ। ସେ ଗ୍ରନ୍ଥେ କହିବି ତୁମ୍ଭ ତତ୍ତ୍ୱ ବିଧିମାନ॥ (ପୃ.୬୯)

**ଅଚ୍ୟୁତାନନ୍ଦଙ୍କ ଜନ୍ମକାଳ**

'ଉଦୟକାହାଣୀ ବା ଅବତାର ମାଳିକା' ଏହି ନାମର ଏକ ରଚନାରେ ଅଚ୍ୟୁତାନନ୍ଦ 'ପଞ୍ଚସଖା'ର ଅନ୍ତର୍ଗତ ପ୍ରତ୍ୟେକଙ୍କର ଜନ୍ମବୃତ୍ତାନ୍ତ ଲେଖିଛନ୍ତି। ଏଥିରେ 'ପଞ୍ଚସଖା' ମଧ୍ୟରୁ ଜଣେ ସୁଦ୍ଧା ବ୍ରାହ୍ମଣ ନ ଥିବା ଓ ପାଞ୍ଚଜଣଯାକ ଶୂଦ୍ର ଥିବା କଥା ଲେଖିଅଛି। ଜଗନ୍ନାଥ ଦାସଙ୍କୁ 'ପଞ୍ଚସଖା'ରୁ ବିତାଡ଼ିତ କରି 'ଗୁରୁଭକ୍ତି ଗୀତାରେ 'ଚାରିସଖା' ତତ୍ତ୍ୱ ପରିବେଷିତ ହେବା ପୂର୍ବରୁ 'ଉଦୟ କାହାଣୀ'ର ଉଦୟ ହୋଇଥିବା ଅନୁମିତ ହୋଇପାରେ। ଶୂଦ୍ର ଜଗନ୍ନାଥ ଦାସ ହିଁ ଶୂଦ୍ରଗୋଷ୍ଠୀ 'ପଞ୍ଚସଖା'ର ମୂଳ ସଦସ୍ୟ ହୋଇପାରନ୍ତି ଓ ସେ ଏକ କାଳ୍ପନିକ ବ୍ୟକ୍ତି ହେବା ସମ୍ଭବପର। 'ଉଦୟକାହାଣୀ' ନିଃସନ୍ଦିଗ୍ଧ ଭାଷାରେ କହେ: "ତହୁଁ ପଞ୍ଚସଖା ଶୂଦ୍ର ହୋଇଲୁ", "ପଞ୍ଚସଖାମାନେ ବ୍ରାହ୍ମଣ ନୋହୁ"। ଏପରି ଅବସ୍ଥାରେ ଏହାର କବିଙ୍କୁ ବିପ୍ର ଅତିବଡ଼ ଜଗନ୍ନାଥ ଦାସଙ୍କ ସମସାମୟିକ ବୋଲି କହିବାର ଯଥାର୍ଥତା ନାହିଁ।

'ଉଦୟକାହାଣୀ'ରେ ପଞ୍ଚସଖାଙ୍କର ଜନ୍ମକାଳ ଅସ୍ପଷ୍ଟ ଭାଷାରେ ସୂଚାଇ ଦିଆଯାଇଛି। ଅଚ୍ୟୁତାନନ୍ଦ ନିଜର ଜନ୍ମକାଳ ଏହି ପ୍ରକାରେ ଜଣାଇଛନ୍ତି :-

ପଚାରିଲୁ ରାମ ଜନମ ଅଙ୍କ। ଅତି ହିଁ ଗୁପତ ବଡ଼ ବିବେକ।
ଡାହାଣ ଅଙ୍କକୁ ଗୁଣିବୁ ଯେବେ। ବାମ ଅଙ୍କ ଗୋଟି ମିଶାଅ ତେବେ॥
ଏମନ୍ତ ସାଲ ହୋଇବ ନିକର। ଶୁଣ ରାମଚନ୍ଦ୍ର ଏଥି ଭିତର॥
ଷତ(ସତ)ଭୁଜ ଅରି ମଣି ମିତ୍ରରେ। ତୁରି ତୁର୍କ ସନ ଘେନି ଓଡ଼ରାଷ୍ଟ୍ରେ॥
ଏହି ଅଙ୍କେ ମୁହିଁ ଜନକ ହେଲି। ଅଚ୍ୟୁତପାମର ନାମ ପାଇଲି॥

ଅଚ୍ୟୁତାନନ୍ଦ ନିଜର ଜନ୍ମ ସମୟକୁ 'ଅତି ହିଁ ଗୁପତ' ବୋଲି କହିବାର ମୂଳ କାରଣ ଏହା ହିଁ ହୋଇପାରେ ଯେ ତାହା ପ୍ରକାଶ କରିଦେଲେ ସେ ନିଜକୁ ଚୈତନ୍ୟଙ୍କ ସମସାମୟିକ ବୋଲି କରିଥିବା ଦାବି ମିଥ୍ୟା ପ୍ରମାଣିତ ହୋଇପଡ଼ିବ। ଅନ୍ୟଥା, ଜଣେ କବି ନିଜର ଜନ୍ମସମୟକୁ ଲୁଚାଇ ରଖିବାର ଆବଶ୍ୟକତା କଣ ବା ଆଉ ହୋଇପାରେ? ମନେ ରଖିବାକୁ ହେବ କବିମାତ୍ରେ ଆତ୍ମପ୍ରକାଶ ଚାହାନ୍ତି। ଆତ୍ମଗୋପନ କବି-ସ୍ୱଭାବର ପ୍ରତିକୂଳ।

ଉଦ୍ଧୃତିରେ ଜନ୍ମକାଳ ସୂଚାଇବା ପାଇଁ ଯେଉଁ ସାଲ ଓ ସନର ବ୍ୟବହାର କରାଯାଇଛି ତାହାର ପ୍ରଚଳନ ମୋଗଲ ସେନାପତି ମାନସିଂହଙ୍କ ଦ୍ୱାରା ଓଡ଼ିଶା ଅଧିକାର (ଖ୍ରୀ.୧୫୯୨) ପରେ ହିଁ ଓଡ଼ିଶାରେ ହୋଇଥିଲା। ତେଣୁ, ଅଚ୍ୟୁତାନନ୍ଦ ମୋଗଲ ଶାସନ ପୂର୍ବରୁ ଜନ୍ମଲାଭ କରିବା ସମ୍ଭାବନା ନାହିଁ। ଉଦ୍ଧୃତିର ଅଭିବ୍ୟକ୍ତିକୁ ଦୁର୍ବୋଧ୍ୟ କରାଇବା ଲକ୍ଷ୍ୟରେ ବଙ୍କାଟେଢ଼ା କରାଯାଇଛି। ଏହାର ଭାବାର୍ଥ ନିମ୍ନମତେ ହୋଇପାରେ ବୋଲି ମୁଁ ଅନୁମାନ କରୁଛି :-

"ରାମ, ତୁ ମୋର ଜନ୍ମଅଙ୍କ (ବର୍ଷ) ପଚାରିଲୁ। ତାହା ଅତି ଗୁପ୍ତ ବିଷୟ ଓ ତାହା ଜାଣିବା ପାଇଁ ଖୁବ୍ ବୁଦ୍ଧି (ବଡ଼ ବିବେକ) ବ୍ୟୟ କରିବାକୁ ହେବ। ତାହାର ଅଙ୍କକୁ ବାମରେ ଗୁଣି ଗୁଣଫଳରେ ବାମ ସଂଖ୍ୟା ମିଶାଇଲେ ସାଲ ସଂଖ୍ୟା ଆସିବ। ମୋ ଜନ୍ମ ଅଙ୍କ ହେଉଛି ପ୍ରକୃତରେ (ସତ, ଅପପାଠ ଶତ) ଭୁଜ (୨), ଅରି(୬), ମଣି(୯) ଓ ମିତ୍ର(୧୨) ଅର୍ଥାତ୍ ୨+୬+୯+୧୨=୨୯। ଏହାର ଡାହାଣ ଅଙ୍କ (୯)କୁ ବାମ ଅଙ୍କ (୨)ରେ ଗୁଣି ଗୁଣଫଳରେ ବାମ ଅଙ୍କ ମିଶାଇଲେ ଓଡ଼ିରାଷ୍ଟ୍ରରେ ପ୍ରଚଳିତ ତୁର୍କ ସନ ଆସିଯିବ (ପାଠୋଦ୍ଧାରରେ ତୁର୍କର ରୂପ ତୁରି ହୋଇଛି, ଯାହା ନିରର୍ଥକ; ଓଡ଼ିଶାରେ ମୁସଲମାନଙ୍କୁ ତୁର୍କ, ତୁରୁକ, ତୁରୁକ ଭାବରେ ନାମିତ କରାଯାଉଥିଲା)। ବକ୍ତବ୍ୟ ହେଲା ଅଚ୍ୟୁତାନନ୍ଦଙ୍କ ଜନ୍ମ ବେଳକୁ ୨୯ଅଙ୍କ (ଓଡ଼ିଶାର ରାଜାଙ୍କର) ଓ ୨୦ ସନ (ମୁସଲମାନଙ୍କର) ହୋଇଥିଲା। ଅନୁମାନ କରାଯାଇପାରେ ଯେ ସନର ଶତ ସଂଖ୍ୟା ଅଚ୍ୟୁତାନନ୍ଦ ଜଣାଇନାହାନ୍ତି। ଏଥିରୁ ହିସାବ କରାଯାଇପାରେ, ଅଚ୍ୟୁତାନନ୍ଦଙ୍କର ଜନ୍ମ ବେଳର

ଓଡ଼ିଶା ରାଜାଙ୍କର ୨ଅଙ୍କ ଖ୍ରୀଷ୍ଟୀୟ ଗଣନାରେ କୌଣସି ଶତାବ୍ଦୀର ୯୦ ମସିହାର ସୁନିଆରେ ସରୁଥିଲା। ଓଡ଼ିଶାର ରାଜାମାନଙ୍କ ମଧ୍ୟରେ ଏକମାତ୍ର ଦିବ୍ୟସିଂହ ଦେବ (ପ୍ରଥମ)ଙ୍କ ଦୁଇ ଅଙ୍କ ଏକ ଶତାବ୍ଦୀର ୯୦ ମସିହାରେ (ଖ୍ରୀ.୧୬୯୦ରେ) ସରିଥିଲା। ତେଣୁ ଅଚ୍ୟୁତାନନ୍ଦ ଯେଉଁ ଅଙ୍କ କଥା କହିଛନ୍ତି ତାହା ପ୍ରଥମ ଦିବ୍ୟସିଂହ ଦେବଙ୍କର। ତାଙ୍କର ୨୯ ଅଙ୍କ ଖ୍ରୀ. ୧୭୧୧ .ରୁ ୧୭୧୨ ର ସୁନିଆ। ଖ୍ରୀ. ୧୭୧୨ର ସୁନିଆର ତିନି ମାସ ପୂର୍ବରୁ ଫସଲି ୧୧୨୦ ସନ ଆରମ୍ଭ ହୋଇଥାଏ। ତେଣୁ ତାହାରି ମଧ୍ୟରେ ଅଚ୍ୟୁତାନନ୍ଦଙ୍କର ଜନ୍ମ ସମୟ ପଡୁଛି।

ଯେଉଁ କବି ନିଜ ସଂପର୍କରେ ନାନା ପ୍ରତାରଣାମୂଳକ ଦାବି କରିଛନ୍ତି ସେ ଯେ ତାଙ୍କ ଜନ୍ମକାଳକୁ ଠିକ୍ ଭାବରେ ସୂଚାଇଥିବେ ତାହା ମଧ୍ୟ ସନ୍ଦେହଜନକ। ତେବେ, ''ଅତି ହିଁ ଗୁପତ, ବଡ଼ ବିବେକ'' ଭାବରେ ଏହାକୁ କୁହାଯାଇଥିବାରୁ ଏଥିରେ ସତ୍ୟତା ନିହିତ ଥାଇପାରେ।

**ଲକ୍ଷାଧିକ ଗ୍ରନ୍ଥର ପ୍ରଣେତା**

ପଞ୍ଚସଖା ପ୍ରପଞ୍ଚର ଉଦ୍‌ଭାବକ ଅଚ୍ୟୁତାନନ୍ଦ ତ ନିଜେ ପ୍ରବଞ୍ଚକ, ତାଙ୍କ ମଠ ନେମାଳକୁ ଆଶ୍ରୟ କରିଥିବା ତାଙ୍କ ଗୁଣମୁଗ୍ଧମାନେ ମଧ୍ୟ 'ଯଥା ଗୁରୁ ତଥା ଶିଷ୍ୟ'। ଉଦୟ କାହାଣୀରେ ଯେଉଁ ଅଚ୍ୟୁତାନନ୍ଦଙ୍କ ଜୀବନର ତଥ୍ୟ ଦିଆଯାଇଛି ତାଙ୍କର ଜନ୍ମ ଖ୍ରୀ ୧୭୧୨ରେ ପଡୁଥିବାରୁ ସେ ଶୂନ୍ୟସଂହିତାର ପ୍ରଥମ ଖଣ୍ଡର ତଥା 'ଗୁରୁଭକ୍ତିଗୀତା'ର ଆରମ୍ଭର ଅଧ୍ୟାୟଗୁଡ଼ିକର ପ୍ରଣେତା। ତାଙ୍କ ପୂର୍ବରୁ ଅନେକ ଅଚ୍ୟୁତାନନ୍ଦ ବା ଅଚ୍ୟୁତ ନାମଧେୟ କବି ନିଶ୍ଚୟ ଥିଲେ କିନ୍ତୁ ସେମାନେ କେହି ନିଜକୁ ଚୈତନ୍ୟଙ୍କ ସମସାମୟିକ ବୋଲି ଦାବି କରିନାହାନ୍ତି ଓ ତାଙ୍କ ଲେଖାରେ 'ପଞ୍ଚସଖା' ତତ୍ତ୍ୱର ଉଲ୍ଲେଖ ନାହିଁ। 'ପଞ୍ଚସଖା' ପ୍ରପଞ୍ଚ ଶୂନ୍ୟସଂହିତାକାର ଅଷ୍ଟାଦଶ ଶତାବ୍ଦୀର ଅଚ୍ୟୁତାନନ୍ଦଙ୍କ ସୃଷ୍ଟି ଓ ତାଙ୍କର ପରବର୍ତ୍ତୀ ଅନୁଗାମୀମାନଙ୍କର ପରିପୁଷ୍ଟି। ଅନୁଗାମୀମାନେ ନିଜେ ଲେଖୁଥିବା ଗ୍ରନ୍ଥରେ ଅଚ୍ୟୁତାନନ୍ଦଙ୍କ ଭଣିତି ଯୋଡ଼ି ଜାଲିଆତିର ଜଙ୍ଗଲ ସୃଷ୍ଟି କରି ଚାଲିଛନ୍ତି।

ଶୂନ୍ୟସଂହିତାକାର ଅଚ୍ୟୁତାନନ୍ଦ ଗୋଟିଏ ସଂପ୍ରଦାୟର ପ୍ରବର୍ତ୍ତକ ଧର୍ମପ୍ରଚାରକ ହୋଇଥିବାରୁ ସରଳ ବିଶ୍ୱାସୀ ଜନତାଙ୍କୁ ଭଣ୍ଡି ସ୍ୱମତକୁ ସୁପ୍ରଚାରିତ କରିବା ଲକ୍ଷ୍ୟରେ ଅନେକ କପୋଳକଳ୍ପିତ ଘଟଣାର ଅବତାରଣା କରିଥିବା ଜମାରୁ ବିଚିତ୍ର ନୁହେଁ। 'ପଞ୍ଚସଖା' ପ୍ରପଞ୍ଚ ଧର୍ମ ପ୍ରଚାରର ଏକ ଉପସର୍ଗ ମାତ୍ର। ଅଚ୍ୟୁତାନନ୍ଦ ନିଜର ଭାଉ ବଢ଼ାଇବା ପାଇଁ ଅନ୍ୟାନ୍ୟ ପ୍ରପଞ୍ଚ ମଧ୍ୟ ଉପସ୍ଥାପନ କରିଛନ୍ତି। ସେ ସ୍ୱରଚିତ ଗ୍ରନ୍ଥମାନଙ୍କର ଯେଉଁ ବିବରଣ 'ଅଣାକାର ସଂହିତା'ରେ ଦେଇଛନ୍ତି ତାହା 'ଗିନେସ୍‌ବୁକ୍'ରେ ସ୍ଥାନ ପାଇବା କଥା :-

"ଛତିଶ ସଂହିତା ଅଠସ୍ତରୀ ଗୀତା ବଂଶାନୁସପ୍ତବିଂଶରେ।
ଉପବଂଶାନୁ ଦ୍ୱାଦଶ ଖଣ୍ଡ ବେନି ଭବିଷ୍ୟ ଶତଖଣ୍ଡରେ ॥
ପଦପଦ୍ୟାବଳୀ ଲକ୍ଷେକ ଯେ ଗ୍ରନ୍ଥ ସବୁ ଶ୍ରୀକୃଷ୍ଣ ମହିମା ॥
ତୋ ଆଗେ କହିଲୁ ବରଜକୁମାର ବ୍ରହ୍ମସାରସ୍ୱତ ସୀମା ॥"

ଜଗତ୍‌କର୍ତ୍ତାଙ୍କ ଅପାର କରୁଣାରୁ ଅଷ୍ଟୋତ୍ତରଶତ ବର୍ଷ ପରମାୟୁ ଲାଭ କରି, ଇନ୍ଦ୍ରୀୟଶାଳରୁ ଆରମ୍ଭ କରି ପଞ୍ଚତ୍ୱ ପ୍ରାପ୍ତି ଯାଏଁ ଏ ଓଳି ଗୋଟିଏ ଓ ଆର ଓଳିକି ଆଉ ଗୋଟିଏ କରି ବର୍ଷରେ ୩୬୫ ଦିନ ଗ୍ରନ୍ଥମାନ ଉପୁଜାଇଲେ ମଧ ଅଚ୍ୟୁତାନନ୍ଦ ବା ଆଉ ଯେ କେହି 'ଲକ୍ଷେକ' ଗ୍ରନ୍ଥ ସୃଷ୍ଟି କରିବା ଭଳି କସରତ୍ ସାଧନ କରିପାରିବେ ନାହିଁ। ଅଚ୍ୟୁତାନନ୍ଦ ନିଜେ ତାହା କରିପାରିଛନ୍ତି ବୋଲି ବଡ଼େଇ କହିବା ମୂଳରେ ଯେଉଁ ଉଦ୍ଦେଶ୍ୟ ରହିଛି ନିଜକୁ ଚୈତନ୍ୟଙ୍କ ପ୍ରିୟସଖା ବୋଲି କହିବା ମୂଳରେ ସେହି ଉଦ୍ଦେଶ୍ୟ ହିଁ ରହିଛି :- ହାମ୍‌ବଡ଼ାଭାବର ପ୍ରଚାର। ଓଡ଼ିଶାରେ ଏତାଦୃଶ ମହାପୁରୁଷଙ୍କର ଜୟ ଜୟ ଘୋଷକ ମହାପଣ୍ଡିତଙ୍କ ଅଭାବ ନାହିଁ ଯେଉଁମାନେ ତାଙ୍କର ଏସବୁ ବଡ଼େଇକୁ ଧ୍ରୁବସତ୍ୟ ବୋଲି ବିଶ୍ୱାସ କରି ଦୃଢ଼ୋକ୍ତି ପ୍ରକାଶ କରିପାରନ୍ତି। ଉଦାହରଣ ସ୍ୱରୂପ 'ଗୁରୁଭକ୍ତିଗୀତା'ର ଦ୍ୱିତୀୟ ଖଣ୍ଡର ମୁଖବନ୍ଧରେ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନିମ୍ନୋକ୍ତ ମତକୁ ଉଦ୍ଧାର କରାଯାଇପାରେ:- "ଏହା ମହାପୁରୁଷଙ୍କ ସ୍ୱମୁଖ ଭକ୍ତି ଏବଂ ଏଥିରେ ଅବିଶ୍ୱାସ କରିବାର ସେପରି କୌଣସି କାରଣ ନାହିଁ। 'ତାଙ୍କୁ ମହାପୁରୁଷ' ପୀଠାସୀନ କରିବା ପରେ (ମନେ ରଖିବାକୁ ହେବ, ନିଜେ ଅଚ୍ୟୁତାନନ୍ଦ ମଧ ନିଜକୁ ମହାପୁରୁଷ ବୋଲି ଚିହ୍ନାଇ ନାହାନ୍ତି) ଓ ଅଚ୍ୟୁତାନନ୍ଦ ଭଣିତି ଲାଗିଗଲେ ତାହାକୁ 'ସ୍ୱମୁଖ ଭକ୍ତି' ବୋଲି ଗ୍ରହଣ କରିବା ପରେ ଅବିଶ୍ୱାସ କରିବାର କାରଣଗୁଡ଼ିକ ନୟନପଥଗାମୀ ହୋଇ ନପାରନ୍ତି। କଥା 'ଲକ୍ଷେକ' ଗ୍ରନ୍ଥରେ ଠାକି ରହିଲା ନାହିଁ। ଅଚ୍ୟୁତାନନ୍ଦଙ୍କ ମୁଖ୍ୟ ଶିଷ୍ୟ ରାମଚନ୍ଦ୍ର ଦାସ, ବୋଧହୁଏ ଗୁରୁଦେବଙ୍କର ପ୍ରଣୀତ ଗ୍ରନ୍ଥଗୁଡ଼ିକୁ ଗୋଟି ଗୋଟି କରି ଭଲ ରୂପେ ଗଣି ଦେଖିଲେ ଯେ ଗୁରୁଙ୍କ ଗ୍ରନ୍ଥଗୁଡ଼ିକର ପ୍ରକୃତ ସଂଖ୍ୟା 'ଲକ୍ଷେକ' ରୁ କିଛି ଅଧିକ। ରାମଚନ୍ଦ୍ର ଦାସ ଅଚ୍ୟୁତାନନ୍ଦଙ୍କୁ ତୁମ୍ଭେ 'ଲକ୍ଷେ ପଞ୍ଚାଅଶୀ ଗ୍ରନ୍ଥ ଯେ କହିଲ' ବୋଲି କହିଥିବା ବିଷୟ ଓ ଅଚ୍ୟୁତାନନ୍ଦ ଏହି 'ଲକ୍ଷେ ପଞ୍ଚାଅଶୀ ଗ୍ରନ୍ଥ ବୁଝାଇବି' ବୋଲି ଦେଇଥିବା ପ୍ରତିଶ୍ରୁତି ଅଚ୍ୟୁତାନନ୍ଦ ତାଙ୍କର 'ଶିବକଳ୍ପ' ଗ୍ରନ୍ଥରେ ଲିପିବଦ୍ଧ କରିଛନ୍ତି।

ଷୋଡ଼ଶ ଶତାବ୍ଦୀରେ ପଞ୍ଚସଖାଙ୍କ ଅସ୍ତିତ୍ୱ ଖୋଜୁଥିବା କେତେକ ଅଧାପକ ଏହି 'ଲକ୍ଷେ ପଞ୍ଚାଅଶୀ' ଗ୍ରନ୍ଥରୁ କିଛି କିଛି ପାଇଯାଉଛନ୍ତି କିନ୍ତୁ ଜାଣୁ ନାହାନ୍ତି ଯେ ଏସବୁ ଭଣ୍ଡାମୀର ସୃଷ୍ଟି ଅଷ୍ଟାଦଶ ଶତାବ୍ଦୀରେ ହୋଇ ପରେ ତାହାର ପରିପୁଷ୍ଟି ହୋଇଛି।

(ଚାରି)

ନିଜକୁ ଚୈତନ୍ୟଙ୍କ ପାଞ୍ଚ ଜଣ ସଖା ମଧ୍ୟରୁ ଏକତମ ଓ ରାଜା ପ୍ରତାପରୁଦ୍ରଙ୍କ ସମୟର ଲୋକ ବୋଲି ପ୍ରଚାର କରିଥିବା ଅଚ୍ୟୁତାନନ୍ଦ (ଓ ଅଚ୍ୟୁତାନନ୍ଦ ନାମରେ ଗ୍ରନ୍ଥ ଲେଖିଥିବା ଅନ୍ୟମାନେ) ଯେ ଖ୍ରୀ. ଅଷ୍ଟାଦଶ ଶତାବ୍ଦୀର ପୂର୍ବର ନୁହନ୍ତି ତାହା ଦେଖାଇ ଦିଆଗଲା। ଅନ୍ୟ ଯେଉଁ ସବୁ ରଚନାରେ ପଞ୍ଚସଖା ଧାରଣାର ଉଲ୍ଲେଖ ରହିଛି ସେଗୁଡ଼ିକର ସୃଷ୍ଟି କେବେ ହେଲା, ଏ ବିଷୟ ବର୍ତ୍ତମାନ ବିଚାର୍ଯ୍ୟ। ସେଗୁଡ଼ିକ ଖ୍ରୀ.୧୮ଶ ଶତାବ୍ଦୀର ପୂର୍ବବର୍ତ୍ତୀ ହେବା ପ୍ରମାଣ ନ ମିଳିଲେ ଅଚ୍ୟୁତାନନ୍ଦଙ୍କ ପ୍ରଚାର ହିଁ ସେଥିରେ ସ୍ଥାନିତ ହୋଇଛି ବୋଲି ବୁଝାଯିବ। ଅଚ୍ୟୁତାନନ୍ଦ ଭଣିତିଯୁକ୍ତ ଗ୍ରନ୍ଥଗୁଡ଼ିକୁ ଛାଡ଼ିଲେ ମୁଖ୍ୟତଃ ଈଶ୍ୱରଦାସଙ୍କ ଚୈତନ୍ୟ ଭାଗବତ ଓ ନନ୍ଦଦାସଙ୍କ 'ଅଣାକାର ସଂହିତା'ରେ ପଞ୍ଚସଖା ବିଷୟର ଚର୍ଚ୍ଚା ରହିଛି। ଆଉ ମଧ୍ୟ ପ୍ରାଚୀସମିତି ଦ୍ୱାରା ପ୍ରକାଶିତ ଏକତମ ମାଦଳା ପାଞ୍ଜୀରେ, ପଞ୍ଚସଖା ଶବ୍ଦଟି ନଥିଲେ ହେଁ, ପଞ୍ଚସଖାଭୁକ୍ତ ସମସ୍ତଙ୍କର ନାମ ଚୈତନ୍ୟଙ୍କର ସମସାମୟିକ ଭାବରେ ଲେଖାଅଛି। ଏ ସବୁର, ତଥା 'ପଞ୍ଚସଖା' ଶବ୍ଦ ଥିବା ଅନ୍ୟ କତିପୟ ରଚନାର ସମୟନିର୍ଦ୍ଧାରଣ କରାଯାଇପାରେ।

ଚୈତନ୍ୟ ଭାଗବତ

ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ଖ୍ରୀ.୧୯୫୩ରେ ପ୍ରକାଶିତ ଚୈତନ୍ୟ ଭାଗବତ ନାମକ ଓଡ଼ିଆ ଗ୍ରନ୍ଥଟିର ସଂପାଦକ ରାୟବାହାଦୁର ଆର୍ତ୍ତବଲ୍ଲଭ ମହାନ୍ତି ଗ୍ରନ୍ଥର ପ୍ରାରମ୍ଭିକାରେ ସ୍ୱୀକାର କରିଛନ୍ତି : "ଐତିହାସିକ ଦୃଷ୍ଟିରେ ଓଡ଼ିଆ ଚୈତନ୍ୟ ଭାଗବତର ମୂଲ୍ୟ ସ୍ୱଳ୍ପ ହେଲେହେଁ ଭକ୍ତ ସମକ୍ଷରେ ତାହାର ମୂଲ୍ୟ ଅତ୍ୟଧିକ"। ଅଥଚ, 'ପଞ୍ଚସଖା' ପ୍ରସଙ୍ଗରେ ଅନୁସନ୍ଧେୟ ବିଷୟ ହେଉଛି ଐତିହାସିକତା, ଭକ୍ତି ନୁହେଁ।

ଚୈତନ୍ୟ ଭାଗବତରେ ଚୈତନ୍ୟଙ୍କର ତଥା ତାଙ୍କ ସହିତ ସଂପୃକ୍ତ ବ୍ୟକ୍ତିମାନଙ୍କର ଜୀବନବୃତ୍ତାନ୍ତ ଯେପରି ବର୍ଣ୍ଣିତ ହୋଇଛି ତାହା ସହିତ ଚୈତନ୍ୟଙ୍କର ଇତରେତର ଜୀବନବୃତ୍ତାନ୍ତ ଗ୍ରନ୍ଥଗୁଡ଼ିକର ମେଳ କମ୍, ଅମେଳ ଅଧିକ। ତାହା ପଢ଼ିଲେ ସ୍ପଷ୍ଟ ହୁଏ ଯେ ଚୈତନ୍ୟଙ୍କ ବିଷୟରେ ଈଶ୍ୱର ଦାସଙ୍କର ପ୍ରତ୍ୟକ୍ଷ ଜ୍ଞାନ ତ ନଥିଲା, ଗ୍ରନ୍ଥାଦି ସୂତ୍ରରୁ ପରୋକ୍ଷ ଜ୍ଞାନ ଆହରଣ କରିବା ଦିଗରେ ମଧ୍ୟ ସେ ଜମାରୁ ଅଗ୍ରସର ହୋଇନାହାନ୍ତି। ଖୋଦ୍ ଈଶ୍ୱର ଦାସ ଏଥିରେ ମାନିଛନ୍ତି ଯେ ତାଙ୍କ ବିବରଣୀ ପ୍ରାଚୀନତର ଗ୍ରନ୍ଥଗୁଡ଼ିକର ବିବରଣଠାରୁ ଭିନ୍ନ ହେଲେ ହେଁ ସ୍ୱୟଂ ନାରାୟଣ ତାଙ୍କୁ ପଦଗୁଡ଼ିକୁ ଡାକି ଦେଉଥିବାରୁ ତାଙ୍କ ରଚନାଟି ସ୍ୱୟଂପ୍ରମାଣ।

ପୁରାଣ ଉକ୍ତିରୁ ବାହାର। ଯାହା ଲେଖିବି ଗ୍ରନ୍ଥସାର।। (୧/୧୬)
ସେ ଶାସ୍ତ୍ର ହୋଇବ ପ୍ରମାଣ। ହୃଦେ ବିଜୟେ ନାରାୟଣ।। (୧/୧୭)

ଏ ଗ୍ରନ୍ଥେ ନାହିଁ ମୋର ଦୋଷ। କରୁଣା କଲେ ପୀତବାସ ॥(୪୭/୧୮୧)
ଏ କଥା ଅଟଇ ପ୍ରମାଣ। ସୁଜନେ ଦୋଷ ମୋ ନ ଘେନ ॥(୪୭/୧୮୨)
ଯାହା କହିଲେ ଭଗବାନ। ସେ ଆଜ୍ଞା କଲି ମୁଁ ଲେଖନ ॥(୬୪/୬୯୯)
ଯେ ଶାସ୍ତ୍ରେ ନାହିଁ ମୋର ଦୋଷ। ଜାଣନ୍ତି ପ୍ରଭୁ ପୀତବାସ ॥(୬୪/୭୦୦)

ଭକ୍ତ ସମକ୍ଷରେ ଏହି ଗ୍ରନ୍ଥର ମୂଲ୍ୟ 'ଅତ୍ୟଧିକ'କି ନୁହେଁ ତାହା ଶ୍ରୀ ମହାନ୍ତି କହିବା ଭଳି ଅନ୍ୟମାନେ ବି କହନ୍ତୁ। କିନ୍ତୁ, ଏହାକୁ ଐତିହାସିକ ପ୍ରମାଣ ରୂପେ ଗ୍ରହଣ କରାଯାଇ ପାରିବ ନାହିଁ। ଈଶ୍ୱର ଦାସ, "ଚୈତନ୍ୟଚନ୍ଦ୍ରଙ୍କର ୧୫୦ ବର୍ଷ ପରେ ଏ ଗ୍ରନ୍ଥ ଲେଖିବାର ପ୍ରତୀତ ହୁଏ" ବୋଲି ଶ୍ରୀ ମହାନ୍ତି ପ୍ରାରମ୍ଭିକାରେ ମତବ୍ୟକ୍ତ କରିଛନ୍ତି। କିନ୍ତୁ, କି କି କାରଣରୁ ଗ୍ରନ୍ଥଟି ଚୈତନ୍ୟଙ୍କର ଦେଢ଼ଶହ ବର୍ଷ ପରବର୍ତ୍ତୀ ହେବା ପ୍ରତୀତ ଜନ୍ମିଲା ତାହା ସେ ଜଣାଇନାହାନ୍ତି।

ଶ୍ରୀ ମହାନ୍ତି ଚୈତନ୍ୟ ଭାଗବତର ପାଠ ପ୍ରସ୍ତୁତି ପାଇଁ ଦୁଇଟି ପୁସ୍ତକ ବ୍ୟବହାର କରିଥିବା ପାଦଟୀକାରୁ ଜଣାଯାଉଛି। କିନ୍ତୁ, ପୁସ୍ତକ ଦୁଇଟିର ପ୍ରାପ୍ତିସ୍ଥାନ, ତାହା କେତେ ପୁରୁଣା ହୋଇପାରେ ଇତ୍ୟାଦି ବିଷୟ ଶ୍ରୀ ମହାନ୍ତି କିଛି ଜଣାଇନାହାନ୍ତି। ପୁସ୍ତକଦ୍ୱୟ କାଗଜ ପାଣ୍ଡୁଲିପି ହୋଇଥିବାରୁ ଶ୍ରୀ ମହାନ୍ତି ସେ ବିଷୟ ଲେଖି ନ ଥିବା ସମ୍ଭବ। ପୁସ୍ତକ ଦ୍ୱୟ ମଧ୍ୟର ପାଠଭେଦ ବିଶେଷ ନୁହେଁ, ଯେଉଁଠାରେବି ପାଠଭେଦ ରହିଛି ତାହା ଅତି ମାମୁଲି ଧରଣର। ମୂଳ ଗ୍ରନ୍ଥଟି ପ୍ରାଚୀନ ହୋଇଥିଲେ ବାରଂବାର ଅନୁଲେଖକର ହାତରେ ପଡ଼ି ଅଧିକ ପାଠାନ୍ତର ସୃଷ୍ଟି କରିଥାଆନ୍ତା।

ଚୈତନ୍ୟ ଭାଗବତର ରଚନାକାଳ ନିର୍ଦ୍ଧାରଣ ପାଇଁ ଗୋଟିଏ ସୂଚନା ରହିଛି ତାହାର ଶେଷ ଅଧ୍ୟାୟରେ। ସେଠାରେ ଈଶ୍ୱର ଦାସ ଗୁରୁପ୍ରଣାଳୀ ଲେଖିଛନ୍ତି। ଏହି ପ୍ରଣାଳୀ ଅନୁସାରେ ଚୈତନ୍ୟଙ୍କ ଶିଷ୍ୟ ବକ୍ରେଶ୍ୱର, ବକ୍ରେଶ୍ୱରଙ୍କ ଶିଷ୍ୟ ଗୋପାଳ ଗୁରୁ, ଗୋପାଳଗୁରୁଙ୍କ ଶିଷ୍ୟ ଧ୍ୟାନଦାସ, ଧ୍ୟାନଦାସ ଶିଷ୍ୟ ଅଲକ୍ଷ୍ୟାଚାର୍ଯ୍ୟ, ଅଲକ୍ଷ୍ୟାଚାର୍ଯ୍ୟଙ୍କ ଶିଷ୍ୟ ରଥୀ ଦାସ, ରଥୀଙ୍କ ଶିଷ୍ୟ ଶ୍ୟାମ କିଶୋର ଓ ଶ୍ୟାମ କିଶୋରଙ୍କ ଶିଷ୍ୟ ଅନନ୍ତ। ଏହି ଅନନ୍ତ ଈଶ୍ୱର ଦାସଙ୍କ ଗୁରୁ ହୋଇଥିବାରୁ ଗୁରୁପ୍ରଣାଳୀ ଏତିକିରେ ସରିଛି ବୋଲି ଅନୁମିତ ହୁଏ।

କବି ଦାଶରଥି ଦାସ ଖ୍ରୀ.୧୭୩୧ରେ ସାରିଥିବା 'ବ୍ରଜବିହାର'ର ତୃତୀୟ ବୋଲିରେ ତାଙ୍କ ଗୁରୁପ୍ରଣାଳୀ ଦେଇଛନ୍ତି। ତଦନୁସାରେ ଚୈତନ୍ୟଙ୍କ ଶିଷ୍ୟ ବକ୍ରେଶ୍ୱର, ବକ୍ରେଶ୍ୱରଙ୍କ ଶିଷ୍ୟ ଗୋପାଳଗୁରୁ, ଗୋପାଳଗୁରୁଙ୍କ ଶିଷ୍ୟ ଧ୍ୟାନାନନ୍ଦ, ଧ୍ୟାନାନନ୍ଦଙ୍କ ଶିଷ୍ୟ ପୁରୁଷୋତ୍ତମ, ପୁରୁଷୋତ୍ତମଙ୍କ ଶିଷ୍ୟ କଣ୍ଠ ଦାସ ଓ କଣ୍ଠଦାସଙ୍କ ଶିଷ୍ୟ ଦାଶରଥି ଦାସ (କବି)। ଦୁଇ ପ୍ରଣାଳୀକୁ ପାଖେ ପାଖେ ରଖି ଦେଖାଯାଉ :-

| | |
|---|---|
| ୧. ଚୈତନ୍ୟ | ~~ବକ୍ରେଶ୍ୱର~~ ଚୈତନ୍ୟ |
| ୨. ~~ଚୈତନ୍ୟ~~ ବକ୍ରେଶ୍ୱର | ବକ୍ରେଶ୍ୱର |
| ୩. ଗୋପାଳଗୁରୁ | ~~ଧ୍ୟାନଦାସ~~ ଗୋପାଳଗୁରୁ |
| ୪. ~~ଗୋପାଳଗୁରୁ~~ ଧ୍ୟାନଦାସ | ଧ୍ୟାନାନନ୍ଦ ଦାସ |
| ୫. ଅଲକ୍ଷ୍ୟାଚାର୍ଯ୍ୟ | ~~କୃଷ୍ଣ ଦାସ~~ ପୁରୁଷୋତ୍ତମ |
| ୬. ~~ପୁରୁଷୋତ୍ତମ~~ କୃଷ୍ଣଦାସ | କଣ୍ଠଦାସ |
| ୭. ଶ୍ୟାମକିଶୋର | ଦାଶରଥି ଦାସ (ସମୟ ଖ୍ରୀ. ୧୭୩୧) |
| ୮. ଅନନ୍ତ | |
| ୯. ଈଶ୍ୱର ଦାସ (ଚୈତନ୍ୟଭାଗବତକାର) | |

ଗୁରୁପ୍ରଣାଳୀ ଦ୍ୱୟର ପ୍ରଥମ ଚାରିପୁରୁଷ ଅଭିନ୍ନ। ଚୈତନ୍ୟ ଓ ଦାଶରଥି ଦାସଙ୍କ ମଧ୍ୟରେ ୬ ପୁରୁଷ ଓ ଦୁଇ ଶହ ବର୍ଷର ବ୍ୟବଧାନ। ଗୋଟିଏ ପୁରୁଷ ପାଇଁ ହାରାହାରି ବ୍ୟବଧାନ ୩୩ ବର୍ଷ। ଈଶ୍ୱର ଦାସଙ୍କ ପରମଗୁରୁ ଶ୍ୟାମକିଶୋର ଦାଶରଥି ଦାସଙ୍କ ସମୟର ଲୋକ। କାରଣ, ଉଭୟେ ଧ୍ୟାନଦାସଙ୍କ ଶିଷ୍ୟଙ୍କ ପ୍ରଶିଷ୍ୟ। ଏହି ସକାଶେ ଈଶ୍ୱର ଦାସଙ୍କ ସମୟ ଓ ଚୈତନ୍ୟ ଭାଗବତର ରଚନାକାଳ ଖ୍ରୀ. ଅଷ୍ଟାଦଶ ଶତାବ୍ଦୀର ଅନ୍ତିମ ଦଶନ୍ଧି ଆଡ଼କୁ ହେବା ହିଁ ସମ୍ଭବ। ପୂର୍ବରୁ ଶୂନ୍ୟସଂହିତା, ଗୁରୁଭକ୍ତିଗୀତାରେ ପଞ୍ଚସଖା ପ୍ରସ୍ତାବିତ ହୋଇସାରିଥିବାରୁ ଚୈତନ୍ୟ ଭାଗବତ ସେହି ପ୍ରସ୍ତାବରେ ସଂଶୋଧିତ ଓ ପରିବର୍ଦ୍ଧିତ ରୂପ ବୋଲି ଗ୍ରହଣ କରାଯାଇପାରେ। ଫଳରେ ଚୈତନ୍ୟ ଭାଗବତ 'ପଞ୍ଚସଖା' ଧାରଣାର ଐତିହାସିକତାର ପ୍ରମାଣ ନୁହେଁ।

**ଅଣାକାର ସଂହିତା**

ନନ୍ଦ ଦାସଙ୍କ 'ଅଣାକାର ସଂହିତା'ରେ 'ପଞ୍ଚସଖା' ବିଷୟର ବର୍ଣ୍ଣନା ରହିଛି। ନନ୍ଦଦାସ ଚୈତନ୍ୟଙ୍କ ସମୟର ପଞ୍ଚସଖା ବିଷୟ ଲେଖିବା ସହିତ ସେହିମାନଙ୍କର ପରଜନ୍ମ ବିଷୟ ମଧ୍ୟ ଏଠାରେ ଆଲୋଚନା କରିଛନ୍ତି। ନନ୍ଦ ଦାସ କେଉଁ ସମୟର ଲୋକ ତାହା ନେଇ ଆଲୋଚକମାନେ ଭିନ୍ନ ଭିନ୍ନ ମତ ଦେଇଛନ୍ତି। ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ନନ୍ଦ ଦାସ ଖ୍ରୀ. ସପ୍ତଦଶ ଶତାବ୍ଦୀର ବୋଲି, ପଣ୍ଡିତ ବିନାୟକ ମିଶ୍ର ସେ ଉପେନ୍ଦ୍ରଭଞ୍ଜଙ୍କ ପୂର୍ବବର୍ତ୍ତୀ ବୋଲି ଓ ଆର୍ତ୍ତବଲ୍ଲଭ ମହାନ୍ତି ସେ ଊନବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧିର ବୋଲି ମତ ବ୍ୟକ୍ତ କରିଛନ୍ତି। ପ୍ରକୃତ ପକ୍ଷେ ନନ୍ଦ ଦାସେ ଆହୁରି ଅର୍ବାଚୀନ।

ତାହାଙ୍କ କାଳ ନିର୍ଣ୍ଣୟ ପାଇଁ ଗ୍ରନ୍ଥ ମଧ୍ୟରେ ଯଥେଷ୍ଟ ପ୍ରମାଣ ରହିଛି। ତହିଁରୁ ନିଃସନ୍ଦେହ ଭାବରେ ତାଙ୍କ କାଳ ଜାଣି ହେଉଛି। ନନ୍ଦ ଦାସ ଅଣାକାର ସଂହିତାରେ ପଞ୍ଚସଖାର ଅନ୍ୟତମ ଭାବରେ ସୋମନାଥ ନାମକ 'ପ୍ରତାପସିନ୍ଧୁ' ରାଜାଙ୍କ ପାତ୍ରଙ୍କ ଦମ୍ଭନାମା ଭାର୍ଯ୍ୟାଙ୍କ ଗର୍ଭରୁ ଜାତ ବଳରାମ ଦାସଙ୍କ ବୃତ୍ତାନ୍ତ ଚର୍ଚ୍ଚା କରିବା ପରେ ସେ ପରଜନ୍ମରେ ଦ୍ୱାରିକା ଦାସ ନାମରେ ଜନ୍ମଗ୍ରହଣ କରିବେ ବୋଲି ଲେଖିଛନ୍ତି।

**ଦ୍ୱାରିକା ଦାସଙ୍କ କାଳ**

ନନ୍ଦ ଦାସେ କହିଛନ୍ତି ବଳରାମ ଦାସ 'ଗୁପତ ଗୀତା' ଗ୍ରନ୍ଥର ଗୋଟିଏ ଅଧ୍ୟାୟ ଲେଖି ପରଲୋକ ଗମନ କରିବେ ଓ ପରେ ମୁକୁନ୍ଦଦେବଙ୍କର ୨ ଅଙ୍କରେ ଶୂଦ୍ରକୁଳର ରାମଦାସଙ୍କ ପୁତ୍ର ଦ୍ୱାରିକା ଦାସ ନାମରେ ଜନ୍ମ ଗ୍ରହଣ କରିବେ। ଅଣାକାର ସଂହିତାର ୬ଷ୍ଠ ପରିଚ୍ଛେଦରେ ଲେଖାଅଛି :-

ମୁକୁନ୍ଦଦେବ ଦୁଇ ଅଙ୍କେ। ପୁଣି ଜନମ ହେବ ଲୋକେ॥
ରାମଦାସ ବୋଲି ତା ନାମ। ଶୂଦ୍ରକୁଳରେ ହେବ ଜନ୍ମ॥
ପୁରୁଷୋତ୍ତମ କ୍ଷେତ୍ରେ ଯାଇ। ନିବାସ କରିଥିବ ରହି॥
ବୈଷ୍ଣବ ଦୀକ୍ଷାରେ ନିର୍ଗୁଣ। ଥିବ ତୋଷ ଚିତ୍ତ ହୋଇଣ॥
ତାହାର ଘରେ ବଳରାମ। ଗୁପତେ ହୋଇବ ଜନମ॥
ନାମ ଦ୍ୱାରିକା ବୋଲାଇବ। ବ୍ରହ୍ମଜ୍ଞାନେ ଚିତ୍ତ ବଢ଼ିବ॥

ଏହି ଦ୍ୱାରିକା ଦାସ ଗୁପ୍ତଗୀତାର ଅବଶିଷ୍ଟ ଅଧ୍ୟାୟଗୁଡ଼ିକୁ ଲେଖିବା କଥା ନନ୍ଦ ଦାସ ଜଣାଇଛନ୍ତି। 'ଛତିଶ ଗୁପ୍ତଗୀତା'ରେ ଏହି ବିଷୟର ଅନୁରୂପ ବର୍ଣ୍ଣନା ରହିଛି ତାହାର ୩୫ତମ ଅଧ୍ୟାୟରେ :-

ତାହାର ନାମ ବଳରାମ ଦାସ। ଗୁପତଗୀତା ଅଧ୍ୟାଏ ପ୍ରକାଶ॥
ସେ ପୁଣି ମୁକୁନ୍ଦଦେବ ଦ୍ୱିଅଙ୍କେ। ବଳରାମ ଦାସ ଜନ୍ମିବେ ଲୋକେ॥
ରାମ ଦାସ ଯେ ସୁଶୂଦ୍ର କୁଳେଣ। ବୈଷ୍ଣବ ବୋଲି ସେ ଅଟେ ନିର୍ଗୁଣ॥
ତହିଁ ବଳରାମ ଦାସ ହିଁ ଜାତ। ତୋ ଆଗେ ପାର୍ଥ କହିଲୁ ଗୁପତ॥
ସେହି କରିବ ଏ ଗୀତା ପ୍ରକାଶ। ଭଣିତା ହେବ ବଳରାମ ଦାସ॥
ପଞ୍ଚତ୍ରିଂଶ ଅଧ୍ୟା କରିବ ସେହି। ତୋ ଆଗେ ଅର୍ଜୁନ କହିଲି ମୁହିଁ॥

ଏଥିରୁ ସନ୍ଦେହ ରହୁନାହିଁ ଯେ ଦ୍ୱାରିକା ଦାସହିଁ ରାମ ଦାସଙ୍କ ପୁତ୍ର ଓ 'ଛତିଶଗୁପ୍ତ ଗୀତା'ର ପ୍ରଣେତା। ଦ୍ୱାରିକା ଦାସ ତାଙ୍କର 'ଶିବପୁରାଣ', 'ପରଚେ ଗୀତା', 'ପ୍ରେମରସ ଚନ୍ଦ୍ରିକା' ଆଦି ଗ୍ରନ୍ଥରେ ତାଙ୍କ ପିତାଙ୍କ ନାମ ରାମଦାସ ଥିବା ଜଣାଇଛନ୍ତି। ଓଡ଼ିଆ ସାହିତ୍ୟର ବହୁ ଆଲୋଚକ ଛତିଶଗୁପ୍ତଗୀତାର କବିଙ୍କୁ ଦ୍ୱିତୀୟ ବଳରାମ ଦାସ ବୋଲି ଗ୍ରହଣ କରି ସେ ଦ୍ୱାରିକା ଦାସଙ୍କଠାରୁ ପୃଥକ୍ ବ୍ୟକ୍ତିଥିବା କଥା ଯାହା ଲେଖିଛନ୍ତି ତାହା ଭ୍ରମାତ୍ମକ।

ତାହାର ପାଦଟୀକା ଭାବରେ ପ୍ରକାଶିତ 'ଅନ୍ୟପାଞ୍ଜୀ' ଓ 'ତୃତୀୟପାଞ୍ଜୀ'ର ମୁଦ୍ରିତ ପାଠପ୍ରସ୍ତୁତି ବେଳେ କିଛି ଅଦଳବଦଳ କରିଥିବା ସୂଚନା ଦେଇଛନ୍ତି। ବୋଧହୁଏ, ଏହି କାରଣରୁ ସେ ପ୍ରକାଶିତ କରାଇଥିବା ପାଞ୍ଜୀଟି କାହା ଗୃହର ପାଞ୍ଜୀ, ସେ ଲେଖି ଆଣିଥିବା ପାଞ୍ଜୀଟି କାହା ଗୃହର ପାଞ୍ଜୀ, ସେ ଅନ୍ୟ ପାଞ୍ଜୀ' କହୁଥିବା ପାଞ୍ଜୀଟି କାହା ଗୃହର ଓ ୩ୟ ପାଞ୍ଜୀଟି କେଉଁଠି ଥିଲା ସେ ସମ୍ପର୍କରେ କିଛି ଜଣାଇନାହାନ୍ତି।

ପରବର୍ତ୍ତୀ ସମୟରେ ଖ୍ରୀ. ୧୯୩୯ରେ ଓଡ଼ିଶା "ସରକାର ମାଦଳା ପାଞ୍ଜୀର ମୁଦ୍ରଣ ନିମିତ୍ତ ପ୍ରାଚୀ ସମିତିକୁ ଦୁଇ ଶତ ଟଙ୍କା ପ୍ରଦାନ କରିବାରୁ ତାଙ୍କରି ଆନୁକୂଲ୍ୟରେ ପାଞ୍ଜୀତ୍ରୟର ସାହାଯ୍ୟରେ ଗୋଟିଏ ନୂତନ ପାଣ୍ଡୁଲିପି ହୋଇଗଲା ଓ ଗ୍ରନ୍ଥଟି ପ୍ରକାଶିତ ହେଲା" (ଖ୍ରୀ ୧୯୪୦ରେ)। ଶ୍ରୀ ମହାନ୍ତି ଖ୍ରୀ.୧୯୩୨ପରେ ମାଦଳା ପାଞ୍ଜୀକୁ ପୁଣି ଦେଖିବାର ସୁଯୋଗ ପାଇ ନଥିଲେ ହେଁ ପୂର୍ବେ ପ୍ରସ୍ତୁତ ପାଞ୍ଜୀତ୍ରୟର ସାହାଯ୍ୟରେ ଗୋଟିଏ ନୂତନ ପାଣ୍ଡୁଲିପି ପ୍ରସ୍ତୁତ ହେବା ଅବସରରେ ପ୍ରକାଶିତ ପାଠରେ ଅଦଳ ବଦଳ କରାଯିବା ଆଶ୍ଚର୍ଯ୍ୟକର।

ଶ୍ରୀ ମହାନ୍ତି ଯାହାକୁ ୨ୟ ପାଞ୍ଜୀର ପାଠ ଭାବରେ ପ୍ରକାଶ କରାଇଛନ୍ତି ତାହାର ଧାରାବାହିକତା କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ପର୍ଯ୍ୟନ୍ତ ହିଁ ରହିଛି। ପୁରୁଷୋତ୍ତମ ଦେବଙ୍କ ବିବରଣ ଦେବାବେଳେ ୨ୟ ପାଞ୍ଜୀ ୧ମ ପାଞ୍ଜୀର ଭାଷାକୁ ପ୍ରାୟ ନକଲ କରିଛି। ପୂର୍ବ ରାଜାଙ୍କ ବିବରଣ ଦେବାବେଳେ ୨ୟ ପାଞ୍ଜୀ ପ୍ରଥମ ପାଞ୍ଜୀକୁ କେଉଁଠାରେ ବି ନକଲ କରୁ ନଥିଲା। ଏହି ନକଲ ଅଂଶ ପରେ ୨ୟ ପାଞ୍ଜୀ ଚୋଡ଼ଗଙ୍ଗ ଦେବଙ୍କ ସମୟର ରାମାନୁଜାଚାର୍ଯ୍ୟ ବିଷୟକ ବିବରଣକୁ ପୁରୁଷୋତ୍ତମ ଦେବଙ୍କ ବିବରଣ ଭାବରେ ସ୍ଥାନ ଦେଇଛି! ପୂର୍ବୋଦ୍ଧୃତ ଅଂଶଟି ପ୍ରତାପରୁଦ୍ରଦେବଙ୍କ ବିବରଣ ମଧ୍ୟରେ ସ୍ଥାନ ପାଇଛି ଓ ସେଠାରେ ମଧ୍ୟ ମଦନ ମହାଦେବଙ୍କ ସମୟରେ ଘଟିଥିଲା ବୋଲି ୧ମ ପାଞ୍ଜୀରେ ଲେଖାଥିବା ବ୍ରାହ୍ମଣ-ବୌଦ୍ଧ ବିବାଦର ବିବରଣ ଦିଆଯାଇଛି! ଏହି ବ୍ରାହ୍ମଣ-ବୌଦ୍ଧ ବିବାଦ ଗଦ୍ୟପଦ୍ୟାଦର୍ଶରେ ପ୍ରକାଶିତ 'ଅନ୍ୟପାଞ୍ଜୀ'ରେ ନାହିଁ। ଶ୍ରୀ ମହାନ୍ତି ଜଣାଇଛନ୍ତି ଯେ ପ୍ରତାପରୁଦ୍ରଙ୍କ ପରବର୍ତ୍ତୀ ଗୋବିନ୍ଦ ବିଦ୍ୟାଧର ଓ ଚକ୍ରପ୍ରତାପଙ୍କ ବିବରଣ ୧ମ ଓ ୨ୟ ପାଞ୍ଜୀରେ ପୂରାପୂରି ସମାନ। ଶ୍ରୀମନ୍ଦିରର ଦୁଇ ପୃଥକ୍ ସେବକଙ୍କ ଦ୍ୱାରା ପ୍ରସ୍ତୁତ ବିବରଣ ଯାହା ଭିନ୍ନ ଭିନ୍ନ ଘରେ ରହେ ତାହା ଗୋବିନ୍ଦ ବିଦ୍ୟାଧର ଓ ଚକ୍ରପ୍ରତାପଙ୍କ ପାଇଁ ଅଭିନ୍ନ ହେଲା କିପରି? ଚକ୍ର ପ୍ରତାପଙ୍କ ପରବର୍ତ୍ତୀ ରାଜଭୋଗ-ଇତିହାସ ୨ୟ ପାଞ୍ଜୀରେ ନାହିଁ। ବୀରକେଶରୀ ଦେବଙ୍କ ବିବରଣ ମଧ୍ୟରେ ୨ୟ ପାଞ୍ଜୀ ବୋଲି ଯାହାକୁ ନାମିତ କରାଯାଉଛି ତାହା ଯେ ପ୍ରକୃତରେ ୩ୟ ପାଞ୍ଜୀ ସେ କଥା ସେଥିରେ ପ୍ରଦତ୍ତ ଶକାବ୍ଦ ଗଣନାରୁ ବାରିହୋଇଯାଏ।

ଶ୍ରୀ ମହାନ୍ତି ମାଦଳାପାଞ୍ଜୀର ପାଠୋଦ୍ଧାର କରିବା ପୂର୍ବରୁ ରମାପ୍ରସାଦ ଚନ୍ଦ ଦେଉଳ କରଣ ଓ ତଢ଼ଉ କରଣଙ୍କ ଠାରେ (ତଥା ଅନ୍ୟତ୍ର) ରଖାହୋଇଥିବା ବିଂଶାଧିକ ମାଦଳାପାଞ୍ଜୀ ଖେଦା ପରୀକ୍ଷା କରିଥିଲେ। ମାଦଳାପାଞ୍ଜୀ ବିଷୟରେ ଶ୍ରୀ ଚନ୍ଦଙ୍କ ଗବେଷଣାତ୍ମକ ପ୍ରବନ୍ଧ ୧୯୨୭ରେ ବିହାର-ଓଡ଼ିଶା ରିସର୍ଚ୍ଚ ସୋସାଇଟିର ଜର୍ନାଲ୍‌ର ତ୍ରୟୋଦଶ ଖଣ୍ଡରେ ପ୍ରକାଶ ପାଇଥିଲା। ଶ୍ରୀ ଚନ୍ଦ ଅଧ୍ୟୟନ କରିଥିବା ତଢ଼ାଉକରଣଙ୍କ ଗୃହର ପାଞ୍ଜୀ-ଯାହାକୁ ସେ ପାଞ୍ଜୀ ଭାବରେ ଚିହ୍ନିତ କରିଛନ୍ତି ତାହାହିଁ-ମାଦଳାପାଞ୍ଜୀରେ ପ୍ରକାଶିତ ଦ୍ୱିତୀୟ ପାଞ୍ଜୀ। କାରଣ, ଏହି ଗୋଟିଏ ପାଞ୍ଜୀର ବିବରଣ ଆରମ୍ଭରୁ ଚକ୍ର ପ୍ରତାପ ଯାଏଁ ରହିଛି, ତେଣିକି ନାହିଁ। ଏହି ପାଞ୍ଜୀଟି ବିଷୟରେ ଶ୍ରୀ ଚନ୍ଦଙ୍କ ବର୍ଣ୍ଣନା ହେଲା :- This manuscript consists of 23 pairs of leaves most of which are worm-eaten. The first 17 form one single unit. It is entitled. 'କଳିଯୁଗ ରାଜାମାନଙ୍କ ଭୋଗକାଳ'. It begins with Yudhistira and ends with the reign of Chakra pratapa Deva, son of Govinda Vidyadhara." ଅର୍ଥାତ୍, ଏହି ପାଣ୍ଡୁଲେଖର ମୋଟ ୨୩ଟି ଯୋଡ଼ାପତ୍ର ମଧ୍ୟରୁ ଅଧିକାଂଶ କୀଟଦଂଷ୍ଟ। 'କଳିଯୁଗ ରାଜାମାନଙ୍କ ଭୋଗକାଳ' ଶୀର୍ଷକ ଗୋଟିଏ ରଚନା ଏହାର ଆଦ୍ୟ ୧୭ ଯୋଡ଼ାପତ୍ରରେ ଲେଖାଅଛି। ଏହା ଯୁଧିଷ୍ଠିରଙ୍କ ଠାରୁ ଆରମ୍ଭ ଓ ଗୋବିନ୍ଦ ବିଦ୍ୟାଧରଙ୍କ ପୁଅ ଚକ୍ରପ୍ରତାପ ଦେବଙ୍କ ରାଜତ୍ୱରେ ଶେଷ।

ତଢ଼ାଉ କରଣଙ୍କ ଗୃହର ପାଞ୍ଜୀଟି କୀଟଦଂଷ୍ଟ ହୋଇଥିବା ଜଣାପଡ଼ିବା ପରେ ତାହାର ପୁନରୁଦ୍ଧାର ପାଇଁ ଉଦ୍ୟମ ହୋଇଥିବା ଅନୁମିତ ହୁଏ। ବୋଧହୁଏ, ପାଞ୍ଜୀର ଶେଷ ପତ୍ରଗୁଡ଼ିକ ଅଧିକ କୀଟଦୀଷ୍ଟ ହୋଇସାରିଥିବାରୁ ସେହି ଅଂଶର ପାଠୋଦ୍ଧାର ସମ୍ଭବପର ହେଲା ନାହିଁ। ତେଣୁ, ପ୍ରଥମ ପାଞ୍ଜୀର ନକଲ କରି ଦ୍ୱିତୀୟ ପାଞ୍ଜୀର ଅଂଶୀଭୂତ କରାଗଲା, ଯାହା ଫଳରେ ସୂର୍ଯ୍ୟବଂଶୀ ପୁରୁଷୋତ୍ତମଙ୍କ ବିବରଣରେ ୧ମ ପାଞ୍ଜୀର ଅନୁସରଣ ଅଛି ଓ ଗୋବିନ୍ଦ ବିଦ୍ୟାଧର ଓ ଚକ୍ରପ୍ରତାପଙ୍କ ବିବରଣ ୧ମ ପାଞ୍ଜୀର ନକଲ ହୋଇପଡ଼ିଛି। ଏହା ନ ହୋଇଥିଲେ ତଢ଼ାଉ କରଣ ଓ ଦେଉଳ କରଣ ଘରେ ଥିବା ପୃଥକ୍ ପାଞ୍ଜୀର ଭାଷାର ମେଳ ଘଟିବା ସମ୍ଭବପର ହୁଅନ୍ତା ନାହିଁ। ଏପରି ପୁନର୍ଲେଖନ ଯୋଗୁଁ ହିଁ ପୁରୁଷୋତ୍ତମ ଦେବଙ୍କ ବିବରଣ ମଧ୍ୟକୁ ଚୋଡ଼ଗଙ୍ଗ ଦେବଙ୍କ ବିବରଣ ପଶି ଆସିଛି ଓ ପ୍ରତାପରୁଦ୍ର ଦେବଙ୍କ ବିବରଣ ମଧ୍ୟକୁ ମଦନମହାଦେବଙ୍କ ବିବରଣ ପଶି ଆସିଛି। ଏ ପୁନର୍ଲେଖନ ପ୍ରଥମ ପର୍ଯ୍ୟାୟରେ ହୋଇଛି ୧୯୩୦ ବେଳେ ଯେତେବେଳେ ପ୍ରତାପରୁଦ୍ରଙ୍କ ଅମଳର ବିବରଣ ମାତ୍ର ୧୫୬ ପଦ ବିଶିଷ୍ଟ ଥିଲା, ପରେ ତାହାର ଆକାରକୁ ବଢ଼ାଇ ଦିଆଗଲା ମାଦଳାପାଞ୍ଜୀର ମୁଦ୍ରଣ ପୂର୍ବରୁ ୧୯୩୯ରେ। ଏଥର ପ୍ରତାପରୁଦ୍ରଙ୍କ ବିବରଣ ୩୮୦ ପଦ ବିଶିଷ୍ଟ ହୋଇଗଲା।

ଶ୍ରୀ ଚନ୍ଦ ଖ୍ରୀ. ୧୯୨୭ ଦେଖିଥିବା କୀଟଦଂଷ୍ଟ ଖେଦାରେ ପ୍ରତାପରୁଦ୍ର ଦେବଙ୍କ ସମୟର ବିବରଣ କଣ ଥିଲା ତାହା ଜାଣିବାର ଉପାୟ ନାହିଁ। ମାଦଳାପାଞ୍ଜୀର ସଂପାଦକ ଶ୍ରୀ ମହାନ୍ତି ନିଜେ ଲେଖି ଆଣିଥିବା ନକଲକୁ କିମ୍ବା ମେନେଜରଙ୍କ ଦ୍ୱାରା କରିବା ଓ ପରେ 'ପାଞ୍ଜୀତ୍ରୟର ସାହାଯ୍ୟ'ରେ ଆଉ ଗୋଟିଏ ନୂତନ ପାଣ୍ଡୁଲିପି ପ୍ରସ୍ତୁତ କରିବା ରହସ୍ୟ ଏହି ପୁନର୍ଗଠନ ପ୍ରକ୍ରିୟା ମଧ୍ୟରେ ବୁଝିହେବ।

ଏଣୁ ମାଦଳାପାଞ୍ଜୀର ଯେଉଁ ପ୍ରକାଶିତ ରୂପରେ ଚୈତନ୍ୟ ଓ ତାଙ୍କ 'ସଖା' ପଞ୍ଚକ ବିଷୟ ଲେଖା ରହିଛି ତାହା ଖ୍ରୀ.୧୯୨୭ପରେ ସୃଷ୍ଟି ହୋଇଥିବା ସ୍ଥିର କରାଯାଇପାରେ। 'ପଞ୍ଚସଖା' ପ୍ରପଞ୍ଚକୁ ସମର୍ଥନ ଦେବା ଉଦ୍ଦେଶ୍ୟରେ ଏହା ଆଧୁନିକ ଅଚ୍ୟୁତାନନ୍ଦ-ଭକ୍ତଙ୍କ ପ୍ରବଞ୍ଚନା ମାତ୍ର।

**ଚଉରାଶି ଆଜ୍ଞା**

ସୁଦର୍ଶନ ଦାସ ରଚିତ 'ଚଉରାଶି ଆଜ୍ଞା'ରେ ଯଶୋବନ୍ତ ଦାସଙ୍କ ଜୀବନ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି। ଏହାର ଆରମ୍ଭର କିୟଦଂଶ ମୁଦ୍ରିତ ହୋଇଛି। ସୁଦର୍ଶନ ନିଜକୁ ଯଶୋବନ୍ତଙ୍କର ଶିଷ୍ୟ ବୋଲି (ଓ ଠାଏଁ ଠାଏଁ ସୁତ ବୋଲି) ଆତ୍ମପରିଚୟ ଦେଇଛନ୍ତି। ଡଃ କୃଷ୍ଣଚରଣ ସାହୁ 'ଯଶୋବନ୍ତ ସୁତ' ପ୍ରଣୀତ ଅନ୍ୟ ଏକ 'ଚଉରାଶି ଆଜ୍ଞା'ର ତାଳପତ୍ର ପୋଥି ପାଇଛନ୍ତି ଓ ଜଣାଇଛନ୍ତି ଯେ ଉଭୟ ଚଉରାଶି ଆଜ୍ଞାରେ ଏକା ଯଶୋବନ୍ତଙ୍କ ଜୀବନଚରିତ ବର୍ଣ୍ଣିତ ହୋଇଛି।

ଡଃ କୃଷ୍ଣଚରଣ ସାହୁ ସ୍ୱୀକାର କରିଛନ୍ତି (ଦିଗନ୍ତ, ୧୯୬୮ ଫେବ୍ରୁଆରି) ଯେ ''ଶିବ ସ୍ୱରୋଦୟ, ଯନ୍ତ୍ରବୋଲି, ରାସ, ଭବିଷ୍ୟ ପୁରାଣ ମାଳିକା ଓ ଅବତାର ମାଳିକା ପ୍ରଭୃତି ଗ୍ରନ୍ଥରେ ପଞ୍ଚସଖା ତତ୍ତ୍ୱ ଆଲୋଚିତ ହୋଇଥିବାରୁ ଏ ସବୁ ଗ୍ରନ୍ଥ ଅଷ୍ଟାଦଶ ଶତାବ୍ଦୀରେ ରଚିତ ହୋଇଥିବା ବିଶେଷ ସମ୍ଭବ।'' କିନ୍ତୁ, ଗୋଟିଏ କଥା ସେ ସ୍ୱୀକାର କରିନାହାନ୍ତି ଯେ ନିଜକୁ ପଞ୍ଚସଖାଭୁକ୍ତ ବୋଲି ଦାବି କରୁଥିବା ଯଶୋବନ୍ତଙ୍କ ଜୀବନବୃତ୍ତାନ୍ତ ହିଁ ଚଉରାଶି ଆଜ୍ଞା'ରେ ବର୍ଣ୍ଣିତହୋଇଛି। ଏହି ଯଶୋବନ୍ତଙ୍କୁ ଛାଡ଼ିଲେ ଅନ୍ୟ କେହି ଯଶୋବନ୍ତ ନାହାନ୍ତି ଯେ ପଞ୍ଚସଖାର ଅନ୍ୟତମ ବୋଲି କୁହାଯାଇଛି। ସୁଦର୍ଶନଙ୍କ ଚଉରାଶି ଆଜ୍ଞାର ଆରମ୍ଭରେ ହିଁ ଲେଖାଅଛି ଯେ ଅଡ଼ଙ୍ଗର କ୍ଷତ୍ରିୟକୁଳର ବଳଭଦ୍ର ମଲ୍ଲଙ୍କ ପୁତ୍ର ଯଶୋବନ୍ତ ଥିଲେ ପଞ୍ଚସଖାରୁ ଜଣେ।

ନଦୀୟା ନବଦ୍ୱୀପୁ ପୁଣ। ଆସିବେ ପ୍ରଭୁ ଚଇତନ ॥
ଆମ୍ଭେ ଯେ ପଞ୍ଚସଖା ପୁଣ। ଭେଟିଣ ଖଟିବୁ ଗହଣ ॥
ପ୍ରତାପଦେବ ମହାରାଜା। ବଢ଼ାଇ ତାହାର ତରିଜା ॥
ସେ ପୁଣ ପରୀକ୍ଷା କରିବ। ମୁକ୍ତି ମଣ୍ଡପେ ଠାବ ଦେବ ॥

*ଡଃ ସାହୁ ଏହି କ୍ଷତ୍ରିୟ ଯଶୋବନ୍ତଙ୍କ ଠାରୁ ପୃଥକ୍ ଜଣେ ଶୂଦ୍ର ଯଶୋବନ୍ତ ଷୋଡ଼ଶ ଶତାବ୍ଦୀରେ ଥିଲେ ଓ ଶୂଦ୍ର ଯଶୋବନ୍ତ ପଞ୍ଚସଖା-ଭୁକ୍ତ ବୋଲି ମତ ଦେଇଛନ୍ତି।*

ତେବେ କ୍ଷତ୍ରିୟ ଯଶୋବନ୍ତଙ୍କ ଶିଷ୍ୟ ତାଙ୍କ ଗୁରୁହିଁ ପଞ୍ଚସଖାରୁ ଜଣେ ବୋଲି କହନ୍ତେ ନାହିଁ। କ୍ଷତ୍ରିୟ ଯଶୋବନ୍ତଙ୍କ କୁଳସଂଜ୍ଞା ଥିଲା ମଲ୍ଲ, ସେ ଅଢ଼ଙ୍ଗର ରଘୁରାମ ଜେନାଙ୍କ ଭଉଣୀକୁ ବିବାହ କରିଥିଲେ ଓ ଅନ୍ତୋକରଣ କୁଳର ଅଚ୍ୟୁତାନନ୍ଦ ରଘୁରାମଙ୍କ ଝିଅକୁ ବିବାହ କରିଥିଲେ। ଏପରି ବୈବାହିକ ସମ୍ପର୍କରୁ ଜଣାଯାଏ ଯେ ଯଶୋବନ୍ତ ମହାନାୟକ ଖଣ୍ଡାୟତ ଥିଲେ। ଖଣ୍ଡାୟତଙ୍କ ବିବାହ କରଣଙ୍କ ସହିତ ଚଳୁଥିଲା। ଖଣ୍ଡାୟତମାନେ କ୍ଷତ୍ରିୟ ବୋଲି ପରିଚୟ ଦେଉଥିଲେ ଓ ଶୂଦ୍ର ଭାବରେ ମଧ୍ୟ ଗୃହୀତ ହେଉଥିଲେ। କରଣମାନେ ମଧ୍ୟ ଶୂଦ୍ର। ଏହି କାରଣରୁ ପଞ୍ଚସଖାମାନେ ଶୂଦ୍ର ବୋଲି ବର୍ଣ୍ଣନା ମିଳେ। ଡଃ ସାହୁ 'ଯନ୍ତବୋଲି'ର ରଚୟିତା ଯଶୋବନ୍ତ ଦାସ ନିଜକୁ ଠାଏଁ "ମୁଁ ଯଶୋବନ୍ତ ଶୂଦ୍ରକୁଳେ ଜାତ' ବୋଲି ତ ଅନ୍ୟତ୍ର "କ୍ଷତ୍ରିୟ କୁଳରେ ଜାତ ମୋହର" କହିଥିବା ଦର୍ଶାଇଛନ୍ତି। ଏଥିରୁ ଦୁଇଜଣ ଯଶୋବନ୍ତଙ୍କ ଅସ୍ତିତ୍ୱ ପ୍ରମାଣିତ ହେଉନାହିଁ, କାରଣ ଯନ୍ତବୋଲିର ଲେଖକ ଜଣେ।

ଚଉରାଶି ଆଜ୍ଞା ବିଷୟରେ ଡଃ ସାହୁ ଲେଖିଛନ୍ତି :- "ଏଥିରେ କଟକର ଶାସନକର୍ତ୍ତା ରୂପେ ଜଣେ ତୁରୁକି 'ମହମ୍ମଦ'ଙ୍କର ଉଲ୍ଲେଖ ଅଛି। ଇତିହାସରୁ ଜଣାଯାଏ ଯେ ରାମଚନ୍ଦ୍ର ଦେବ ଦ୍ୱିତୀୟଙ୍କ ସମୟରେ କଟକର ଶାସନକର୍ତ୍ତା ଥିଲେ ମହମ୍ମଦ ତକି ଖାଁ। ଚଉରାଶୀ ଆଜ୍ଞାରେ ଥିବା ତୁରୁକି ମହମ୍ମଦ ବୋଧହୁଏ ଏହି ତକି ଖାଁ ଓ ରାଜା ରାମଚନ୍ଦ୍ର ବୋଧହୁଏ ଖୋର୍ଦ୍ଧାର ରାଜା ରାମଚନ୍ଦ୍ର ଦ୍ୱିତୀୟ। ତା'ହେଲେ 'କ୍ଷତ୍ରୀୟ' ଯଶୋବନ୍ତଙ୍କ ସମୟ ହେଉଛି ରାମଚନ୍ଦ୍ର ଦେବ ଦ୍ୱିତୀୟଙ୍କ ସମୟ ଅର୍ଥାତ୍ ୧୭୨୫-୧୭୩୭ ଖ୍ରୀଷ୍ଟାବ୍ଦ।" ଚଉରାଶି ଆଜ୍ଞା ଏହି ଯଶୋବନ୍ତ ଚୈତନ୍ୟଙ୍କ ସମୟର ବୋଲି ଦାବି କରୁଛି ! ଜଣାପଡୁଛି ନୈମାଳର ପ୍ରବଞ୍ଚନା ଅଢ଼ଙ୍ଗକୁ ବ୍ୟାପିଛି ଓ ଅଚ୍ୟୁତାନନ୍ଦ ଓ ତାଙ୍କ ପିଉସା ଶ୍ୱଶୁର ଯଶୋବନ୍ତ ପ୍ରବଞ୍ଚନାକୁ ଉପଜୀବ୍ୟ କରିଛନ୍ତି। ପାଠକେ ସାବଧାନ !

ଅଚ୍ୟୁତାନନ୍ଦଙ୍କ ଶିଷ୍ୟବର୍ଗ ପରି ଯଶୋବନ୍ତଙ୍କ ଶିଷ୍ୟବର୍ଗ ତାଙ୍କ ଗୁରୁଦେବଙ୍କୁ ଅତୀତକୁ ଠେଲିବାକୁ ଯତ୍ପରୋନାସ୍ତି ଉଦ୍ୟମ କରିଯାଇଛନ୍ତି ଓ କରୁଛନ୍ତି। କୁଜଙ୍ଗର ରଜା ମଳିକ ଷଣ୍ଢ ଯଶୋବନ୍ତଙ୍କ ଭକ୍ତଥିବା କଥା ଚଉରାଶି ଆଜ୍ଞାରେ ଲେଖାଅଛି। ଓମେଲିଙ୍କ କଟକ ଜିଲା ଗେଜେଟିଅର୍‌ରେ ବର୍ଣ୍ଣିତ ଅଛି :-The original Rajas of Kujang were descended from Mallik Sendh, Raja of Dhobaigarh who lived in the 17th century". ଅର୍ଥାତ୍ କୁଜଙ୍ଗର ମୂଳ ରାଜାଗଣ ଧୋବଇଗଡ଼ର ରାଜା ମଲ୍ଲିକ ଷେଣ୍ଢଙ୍କ ବଂଶଜ, ଯେ କି ୧୭ଶ ଶତାବ୍ଦୀର ଲୋକ। ନିଜେ ଅଷ୍ଟାଦଶ ଶତାବ୍ଦୀରେ ରହି ସପ୍ତଦଶ ଶତାବ୍ଦୀର ରାଜାଙ୍କ ଦ୍ୱାରା ପୂଜିତ ହୋଇ ଷୋଡ଼ଶ ଶତାବ୍ଦୀର ଚୈତନ୍ୟ ମହାପ୍ରଭୁଙ୍କ ସଖା ହେବାଭଳି ଅସାଧ୍ୟ ସାଧନ ପଞ୍ଚସଖାଭୁକ୍ତ 'ମହାପୁରୁଷ'ଙ୍କ ପକ୍ଷେ ହିଁ ସମ୍ଭବପର !

## ପ୍ରତାରଣାର ଆକାର

ଅଚ୍ୟୁତାନନ୍ଦ ଭଣିତି ଯୁକ୍ତ ଗ୍ରନ୍ଥଗୁଡ଼ିକର ତାଲିକା ହୋଇନାହିଁ, ହୋଇ ପାରିବ ନାହିଁ। କାରଣ, ଏପରି ଗ୍ରନ୍ଥର ସୃଷ୍ଟି ପ୍ରକ୍ରିୟା ଏବେ ବି ଚାଲିଛି। ଆର୍ତ୍ତବଲ୍ଲଭ ମହାନ୍ତି ଗୋଟିଏ ସ୍ଥାନରେ ୭,୦୦୦ ଗ୍ରନ୍ଥ 'ସ୍ୱଚକ୍ଷୁରେ ଦେଖିଥିବାର ଜଣାଇଛନ୍ତି। ତାହା ଭିତରୁ ଯେଉଁ କେତୋଟି ପ୍ରକାଶ ପାଇଛି, ସେଗୁଡ଼ିକ ଗୋଟିଏ ସମୟର ରଚନା ନୁହେଁ, ତେଣୁ ଜଣେ ଲୋକର ରଚନା ନୁହେଁ। ଏହି ବିଂଶ ଶତାବ୍ଦୀର ଚତୁର୍ଥ ଦଶନ୍ଧିରେ ଜଣେ ଅଚ୍ୟୁତାନନ୍ଦ ଆଗତ ଭବିଷ୍ୟମାଳିକା ଆଦି ଗ୍ରନ୍ଥ ଲେଖିଛନ୍ତି। ତାଙ୍କ ପରେ ଆଉ ଜଣେ ଅଚ୍ୟୁତାନନ୍ଦ ନୂଆ ନୂଆ ମାଳିକା ଲେଖି ହିଟ୍‌ଲର, ହରେକୃଷ୍ଣ ମହତାବ, ବିଜୁପଟ୍ଟନାୟକ ଆଦିଙ୍କ ବିଷୟ ସେଥିରେ ଲେଖିଯାଇଛନ୍ତି। ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧିର ଜଣେ ଅଚ୍ୟୁତାନନ୍ଦ ଘଟସାଗର ବୋଲି ଆଦି ଗ୍ରନ୍ଥର ରଚୟିତା। ସେହି ଶତାବ୍ଦୀର ନବମ ଦଶନ୍ଧିରେ ଅଚ୍ୟୁତାନନ୍ଦଙ୍କ ନାମରେ 'ତତ୍ତ୍ୱବୋଧିନୀ' ରଚିତ ହୋଇଥିଲା। ଅଚ୍ୟୁତାନନ୍ଦଙ୍କ ଭଣିତି ଥିବା 'ଶୂନ୍ୟସଂହିତା'ର ଦ୍ୱିତୀୟ ଭାଗ ରଚିତ ହୋଇଥିଲା ଊନବିଂଶ ଶତାବ୍ଦୀର ଆଦ୍ୟଭାଗରେ। ଯାହା ଜଣାପଡ଼ୁଛି ଅଚ୍ୟୁତାନନ୍ଦଙ୍କ ଭକ୍ତମାନେ ଯିଏ ଯାହା ଯେବେ ଲେଖି ସେଥିରେ ଅଚ୍ୟୁତାନନ୍ଦଙ୍କ ଭଣିତି ଯୋଡ଼ିବା କଥାକୁ ଗୁରୁପୂଜାର ଏକ ଉପଚାର ବୋଲି ଭାବୁଛନ୍ତି। ଏପରି ପ୍ରତାରଣାପୂର୍ଣ୍ଣ ମାଲ୍ ଉପୁଜାଉଥିବା ଭାଟୀ ଯେ ବହୁଦିନରୁ ଚାଲିଛି ତାହା କାହାରିକୁ ଅବିଦିତ ନୁହେଁ।

ଅଚ୍ୟୁତାନନ୍ଦଙ୍କୁ ଚୈତନ୍ୟଙ୍କ ସଖା ବୋଲି ବିଶ୍ୱାସ କରୁଥିବା ଆର୍ତ୍ତବଲ୍ଲଭ ମହାନ୍ତି ସ୍ୱୀକାର କରିଛନ୍ତି : ''କେହି କେହି କହିପାରନ୍ତି ଗୁରୁଭକ୍ତିଗୀତା ଅଚ୍ୟୁତାନନ୍ଦଙ୍କ କୌଣସି ଶିଷ୍ୟ ପ୍ରଶିଷ୍ୟଙ୍କ ଦ୍ୱାରା ରଚିତ ହୋଇ ମହାପୁରୁଷଙ୍କ ନାମରେ ଭଣିତା ହୋଇଅଛି। ଏହା ସ୍ୱୀକାର୍ଯ୍ୟ ଯେ ଭକ୍ତ ବୈଷ୍ଣବମାନେ ପ୍ରଧାନ ପ୍ରଧାନ ମହାପୁରୁଷଙ୍କ ନାମରେ ଗ୍ରନ୍ଥ ରଚନା କରିଅଛନ୍ତି। ତାହାର ନିଦର୍ଶନ ସ୍ୱରୂପ ଛତିଆ ଗାଦିର ପ୍ରତିଷ୍ଠାତା ହାଡ଼ିଦାସ (ଯେ କି ଅଚ୍ୟୁତାନନ୍ଦଙ୍କର ଅବତାର ରୂପେ ସେ ସଂପ୍ରଦାୟର ଲୋକଙ୍କ ଦ୍ୱାରା ଗୃହୀତ ହୋଇଅଛନ୍ତି) ଅଚ୍ୟୁତାନନ୍ଦଙ୍କ ନାମରେ ଅନେକ ଭଜନାଦି ରଚନା କରିଅଛନ୍ତି'' (ବ୍ରହ୍ମଶିଙ୍କୁଳି ଓ ଅଣାକାର ସଂହିତା, ମୁଖବନ୍ଧ)। ଅନୁରୂପ ବିଶ୍ୱାସ ପୋଷଣ କରୁଥିବା ଡଃ ରତ୍ନାକର ସାହୁ ମଧ୍ୟ ହାଡ଼ିଦାସ ଅଚ୍ୟୁତାନନ୍ଦଙ୍କ ଭଣିତି ଦେଇ ଗୁଡ଼ିଏ ଜାଲ ରଚନା (ଯଥା:- ଲକ୍ଷ୍ମୀଧର ବିଳାସ, ଭାବନାବର, ଅନନ୍ତଗୋଇ) ସୃଷ୍ଟି କରି ଯାଇଥିବା ସ୍ୱୀକାର କରନ୍ତି। ଏହି ଗୋଳମାଳିଆ ପରିସ୍ଥିତିରେ 'ଅଚ୍ୟୁତାନନ୍ଦ' ତଥା 'ପ୍ରଧାନ ପ୍ରଧାନ ମହାପୁରୁଷଙ୍କ' ନାମ ଭଣିତି ହେବା ଦେଖି ରଚନାର ପିତୃତ୍ୱ ବା ରଚନାକାଳ ନିରୂପଣ କରିବା ଅଯୁକ୍ତିକର। ଯେଉଁ ଅଚ୍ୟୁତାନନ୍ଦ ବା ଅଚ୍ୟୁତାନନ୍ଦ ନାମଧାରୀମାନେ ନିଜକୁ ଚୈତନ୍ୟଙ୍କର ପଞ୍ଚସଖା ମଧ୍ୟରୁ ଜଣେ ବୋଲି

ବିଭିନ୍ନ ଗ୍ରନ୍ଥରେ ଦାବି କରିଛନ୍ତି ସେ ବା ସେମାନଙ୍କ ମଧ୍ୟରୁ କେହି ଅଷ୍ଟାଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ନ ଥିବା କଥା ତାଙ୍କ ରଚନାର କାଳନିର୍ଣ୍ଣୟ କରି ପ୍ରତିପାଦନ କରିଛି।

ମୁଁ ଖ୍ରୀ.୧୯୬୦ରେ 'ପଞ୍ଚସଖା ପରଂପରା ପରୀକ୍ଷା' ପ୍ରବନ୍ଧରେ 'ପଞ୍ଚସଖା' ଅନୈତିହାସିକ କଳ୍ପନା ମାତ୍ର ବୋଲି ଦର୍ଶାଇବା ପରେ "ଭକ୍ତ ବୈଷ୍ଣବମାନେ ପ୍ରଧାନ ପ୍ରଧାନ ମହାପୁରୁଷଙ୍କ ନାମରେ" ରଚନା କରିଥିବା ଜାଲ୍ ଗ୍ରନ୍ଥରୁ ଆଉ କିଛି ଦରାଣ୍ଡି ଆଣି କୁହାଗଲା ଯେ ପ୍ରକାଶିତ ଗ୍ରନ୍ଥଗୁଡ଼ିକ ଅର୍ବାଚୀନ ବୋଲି ଧରାପଡ଼ିଲେ କଣ ହେଲା ଏଇ ଅପ୍ରକାଶିତ ଓ ସଦ୍ୟ ସଂଗୃହୀତ ଗ୍ରନ୍ଥଗୁଡ଼ିକ ଅର୍ବାଚୀନ ନୁହେଁ। ଭଣିତି ହିଁ ପ୍ରାଚୀନତାର ପ୍ରମାଣ! ଡଃ ରତ୍ନାକର ସାହୁ ଝଙ୍କାରର ୧୯୭୮ ମେ ଓ ଜୁନ୍ ସଂଖ୍ୟାରେ 'ପଞ୍ଚସଖା-ସତ୍ୟ ନା ପ୍ରହସନ' ପ୍ରବନ୍ଧରେ "ଆମେ ବହୁ ଅନୁସନ୍ଧାନରୁ ପ୍ରାପ୍ତ ହୋଇଥିବା ବିଭିନ୍ନ ତାଳପତ୍ର ପୋଥିକୁ ଭିତ୍ତିକରି କେତେକ ପ୍ରମାଣଯୋଗ୍ୟ ବିଷୟ ଉପସ୍ଥାପନ କରୁଅଛୁ" ବୋଲି କହି ଏହି ସବୁ ନବାବିଷ୍କୃତ ଗ୍ରନ୍ଥରେ ଥିବା ପଞ୍ଚସଖା ଶବ୍ଦର ଉଦ୍ଧୃତି ଦେଇଛନ୍ତି। ତାଙ୍କ ବିଚାରରେ ନବାବିଷ୍କୃତ ପୋଥିରେ ଜଗନ୍ନାଥ ଦାସ, ବଳରାମ ଦାସ ଭଣିତି ଥିବାରୁ ପୋଥିର ରଚନାକାଳ ନିଶ୍ଚୟ ଷୋଡ଼ଶ ଶତାବ୍ଦୀ। ଅନ୍ୟତ୍ର ଅନେକ ଜଗନ୍ନାଥ ଦାସ ଓ ଅନେକ ବଳରାମ ଦାସ ଅଧ୍ୟାୟରେ ମୁଁ ଦେଖାଇ ଦେଇଛି ଯେ ଏହି ନାମରେ ବହୁ କବି ବିଭିନ୍ନ ଶତାବ୍ଦୀରେ ରହିଥିଲେ। ଏହିମାନଙ୍କ ନାମରେ ଜାଲ ଭଣିତି ରଚନା ମଧ୍ୟ ସୁପ୍ରଚୁର। ଭଣିତି ଗ୍ରନ୍ଥର ପ୍ରାଚୀନତାର ପ୍ରମାଣ ନୁହେଁ। ଗ୍ରନ୍ଥର ଭାଷା, ସେଥିରେ ସ୍ଥାନ ପାଇଥିବା ଐତିହାସିକ ଘଟନା, ପୋଥିର ପତ୍ରଗୁଡ଼ିକର ପ୍ରାଚୀନତା ଆଦି ବିବିଧ ମାନଦଣ୍ଡରେ ଗ୍ରନ୍ଥର କାଳନିରୂପଣ ପାଇଁ ଉଦ୍ୟମ କରାଯାଇପାରେ। ଗ୍ରନ୍ଥ ରହିଛି ଡଃ ସାହୁଙ୍କ ଠାରେ ଓ ସେ ପ୍ରାଚୀନତା ପ୍ରମାଣ ପାଇଁ ଇଚ୍ଛୁକ ନୁହନ୍ତି! ବ୍ୟାପାରଟି ବଡ଼ ଗହନ।

ଡଃ ସାହୁ ଉପସ୍ଥାପନ କରିଥିବା ନବାବିଷ୍କୃତ ଅପ୍ରକାଶିତ ଗ୍ରନ୍ଥଗୁଡ଼ିକ ସେ କେବେ କାହାଠାରୁ କେଉଁଠୁ ସଂଗ୍ରହ କରିଛନ୍ତି ଜାଣିବା ପାଇଁ ମୁଁ ତାଙ୍କ ପାଖକୁ ଏକ ପତ୍ରଲେଖିଲି। ଡଃ ସାହୁ ତଥ୍ୟ ଯୋଗାଇଲେ ଗ୍ରନ୍ଥ ସୃଷ୍ଟିର ଇତିହାସ ନେଇ ତଦନ୍ତ କରିବା ମୋର ଇଚ୍ଛାଥିଲା। ଡଃ ସାହୁ ମୋର ଏ ତଦନ୍ତ କାର୍ଯ୍ୟରେ ସହଯୋଗ ନ କରି ଉତ୍ତର ଦେଲେ : "ପୋଥିଗୁଡ଼ିକ ସଂପର୍କରେ ଆପଣଙ୍କ ମନରେ ଯେତେବେଳେ ଅନେକ ଅନୁସନ୍ଧିତ୍ସା ଦେଖାଦେଇଛି ମୁଁ ଏତିକି କହିପାରେ ଯେ ପ୍ରାୟ ୧୦ ବର୍ଷରୁ ଅଧିକ ପରିଶ୍ରମ କରି ଏବଂ ସହସ୍ରାଧିକ ଟଙ୍କା ଖର୍ଚ୍ଚ କରି ବିଭିନ୍ନ ସ୍ଥାନରୁ ମୁଁ ସେଗୁଡ଼ିକ ସଂଗ୍ରହ କରିଛି। ଆପଣଙ୍କ ବିଚାରରେ ଜାଲ ଏବଂ ମୋ ବିଚାରରେ ମୂଲ୍ୟବାନ ସେହି ପୋଥିଗୁଡ଼ିକରେ ସମସ୍ତ ଖବର ଆପଣ ମାତ୍ର ଚାରି ଅଣା ପଇସା ଖର୍ଚ୍ଚ କରି ଜାଣିବା ପାଇଁ ଯାହା ଚାହୁଁଛନ୍ତି ତାହା ଏକପ୍ରକାର ବାତୁଳତା ନୁହେଁ ତ ଆଉ କଣ?" (ତା୧୬/୧୧/୧୯୭୮ର ପତ୍ରରୁ ଉଦ୍ଧୃତ)। ସେତେବେଳେ ଜଗନ୍ନାଥ

ମୂଲ୍ୟ ୨୫ ପଇସା ଥିଲା, ତେଣୁ ସେତିକି ବ୍ୟୟକରି ତଥ୍ୟ ମାଗିଥିଲି। ଡଃ ସାହୁ ବି ସେହି ୨୫ ପଇସା ବ୍ୟୟ କରି ଉତ୍ତର ଦେଲେ। ସେହି ଲଫାଫାରେ ପୋଥିଗୁଡ଼ିକୁ ସେ କେବେ କାହାଠାରୁ କେଉଁଠୁ ସଂଗ୍ରହ କରିଥିଲେ ଜଣାଇଥିଲେ ତାଙ୍କୁ ପଇସାଟିଏ ବି ଅଧିକ ଖର୍ଚ୍ଚ କରିବାକୁ ପଡ଼ନ୍ତା ନାହିଁ। ଯାହାକୁ ପ୍ରମାଣ ବୋଲି ସେ ଉପସ୍ଥାପନ କରୁଛନ୍ତି ତାହା ନେଇ ତଥ୍ୟ ଯୋଗାଇବାକୁ ତାଙ୍କର ଅନିଚ୍ଛାରୁ ସନ୍ଦେହ ହେଉଛି ଯେ ଜାଲ୍ ପୋଥି ତିଆରି ମୋର ୧୯୬୦ ପ୍ରବନ୍ଧ ପ୍ରକାଶନ ପରେ ହୋଇଛି ଓ ଏ କାର୍ଯ୍ୟ ସହିତ ସେ ନିଜେ ଜଡ଼ିତ ଅଛନ୍ତି। ଅନ୍ୟଥା ଜଣେ ସଚ୍ଚା ଆଲୋଚକ ତଥ୍ୟ ଯୋଗାଇବାକୁ ଅନିଚ୍ଛୁକ ହେବା କଥା ନୁହେଁ। ଅପରାଧୀ ପକ୍ଷେ ଆତ୍ମଗୋପନ ସ୍ୱାଭାବିକ।

ଡଃ ସାହୁଙ୍କ ଦ୍ୱାରା ନବାବିଷ୍କୃତ ଅପ୍ରକାଶିତ ପୋଥିଗୁଡ଼ିକ ଯେ ପ୍ରାଚୀନ ନୁହେଁ ତାହା କାର୍ବନ-୧୪ ପରୀକ୍ଷା ଦ୍ୱାରା ସିଦ୍ଧ ହୋଇପାରେ। ଅନ୍ୟଥା ଏହି ଗୁଡ଼ିକ ଯେ ଆଧୁନିକ ଜାଲିଆତି ତାହା ଜାଣିବା ପାଇଁ ସାମାନ୍ୟ ଅକଲ ଯଥେଷ୍ଟ, ଅକଲ ଅଭାବରେ ଏଗୁଡ଼ିକ ମୂଲ୍ୟବାନ୍ ହୋଇପଡ଼ିଛନ୍ତି। ଦୃଷ୍ଟାନ୍ତ ସ୍ୱରୂପ ଉଲ୍ଲେଖ କରାଯାଇପାରେ ଯେ ଡଃ ସାହୁ ଜଗନ୍ନାଥ ଦାସ ଭଣିତି ଯୁକ୍ତ ନଅଗୋଟି ଗ୍ରନ୍ଥରୁ ପଦେ ପଦେ ଉଦ୍ଧୃତି ଦେଇ ସେଥିରେ 'ପଞ୍ଚସଖା' କଥା ଉଲ୍ଲିଖିତ ଥିବା ଦର୍ଶାଇଛନ୍ତି। ଗ୍ରନ୍ଥଗୁଡ଼ିକର ନାମ ହେଲା :-

୧. ଭକ୍ତି ଚନ୍ଦ୍ରିକା ୨. ମହିମା ଲେଖଜବିଷ୍ୟାନ୍ତ ୩. ଇନ୍ଦ୍ରଗୋବିନ୍ଦ ଗୀତା ୪. ସଦର ଜମା ଚକଡ଼ା ମଡ଼ାଣ; ୫. ସଂଶୟ ଛେଦନ ପଞ୍ଚରତ୍ନ ପାଦୁକା; ୬. ଭକ୍ତିସମ୍ଭଳ ନିର୍ଗୁଣ ଅନାମିକା ମହାକାବ୍ୟ ତତ୍ତ୍ୱ ସାରାବଳି; ୭. ଅବଧୂତ ତତ୍ତ୍ୱ ଗୀତା ୮. ଅମୃତ ରସସାଗର ଓ ୯. ଅଣାକାର ପ୍ରସନ୍ନାବଳୀ।

ଭକ୍ତି ଚନ୍ଦ୍ରିକାର ଯେଉଁ ଉଦ୍ଧୃତି ଡଃ ସାହୁ ଦେଇଛନ୍ତି ସେଥିରେ ରହିଛି :- "ନୀଳାଦ୍ରିଙ୍କେ ରାଜା ପ୍ରତାପରୁଦ୍ର ସେ କ୍ଷେତ୍ରାଧିପ ମହୀପାଳ"। ପ୍ରତାପରୁଦ୍ର ସମଗ୍ର ଓଡ଼ିଶାର ରାଜା ଥିଲେ, କ୍ଷେତ୍ରାଧିପ ମହୀପାଳ ନଥିଲେ। ଖୋରଧା ରାଜା ପୁରୀ ରାଜାରେ ପରିଣତ ହେଲେ ଇଂରେଜ ଅମଳରେ। ଭକ୍ତିଚନ୍ଦ୍ରିକା ଇଂରେଜ ଅମଳ ପୂର୍ବର ହୋଇ ନପାରେ। ଜଗନ୍ନାଥ ଦାସଙ୍କ ନାମରେ ରଚିତ 'ସଦର ଜମା ଚକଡ଼ା ମଡ଼ାଣ' ଗ୍ରନ୍ଥର ଉଦ୍ଧୃତି ଡଃ ସାହୁ ଦେଇଛନ୍ତି। 'ସଦର' ଓ 'ଜମା' ଶବ୍ଦ ମୋଗଲ ଶାସନର ପରବର୍ତ୍ତୀ ସମୟର ସୂଚନା ଦେଉଛି। ଚୈତନ୍ୟଙ୍କ ସମୟର ଜଗନ୍ନାଥ ଦାସ ତାଙ୍କର ଏକ ଧର୍ମଗ୍ରନ୍ଥ ନାମ 'ସଦର ଜମା ଚକଡ଼ା ମଡ଼ାଣ' ରଖିଥିଲେ ଓ ଆଉ ଗୋଟିକର ନାମ 'ଭକ୍ତିସମ୍ଭଳ ନିର୍ଗୁଣ ଅନାମିକା ମହାକାବ୍ୟ ତତ୍ତ୍ୱ ସାରାବଳି' ରଖିଥିଲେ ବୋଲି କହିବା ସୁସ୍ଥ ବିଚାର ନୁହେଁ। ଡଃ ସାହୁ 'ସଂଶୟ ଛେଦନ ପଞ୍ଚରତ୍ନ ପାଦୁକା'ର ଯେତିକି ଉଦ୍ଧୃତି ଦେଇଛନ୍ତି ତହିଁରେ ଅଛି:-

ଦାସ ଜଗନ୍ନାଥ ମନଯାନେ ଚଢ଼ି କୁରୁକ୍ଷେତ୍ରେ ପରବେଶ ।
ସଂଶୟ ଛେଦ୍ନ ପଞ୍ଚରତ୍ନ ପାଦୁକା ଭଣେ ଦାସ ଜଗନ୍ନାଥ ॥୧୫୫॥

ଏଠି ଜଗନ୍ନାଥ ଦାସଙ୍କ କବିତ୍ୱର ଅଧୋଗତି ଲକ୍ଷ୍ୟ କରାଯାଇପାରେ । ଶେଷର 'ଦାସ ଜଗନ୍ନାଥ'କୁ ଜଗନ୍ନାଥ ଦାସ କରିଥିଲେ ମିତ୍ରାକ୍ଷର ରକ୍ଷା କରାଯାଇପାରନ୍ତା, କିନ୍ତୁ ହେଲା ନାହିଁ । ଛେଦନକୁ ଛେଦ୍ନ ଲେଖିବା ଲୋକଟି ଅତିବଡ଼ କି ଭାଗବତକାର ହେବା ଅସମ୍ଭବ । ପୁଣି, ଆଉ ଏକ ଗ୍ରନ୍ଥର ନାମ 'ଅଣାକାର ପ୍ରସନ୍ନାବଳୀ' ! ପ୍ରସନ୍ନ ବିଶେଷ୍ୟ ଶବ୍ଦ ନୁହେଁ ଯେ ସେଥିରେ ଆବଳୀ ଲାଗିବ, ହୋଇପାରନ୍ତା ପ୍ରସାଦାବଳୀ । ଅଥବା ମୂର୍ଖ ଜଗନ୍ନାଥ ଦାସ 'ପ୍ରଶ୍ନାବଳୀ'କୁ ପ୍ରସନ୍ନାବଳୀ କରିଛି । ସେହି ମୂର୍ଖ ପୁଣି ଭଣିତି ଦେଇଛି "ଭଣିଲେ ବିପ୍ର ଶ୍ରୀ ଜଗନ୍ନାଥ" । ଜଗନ୍ନାଥ ଦାସ ବା ଆଉ ଯେ କେହି କବି ନିଜକୁ ତୃତୀୟ ପୁରୁଷ ଭାବରେ ବ୍ୟକ୍ତ କରି ନିଜ ନାମ ଆଗରେ ଶ୍ରୀ ଦେବା ପ୍ରଥା ଅତୀତରେ ନଥିଲା ।

### ବୈଷ୍ଣବ ଲୀଳାମୃତ

ଚୈତନ୍ୟ ଓ ପଞ୍ଚସଖା ଚରିତ ଗର୍ଭକ 'ବୈଷ୍ଣବ ଲୀଳାମୃତ' ନାମକ ପଦ୍ୟ ରଚନା ଡଃ ଘନଶ୍ୟାମ ରଥ ଓ ଡଃ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟଙ୍କ ଦ୍ୱାରା ସଂପାଦିତ ହୋଇ ୧୯୮୬ରେ ଆତ୍ମପ୍ରକାଶ କଲା । ଏଥିରେ ଡଃ ରଥ ଜଣାଇଛନ୍ତି ଯେ ସେ ଭିନ୍ନ ଭିନ୍ନ ସ୍ଥାନରୁ ଏହାର ତିନି ଖଣ୍ଡି ତାଳପତ୍ର ପୋଥି ୧୯୭୪, ୧୯୭୮ ଓ ୧୯୭୯ରେ ପାଇଥିଲେ । ପୋଥି ତିନୋଟି କେଉଁଠୁ ମିଳିଲା ସେ ଜଣାଇନାହାନ୍ତି । ବୈଷ୍ଣବ ଲୀଳାମୃତର ଅନ୍ୟ କୌଣସି ନକଲ ଅନ୍ୟତ୍ର ନାହିଁ ଓ ଅନ୍ୟ କେହି ଆଲୋଚକ ଏପରି ରଚନାର ସ୍ଥିତି ବିଷୟରେ କେବେହେଁ କିଛି ଲେଖିନାହାନ୍ତି । ଏକାଦିକ୍ରମେ ତିନୋଟି ପୋଥି ଜଣେ ମାତ୍ର ଲୋକକୁ ମିଳିଥିବା ଏକ ବିସ୍ମୟକର ବ୍ୟାପାର ।

ବୈଷ୍ଣବ ଲୀଳାମୃତ ଅନୁସାରେ ଚୈତନ୍ୟ ଓଡ଼ିଶାରେ ତାଙ୍କର ସହଯୋଗୀ ପଞ୍ଚସଖାଙ୍କ ସହିତ ନଗରଗ୍ରାମ ବୁଲିବୁଲି ସଂକୀର୍ତ୍ତନ କରୁଥିଲେ । ଏଥିରେ ଲେଖାଅଛି ଯେ ଜନୈକ ମାଧବ ପଟ୍ଟନାୟକ ରାୟ ରାମାନନ୍ଦଙ୍କ ସହକାରୀ ଭାବରେ ୧୪୯୯ରୁ ତାଙ୍କ ପାଖେ ପାଖେ ରହୁଥିଲେ ଓ ରାୟଙ୍କ ଦେହାନ୍ତ ପରେ ୧୫୩୪-୩୫ରେ ଏହାକୁ ଲେଖିଥିଲେ ।

ଏଥିରେ ଚୈତନ୍ୟଙ୍କ ପୁରୀ-ରହଣି ବେଳର ଅନେକ ବିବରଣ ରହିଛି ଯାହା ଅନ୍ୟ ସୂତ୍ରରୁ ଜଣାଯାଏ ନାହିଁ । କିନ୍ତୁ, ଗଭୀର ଅଧ୍ୟୟନ କଲେ ପରିସ୍ଫୁଟ ହୁଏ ଯେ 'ପଞ୍ଚସଖା' ତତ୍ତ୍ୱକୁ ବଞ୍ଚାଇ ରଖିବା ମତଲବରେ ଏହାକୁ ବିଂଶ ଶତାବ୍ଦୀରେ ଜାଲିଆତି କରାଯାଇଛି । ଦୃଷ୍ଟାନ୍ତ :-

(୧) ଏଥିରେ ଲେଖାଅଛି ଯେ ଏହାର ପ୍ରଣେତା ମାଧବ ପଟ୍ଟନାୟକଙ୍କ ମୂଳ ବାସସ୍ଥାନ 'ଖଣ୍ଡପଡ଼ା' ଓ ସେ ପ୍ରତାପରୁଦ୍ରଙ୍କ ୪ ଅଙ୍କରେ (୧୪୯୯ରେ)୨୧ ବର୍ଷ ବୟସରେ ଖଣ୍ଡପଡ଼ା ଛାଡ଼ି ପୁରୀକୁ ପଳାଇଥିଲେ। ଇତିହାସରେ ଖଣ୍ଡପଡ଼ା ରାଜ୍ୟର ସ୍ଥିତି ପଞ୍ଚଦଶ ଶତାବ୍ଦୀରେ ନଥିଲା। ରାଜ୍ୟର ଦ୍ୱାଦଶ ରାଜା ରାମଚନ୍ଦ୍ର ସିଂହଙ୍କ ୧୯୨୪ରେ ଦେହାନ୍ତ ହେବା ପର୍ଯ୍ୟନ୍ତ ସେଠାରେ ନଅ ପୁରୁଷ ରାଜା ଶାସନ କରିଛନ୍ତି। ଗୋଟିଏ ପୁରୁଷକୁ ହାରାହାରି ୩୫ ବର୍ଷ ବୋଲି ଧରିଲେ ଖଣ୍ଡପଡ଼ା ରାଜ୍ୟର ସୃଷ୍ଟିହେଲା ୧୯୨୪ର ୩୫+୯=୩୧୫ବର୍ଷ ପୂର୍ବେ। ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର ତାଙ୍କର 'ସାମନ୍ତ ଚନ୍ଦ୍ରଶେଖର' ପୁସ୍ତକରେ ରାଜ୍ୟପ୍ରତିଷ୍ଠା ଠାରୁ ପ୍ରତ୍ୟେକ ରାଜାଙ୍କ ନାମ ଓ ରାଜତ୍ୱକାଳ ଲେଖିଛନ୍ତି। ତଦନୁସାରେ ରାଜ୍ୟର ସୃଷ୍ଟି ହୋଇଥିଲା ୧୯୨୪ର ୩୨୭ ବର୍ଷ ପୂର୍ବେ ଅର୍ଥାତ୍ ୧୫୯୭ରେ। ତେଣୁ ଜଣାଯାଏ ଖଣ୍ଡପଡ଼ାର ମାଧବ ପଟ୍ଟନାୟକ ଐତିହାସିକ ବ୍ୟକ୍ତି ନୁହନ୍ତି।

(୨) ଖଣ୍ଡପଡ଼ା ନାମ ପରି ମାଧବ ପଟ୍ଟନାୟକ ନାମ ମଧ୍ୟ ପାଠକଙ୍କୁ ଠକିବା ପାଇଁ ନିହିତ। ବୈଷ୍ଣବ ଲୀଳାମୃତରେ ଲେଖାଅଛି, ଯେ କବି 'ବୈଷ୍ଣବ ଲୀଳାମୃତ' ଲେଖିବା ପୂର୍ବରୁ ପ୍ରତାପରୁଦ୍ରଙ୍କ ୨୪ଅଙ୍କରେ (୧୫୧୫ରେ) 'ଚୈତନ୍ୟବିଳାସ' ରଚନା କରିଥିଲେ। 'ଚୈତନ୍ୟବିଳାସ'ର ତାଳପତ୍ର ପୋଥି ଓଡ଼ିଶା ରାଜ୍ୟ ମ୍ୟୁଜିଅମର ପୋଥି ଭଣ୍ଡାରରେ ରହିଛି। ଚୈତନ୍ୟ ବିଳାସରେ କବିଙ୍କ ନାମ ମାଧବ ଦାସ ଓ ତାହାର ଦ୍ୱିତୀୟ ଛାନ୍ଦରେ ମାଧବ ରଥ ବୋଲି ଜଣାଇ ଦିଆଯାଇଛି। ସେଠାରେ ମାଧବ ପଟ୍ଟନାୟକ ନାମ କୁତ୍ରାପି ନଥିଲେ ସୁଦ୍ଧା ସୁରେନ୍ଦ୍ର ମହାନ୍ତି ତାଙ୍କର 'ଓଡ଼ିଆ' ସାହିତ୍ୟର ମଧ୍ୟପର୍ବରେ ପ୍ରଣେତାଙ୍କ ନାମ ମାଧବ ପଟ୍ଟନାୟକ ବୋଲି ଲେଖିଦେଲେ। ଶ୍ରୀ ମହାନ୍ତିଙ୍କ ପୂର୍ବରୁ 'ଚୈତନ୍ୟ ବିଳାସ'ର ଉଦ୍ଧାରକ ଡଃ ବିମାନ ବିହାରୀ ମଜୁମଦାର ବଙ୍ଗୀୟ ସାହିତ୍ୟ ପରିଷଦ୍ ପତ୍ରିକାରେ ଏହି ରଚନା ସଂପର୍କରେ ବିଶଦ ଆଲୋଚନା କରିଥିଲେ ଓ ପରେ ମଧ୍ୟ ତାଙ୍କର 'ଶ୍ରୀ ଚୈତନ୍ୟ ଚରିତେର ଉପାଦାନ' ଗ୍ରନ୍ଥରେ ଲେଖା ଓ ଲେଖକଙ୍କ ପରିଚୟ ଦେଇଛନ୍ତି। କିନ୍ତୁ, ସେ କୁତ୍ରାପି ମାଧବ ପଟ୍ଟନାୟକ ନାମ ଲେଖିନାହାନ୍ତି। ଜୀବ ଗୋସ୍ୱାମୀ ପ୍ରଣୀତ 'ବୈଷ୍ଣବ ବନ୍ଦନା'ରେ ଜଣେ 'ମାଧବ ପଟ୍ଟନାୟକ'ଙ୍କ ନାମ ଲେଖାଅଛି: 'ବନ୍ଦେ ପରମ ଭାବେନ ମାଧବଂ'' ପଟ୍ଟନାୟକମ୍' (ଶ୍ରୀ ଚୈତନ୍ୟ ଚରିତେର ଉପାଦାନରେ ଉଦ୍ଧୃତ)। ବୋଧହୁଏ, ଏହାର ଉପଯୋଗ କରି ସୁରେନ୍ଦ୍ର ମହାନ୍ତି ଚୈତନ୍ୟ ବିଳାସର କବି ମାଧବଙ୍କୁ ମାଧବ ପଟ୍ଟନାୟକରେ ପରିଣତ କରିଦେଲେ। ଏହି ଭ୍ରମାତ୍ମକ ଉଲ୍ଲେଖକୁ ଆଧାର କରି ବୈଷ୍ଣବ ଲୀଳାମୃତର ଲେଖକ ନିଜକୁ ମାଧବ ପଟ୍ଟନାୟକ ବୋଲାଇ ସେ ଚୈତନ୍ୟ ବିଳାସ ଲେଖିଥିଲେ ବୋଲି ପ୍ରକାଶ କଲେ। 'ଚୈତନ୍ୟ ବିଳାସ'ର ତାଳପତ୍ର ପୋଥିର ପ୍ରମାଣ ଦୃଷ୍ଟେ ତାହାର କବିଙ୍କ ନାମ ମାଧବ ରଥ; ପଟ୍ଟନାୟକ ସଂଜ୍ଞା ଦ୍ୱାରା ଜଣାପଡୁଛି ଯେ ସୁରେନ୍ଦ୍ର ମହାନ୍ତିଙ୍କ ଓଡ଼ିଆ ସାହିତ୍ୟର ମଧ୍ୟପର୍ବର କୌଣସି ପାଠକ ବୈଷ୍ଣବ ଲୀଳାମୃତ ରଚନା କରିଛି।

(୩) ବୈଷ୍ଣବ ଲୀଳାମୃତର ଲେଖକ ନିଜକୁ ରାୟ ରାମାନନ୍ଦଙ୍କ ଏକାନ୍ତ ଅନୁଗତ ବୋଲି ଦାବି କରିବା ସତ୍ୱେ ରାୟଙ୍କ ଗ୍ରାମ ବେଣ୍ଟପୁରର ଭୌଗୋଳିକ ଅବସ୍ଥିତି କେଉଁଠି ତାହା ଜାଣି ନଥିଲେ। ଏହି ଗ୍ରନ୍ଥର ବର୍ଣ୍ଣନା ଅନୁସାରେ ମାଧବ ପଟ୍ଟନାୟକ ଖଣ୍ଡପଡ଼ାରୁ ପୁରୀ ଯିବା ବାଟରେ ବେଣ୍ଟପୁର ପଡ଼ିଲା ଓ ମାଧବେନ୍ଦ୍ର ପୁରୀ ରେମୁଣା (ବାଲେଶ୍ୱର) ଠାରୁ ପୁରୀ ଯାଉଥିଲେ ସେହି ବେଣ୍ଟପୁର ଗ୍ରାମ ଦେଇ। ବେଣ୍ଟପୁର ଗ୍ରାମଟି ବ୍ରହ୍ମଗିରି ନିକଟ ଅଲାରନାଥ ଠାରୁ ମାତ୍ର ଏକ ମାଇଲ ଦୂର ବୋଲି କବି ଜାଣିଥିଲେ ତାହା ଖଣ୍ଡପଡ଼ା-ପୁରୀ ଓ ବାଲେଶ୍ୱର-ପୁରୀ ସଡ଼କ ନିକଟରେ ବୋଲି ବର୍ଣ୍ଣନା ଦେଇ ନଥାନ୍ତେ। ଏହା ମଧ୍ୟ ସୂଚାଉଛି ଯେ ରାୟ ରାମାନନ୍ଦଙ୍କ ସହକାରୀ ମାଧବ ପଟ୍ଟନାୟକ ଏକ ମିଛ-ମଣିଷ।

(୪) ବୈଷ୍ଣବ ଲୀଳାମୃତ ଅନୁସାରେ ଚୈତନ୍ୟ ୧୫୩୩ ଅକ୍ଷୟ ତୃତୀୟାର ବ୍ରାହ୍ମ ମୁହୂର୍ତ୍ତରେ ଶ୍ରୀମନ୍ଦିର ମଧ୍ୟରେ ଦେହତ୍ୟାଗ କରିଥିଲେ। ମନ୍ଦିର ମଧ୍ୟରେ ଜଗନ୍ନାଥ ଦାସଙ୍କ ଛଡ଼ା ଆଉ କେହି ନଥିଲେ। କିଛି ସମୟ ପରେ ପ୍ରଭାତ ଅବକାଶ ବେଳ ହେବାରୁ ଜଣେ ଦୁଇଜଣ ସେବକ ଆସିଲେ। ସେମାନଙ୍କ ଦ୍ୱାରା ଜଗନ୍ନାଥ ଦାସ ଶ୍ରୀମନ୍ଦିର ପରିଚାଳକ ରାୟ ରାମାନନ୍ଦଙ୍କୁ ଡକାଇଲେ। ରାମାନନ୍ଦ ଦେଉଳ ଦ୍ୱାର ବନ୍ଦ କରିବାକୁ କହି ରାଜା ପ୍ରତାପରୁଦ୍ରଙ୍କୁ ଡକାଇବା ପାଇଁ ଜଣେ ଅଶ୍ୱାରୋହୀକୁ ପଠାଇଲେ। ଏଣୁ ଅଶ୍ୱାରୋହୀ ରାଜାଙ୍କୁ ଡାକିବାକୁ ଗଲାବେଳେ ତେଣୁ ରାଜା ଚନ୍ଦନଯାତ୍ରା ଉଦ୍ଦେଶ୍ୟରେ ପୁରୀକୁ ଆସୁଥିଲେ। ବାଟରେ ଭେଟହେଲା। ରାଜା ପୁରୀରେ ପହଞ୍ଚିଲା ବେଳକୁ ଚତୁର୍ଥ ପ୍ରହର ହୋଇଥିଲା। ବିଚାର ପରେ ସ୍ଥିର ହେଲା ଯେ ଚୈତନ୍ୟଙ୍କ ଶବକୁ ଶ୍ରୀଜଗନ୍ନାଥଙ୍କ ଜୀର୍ଣ୍ଣବିଗ୍ରହ ପୋତା ହେବା ସ୍ଥାନ କୋଇଲି ବୈକୁଣ୍ଠକୁ ନେଇ ଗାତ ଖୋଳି ପୋତି ଦିଆଯିବ ଓ ପ୍ରଚାର କରାଯିବ ଚୈତନ୍ୟ ସଶରୀର ଜଗନ୍ନାଥଙ୍କ ବିଗ୍ରହରେ ଲୀନ ହୋଇଗଲେ। ଜଗନ୍ନାଥ ଦାସ, ରାୟ ରାମାନନ୍ଦ, ରାଜା ଓ ଅଳ୍ପ କେତେଜଣ ସେବକଙ୍କ ଛଡ଼ା ଅନ୍ୟ କେହି ଚୈତନ୍ୟଙ୍କ ଶବକୁ କୋଇଲି ବୈକୁଣ୍ଠରେ ପୋତା ହେବା କଥା ଜାଣିପାରିଲେ ନାହିଁ।

ଏ ସବୁ ଶୁଦ୍ଧ ଗାଲୁ ଗପ। ଶ୍ରୀ ମନ୍ଦିରକୁ ସେବକ ଆସିବା ପୂର୍ବରୁ ଦ୍ୱାର ତ ଖୋଲା ହୋଇ ନଥିବ। ଚୈତନ୍ୟ ଅନ୍ତିମ କାଳ ହୋଇଗଲା ବୋଲି ଜାଣି ଜଗନ୍ନାଥ ଦାସଙ୍କୁ ଧରି ମେଘନାଦ ପାଚେରି ଡ଼େଇଁ ବେଢ଼ା ମଧ୍ୟକୁ ପଶିଥିଲେ? ଚନ୍ଦନ ଯାତ୍ରା ଦିନ ତମାମ୍ ସେବକମାନେ ସୁଦ୍ଧା ମନ୍ଦିରକୁ ଯାଇ ପାରିଲେ ନାହିଁ ଓ ରାଜା ରାୟ ରାମାନନ୍ଦଙ୍କ ପରାମର୍ଶ ନେଇ ଶ୍ରୀମନ୍ଦିରକୁ ଶ୍ମଶାନ ଭୂମିରେ ପରିଣତ କରିଦେଲେ; ଏ ସବୁ ଅସମ୍ଭବ ଅସାଧ ଚରିତ। ଯଦି କଥାଟି ଏତେ ଗୋପନରେ କରାଗଲା ଓ ଗୋପନ ରଖାଯିବା ସଂକଳ୍ପ କରାଗଲା ତେବେ ମାଧବ ପଟ୍ଟନାୟକେ ଏହା ଜାଣିଲେ କିପରି? ତାଙ୍କୁ ରାୟ ରାମାନନ୍ଦ ଯଦି କହିଥିବେ ତେବେ ରାୟ

ରଜାଙ୍କ ପ୍ରତି ବିଶ୍ୱାସଘାତକତା କଲେ ଓ ମାଧବ ପଟ୍ଟନାୟକ ଏକଥାକୁ ବୈଷ୍ଣବ ଲୀଳାମୃତରେ ପ୍ରକାଶ କରି ରାୟଙ୍କ ପ୍ରତି ବିଶ୍ୱାସଘାତକତା କଲେ ନାହିଁକି ? ବିଶ୍ୱାସଘାତକଙ୍କ କଥା କିପରି ବିଶ୍ୱାସଯୋଗ୍ୟ ହେବ ? ବୈଷ୍ଣବ ଲୀଳାମୃତର ଲେଖକ ଜଣେ ମିଛ ମାଧବଙ୍କ ନାମରେ ମିଛ ଆଖ୍ୟାନ ଯୋଡ଼ିବା ବେଳେ ଜାଣି ନଥିଲେ ଯେ ଜଗନ୍ନାଥଙ୍କ ଜୀର୍ଣ୍ଣବିଗ୍ରହ ପୋତିବା ବିଧାନ ସପ୍ତଦଶ ଶତାବ୍ଦୀ ପୂର୍ବରୁ ପ୍ରଚଳିତ ନଥିଲା । କଳାପାହାଡ଼ ଶ୍ରୀମୂର୍ତ୍ତି ଗୁଡ଼ିକୁ ନଷ୍ଟ କରିଦେବା ପରେ ନୂତନ ଭାବରେ ଶ୍ରୀମୂର୍ତ୍ତି ଗଢ଼ାହେଲା ଷୋଡ଼ଶ ଶତାବ୍ଦୀର ଶେଷ ଆଡ଼କୁ । ଏହା ପରେ ସପ୍ତଦଶ ଶତାବ୍ଦୀରେ ହିଁ ପୁରୁଣା ବିଗ୍ରହଙ୍କୁ ମାଟିରେ ପୋତି ନବକଳେବର କରିବା ବିଧାନ ଆରମ୍ଭ ହେଲା । ତେଣୁ, ଚୈତନ୍ୟଙ୍କ ମର ଶରୀରକୁ ଜଗନ୍ନାଥଙ୍କ ଜୀର୍ଣ୍ଣମୂର୍ତ୍ତି ପୋତାଯିବା ସ୍ଥାନରେ ପୋତିବା ବର୍ଣ୍ଣନା ଅସତ୍ୟ । ଏହା ମିଛୁଆଙ୍କ ଉଦ୍ଭାବନ ମାତ୍ର ।

(୫) ବୈଷ୍ଣବ ଲୀଳାମୃତର ଲେଖକ ସେଥିରେ ବହୁ ଐତିହାସିକ ତଥ୍ୟ ଦେଇଛନ୍ତି ଯାହା ଊନବିଂଶ ଶତାବ୍ଦୀର ଶେଷପାଦ ପୂର୍ବରୁ ଅଜ୍ଞାତ ଥିଲା ; ଯଥା:- (କ) ଶ୍ରୀମନ୍ଦିରର ନିର୍ମାତା ଚୋଡ଼ଗଙ୍ଗଦେବ ; (ଖ) କବି ଜୟଦେବଙ୍କ ଜନ୍ମସ୍ଥାନ ପ୍ରାଚୀନଦୀ କୂଳସ୍ଥ କେନ୍ଦୁଲିଶାସନ ; (ଗ) ଭାଗବତର ଭାଷ୍ୟକାର ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ ବାଲେଶ୍ୱର ଜିଲାର ମରେଇ ଗ୍ରାମ ଓ ସେ କପିଳାସର ବ୍ରହ୍ମଚାରୀ ମଠର ସ୍ୱାମୀ ଥିଲେ ; (ଘ) ଚୋଡ଼ଗଙ୍ଗ ଦେବଙ୍କ ବଡ଼ ପୁଅଙ୍କ ନାମ କାମାର୍ଣ୍ଣବ ଓ ଚୋଡ଼ଗଙ୍ଗ କାମାର୍ଣ୍ଣବଙ୍କୁ ଯୁବରାଜ ଭାବରେ ଅଭିଷିକ୍ତ କରାଇଥିଲେ ; (ଙ) ସୂର୍ଯ୍ୟବଂଶୀ ରାଜା ପୁରୁଷୋତ୍ତମ ଦକ୍ଷିଣରେ ସାଲ୍ୱ ନରସିଂହଙ୍କ ସହିତ ଯୁଦ୍ଧ କରିଥିଲେ ଓ ତାଙ୍କ ଝିଅ ରୂପବତୀ (ରୂପାମ୍ବିକା)ଙ୍କୁ ଆଣି ବିବାହ କରିଥିଲେ ; (ଚ) ପ୍ରତାପରୁଦ୍ରଙ୍କ ପୁଅ ବୀରଭଦ୍ର ଦେବ କୃଷ୍ଣଦେବ ରାୟଙ୍କ କଥାରେ ଜଣେ ମାମୁଲି ଯୋଦ୍ଧା ସହ ଅସିଚାଳନ କରିବାକୁ ଅମଙ୍ଗ ହୋଇ ଆତ୍ମହତ୍ୟା କରିଥିଲେ ; (ଛ) ପ୍ରତାପରୁଦ୍ର ତାଙ୍କ କନ୍ୟା ଜଗମୋହିନୀଙ୍କୁ କୃଷ୍ଣଦେବ ରାୟଙ୍କୁ ବିବାହ ଦେଇ ଯୌତୁକ ସ୍ୱରୂପ କୃଷ୍ଣାନଦୀର ଦକ୍ଷିଣସ୍ଥ ଦେଶକୁ ଦେଇଥିଲେ ; (ଜ) ରାୟ ରାମାନନ୍ଦଙ୍କ ଗ୍ରାମର ନାମ ବେଣ୍ଟପୁର । ଏଥିରୁ ସୂଚନା ମିଳୁଛି ଯେ ବୈଷ୍ଣବ ଲୀଳାମୃତର ଲେଖକ ବିଂଶଶତାବ୍ଦୀରେ ହେବା ଐତିହାସିକ ଚର୍ଚ୍ଚା ବିଷୟରେ ଅବହିତ ଥିଲେ ।

(୬) ବୈଷ୍ଣବଲୀଳାମୃତର ବିବରଣ ସହିତ ଅନ୍ୟାନ୍ୟ ଗ୍ରନ୍ଥର ବିବରଣର ଅମେଳ ବହୁତ । କିନ୍ତୁ, ପ୍ରାଚୀନ ଗ୍ରନ୍ଥଗୁଡ଼ିକର ବିବରଣ ମଧ୍ୟରେ ଅମେଳ ବିରଳ ନୁହେଁ । ତେଣୁ, ରଚନାର ପ୍ରାମାଣିକତା ସିଦ୍ଧ କରିବା ପାଇଁ ଏପରି ଅମେଳର ବିଚାର ପର୍ଯ୍ୟାପ୍ତ ବିବେଚିତ ହୋଇନପାରେ । ବୈଷ୍ଣବ ଲୀଳାମୃତରେ ଆଧୁନିକ କାଳରେ ଐତିହାସିକ ଅନୁସନ୍ଧାନ ଲବ୍ଧ ତଥ୍ୟାବଳୀ ସାଙ୍ଗକୁ ଆଧୁନିକ ଐତିହାସିକଙ୍କର ଭ୍ରମାତ୍ମକ ମତ ମଧ୍ୟ ସନ୍ନିବେଶିତ ହେବା ଦେଖାଯାଏ । ଗୋଟିଏ ଦୃଷ୍ଟାନ୍ତ ଦିଆଯାଇପାରେ । ଏହାର ଚତୁର୍ଥ ଅଧ୍ୟାୟରେ ପ୍ରତାପରୁଦ୍ରଙ୍କ ସମୟର ବିବରଣ ମଧ୍ୟରେ ରହିଛି :-

"ଉତ୍ତରୁ ଗାଜି ଇସିମାଲି । ଚହଟି ଅଇଲା କ୍ଷେତ୍ର ବୋଲି ।।
ପ୍ରଭୁଙ୍କୁ ଘେନିବି ବୋଇଲା । ମହାସଂକଟ ଉପୁଜିଲା ।।
ସେବକେ ନେଇ ଲୁଚାଇଲେ । ଗଡ଼ କେଙ୍କଳେ ଯାଇ ହେଲେ ।।
ଚିଲିକା ହରଦ ମଧର । ଚଢ଼େଇ ଗୁମ୍ଫାକ ଭିତର ।।

ଗାଜି ଇମାଲିଙ୍କ ଓଡ଼ିଶା ଆକ୍ରମଣ କଥା ଅନ୍ୟ କେଉଁଠି ଲେଖାନାହିଁ। ମାଦଳା ପାଞ୍ଜୀରେ ଅଛି: "ପରମେଶ୍ୱରଙ୍କୁ ଚକା ଛଡ଼ାଇ ଚାଂପରେ ବସାଇ ଚଢ଼ାଇ ଗୁହା ପର୍ବତେ ବିଜେ କରାଇଲେ। ଶ୍ରୀ ପୁରୁଷୋତ୍ତମେ ଆସି ଗୌଡ଼ ପାତିଶା ଅମୁରା ସୁରଥାନ ପ୍ରବେଶ ହୋଇଲେ।" ମନମୋହନ ଚକ୍ରବର୍ତ୍ତୀ ମାଦଳା ପାଞ୍ଜୀ ବର୍ଣ୍ଣିତ ଆମିର୍ ସୁଲ୍‌ତାନଙ୍କ ନାମ ଇସ୍‌ମାଇଲ୍ ଘାଜି ବୋଲି ୧୯୦୦ ରେ ବଙ୍ଗଳା ଏସିଆଟିକ୍ ସୋସାଇଟି ପତ୍ରିକାରେ ପ୍ରକାଶ କଲେ। ଚକ୍ରବର୍ତ୍ତୀଙ୍କ ଏହି ଚିହ୍ନଟଙ୍କୁ ପରୀକ୍ଷା ନ କରି ରାଖାଲ୍‌ଦାସ ବାନାର୍ଜୀ, ଡଃ ହବିବୁଲ୍ଲା, ହରେକୃଷ୍ଣ ମହତାବ୍ ଆଦି ସ୍ୱସ୍ୱ ଇତିହାସ ଗ୍ରନ୍ଥରେ ଗ୍ରହଣ କରିନେଲେ। ପରେ ପ୍ରଭାତ ମୁଖାର୍ଜୀ ତାଙ୍କର "ଓଡ଼ିଶାର ଗଜପତି ରଜାଗଣ' ଗ୍ରନ୍ଥ (ପୃ.୭୪)ରେ ଦର୍ଶାଇଲେ ଯେ ପ୍ରତାପରୁଦ୍ର ସମୟର ବଙ୍ଗ ନବାବ ହୁସେନ୍ ଶାହଙ୍କ ଜଣେ ସେନାପତିଙ୍କ ନାମ 'ଇସ୍‌ମାଇଲ୍' ଥିଲା ସିନା ଘାଜି ଇସ୍‌ମାଇଲ ନୁହେଁ। ଏହି ଇସ୍‌ମାଇଲ ଓଡ଼ିଶା ଆକ୍ରମଣ କରିଥିବାର କିଛି ପ୍ରମାଣ ନାହିଁ। ଇସ୍‌ମାଇଲ ଘାଜି ଥିଲେ ବଙ୍ଗ ନବାବ୍ ବର୍ବକ ଶାହ୍ (୧୪୫୯-୧୪୭୪)ଙ୍କ ସେନାପତି। ଏହି ଇସ୍‌ମାଇଲ ଘାଜିଙ୍କ ସହିତ ଓଡ଼ିଶାର ରାଜାଙ୍କ ଯୁଦ୍ଧ ବିଷୟ "ରିସାଲତଉଲ୍-ସୁହଦା ନାମକ ୧୬୩୩ରେ ରଚିତ ଫାର୍ଶୀ ଗ୍ରନ୍ଥରେ ମିଳେ। ଚକ୍ରବର୍ତ୍ତୀ ମହାଶୟ ଇସ୍‌ମାଇଲ୍ ଘାଜିଙ୍କ ନାମ ତାଙ୍କର ୫୦ ବର୍ଷ ପରବର୍ତ୍ତୀ ଇସ୍‌ମାଇଲ୍ ସହିତ ସମାନ ବୋଲି ଭ୍ରମବଶତଃ ଲେଖିଦେଲେ। ଜଣାଯାଉଛି, ବୈଷ୍ଣବ ଲୀଳାମୃତକାର ମନମୋହନ ଚକ୍ରବର୍ତ୍ତୀଙ୍କୁ ଅଥବା ତାଙ୍କ ଅନୁଗାମୀ ଓଡ଼ିଶା ଇତିହାସକାରଙ୍କୁ ପାଠ କରିଥିଲେ କିନ୍ତୁ ପ୍ରଭାତ ମୁଖାର୍ଜୀଙ୍କୁ ପାଠ କରିନଥିଲେ।

(୭) ବୈଷ୍ଣବ ଲୀଳାମୃତରେ ମୁଖ୍ୟ ଘଟନାଗୁଡ଼ିକର କାଳ (ରାଜାଙ୍କ ଅଙ୍କରେ) ଦିଆଯାଇଛି। ଏପରି କାଳଜ୍ଞାପନ କରି ଘଟନା ବର୍ଣ୍ଣନା କରିବା ରୀତି ପ୍ରାଚୀନ ରଚନା ଗୁଡ଼ିକରେ ପରିଦୃଷ୍ଟ ହୁଏ ନାହିଁ। କେବଳ ମାଦଳା ପାଞ୍ଜୀରେ ତାହା ରହିଛି, କିନ୍ତୁ ମାଦଳାପାଞ୍ଜୀ ରାଜଭୋଗ-ଇତିହାସ ଅଥଚ ବୈଷ୍ଣବ ଲୀଳାମୃତ ଚରିତ ଗ୍ରନ୍ଥ। ଏହା ବିଂଶ ଶତାବ୍ଦୀର ଐତିହାସିକ ଚେତନା ଥିବା ଲୋକର ରଚନା ହେବାରୁ ଏଥିରେ କାଳ ନିର୍ଦ୍ଦିଷ୍ଟ କରି ଘଟଣା ବର୍ଣ୍ଣନା କରାଯାଇଛି।

(୮) ବୈଷ୍ଣବ ଲୀଳାମୃତର ପଦ୍ୟରଚନା ଶୈଳୀ ଅସ୍ୱାଭାବିକ। ସନ୍ଦେହ କରାଯାଇପାରେ ଯେ ରଚନାଟି ପ୍ରାଚୀନ ଭାବେ ଗୃହୀତ ହେବା ଉଦ୍ଦେଶ୍ୟରେ ଅସ୍ୱାଭାବିକତାକୁ ଅବଲମ୍ବନ କରାଯାଇଛି। ଗୋଟିଏ ଅସ୍ୱାଭାବିକତା ହେଲା ପଦ୍ୟରେ

ମିତ୍ରାକ୍ଷର ନିୟମର ଲଂଘନ। ଏଥିରେ ଦୁଇ ପାଦର ଶେଷ ସ୍ୱରଟି ମାତ୍ର ସମାନ ହୋଇଗଲେ ଯଥେଷ୍ଟ ହେଲା ବୋଲି ବହୁପଦରେ ଧରାଯାଇଛି। ଯଥା :-

ତୁ ଅଟୁ ଭଗତ ବିଶ୍ୱାସ। କେ କହୁ ତୋର ଆଦିଅନ୍ତ।। ୧/୨୮
ଶ୍ରୀଧର କଲା ଭାଗବତ। ତାହା ଶୁଣିଲେ ସର୍ବଲୋକ।। ୨/୮୭
ଯାଅ ତୁ ଭବାନନ୍ଦ ପାଶ।। ତୋର ଉଦନ୍ତ ସେ ବୁଝିବ।। ୩/୧୦୩

ଶତାଧିକ ପଦରେ ଏପରି ମିତ୍ରାକ୍ଷର ନିୟମଭଙ୍ଗ ହୋଇଛି। ଏହା ଉଦ୍ଦେଶ୍ୟ ପ୍ରଣୋଦିତ, ଅସ୍ୱାଭାବିକ। ଉଦ୍ଧୃତ ପ୍ରଥମ ପଦରେ ଆଦିଅନ୍ତ ସ୍ଥାନରେ ଆଦ୍ୟଶେଷ, ଦ୍ୱିତୀୟ ପଦରେ ସର୍ବଲୋକ ସ୍ଥାନରେ ଏ ଜଗତ ଓ ତୃତୀୟ ପଦରେ ପାଶ ସ୍ଥାନରେ 'ଠାବ' ସହଜରେ ବସିପାରନ୍ତା। ପ୍ରାଚୀନ ଓଡ଼ିଆ ସାହିତ୍ୟରେ ମିତ୍ରାକ୍ଷର ବଦଳେ 'ମିତ୍ରସ୍ୱର' ପ୍ରଚଳନ ଅନ୍ୟତ୍ର କୁତ୍ରାପି ନାହିଁ।

ବୈଷ୍ଣବ ଲୀଳାମୃତରେ ଅବଲମ୍ବିତ ଆଉ ଏକ ଅସ୍ୱାଭାବିକତା ତାହାର ପାଦଗୁଡ଼ିକରେ ବର୍ଣ୍ଣସଂଖ୍ୟାର ଅସମାନତାରେ ଦେଖାଯାଏ। ଏହାର ପାଦଗୁଡ଼ିକ ସାଧାରଣତଃ ନଅ ଅକ୍ଷର ବିଶିଷ୍ଟ ହେଲେହେଁ ଅନେକଗୁଡ଼ିଏ ପାଦର ବର୍ଣ୍ଣସଂଖ୍ୟା ୧୦ ଓ କେତେକର ୧୧ ଏପରିକି ୧୩। ଏପରି ଅସମାନ ବର୍ଣ୍ଣ ବିଶିଷ୍ଟ ପାଦ 'ଦାଣ୍ଡି' ରଚନାରେ ମିଳେ, ବଙ୍ଗଳାଶ୍ରୀରେ ମିଳେ କିନ୍ତୁ ନବାକ୍ଷରୀ ରଚନାରେ ବିରଳ।

ପ୍ରାଚୀନତାର ମାୟା ସୃଷ୍ଟି କରିବା ଲକ୍ଷ୍ୟରେ ବୈଷ୍ଣବ ଲୀଳାମୃତର ଭାଷାକୁ କିପରି ବିକୃତ କରାଯାଇଛି ତାହାର ଏକ ଦୃଷ୍ଟାନ୍ତ ଦିଆଯାଇପାରେ। ଏହା 'ଭାତହାଣ୍ଡିରୁ ଗୋଟିଏ'। ପିଲାଟିଏ ପିଣ୍ଡାତଳକୁ ଗଡ଼ିପଡ଼ିଲା। ତା ମୁଣ୍ଡରୁ ରକ୍ତଧାର ବହିଲା। ଗୃହକର୍ମରେ ରତ ଥିବା ତା'ମା କାନ୍ଦ ଶୁଣି ଧାଇଁ ଆସିଲା ଓ ପିଲାକୁ କୋଳକୁ ଉଠାଇ ଚୈତନ୍ୟଙ୍କ ଉପରେ ରାଗିଲା। ଏହା ବୈଷ୍ଣବ ଲୀଳାମୃତର ଭାଷାରେ :-

ପିଣ୍ଡାତଳକୁ ଗଡ଼ିଲାର। ମସ୍ତକୁ ବହି ରକ୍ତଧାର।।
ମାତା ଯେ ଗୃହକୃତ୍ୟେ ରତ। କ୍ରନ୍ଦନେ ଧାଇଁଣ ଯାଆନ୍ତ।।
କୋଳକୁ ଶିଶୁ ଉଠାଇଲେ। ଚଇତନକୁ କ୍ରୋପ କଲେ।। (୮/୧୨-୧୪)

ଗଡ଼ିଲା ଶିଶୁର ଅର୍ଥରେ 'ଗଡ଼ିଲାର', ଶିଶୁର କ୍ରନ୍ଦନ ଶୁଣି ଅର୍ଥରେ 'କ୍ରନ୍ଦନେ' ଓ ଯାଇ ଅର୍ଥରେ ଯାଆନ୍ତ ଶବ୍ଦର ପ୍ରୟୋଗ ସ୍ୱାଭାବିକ ନୁହେଁ।

ବୈଷ୍ଣବ ଲୀଳାମୃତରେ କେତେକ ପ୍ରାଚୀନ ଶବ୍ଦ ଓ ବିଭକ୍ତିର ପ୍ରୟୋଗ ଅଛି ସତ; କିନ୍ତୁ ଆଉ କେତେକ ଶବ୍ଦ ଓ ବିଭକ୍ତି ରହିଛି ଯାହା ପ୍ରାଚୀନ ସାହିତ୍ୟରେ ନଥିଲା। ଏଥିରେ 'ଓ' ଅବ୍ୟୟ ପଦ ଅଛି ଯାହା ଆଧୁନିକ:- ''ଜୀବ ଓ ବ୍ରହ୍ମ ଏକ ନୋହେ'' (୪/୮୪)। ଏଥିରେ ସଂବୋଧନରେ ବ୍ୟବହୃତ ଏଣ ପ୍ରତ୍ୟୟ ଅସ୍ୱାଭାବିକ:- ''ଆସ ହୋ ସ୍ୱାମୀ ବଳରାମ, ଆସ ଅଚ୍ୟୁତ ଅନନ୍ତେଣ'' (୮/୩୩)। ସେହିପରି କରିବାପାଇଁ ଅର୍ଥରେ 'କଲାକୁ'ର ବ୍ୟବହାର ଅସ୍ୱାଭାବିକ:- ''ପ୍ରଭୁ ମାଗନ୍ତେ ଭଗବାନ। ନୃତ୍ୟକଲାକୁ ହେଲେ ଲଗ୍ନ'' (୯/୧୩୬)।

ବୈଷ୍ଣବ ଲୀଳାମୃତରେ ବହୁ ଶବ୍ଦ ବିକୃତ ରୂପ ନେଇଛି ବା ତାହାର ଅପପ୍ରୟୋଗ ହୋଇଛି। ଉଦାହରଣ ସ୍ୱରୂପ କେତୋଟି ଦୋଷଯୁକ୍ତ ଶବ୍ଦ (ବନ୍ଧନୀରେ ତାହାର ଅର୍ଥ ଓ ପ୍ରୟୋଗ ସ୍ଥାନ) ହେଲା:-ସେବ (ସେବା ୨/୧୧୭) କେମନ୍ତା (କେମନ୍ତେ ୩/୧୪); ଅନେକାଇ (ଅନେକ ୬/୫୬); ନିକିଟି (ନିକିଳି ୯/୪୭) ଯବେ (ଯେବେ ୧/୩୪); ପାଟ (ପାତ୍ରଶ୍ରୀ/୬); ମାନନ୍ତ (ମାନେଶ୍ରୀ/୨୯); ଅଙ୍ଗ (ଅଙ୍ଗୀକାର ୨/୮୮); ନିରେଖ (ନିରେଖି ୩/୧୦୭); ବେଢ଼ାଏ (ଶୀଘ୍ର ୩/୧୫୦) ବେଣ୍ଟ (ଯୁଦ୍ଧଯାତ୍ରା ୪/୪); କୁମ୍ଭାକ (ଗୁମ୍ଫା ୪/୧୩); ଯାବନ୍ତ (ଯେବେ ୪/୨୪) ବିଜ୍ଜେ କରାଅ (ବିଜେକର ୪/୭୨); ବନ୍ଦଣି (ବନ୍ଦନା ୮/୭୮); ଉରୁକି (ଉପୁଡ଼ି ୯/୩୫)।

ବର୍ଣ୍ଣିତ ଚରିତ ଓ ଭାଷା ଓ ଶୈଳୀର ବିଶ୍ଳେଷଣ ଦ୍ୱାରା ଜଣାପଡୁଛି ଯେ ପ୍ରାଚୀନ ସାହିତ୍ୟର କେହି ଅଧ୍ୟେତା ବିଂଶ ଶତାବ୍ଦୀରେହିଁ ଗ୍ରନ୍ଥଟି ଲେଖି ଅସ୍ତିତ୍ୱହୀନ ମାଧବ ପଟ୍ଟନାୟକଙ୍କୁ ଗ୍ରନ୍ଥକାର ରୂପେ ଉପସ୍ଥାପନ କରିଛନ୍ତି। ଫଳତଃ, ଐତିହାସିକ ଉପାଦାନ ରୂପେ ଗ୍ରନ୍ଥଟି ମୂଲ୍ୟହୀନ।

## (ପାଞ୍ଚ)

ଭକ୍ତିଯୋଗରେ ଭଗବାନଙ୍କ ସହିତ ଭକ୍ତର ସଂବନ୍ଧ ବିବିଧ ପ୍ରକାରର, ତନ୍ମଧ୍ୟରୁ ସଖାସଂବନ୍ଧ ଏକତମ। 'ପଞ୍ଚସଖା' ଯୁଗେ ଯୁଗେ ଜଗନ୍ନାଥଙ୍କ କେତେକ ଅବତାରଙ୍କର, ବିଶେଷତଃ କଳିଯୁଗରେ ଚୈତନ୍ୟଙ୍କର ସଖ୍ୟାସଂବନ୍ଧ ସ୍ୱୀକାର କରନ୍ତି। ସଖ୍ୟଭାବରେ କେବଳ ଜଗନ୍ନାଥ ବା ଚୈତନ୍ୟଙ୍କ ସହ ରହିବା ହିଁ 'ପଞ୍ଚସଖା'ଙ୍କ ବିଶେଷତା। ପ୍ରତ୍ୟେକ ଭକ୍ତ ଭଗବାନଙ୍କ ସଙ୍ଗେ ବ୍ୟକ୍ତିଗତ ସଂବନ୍ଧ ରଖନ୍ତି, ତେଣୁ ସ୍ୱୀୟ ସଂବନ୍ଧର ସ୍ୱଭାବ ଭକ୍ତ ବିଚାରରୁ ଅନନ୍ୟ ସାମାନ୍ୟ ହୋଇଥାଏ। ସର୍ବବିଧ ଉପାସ୍ୟଙ୍କ ସହ ଉପାସକ ସଖାସଂବନ୍ଧ ସ୍ଥାପନ କରିପାରେ। ପଞ୍ଚସଖାଙ୍କ ଉପାସ୍ୟ ଜଗନ୍ନାଥ ବା ଚୈତନ୍ୟଙ୍କର. ସେମାନେ ସଖା କିନ୍ତୁ ଅନ୍ୟ ଭକ୍ତ ସ୍ୱସ୍ୱ ଉପାସ୍ୟଙ୍କ ସଖା ହୋଇପାରନ୍ତି।

### ଶୈବ ସିଦ୍ଧାନ୍ତର ସଖ୍ୟମାର୍ଗ

ସଖ୍ୟଭାବର ପ୍ରାଚୀନତମ ପ୍ରମାଣ ଦାକ୍ଷିଣାତ୍ୟର ଶୈବସିଦ୍ଧାନ୍ତ ଶାସ୍ତ୍ରରେ ମିଳେ। ତଦନୁସାରେ ଉପାସ୍ୟ ଶିବଙ୍କ ସହିତ ଉପାସକର ସଂବନ୍ଧ ଚତୁର୍ବିଧ:- ୧. ଚର୍ଯ୍ୟା, ଯାହା ସାଲୋକ୍ୟ-ମୁକ୍ତିପ୍ରଦ ଦାସ୍ୟମାର୍ଗ; ୨. କ୍ରିୟା, ଯାହା ସାମୀପ୍ୟମୁକ୍ତିପ୍ରଦ ସତ୍‌ପୁତ୍ରମାର୍ଗ; ୩. ଯୋଗ, ଯାହା ସାରୂପ୍ୟ ମୁକ୍ତିପ୍ରଦ ସଖ୍ୟମାର୍ଗ ଓ ୪. ଜ୍ଞାନ, ଯାହା ସାଯୁଜ୍ୟ ମୁକ୍ତିପ୍ରଦ କାନ୍ତା ମାର୍ଗ ବା ସନ୍ମାର୍ଗ ବୋଲାଏ। ଏହି ମାର୍ଗ ଚତୁଷ୍ଟୟର ସମୟାଚାର୍ଯ୍ୟ (ଶୈବମତ ପ୍ରଖ୍ୟାପକ) ଭିନ୍ନ ଭିନ୍ନ। ଆନୁମାନିକ ଅଷ୍ଟମ ଶତାବ୍ଦୀର ସୁନ୍ଦରମୂର୍ତ୍ତି ସଖ୍ୟମାର୍ଗର ସମୟାଚାର୍ଯ୍ୟ। ଚାରିଜଣ ସମୟାଚାର୍ଯ୍ୟଙ୍କ ମଧ୍ୟରେ ସୁନ୍ଦରମୂର୍ତ୍ତି ହେଉଛନ୍ତି ଏକମାତ୍ର ସମୟାଚାର୍ଯ୍ୟ ଯେ କି ବିବାହ କରି, ତାହା ପୁଣି ଦୁଇ ପତ୍ନୀଙ୍କୁ, ଗାର୍ହସ୍ଥ୍ୟଜୀବନ ଯାପନ କରିଥିଲେ। ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ଈଶ୍ୱରଙ୍କ କରୁଣା ବଳରେ ମୋକ୍ଷ ଯେପରି ମିଳିଥାଏ ଭୋଗ ମଧ୍ୟ ସେହିପରି ମିଳିଥାଏ।

## ବୈଷ୍ଣବ ସଖ୍ୟ-ଆସକ୍ତି

ନାରଦ ଭକ୍ତିସୂତ୍ର (୮୨)ରେ ଭଗବାନଙ୍କ ସହିତ ଭକ୍ତର ସଂବନ୍ଧକୁ ଆସକ୍ତି ଆଖ୍ୟା ଦିଆଯାଇ ତାହା ତତ୍ତ୍ୱତଃ ଏକ ହେଲେ ହେଁ ତାହାର ଏଗାର ପ୍ରକାର ପ୍ରକାଶ ଥିବା କଥା କୁହାଯାଇଛି:- (୧) ଗୁଣମାହାତ୍ମ୍ୟ ଆସକ୍ତି (୨) ରୂପ ଆସକ୍ତି, (୩) ପୂଜା ଆସକ୍ତି (୪) ସ୍ମରଣ ଆସକ୍ତି, (୫) ଦାସ୍ୟ ଆସକ୍ତି, (୬) ସଖ୍ୟ ଆସକ୍ତି, (୭) କାନ୍ତା ଆସକ୍ତି, (୮) ବାତ୍ସଲ୍ୟ ଆସକ୍ତି, (୯) ଆତ୍ମନିବେଦନ ଆସକ୍ତି, (୧୦) ତନ୍ମୟତା ଆସକ୍ତି ଓ (୧୧) ପରମ ବିରହ ଆସକ୍ତି। ଭକ୍ତ ଭଗବାନଙ୍କ ସହିତ ବ୍ୟକ୍ତିଗତ ସଂପର୍କ ଯୋଡ଼ିଲା ବେଳେ ନିଜର ଅନୁଭୂତ ସାଂସାରିକ ଆସକ୍ତିକୁ ହିଁ ବାଛିଥାଏ। ପରିଣାମରେ, ସେ ନିଜକୁ ଭଗବାନଙ୍କର ସ୍ତାବକ, ପୂଜକ, ସେବକ, ସଖା, ଜନକ, କାନ୍ତା ଆଦି ରୂପରେ ଗଢ଼େ ଓ ତାହାର ଭଗବତ୍ ପ୍ରାପ୍ତି ପାଇଁ ସାଧନା ତଦନୁସାରେ ହୁଏ। ଗ୍ରନ୍ଥାନ୍ତରେ ଏହି ଆସକ୍ତିର ନାମାନ୍ତର ସାଧ, ରସ, ଭକ୍ତି ବା ଭାବ ମଧ୍ୟ ରହିଛି।

### ଗୌଡ଼ିୟ ବୈଷ୍ଣବଙ୍କ ସଖ୍ୟଭାବ

କୃଷ୍ଣଦାସ କବିରାଜ 'ଚୈତନ୍ୟ ଚରିତାମୃତ' (୨/୧୯)ରେ କୃଷ୍ଣଭକ୍ତିରସର ମୁଖ୍ୟ ମୁଖ୍ୟ ପାଞ୍ଚୋଟି ଭେଦର ନାମୋଲ୍ଲେଖ କରିଛନ୍ତି ଚୈତନ୍ୟଙ୍କ ମୁଖରେ :-

ଶାନ୍ତ ଦାସ୍ୟ ସଖ୍ୟ ବାତ୍ସଲ୍ୟ ମଧୁର ରସ ନାମ।
କୃଷ୍ଣଭକ୍ତିରସ ମଧ୍ୟେ ପଞ୍ଚ ପ୍ରଧାନ।।

ଭକ୍ତି ଭକ୍ତର ଆତ୍ମିକ ବ୍ୟାପାର ହେବା ହେତୁ ଇତର କେହି ସେଥିରେ ମୁଖ୍ୟଗୌଣ ଶ୍ରେଣୀବିଭାଜନ କରିବା ତାତ୍ପର୍ଯ୍ୟହୀନ। ହେଲେହେଁ, କବିରାଜେ ନିଜର ସାଂପ୍ରଦାୟିକ ମତକୁ ପ୍ରାଧାନ୍ୟ ଦେବା ପାଇଁ ଏପରି କରିଥାଇ ପାରନ୍ତି। ଅନ୍ୟତ୍ର ସେ ସେହି ଚୈତନ୍ୟ ଚରିତାମୃତ (୨/୮)ରେ ସ୍ୱୀକାର କରିଛନ୍ତି ଯେ ଭକ୍ତର ଭାବ ସେହି ଭକ୍ତ ପାଇଁ ସର୍ବୋତ୍ତମ, କିନ୍ତୁ ଭକ୍ତି ନିରପେକ୍ଷ ତଟସ୍ଥ ବିଚାର କଲେ ତାରତମ୍ୟ ଥିବା ଜଣାଯାଏ :-

କୃଷ୍ଣ ପ୍ରାପ୍ତିର ଉପାୟ ବହୁବିଧ ହୟ।
କୃଷ୍ଣ ପ୍ରାପ୍ତ୍ୟେର ତାରତମ୍ୟ ବହୁତ ଆଛୟ।।
କିନ୍ତୁ ଯାର ଯେଇ ଭାବ ସେଇ ସର୍ବୋତ୍ତମ।
ତଟସ୍ଥ ହଇୟା ବିଚାରିଲେ ଆଛେ ତାରତମ୍ୟ।।

କବିରାଜେ ଶାନ୍ତ, ସଖ୍ୟ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ରସ ମଧ୍ୟରେ ପୂର୍ବୋକ୍ତ ଅପେକ୍ଷା ପରୋକ୍ତକୁ ଶ୍ରେଷ୍ଠତର ବୋଲି ବିଚାର କରିବାର କିଛି ଯୁକ୍ତି ଦର୍ଶାଇଛନ୍ତି ଯେ ଶାନ୍ତରେ ଏକମାତ୍ର ନୂ୍ୟନତା ଗୁଣ ରହିଛି, ଦାସ୍ୟରେ ନୂ୍ୟନତା ସହିତ ସେବକତ୍ୱ ଦୁଇ ଗୁଣ ରହିଛି, ସଖ୍ୟରେ ଦାସ୍ୟର ଦୁଇଗୁଣ ସହିତ ଅଧିକ

ଆତ୍ମୀୟତାଗୁଣ ରହିଛି, ବାତ୍ସଲ୍ୟରେ ସଖ୍ୟର ତିନିଗୁଣ ସହିତ ଅଧିକ ନିଜତ୍ୱଗୁଣ ରହିଛି ଓ ମାଧୁର୍ଯ୍ୟ (କାନ୍ତାଭାବ)ରେ ବାତ୍ସଲ୍ୟର ଚାରିଟି ଗୁଣ ସହିତ ଅଧିକ ଆତ୍ମୋତ୍ସର୍ଗ ଗୁଣ ରହିଛି (ଚୈ.ଚ୨/୧୯)।

ଚୈତନ୍ୟ ଦାକ୍ଷିଣାତ୍ୟ ତୀର୍ଥାଟନରେ ଯିବା ବାଟରେ ରାୟରାମାନନ୍ଦଙ୍କ ଠାରୁ ଭକ୍ତ ସାଧ୍ୟ (କୃଷ୍ଣପ୍ରାପ୍ତିର ଉପାୟ) ଜିଜ୍ଞାସା କରିଥିଲେ। ରାୟ ଗୋଟିକ ପରେ ଗୋଟିଏ ସାଧ୍ୟର ନାମ କହିବା ବେଳେ ଚୈତନ୍ୟ ସେହି ସାଧ୍ୟ ବିଷୟରେ ନିଜର ମତ ଦେଇ ତାହାଠାରୁ ଶ୍ରେଷ୍ଠତର ସାଧ୍ୟ କଣ ଜାଣିବାକୁ ପ୍ରଶ୍ନ କରିବା ବିଷୟ ଚୈତନ୍ୟ ଚରିତାମୃତ (୨/୮)ରେ ଲେଖାଅଛି :-

ପ୍ରଭୁ କହେ ପଢ଼ ଶ୍ଳୋକ ସାଧ୍ୟେର ନିର୍ଣ୍ଣୟ।
ରାୟ କହେ ସ୍ୱଧର୍ମାଚରଣେ ବିଷ୍ଣୁଭକ୍ତିହୟ॥
ପ୍ରଭୁ କହେଏହୋବାହ୍ୟ ଆଗେ କହ ଆର।
ରାୟକହେକୃଷ୍ଣ କର୍ମାର୍ପଣ ସାଧ୍ୟସାର॥
ପ୍ରଭୁ କହେ ଏହୋ ବାହ୍ୟ ଆଗେ କହଆର।
ରାୟ କହେ ସ୍ୱଧର୍ମତ୍ୟାଗ ଏଇ ସାଧ୍ୟ ସାର॥
ପ୍ରଭୁ କହେ ଏହୋ ବାହ୍ୟ ଆଗେ କହ ଆର।
ରାୟ କହେ ଜ୍ଞାନମିଶ୍ରା ଭକ୍ତି ସାଧ୍ୟ ସାର॥
ପ୍ରଭୁ କହେ ଏହୋ ହୟ ଆଗେ କହ ଆର।
ରାୟ କହେ ପ୍ରେମଭକ୍ତି ସର୍ବ ସାଧ୍ୟ ସାର॥
ରାୟ କହେ ଜ୍ଞାନଶୂନ୍ୟ ଭକ୍ତି ସାଧ୍ୟ ସାର॥
ପ୍ରଭୁ କହେ ଏହୋ ହୟ ଆଗେ କହ ଆର।
ରାୟ କହେ ଦାସ୍ୟପ୍ରେମ ସର୍ବ ସାଧ୍ୟ ସାର॥
ପ୍ରଭୁ କହେ ଏହୋ ହୟ ଆଗେ କହ ଆର।
ରାୟ କହେ ସଖ୍ୟପ୍ରେମ ସର୍ବସାଧ୍ୟ ସାର॥
ପ୍ରଭୁ କହେ ଏହୋ ଉତ୍ତମ ଆଗେ କହ ଆର।
ରାୟ କହେ ବାତ୍ସଲ୍ୟପ୍ରେମ ସର୍ବସାଧ୍ୟ ସାର॥
ପ୍ରଭୁ କହେ ଏହୋ ଉତ୍ତମ ଆଗେ କହ ଆର।
ରାୟ କହେ କାନ୍ତାପ୍ରେମ ସର୍ବସାଧ୍ୟ ସାର॥

x x x

ପ୍ରଭୁ କହେ ଏଇ ସାଧ୍ୟାବଧି ସୁନିଶ୍ଚୟ।
କୃପା କରି କହ ଯଦି ଆଗେ କିଛୁହୟ॥

ରାୟ କହେ ଇହାର ଆଗେ ପୁଛେ ହେନ ଜନେ।
ଏତଦିନ ନାହିଁ ଜାନି ଆଛୟେ ଭୁବନେ॥
ଇହାର ମଧ୍ୟେ ରାଧାର ପ୍ରେମ ସାଧ୍ୟଶିରୋମଣି।
ଯାଁହାର ମହିମାସର୍ବ ଶାସ୍ତ୍ରେତେ ବାଖାନି॥

ରାୟ ନିକୃଷ୍ଟରୁ ଶ୍ରେଷ୍ଠ କ୍ରମରେ ଏଗାର ଗୋଟି ସାଧ୍ୟର କଥା କହିଛନ୍ତି। ତନ୍ମଧ୍ୟରୁ ପ୍ରଥମୋକ୍ତ ସ୍ୱଧର୍ମାଚରଣ ସାଧାରଣ ସାଧ୍ୟ; ଦ୍ୱିତୀୟରୁ ପଞ୍ଚମ (କୃଷ୍ଣକର୍ମାର୍ପଣ, ସ୍ୱଧର୍ମତ୍ୟାଗ, ଜ୍ଞାନମିଶ୍ରା ଭକ୍ତି ଓ ଜ୍ଞାନଶୂନ୍ୟ ଭକ୍ତି) ସାଧ୍ୟସାର ଓ ଷଷ୍ଠରୁ ଦଶମ (ପ୍ରେମଭକ୍ତି, ଦାସ୍ୟପ୍ରେମ, ସଖ୍ୟପ୍ରେମ, ବାତ୍ସଲ୍ୟପ୍ରେମ ଓ କାନ୍ତାପ୍ରେମ) ସର୍ବସାଧ୍ୟ ସାର ବୋଲି ରାୟଙ୍କ ମତ। ପୁଣି ତାଙ୍କ ମତରେ କାନ୍ତାପ୍ରେମର ଅନ୍ତର୍ଭୁକ୍ତ ରାଧାଙ୍କ ପ୍ରେମ ସାଧ୍ୟଶିରୋମଣି, ଅର୍ଥାତ୍ ଶ୍ରେଷ୍ଠତମ ସାଧ୍ୟ। ଚୈତନ୍ୟ ମଧ୍ୟ ସାଧ୍ୟ ମଧ୍ୟରେ ଭଲମନ୍ଦ ବିଚାର କରୁଥିବା କଥା ଏଥିରୁ ସୂଚିତ ହୁଏ। ତାଙ୍କ ବିଚାରରେ ପ୍ରଥମୋକ୍ତ ଚାରିଟି ସାଧ୍ୟ ବାହ୍ୟ (ତେଣୁ ଅଗ୍ରାହ୍ୟ), ପରେ ଉକ୍ତ ତିନୋଟି ସାଧ୍ୟ ମାମୁଲି, ତାହା ପରେ ଉକ୍ତ ଦୁଇଟି ସାଧ୍ୟ ଉତ୍ତମ ଓ ତାହା ପରେ ଉକ୍ତ କାନ୍ତାପ୍ରେମ ଶ୍ରେଷ୍ଠ ସାଧ୍ୟ। ଚୈତନ୍ୟ ଚରିତାମୃତରେ ବ୍ୟକ୍ତ ସାଧ୍ୟର ଶ୍ରେୟ ନିର୍ଣ୍ଣୟ ଚୈତନ୍ୟ ବା ରାୟ ରାମାନନ୍ଦଙ୍କର ନ ହୋଇ ବୃନ୍ଦାବନକୁ କେନ୍ଦ୍ର କରି ଚୈତନ୍ୟମତକୁ ରୂପ ଦେଇଥିବା ରୂପସନାତନାଦି ବୈଷ୍ଣବ ମାନଙ୍କର ହେବା ସମ୍ଭବ। ନିଚେ ରାୟ ରାମାନନ୍ଦ ଶୁଦ୍ଧ ସଖ୍ୟଭାବର ଆଶ୍ରୟ ନେବା କଥା ଚୈତନ୍ୟ ଚରିତାମୃତ (୨/୨) ସ୍ୱୀକାର କରୁଥିବାରୁ ସଖ୍ୟ ଅପେକ୍ଷା ଅନ୍ୟ ଭାବ ଶ୍ରେୟସ୍କର ବୋଲି ସେ କହିଥିବା ସମୀଚୀନ ବୋଧ ହେଉନାହିଁ :-

"ପୁରୀର ବାତ୍ସଲ୍ୟ ମୁଖ୍ୟ ରାମାନନ୍ଦେର ଶୁଦ୍ଧ ସଖ୍ୟ ଗୋବିନ୍ଦାଦ୍ୟେର ଶୁଦ୍ଧ ଦାସ୍ୟରସ।
ଗଦାଧର ଜଗଦାନନ୍ଦ ସ୍ୱରୂପରେ ମୁଖ୍ୟ ରସାନନ୍ଦ ଏଇ ଚାରିଭାବେ ପ୍ରଭୁବଶ॥

ପୁଣି, ଯେଉଁ ନିତ୍ୟାନନ୍ଦ ଚୈତନ୍ୟଙ୍କ ଅଗ୍ରଜ ଓ ବଳରାମଙ୍କ ଅବତାର ରୂପେ ଚୈତନ୍ୟ ଚରିତାମୃତରେ ସ୍ୱୀକୃତ ("ଦୁଇ ଭାଇ ଏକ ତନୁ ସମାନ ପ୍ରକାଶ" -ଚୈ.ଚ.୧/୫) ଓ ଯେ ବଙ୍ଗଦେଶରେ ଚୈତନ୍ୟମତର ମୁଖ୍ୟ ପ୍ରଚାରକ ଥିଲେ, ସେ ସଖ୍ୟଭାବର ସମର୍ଥକ ଥିଲେ।

## ନିତ୍ୟାନନ୍ଦଗଣଙ୍କ ସଖ୍ୟଭାବ

ଚୈତନ୍ୟ ସନ୍ନ୍ୟାସ ଗ୍ରହଣ ପୂର୍ବେ ସ୍ୱୟଂ କୃଷ୍ଣରୂପେ ଗୃହୀତ ହେଉଥିଲେ। ସେ ସନ୍ନ୍ୟାସ ଗ୍ରହଣ କରିବା ପରେ ପୁରୀରେ ରହିଥିଲେ ଓ ନିଜେ ରାଧାଭାବ ଓ ମଞ୍ଜରୀଭାବକୁ ସ୍ୱୀକାର କଲେ। ସେ ନିତ୍ୟାନନ୍ଦଙ୍କୁ ପୁରୀକୁ ନ ଆସି ଗୌଡ଼ ଦେଶରେହିଁ ରହି ଧର୍ମପ୍ରଚାର କରିବାକୁ କହିଥିଲେ। ନିତ୍ୟାନନ୍ଦ ତଦନୁସାରେ ଗୌଡ଼ଦେଶକୁ ତାଙ୍କର କର୍ମକ୍ଷେତ୍ର ରୂପେ ଗ୍ରହଣ କରିଥିଲେ। ସେ ବିବାହ କରି ଗୃହସ୍ଥଜୀବନ

ଯାପନ କରିବା ସହିତ ଧର୍ମପ୍ରଚାର କରୁଥିଲେ। ସେ ବୃନ୍ଦାବନର ଗୋପାଳମାନଙ୍କର କୃଷ୍ଣବଳରାମଙ୍କ ସହିତ ସଖାଭାବକୁ ଆଦରିବାକୁ ତାଙ୍କ ଗୋଷ୍ଠୀର ଭକ୍ତମାନଙ୍କୁ କହୁଥିଲେ। ତାଙ୍କର ଭକ୍ତମାନେ ସମସ୍ତେ ଗୋପାଳବେଶ ଧରି ହାତରେ ଶିଙ୍ଗା ଓ ବେତ ଧରି ମୁଣ୍ଡରେ ମୟୂରପୁଚ୍ଛ ଧାରଣ କରୁଥିଲେ। ଚୈତନ୍ୟ ଚରିତାମୃତ (୧/୧୧)ରେ ଲେଖାଅଛି :-

ନିତ୍ୟାନନ୍ଦେର ଗଣ ଯତ ସବ ବ୍ରଜେର ସଖା।
ଶୃଙ୍ଗ ବେତ୍ର ଗୋପବେଶ ଶିରେ ଶିଖିପାଖା।।

ଖୋଦ୍ ନିତ୍ୟାନନ୍ଦଙ୍କ ନିର୍ଦ୍ଦେଶ ମାନି ଚୈତନ୍ୟଜୀବନୀ ରଚନା କରିଥିବା ବୃନ୍ଦାବନ ଦାସ ତାଙ୍କର 'ଚୈତନ୍ୟ ଭାଗବତ'ର ଅନ୍ତ୍ୟଲୀଳାର ପଞ୍ଚମ ଓ ସପ୍ତମ ଅଧ୍ୟାୟରେ ବର୍ଣ୍ଣନା କରିଛନ୍ତି କିପରି ନିତ୍ୟାନନ୍ଦ ଗୌଡ଼ଦେଶରେ ଆପଣାକୁ ଲୋହମୂଷଳଧାରୀ ବଳରାମ ରୂପେ ସଜାଇ ତାଙ୍କର ଭକ୍ତଗଣଙ୍କୁ ବୃନ୍ଦାବନର ଗୋପାଳ ବେଶ କରାଉଥିଲେ :-

"ନିରବଧି ସେଇ ଲୋହଦଣ୍ଡ ଶୋଭେ କର।
ମୂଷଳ ଧରିଲା ଯେନ ପ୍ରଭୁ ହଳଧର।।
ପାରିଷଦ ସବ ଧରିଲେନ ଅଳଂକାର।
ଅଙ୍ଗଦ ବଳୟ ମଲ୍ଲନୁପୂର ସୁହାର।।
ଶିଙ୍ଗା ବେତ୍ର ବଂଶୀ ଛାଁଦଦଡ଼ି ଗୁଞ୍ଜମାଳା।
ସବେ ଧରିଲେନ ଗୋପାଳେର ଅଂଶକଳା" ।।(ଚୈ.ଭା. ୩/୫)
ନିତ୍ୟାନନ୍ଦ ସ୍ୱରୂପେର ପାରିଷଦଗଣ।
ନିରବଧି ସବେଇ ପରମାନନ୍ଦ ମନ।।
କାର କୋନ କର୍ମ ନାହି ସଂକୀର୍ତ୍ତନ ବିନେ।
ସବାର ଗୋପାଳ ଭାବ ବାଢ଼େ କ୍ଷଣେକ୍ଷଣେ।।
ବେତ୍ର ବଂଶୀ ଶିଙ୍ଗା ଛାଁଦଦଡ଼ି ଗୁଞ୍ଜହାର।
ତାଡ଼ ଖାଡୁ ହାତେ ପାଦେ ନୁପୂର ସବାର।। (ଚୈ.ଭା.୩/୫)।

ନିତ୍ୟାନନ୍ଦଙ୍କ ଗଣ ମଧ୍ୟରେ ମୁଖ୍ୟ ବାରଜଣ ବୃନ୍ଦାବନ ଲୀଳାର ଗୋପାଳ ଥିଲେ ଓ ସେମାନେ 'ଦ୍ୱାଦଶ ଗୋପାଳ' ନାମରେ ପରିଚିତ ହେଲେ। ଏମାନଙ୍କ ମଧ୍ୟରୁ କେହି ଗୋପାଳ ନୁହନ୍ତି, ଦଶଜଣ ବ୍ରାହ୍ମଣ, ଜଣେ ବୈଦ୍ୟ ଓ ଜଣେ ବଣିକ। ଏମାନେ ବୃନ୍ଦାବନ ଲୀଳାର ଗୋପାଳଙ୍କ ଅବତାର ବୋଲି କଥିତ ହେବାରୁ ହିଁ ଏମାନେ 'ଦ୍ୱାଦଶ ଗୋପାଳ'। ଦ୍ୱାଦଶ ଗୋପାଳର କିଏ ବୃନ୍ଦାବନ ଲୀଳାର କେଉଁ ଗୋପାଳଙ୍କ ଅବତାର ତାହାର ସୂଚନା 'ଗୌରଗଣୋଦ୍ଦେଶ ଦୀପିକା' ଆଦି ସାଂପ୍ରଦାୟିକ ରଚନାରେ ଦିଆଯାଇଛି। ଦ୍ୱାଦଶ ଗୋପାଳ ହେଲେ (ବନ୍ଧନୀ ମଧ୍ୟରେ ବୃନ୍ଦାବନର କୃଷ୍ଣସଖାଙ୍କ ନାମ) :-

୧. ଉଦ୍ଧାରଣ ଦତ୍ତ (ସୁବାହୁ); ୨. କମଳାକର ପିପଲାଇ (ମହାବଳ);
୩. ଗୌରୀଦାସ ପଣ୍ଡିତ (ସୁବଳ); ୪. ଧନଞ୍ଜୟ ପଣ୍ଡିତ (ବସୁଦାମ);
୫. ପରମେଶ୍ୱର ଦାସ (ଗୋପାଳ ଅର୍ଜୁନ); ୬. ପୁରୁଷୋତ୍ତମ ଦାସ (ଦାମ);
୭. ପୁରୁଷୋତ୍ତମ ପଣ୍ଡିତ (ସ୍ତୋକକୃଷ୍ଣ); ୮. ମହେଶ ପଣ୍ଡିତ (ମହାବାହୁ);
୯. ଅଭିରାମ ଦାସ (ଶ୍ରୀଦାମ); ୧୦. ଶ୍ରୀଧର ପଣ୍ଡିତ (ମଧୁମଙ୍ଗଳ);
୧୧. ସୁନ୍ଦରାନନ୍ଦ ଠାକୁର (ସୁଦାମ); ୧୨. କାଳିଆ କୃଷ୍ଣଦାସ (ଲବଙ୍ଗ)।

**ଅଚ୍ୟୁତାନନ୍ଦଙ୍କ ସଖ୍ୟଭାବ**

ଅଚ୍ୟୁତାନନ୍ଦଙ୍କ ଶୂନ୍ୟସଂହିତା ଓ ଗୁରୁଭକ୍ତିଗୀତାରେ ବର୍ଣ୍ଣିତ ପଞ୍ଚସଖା ପରିକଳ୍ପନା ଉପାସକର ଉପାସ୍ୟ ସହିତ ସଖ୍ୟଭାବ ଉପରେ ଅଧାରିତ। କୃଷ୍ଣଙ୍କ ବୃନ୍ଦାବନ ଲୀଳାରେ ଗୋପାଳମାନେ ଥିଲେ କୃଷ୍ଣଙ୍କ ସଖା। ନିତ୍ୟାନନ୍ଦଙ୍କ ପରି ଅଚ୍ୟୁତାନନ୍ଦ ମଧ୍ୟ ତାଙ୍କ ଗୋଷ୍ଠୀର ଭକ୍ତମାନଙ୍କୁ ବୃନ୍ଦାବନଲୀଳାର ଗୋପାଳ ବେଶ ଧାରଣ କରିବାକୁ କହିଛନ୍ତି :-

ଶ୍ରୀବୃନ୍ଦାବନ ଲୀଳା ଶ୍ରୀକୃଷ୍ଣଙ୍କ ବେଶ।
ରୁଞ୍ଜ ଗୁଞ୍ଜ ତରାସ ତ ଚୂଳମାଳ ବେଶ ॥
ଖୋଳକରତାଳ ଶିଂଗା ବେଣୁଯେ ବଇଁଶୀ।
ଏମାନ ବହିଣ ଥିବ ସଦା ଦିବାନିଶି ॥ (ଗୁରୁଭକ୍ତି ଗୀତା ୨/୩)।

ଅଚ୍ୟୁତାନନ୍ଦ କୃଷ୍ଣାବତାର ବେଳେ ସୁଦାମ ସଖାଥିବା ବିଷୟ ସେ ତାଙ୍କ ଶୂନ୍ୟସଂହିତାରେ ଅନେକ ସ୍ଥାନରେ ଲେଖିଛନ୍ତି। ସେ ଗୁରୁଭକ୍ତିଗୀତାରେ ଅନ୍ୟ ସଖାମାନେ କୃଷ୍ଣାବତାର ବେଳେ କଣ ଥିଲେ ତାହା ବ୍ୟକ୍ତ କରିଛନ୍ତି। ଅଚ୍ୟୁତାନନ୍ଦ ଏପରି ଚିହ୍ନଟ କିପରି କରିପାରିଲେ ତାଙ୍କୁ ତ୍ରିକାଳଦର୍ଶୀ କହୁଥିବା ଅଧ୍ୟାପକମାନେ ହିଁ କହିପାରିବେ। ସେ ଲେଖିଛନ୍ତି :-

ସୁବଳ ସଖା ଅଟନ୍ତି ବଳରାମ ଦାସ।
ସୁବାହୁ ସଖା ଯେ ଯଶୋବନ୍ତ ପରକାଶ ॥
ଦାମ ସଖା ଅନନ୍ତ ଯେ ଶିଶୁ ପୁଣ ଜାଣ।
ସୁଦାମ ସଖାଗୋପରେ ଅଚ୍ୟୁତ ମୁଁ ପୁଣ ॥ (ଗୁରୁଭକ୍ତିଗୀତା ୧/୩୨)

ଅଚ୍ୟୁତାନନ୍ଦ ନିଃସନ୍ଦେହ ଭାବରେ ନିତ୍ୟାନନ୍ଦଙ୍କ 'ଦ୍ୱାଦଶଗୋପାଳ' ପରିକଳ୍ପନାର ଅନୁସରଣ କରୁଛନ୍ତି। କାରଣ, ସେ ନିଜେ ଚୈତନ୍ୟଙ୍କ ସମୟରେ ସୁନ୍ଦରାନନ୍ଦ ଥିବା ଲେଖିଛନ୍ତି। ଗୁରୁଭକ୍ତିଗୀତାରେ ଜଗନ୍ନାଥ ଦାସଙ୍କୁ ଛାଡ଼ି ଅନ୍ୟ ଚାରିସଖା ଚୈତନ୍ୟଙ୍କ ସମୟରେ କିଏ କଣ ଥିଲେ ସେ ଲେଖିଛନ୍ତି (ଜଗନ୍ନାଥ ଦାସଙ୍କୁ ଛାଡ଼ିବାର ତାତ୍ପର୍ଯ୍ୟ ପୂର୍ବରୁ ଆଲୋଚିତ ହୋଇଛି) :-

ଶ୍ରୀଚୈତନ୍ୟ କଳିଯୁଗେ କୃଷ୍ଣ ହେଲେ ଜାତ।
ତାଙ୍କ ସଙ୍ଗେ ଚାରିସଖା ହୋଇଲୁ ଯେ ଜାତ॥
ଅନନ୍ତ ଯେ ଶିଶୁ ଅଭିରାମ ପୁଣହୋଇ।
ଗଉରୀଦାସ ପଣ୍ଡିତ ବଳରାମ କହି॥
ସୁବାହୁ ଅଟନ୍ତି ପୁଣ ଉଦ୍ଧବ ଯେ ଦତ୍ତ।
ସୁନ୍ଦରାନନ୍ଦ ଯେ ମୁହିଁ ଅଟଇ ଅଚ୍ୟୁତ॥ (ଗୁରୁଭକ୍ତିଗୀତା ୧/୩୨)

ଉଦ୍ଧୃତିର 'ଉଦ୍ଧବ ଯେ ଦତ୍ତ' ଉଦ୍ଧାରଣ ଦତ୍ତର ଅପପାଠ। ପଞ୍ଚସଖାର ଚାରିଜଣ ପୂର୍ବେ ଚୈତନ୍ୟଙ୍କ ବେଳେ ଦ୍ୱାଦଶ ଗୋପାଳ ଅନ୍ତର୍ଭୁକ୍ତ ଅଭିରାମ, ଗୌରୀଦାସ, ଉଦ୍ଧାରଣ ଦତ୍ତ ଓ ସୁନ୍ଦରାନନ୍ଦ ଥିବା କଥା କୁହାଯାଉଥିବାରୁ ମାନିବାକୁ ହେବ ଯେ ଦ୍ୱାଦଶ ଗୋପାଳଙ୍କ ଦେହାନ୍ତ ପରେହିଁ ପଞ୍ଚସଖାଙ୍କ ଜନ୍ମ। ଦ୍ୱାଦଶ ଗୋପାଳଙ୍କ ତିରୋଧାନ ସମୟ ଜଣାନାହିଁ; କିନ୍ତୁ, ନିତ୍ୟାନନ୍ଦ ଚୈତନ୍ୟଙ୍କ ପରାମର୍ଶକ୍ରମେ ଗାର୍ହସ୍ଥ୍ୟଜୀବନ ନିର୍ବାହ କରି ଧର୍ମପ୍ରଚାର କରିବା ସମୟ ଖ୍ରୀ ୧୫୨୦ ପୂର୍ବରୁ ନୁହେଁ। ଚୈତନ୍ୟଙ୍କ ଦେହାନ୍ତ ୧୫୩୩ରେ ହେଲା; କିନ୍ତୁ ନିତ୍ୟାନନ୍ଦ ୧୫୫୦ ପରେ ମଧ୍ୟ ଜୀବିତ ଥିଲେ। ନିତ୍ୟାନନ୍ଦଙ୍କ ନିର୍ଦ୍ଦେଶ କ୍ରମେ ହିଁ ବୃନ୍ଦାବନ ଦାସ ପ୍ରାୟ ୧୫୫୦ରେ 'ଚୈତନ୍ୟ ଭାଗବତ' ଲେଖିଥିଲେ। ତେଣୁ ଦ୍ୱାଦଶ ଗୋପାଳ, ଚୈତନ୍ୟଙ୍କ ଦେହାନ୍ତ ବେଳକୁ ଜୀବିତ ଥିବା ନିଃସନ୍ଦେହ। 'ପଞ୍ଚସଖା' ପରିକଳ୍ପନାରେ 'ଦ୍ୱାଦଶଗୋପାଳ' ଭୁକ୍ତ ନିତ୍ୟାନନ୍ଦ ପନ୍ଥୀମାନେ ହିଁ ପଞ୍ଚସଖା ହେବା କଥା ରହିଥିବାରୁ ପଞ୍ଚସଖା ଚୈତନ୍ୟଙ୍କ ସମୟରେ ଥିବା କଥା ନୁହେଁ।

ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରକାଶିତ 'ବ୍ରହ୍ମଶାଙ୍କୁଳି'ର ମୁଖବନ୍ଧରେ ଅଧାପକ ଆର୍ତ୍ତବଲ୍ଲଭ ମହାନ୍ତି କୌଣସି ଯୁକ୍ତିପ୍ରମାଣର ଆଶ୍ରୟ ନ ନେଇ "ସୁନ୍ଦରାନନ୍ଦ ୧୫୧୦ ବା ୧୫୧୫ ଖ୍ରୀଷ୍ଟାବ୍ଦରେ ପୁରୀଧାମରେ ଦେହତ୍ୟାଗ କରିଥିବା ସମ୍ଭବପର" ବୋଲି ଲେଖିଛନ୍ତି। ସେ କିନ୍ତୁ ସ୍ୱୀକାର କରିଛନ୍ତି ଯେ ବଙ୍ଗୀୟ ବୈଷ୍ଣବଙ୍କ ମତାନୁସାରେ ସୁନ୍ଦରାନନ୍ଦ ୧୫୩୦ ସାଲ ପର୍ଯ୍ୟନ୍ତ ଜୀବିତ ଥିଲେ। ଡକ୍ଟର ନଟବର ସାମନ୍ତରାୟ ଏ ବିଷୟ ଚର୍ଚ୍ଚା କରି ସାରିଛନ୍ତି। 'ସଖାହୀନ ପଞ୍ଚସଖା' ପୁସ୍ତକରେ (ପୃ.୪୫-୪୬ରେ) ସେ ଲେଖିଛନ୍ତି :—"ଅଧାପକ ମହାନ୍ତି ସୁନ୍ଦରାନନ୍ଦଙ୍କ ମୃତ୍ୟୁର ଏ ସମୟ ଜାଣିଲେ କେଉଁଠୁ? ତାହା ସେ ନିଜେ ଆଲୋଚନାରେ କେଉଁଠି କହି ନାହାନ୍ତି। ସେ କଥା ଯାହା ହୋଇଥାଉ, ଅଚ୍ୟୁତାନନ୍ଦଙ୍କ ଆତ୍ମକଥା ଯେତେବେଳେ ସତ୍ୟ ସେତେବେଳେ ଏ ସୁନ୍ଦରାନନ୍ଦଙ୍କର ଯେବେ ମୃତ୍ୟୁ ହେଉନା କାହିଁକି, ତାଙ୍କୁ ନିଶ୍ଚୟ ୧୫୧୦ ବା ୧୫୧୧ ଖ୍ରୀଷ୍ଟାବ୍ଦରେ ମରିବାକୁ ପଡ଼ିବ। କାରଣ, ତାଙ୍କର ମୃତ୍ୟୁ ନହେଲେ ଅଚ୍ୟୁତାନନ୍ଦଙ୍କର ଜନ୍ମ ସମ୍ଭବ ନୁହେଁ। ଆଉ, ଅଚ୍ୟୁତଙ୍କର ଜନ୍ମ ୧୫୧୧ କିମ୍ବା ୧୫୧୨ ଖ୍ରୀଷ୍ଟାବ୍ଦରେ ନହେଲେ ତାଙ୍କ ପ୍ରଦତ୍ତ ଜୀବନବୃତ୍ତାନ୍ତରେ ଥିବା ଚୈତନ୍ୟଙ୍କ ସହ ତିନିଥର ମିଳନ ମଧ୍ୟ ସମ୍ଭବ ନୁହେଁ।"

ଆଶ୍ଚର୍ଯ୍ୟର କଥା; ଖୋଦ୍ ଶ୍ରୀଯୁକ୍ତ ମହାନ୍ତି 'ଗୁରୁଭକ୍ତିଗୀତା'ର ସଂକଳନ କରିଥିଲେ ହେଁ ସେଥିରେ ବଳରାମ୍, ଶିଶୁ ଅନନ୍ତ ଓ ଯଶୋବନ୍ତ ଚୈତନ୍ୟଙ୍କ ସମୟରେ, ଯଥାକ୍ରମେ, ଗୌରୀଦାସ ପଣ୍ଡିତ, ଅଭିରାମ ଠାକୁର ଓ ଉଦ୍ଧାରଣ ଦତ୍ତ ନାମରେ ଥିବା ବିଷୟ ଚର୍ଚ୍ଚା କରିନାହାନ୍ତି। କରିଥିଲେ, ସେ ତିନିହିଁକି ଦ୍ୱାଦଶ ଗୋପାଳ ଲୀଳା, ଏପରିକି ଚୈତନ୍ୟ ଲୀଳା, ଆରମ୍ଭ ହେବା ପୂର୍ବରୁ ସେ ମାରି ଦେଇଥାନ୍ତେ। ସେହି କାର୍ଯ୍ୟକୁ ପଞ୍ଚସଖାଙ୍କ ଅସ୍ତିତ୍ୱକୁ ସ୍ୱୀକାର କରୁଥିବା ଆଲୋଚକମାନଙ୍କୁ ଭବିଷ୍ୟତ୍‌ରେ କରିବାକୁ ହିଁ ପଡ଼ିବ। ଅନ୍ୟଥା ଚୈତନ୍ୟଙ୍କ ସମୟରେ ବଳରାମାଦି ତିଷ୍ଠି ପାରିବେ ନାହିଁ।

ଗୌଡ଼ଦେଶରେ ନିତ୍ୟାନନ୍ଦଙ୍କ ଆଚାର-ପ୍ରଚାର ସହିତ ଓଡ଼ିଶାରେ ଅଚ୍ୟୁତାନନ୍ଦଙ୍କ ଆଚାର-ପ୍ରଚାରର ଆଖିଦୃଶିଆ ସାମଞ୍ଜସ୍ୟ ରହିଛି। ନିତ୍ୟାନନ୍ଦ ତଳଜାତିର ଲୋକଙ୍କୁ ସାମାଜିକ ସିଡ଼ିରେ ଉପରକୁ ଉଠାଇବା ପାଇଁ ଲାଗିପଡ଼ିଥିଲେ, ଅଚ୍ୟୁତାନନ୍ଦ ଗଉଡ଼ମାନଙ୍କର ଜୀବନରେ ବହୁବିଧ ସଂସ୍କାର ଆଣି ନବଜାଗରଣ ଆଣିପାରିଥିଲେ। ନିତ୍ୟାନନ୍ଦଙ୍କ ପରି ଅଚ୍ୟୁତାନନ୍ଦ ମଧ୍ୟ ଗୃହସ୍ଥଜୀବନ ବିତାଉଥିଲେ। ନିତ୍ୟାନନ୍ଦଙ୍କ ଶିଷ୍ୟଙ୍କ ମଧ୍ୟରେ ଦ୍ୱାଦଶ ଗୋପାଳ' ଥିଲେ; ଅଚ୍ୟୁତାନନ୍ଦ ମଧ୍ୟ ତାଙ୍କର ରାମଚନ୍ଦ୍ର ଆଦି ୧୨ ଜଣ ଶିଷ୍ୟଙ୍କୁ 'ଦ୍ୱାଦଶ ଗୋପାଳ' ବୋଲି ଚିହ୍ନାଉଥିଲେ :-

''ତୁମ୍ଭେ ଯେ ଆମ୍ଭର ଆତ୍ମା ଦ୍ୱାଦଶ ଗୋପାଳ''-ଶୂନ୍ୟସଂହିତା, ୨ ଅଧ୍ୟାୟ ।।
''ରାମଚନ୍ଦ୍ର ମୂଳେ ବାର ଜଣ ଗୋପବାଳ''-ଶୂନ୍ୟସଂହିତା ୫ ଅଧ୍ୟାୟ ।।

ଉଭୟଙ୍କର ଶିଷ୍ୟମାନଙ୍କର ବେଶଭୂଷା ମଧ୍ୟ ସମାନ। ସ୍ପଷ୍ଟତଃ ଅଚ୍ୟୁତାନନ୍ଦ ନିତ୍ୟାନନ୍ଦଙ୍କୁ ନକଲ କରୁଛନ୍ତି ଓ ତାଙ୍କ 'ପଞ୍ଚସଖା' ନିତ୍ୟାନନ୍ଦ ପନ୍ଥୀଙ୍କ ଅର୍ବାଚୀନ ସଂସ୍କରଣ। ଅନୁମାନ କରାଯାଇପାରେ 'ଅଚ୍ୟୁତାନନ୍ଦ' ନାମଟି ମଧ୍ୟ 'ନିତ୍ୟାନନ୍ଦ' ନାମ ଛାଞ୍ଚରେ ଢଳା ହୋଇଛି। ଅଚ୍ୟୁତାନନ୍ଦଙ୍କ ବାଲ୍ୟନାମ ବୋଧହୁଏ 'ଅଗଣି' ଥିଲା :-

ତିଳକଣାରେ ମୁଁ ଜନମ ହୋଇଲି କେହି ନ ଚିହ୍ନିଲେ ମୋରେ ।।
ଅଗଣି ତ ବୋଲି ମାତା ଡାକୁଥାନ୍ତି ଅନ୍ନ ନ ମିଳଇ ଘରେ ।।.
ପ୍ରଭୁଙ୍କ ନିର୍ଦ୍ଦୟା ହେଲା ଯେ ସୁଦୟା ଅଚ୍ୟୁତ ନାମ ମୋ ହେଲା ।।
ପ୍ରଘଟ କରି ଗୋକୁଳ ତାର ବୋଲି ପ୍ରଭୁଙ୍କ ଆଜ୍ଞା ହୋଇଲା ।।
(ଶୂନ୍ୟ ସଂହିତା, ୧୭ ଅଧ୍ୟାୟ)

ନିତ୍ୟାନନ୍ଦର ଅର୍ଥ ଚିରସ୍ଥାୟୀ ଆନନ୍ଦ; ଅଚ୍ୟୁତାନନ୍ଦର ଅର୍ଥ ମଧ୍ୟ ତାହା।

**ପଞ୍ଚସଖା ଓ ଜଗନ୍ନାଥ ଦାସ**

'ପଞ୍ଚସଖା'ର ଜଗନ୍ନାଥ ଦାସଙ୍କ ବିଷୟରେ ଅଚ୍ୟୁତାନନ୍ଦ ନିର୍ଦ୍ଦିଷ୍ଟ ଭାବରେ କିଛି ଲେଖିନାହାନ୍ତି, କିନ୍ତୁ ଅନ୍ୟମାନଙ୍କ ସହିତ ସେ ମଧ୍ୟ କବି ଥିବା ସୂଚାଇଛନ୍ତି :-

ଶ୍ରୀକୃଷ୍ଣ କରୁଣା ଯେଣୁ ଦିଶେ ପଦମାନ।
ଶ୍ରୀହରି ମହିମା ଲେଖୁ ପ୍ରଚ୍ଛନ୍ନ କରିଣ ।। (ଶୂନ୍ୟ ସଂହିତା, ୧୦ ଅଧ୍ୟାୟ)

'ଅନେକ ଜଗନ୍ନାଥ ଦାସ' ଅଧ୍ୟାୟରେ ଦର୍ଶାଉଛି ଯେ ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଦୁଇ ଜଣ ଜଗନ୍ନାଥ ଦାସ ଉତ୍କଳରେ କବି ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲେ ; ଜଣେ ଭାଗବତକାର ଜଗନ୍ନାଥ ଦାସ ଓ ଅନ୍ୟ ଜଣକ ଅତିବଡ଼ ଜଗନ୍ନାଥ ଦାସ। ସେଠାରେ ଆଉ ମଧ୍ୟ ପ୍ରତିପାଦନ କରାଯାଇଛି ଯେ ଭାଗବତକାର ବିଶୁଦ୍ଧ ଦାସ୍ୟ ଭାବୀରେ ବିଶ୍ୱାସ ପୋଷଣ କରୁଥିଲେ। ତେଣୁ, ସଖ୍ୟଭାବକୁ ମାନ୍ୟତା ଦେଉଥିବା 'ପଞ୍ଚସଖା' ଭିତରେ ସେ ଅନ୍ତର୍ଭୁକ୍ତ ହୋଇ ନ ପାରନ୍ତି।

ପୂର୍ବକଥିତ ଅଧ୍ୟାୟରେ ଆଉ ମଧ୍ୟ ଦର୍ଶାଯାଇଛି ଯେ ଅତିବଡ଼ ଜଗନ୍ନାଥ ଦାସ ତାଙ୍କ ରଚନାରେ ରାଗାନୁଗା ଭକ୍ତିର ମଞ୍ଜରୀ ସେବାର ଉତ୍କର୍ଷ ପ୍ରତିପାଦନ କରିଛନ୍ତି। ରାଗାନୁଗା ଭକ୍ତି କାନ୍ତାଭାବର ଅନୁଗ। ତେଣୁ, ଅତିବଡ଼ଙ୍କୁ ମଧ୍ୟ ଜଣେ ସଖା ଭାବରେ ଗଣାଯାଇ ନ ପାରେ। ଆଉ ମଧ୍ୟ, ଅତିବଡ଼ଙ୍କ ଜୀବନବୃତ୍ତାନ୍ତ ଲେଖକ ଦିବାକର ଦାସ (ସମୟ ପ୍ରାୟ ଖ୍ରୀ.୧୭୦୦) ଅତିବଡ଼ ଗୋସାଇଁ ରାଗାନୁଗା ମାର୍ଗକୁ ଅନୁସରୁଥିଲେ ବୋଲି ଲେଖିବା ସହ ଅତିବଡ଼ ନିଜକୁ ଏକାଗ୍ର ଯୁବତୀରେ ପରିଣତ କରିଥିଲେ ଓ କେତେ ଜଣ ତାଙ୍କୁ 'ସଖି' ବୋଲି ସଂବୋଧନ କରୁଥିବା କଥା ଲେଖିଛନ୍ତି (ଜଗନ୍ନାଥାମୃତ ୨୪ଅଧ୍ୟାୟ)। ଏହି ଦୃଷ୍ଟିରୁ ଅତିବଡ଼ଙ୍କୁ ସଖାଭାବରେ 'ପଞ୍ଚସଖା' ଭୁକ୍ତ କରିବା ଯୁକ୍ତିଯୁକ୍ତ ହେବନାହିଁ।

ଦିବାକର ଦାସ ପୁଣି କହିଛନ୍ତି ଯେ ଚୈତନ୍ୟ କୃଷ୍ଣଙ୍କ ଅଂଶରୁ ଓ ଜଗନ୍ନାଥ ଦାସ ରାଧାଙ୍କ ଅଂଶରୁ ଜାତ। ତଦନୁସାରେ ସେ ଜଗନ୍ନାଥ ଦାସଙ୍କ ଜନ୍ମତିଥି ରାଧାଙ୍କ ଜନ୍ମତିଥି ରାଧାଷ୍ଟମୀରେ ହେବା ନିର୍ଦ୍ଧାରଣ କରିଛନ୍ତି। ଦିବାକର ଦାସଙ୍କ ବେଳକୁ 'ପଞ୍ଚସଖା' ପ୍ରସ୍ତାବର ଉଦ୍ଭବ ହୋଇସାରିଥିଲେ ସେ ଜଗନ୍ନାଥ ଦାସଙ୍କୁ ରାଧାଙ୍କ ଅଂଶୀ ନ କରି କୌଣସି କୃଷ୍ଣସଖା ଗୋପାଳଙ୍କ ଅଂଶୀ କରନ୍ତେ ନାହିଁକି ? ଦିବାକର ଜଗନ୍ନାଥ ଦାସଙ୍କୁ ସଖା ନ କରି କାନ୍ତା କରିଥିବାରୁ ସ୍ପଷ୍ଟ ହେଉଛି ଦିବାକରଙ୍କ ସମୟ (ଖ୍ରୀ.୧୭୦୦)କୁ ସୁଦ୍ଧା 'ପଞ୍ଚସଖା' ଉଦ୍ଭାବିତ ହୋଇନାହାନ୍ତି।

**ପଞ୍ଚସଖା ଓ ବଳରାମ ଦାସ**

ଇତିପୂର୍ବେ ବଳରାମ ଦାସଙ୍କ ନାମରେ ଭଣିତ 'ଛତିଶଗୁପ୍ତଗୀତା'ର ପ୍ରକୃତ ପ୍ରଣେତା ଦ୍ୱାରିକା ଦାସ ଥିବାକଥା ଦର୍ଶାଇ ଦିଆଯାଇଛି। ସେ ମୁକୁନ୍ଦଦେବଙ୍କ ୨୭ ଅଙ୍କରେ (ଅର୍ଥାତ୍ ୧୬୭୯ରେ)ଛତିଶଗୁପ୍ତଗୀତା ଲେଖିଥିଲେ। ସେଥିରେ ସେ ଲେଖିଛନ୍ତି ଯେ ଅନିରୁଦ୍ଧ କଳିଯୁଗରେ ପ୍ରତାପରୁଦ୍ରଙ୍କ ପାତ୍ର ସୋମନାଥଙ୍କ ପୁତ୍ର ହୋଇ ବଳରାମଦାସ ବୋଲାଇବେ ଓ ଛତିଶଗୁପ୍ତଗୀତାର ପ୍ରଥମ ଅଧ୍ୟାୟଟି ମାତ୍ର ଲେଖି ଦେହତ୍ୟାଗ କରିବେ :-

"ଶ୍ରୀହରି ବୋଇଲେ ଶୁଣ ଅର୍ଜୁନ। ପଦ୍ମନ ଅଟଇ ମୋର ନନ୍ଦନ।।
ତାହାର ପୁଅ ଅନିରୁଦ୍ଧ ହେବ। ସେ ପୁଣି କାଳେ ଯେ କ୍ଷୟ ହୋଇବ।।
ମୁଁ ଯେବେ ଜଗନ୍ନାଥ ଅବତାର। କଳିଯୁଗେ ଦାରୁବ୍ରହ୍ମ ଶରୀର।।

ପ୍ରଦ୍ୟୁମ୍ନ ବୋଲି ହେବ ରାୟେ। କହଇ ତୋତେ ସେ କାଳ ଉପାୟେ॥
ସୋମନାଥ ବୋଲି ପାତ୍ର ତାହାର। ଅନିରୁଦ୍ଧ ଜାତ ତାହାରି ଘର॥
ଜମ୍ବୁବତୀ ନାମେ ତାର ଭାରିଯା। ଅନିରୁଦ୍ଧ ହେବ ତାର ତନୁଜା।
ତାହାର ନାମ ବଳରାମ ଦାସ। ଗୁପତଗୀତା ଅଧ୍ୟାୟେ ପ୍ରକାଶ॥

ବଳରାମ ଦାସ ପୂର୍ବ ଜନ୍ମରେ କୃଷ୍ଣପୁତ୍ର ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧ ଥିଲେ ବୋଲି ଦ୍ୱାରିକା ଦାସ ଲେଖିଥିବା କଥାରୁ ସୂଚନା ମିଳୁଛି ଯେ ବଳରାମ ଦାସ କୃଷ୍ଣାବତାର ବେଳେ କୃଷ୍ଣଙ୍କ ସଖା ବିଶେଷ (ସୁବଳ) ଥିବା କଥା ସେ ଶୁଣି ନଥିଲେ। ତେଣୁ, ସନ୍ଦେହ ରହୁନାହିଁ ଯେ ସପ୍ତଦଶ ଶତାବ୍ଦୀର ଶେଷ ପାଦ ସୁଦ୍ଧା 'ପଞ୍ଚସଖା' ଙ୍କ ବିଦ୍ୟମାନତା ଅବିଦିତ ଥିଲା। ଅନ୍ୟଥା ଦ୍ୱାରିକା ଦାସ ବଳରାମ ଦାସ ପୂର୍ବ ଜନ୍ମରେ କୃଷ୍ଣଙ୍କ ପୌତ୍ର ଥିବା କଥା ଲେଖନ୍ତେ ନାହିଁ।

**ପଞ୍ଚସଖା-ସାହିତ୍ୟ କଣ ?**

ପଞ୍ଚସଖା-ସାହିତ୍ୟ ବିଶ୍ୱବିଦ୍ୟାଳୟର ପାଠ୍ୟ ବିଷୟ ହୋଇଯିବାରୁ ଛାତ୍ରମାନେ ଦ୍ୱିବିଧ ଭ୍ରାନ୍ତିକୁ ସ୍ୱୀକାର କରିବାକୁ ବାଧ୍ୟ ହେଉଛନ୍ତି। ଗୋଟିଏ ଭ୍ରାନ୍ତି ସାହିତ୍ୟର ସୃଷ୍ଟିକାଳ ନେଇ। ଅଷ୍ଟାଦଶ ଶତାବ୍ଦୀର ପୂର୍ବରୁ ରଚିତ ହୋଇ ନଥିବା ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଅନନ୍ତ ଭଣିତି ଯୁକ୍ତ ଲେଖାଗୁଡ଼ିକୁ ଷୋଡ଼ଶ ଶତାବ୍ଦୀର ବୋଲି ସେମାନେ ଘୋଷୁଛନ୍ତି। ଅନ୍ୟ ଏକ ଭ୍ରାନ୍ତି ସାହିତ୍ୟର ସ୍ରଷ୍ଟା ନେଇ। ଚୈତନ୍ୟଙ୍କ ସମୟରେ 'ପଞ୍ଚସଖା' ନ ଥିଲେ ହେଁ ସେମାନେ ସେତେବେଳେ ଥିଲେ ବୋଲି ପଢୁଛନ୍ତି। ସବୁ ଗୋଳମାଳିଆ।

ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗରେ, ଚୈତନ୍ୟଙ୍କ ସମୟରେ, ଦୁଇଜଣ ଜଗନ୍ନାଥ ଦାସ ଓ ଜଣେ ବଳରାମ ଦାସ ନିଶ୍ଚୟ ଥିଲେ। କିନ୍ତୁ ପଞ୍ଚସଖା ନ ଥିଲେ। ସେହି ଶତାବ୍ଦୀର ଶେଷ ଦଶନ୍ଧି ବେଳକୁ ଜଣେ ଅଚ୍ୟୁତାନନ୍ଦ ଦାସ ଥିଲେ ଯେ କି ସାତଖଣ୍ଡିଆ ହରିବଂଶ, ଗୋପାଳଙ୍କ ଓଗାଳ ଆଦି ଲେଖିଥିଲେ। ଏହାଙ୍କର ଜନ୍ମ ଚୈତନ୍ୟଙ୍କ ଦେହାନ୍ତ ପରେ ହିଁ ହୋଇପାରେ ତେଣୁ ସଖା ନୁହନ୍ତି। ସେପରି ସୂଚନା ତାଙ୍କ ଲେଖାରେ ନାହିଁ ମଧ୍ୟ। ସେ ରଣପୁରର ରାଜା ପଦ୍ମନ (ପଦ୍ମନାଭ) ନରେନ୍ଦ୍ରଙ୍କ ଦ୍ୱାରା ପରିପାଳିତ ହୋଇ ରଣପୁର ରାଜ୍ୟର ମଧ୍ୟଗତ ଖଣ୍ଡଗ୍ରାମରେ ରହି ହରିବଂଶ ଲେଖିବା କଥା ଜଣାଇଛନ୍ତି। ପଦ୍ମନାଭ ନରେନ୍ଦ୍ର ରଣପୁର ରାଜବଂଶର ୯୬ତମ ରାଜା। ରାଜବଂଶୀୟ ବିବରଣ ଅନୁସାରେ ପଦ୍ମନାଭ ମୁକୁନ୍ଦଦେବଙ୍କ ଝିଅ କୁମାରୀଙ୍କୁ ବିବାହ କରିଥିଲେ। ଏହି ରାଜବଂଶର ୯୧ତମ ରାଜା ଅଭିମନ୍ୟୁ ସିଂହ 'କାଞ୍ଚିକାବେରୀ ଯୁଦ୍ଧ'ରେ ଭାଗ ନେବା କଥା ମଧ୍ୟ ରାଜବଂଶାବଳୀର ବିବରଣରୁ ମିଳୁଛି। ଅଭିମନ୍ୟୁ ଓ ପଦ୍ମନାଭଙ୍କ ମଧ୍ୟର ପାଞ୍ଚପୁରୁଷ ବ୍ୟବଧାନ ପାଇଁ ସମୟ ଛାଡ଼ିଲେ ଓ ପଦ୍ମନାଭ ଚାଳୁକ୍ୟ ମୁକୁନ୍ଦଦେବଙ୍କ ଝିଅକୁ ବିବାହ କରିବା ସଂକେତକୁ

ଧରିଲେ ପଦ୍ମନାଭଙ୍କ ରାଜତ୍ୱକାଳ ଷୋଡ଼ଶ ଶତାବ୍ଦୀର ଶେଷ ପାଦ ହେବା ଅନୁମେୟ। 'ପଞ୍ଚସଖା'ର ଅଚ୍ୟୁତାନନ୍ଦ ଦାସ ନିଜେ ତାଙ୍କ ଜନ୍ମ ଓ କର୍ମର ବିସ୍ତୃତ ବିବରଣ ଦେଇଛନ୍ତି। ସେଥିରେ ସେ କୌଣସି ସମୟରେ ରଣପୁରରେ ଥିବା ବା ପଦ୍ମନାଭଙ୍କ ପୃଷ୍ଠପୋଷକତା ପାଇଥିବା ବା ହରିବଂଶ ଲେଖିଥିବା କଥାର ସୂଚନା ଦେଇ ନାହାନ୍ତି। ପଞ୍ଚସଖା ଭୁକ୍ତ ଅଚ୍ୟୁତାନନ୍ଦ ଅଷ୍ଟାଦଶ ଶତାବ୍ଦୀର ଥିବା କଥା ତାଙ୍କ ରଚନାରୁ ପ୍ରତିପନ୍ନ ହେଉଛି। ଯଶୋବନ୍ତ ଦାସ ଏହି ଅଚ୍ୟୁତଙ୍କର ନିଜ ପିଉସାଶ୍ୱଶୁର ତେଣୁ ପ୍ରାୟ ସମସାମୟିକ। ଶିଶୁ ଅନନ୍ତଙ୍କର ସମୟ ମଧ ସେହି ଅଷ୍ଟାଦଶ ଶତାବ୍ଦୀ ହିଁ ହେବ। 'ମହୀମଣ୍ଡଳଗୀତା'ର ରଚୟିତା ଅରକ୍ଷିତ ଦାସଙ୍କ ଭଣିତି ନେଇ 'ଶୂନ୍ୟସଂହିତା-ଜ୍ଞାନଟୀକା' ନାମରେ ଏକ ରଚନା ଖ୍ରୀ ୧୯୦୭ରେ ପ୍ରକାଶ ପାଇଛି। ଏଥିରୁ ପ୍ରକାଶ ପାଇଛି ଯେ ଅରକ୍ଷିତ ଦାସ ସିଦ୍ଧ ବାରଙ୍ଗଙ୍କ ଶିଷ୍ୟ ଥିଲେ।

ଶ୍ରୀ ସିଦ୍ଧ ବାରଙ୍ଗ ପ୍ରଭୁ ଅଙ୍ଗସଙ୍ଗ ଭଗତ ବରୁଣ ମୂଳେ।
ମହିମା ପ୍ରକାଶ କରୁଛନ୍ତି ଦାସ ହିତେ ପଞ୍ଚବଟୀ ଛଳେ॥
ଶବ୍ଦବ୍ରହ୍ମରୂପେ ବିଶ୍ରାମ ଅରୂପେ ରୂପ ନାହିଁ ତାହାଙ୍କର।
କଳିଯୁଗ ଶେଷେ କଳକି ପ୍ରବେଶେ ଜନ୍ମିବେ ଭକ୍ତଶେଖର॥
ତାହାଙ୍କର ଶିଷ୍ୟ ଅରଖିତ ଦାସ ରଚିତଲେ ଉତପତ୍ତି।
ଶାଖା ପ୍ରତିଶାଖା ଯେସନେ ତାରକା ମଧ୍ୟେ ସେହି ନିଶାପତି॥

ବାରଙ୍ଗ ଦାସ ଶିଶୁ ଅନନ୍ତଙ୍କ ଶିଷ୍ୟ। ବାରଙ୍ଗଙ୍କ ବ୍ରହ୍ମକୁଣ୍ଡଳୀ ଗୀତାର ଦଶମ ଅଧ୍ୟାୟରେ ଏହା ସ୍ୱୀକୃତ ହୋଇଛି ମଧ:-"ସିଦ୍ଧ ବାରଙ୍ଗ ଯେ ଭାବରେ ଭଣିଲେ ସୁଦୟା ଶିଶୁଅନନ୍ତ।" ଅରକ୍ଷିତ ଦାସଙ୍କ ସମୟ ସୁନିର୍ଦ୍ଦିଷ୍ଟ। ସେ ଖ୍ରୀ.୧୮୩୦ ବେଳକୁ ଅଛନ୍ତି। ତାଙ୍କ ପରମଗୁରୁ ଶିଶୁ ଅନନ୍ତଙ୍କ ସମୟ ଅଷ୍ଟାଦଶ ଶତାବ୍ଦୀର ତୃତୀୟ ପାଦ ହିଁ ହୋଇପାରେ। କିଂବଦନ୍ତୀ ରହିଛି ଯେ ଶିଶୁ ଅନନ୍ତ ପୀରଖାଁ ନାମଧେୟ ଜଣେ ମୁସଲମାନଙ୍କୁ ନିଜର ଅଲୌକିକ ଶକ୍ତି ବଳରେ ରାଜଦଣ୍ଡରୁ ମୁକ୍ତି ଦିଆଇଥିବାରୁ ପୀରଖାଁ କୃତଜ୍ଞତା ସ୍ୱରୂପ ତାଙ୍କର ଗୋଟିଏ ଗ୍ରାମକୁ ଶିଶୁ ଅନନ୍ତଙ୍କୁ ଦାନ ଦେଇଥିଲେ। ଏହି ଗ୍ରାମଟି ଅଦ୍ୟାବଧି "ପୀରଖାଁପାଟଣା" ନାମରେ ପରିଚିତ। ଜଣେ ମୁସଲମାନ ଗୋଟିଏ ଗ୍ରାମର ଅଧିପତି ହେବା ଅବସ୍ଥା ଷୋଡ଼ଶ ଶତାବ୍ଦୀର ଆରମ୍ଭରେ ଓଡ଼ିଶାରେ ରହିବା ସମ୍ଭବ ନୁହେଁ।

ଏହି ପ୍ରକାରେ ଅଷ୍ଟାଦଶ ଶତାବ୍ଦୀର ତିନି ଜଣଙ୍କ ରଚନାକୁ ଷୋଡ଼ଶ ଶତାବ୍ଦୀର ଦୁଇ ଜଣଙ୍କ ରଚନା ସହ ଯୋଡ଼ି ସବୁଗୁଡ଼ିକ ଷୋଡ଼ଶ ଶତାବ୍ଦୀର ବୋଲି ଭ୍ରାନ୍ତ ଧାରଣା ସୃଷ୍ଟି କରାଯାଉଛି। ଓଡ଼ିଆ ସାହିତ୍ୟର ମୂଲ୍ୟାଙ୍କନ ଯଥାର୍ଥ ହେବ ନାହିଁ ଯେ ପର୍ଯ୍ୟନ୍ତ ଏ ଭ୍ରାନ୍ତ ଧାରଣାକୁ ଦୂର କରାଯାଇ ପାରି ନାହିଁ ଓ ଓଡ଼ିଆ ସାହିତ୍ୟର ଇତିହାସ ସଜଡ଼ା ହୋଇପାରିବନାହିଁ।

## 'ପାଞ୍ଚ'ରୁ ପଞ୍ଚ

'ପଞ୍ଚସଖା' ଆଖ୍ୟାର ଉଦ୍ଭବ ସମ୍ପର୍କରେ ଡକ୍ଟର ନଟବର ସାମନ୍ତରାୟ ତାହାଙ୍କର 'ସଖାହୀନ ପଞ୍ଚସଖା' ପୁସ୍ତକର ପୃ.୮୧ ରୁ ୮୪ ମଧ୍ୟରେ ମନୋଜ୍ଞ ଆଲୋଚନା କରିଛନ୍ତି। ଚୈତନ୍ୟ ଚରିତାମୃତାଦି ଗୌଡ଼ିଆ ଗ୍ରନ୍ଥରେ ଉପସ୍ଥାପିତ ପଞ୍ଚତତ୍ତ୍ୱ ଧାରଣାର ଅନୁସରଣରେ ପଞ୍ଚସଖା ପରିକଳ୍ପନା ଜନ୍ମିବା ବିଶ୍ୱାସ ସେ ପୋଷଣ କରିଛନ୍ତି। କିନ୍ତୁ, ପଞ୍ଚତତ୍ତ୍ୱ ପାଞ୍ଚଜଣଙ୍କୁ ବୁଝାଉନାହିଁ, ଏହା ପାଞ୍ଚ ସ୍ତରର ଭକ୍ତଙ୍କୁ ବୁଝାଉଛି :- ୧. ଭକ୍ତରୂପ (ଏକମାତ୍ର ଚୈତନ୍ୟ), ୨. ଭକ୍ତସ୍ୱରୂପ (ଏକମାତ୍ର ନିତ୍ୟାନନ୍ଦ); ୩. ଭକ୍ତାବତାର (ଏକମାତ୍ର ଅଦ୍ୱୈତ); ୪. ଭକ୍ତତତ୍ତ୍ୱ (ଶ୍ରୀବାସାଦି କୋଟିସଂଖ୍ୟକ ଭକ୍ତ) ଓ ୫. ଭକ୍ତଶକ୍ତି (ଗଦାଧରାଦି, କାନ୍ତାଭାବରେ ଚୈତନ୍ୟଙ୍କୁ ଭଜୁଥିବା ବହୁଭକ୍ତ)। ଅଚ୍ୟୁତାନନ୍ଦ ଶୂନ୍ୟସଂହିତାର ୪ର୍ଥ ଅଧ୍ୟାୟରେ ପଞ୍ଚାତ୍ମକ ସାତୋଟି ବିଷୟର ଚର୍ଚ୍ଚା କରିଛନ୍ତି :- ୧. ପଞ୍ଚଭୂତ; ୨. ପଞ୍ଚବାୟୁ, ୩. ପଞ୍ଚଆତ୍ମା; ୪. ପଞ୍ଚବୀଜ; ୫. ପଞ୍ଚତତ୍ତ୍ୱ; ୬. ପଞ୍ଚମାତ୍ରା ଓ ୭. ପଞ୍ଚମନ। ସେ ପୁଣି ତାଙ୍କର ପାଞ୍ଚଜଣ ପ୍ରମୁଖ ଶିଷ୍ୟଙ୍କୁ ପଞ୍ଚମହାଜନ ବୋଲି କହିଛନ୍ତି (ଶୂନ୍ୟସଂହିତା ୧/୧/୧)। 'ପାଞ୍ଚ' ପ୍ରତି ଅଚ୍ୟୁତାନନ୍ଦଙ୍କ ଆଗ୍ରହ ପଞ୍ଚତତ୍ତ୍ୱରୁ ଆସିବା ସମ୍ଭବ ନୁହେଁ। ପାଞ୍ଚଜଣ ସଖା ଏକ ସ୍ତରର ଭକ୍ତ କିନ୍ତୁ ପଞ୍ଚତତ୍ତ୍ୱ ସେପରି ନୁହନ୍ତି।

ଓଡ଼ିଆ ଭାଷାରେ ପାଞ୍ଚ ଶବ୍ଦର ଦ୍ୱିବିଧ ଅର୍ଥ ରହିଛି :- ୧. ପାଞ୍ଚ ସଂଖ୍ୟା ଓ ୨. ମନର ଭାବନା, କଳ୍ପନା, ବିଚାର। ଅଚ୍ୟୁତାନନ୍ଦ ମନରୁ ପାଞ୍ଚି ପାଞ୍ଚଜଣ ସଖାଙ୍କୁ ରୂପ ଦେଇଥିବାରୁ ଏମାନେ 'ପାଞ୍ଚସଖା' ହେବା ସମ୍ଭବ। ଅଚ୍ୟୁତାନନ୍ଦ କଳ୍ପନା ଅର୍ଥଟିକୁ ଲୁଚାଇବା ଉଦ୍ଦେଶ୍ୟରେ ତାହାକୁ ସଂଖ୍ୟା ଅର୍ଥରେ ଲୋକେ ବୁଝିବେ ଭାବି 'ପଞ୍ଚସଖା' ଶବ୍ଦ ଗଢ଼ିଲେ ଓ ସେଥିପାଇଁ ପାଞ୍ଚଜଣଙ୍କୁ ବାଛିଲେ। ତେଣୁ, ପଞ୍ଚସଖାର ମୂଳ 'ପାଞ୍ଚସଖା' ଓ ତାହା ଏକ ଅର୍ଥରେ କାଳ୍ପନିକ ସଖା ଓ ଅନ୍ୟ ଅର୍ଥରେ ପାଞ୍ଚଜଣ ସଖା। ସତ୍ୟକୁ ଲୁଚାଇବାର କଦର ଅଚ୍ୟୁତାନନ୍ଦଙ୍କୁ ବେଶ୍ ଜଣାଥିଲା। 'ପଞ୍ଚସଖା' ତାହାର ନିଦର୍ଶନ।



ଷଷ୍ଠ ଅଧ୍ୟାୟ

# ଉପେନ୍ଦ୍ର ଭଞ୍ଜଙ୍କ ଜୀବନବୃତ୍ତାନ୍ତର ଅନ୍ୱେଷଣ

ଉପେନ୍ଦ୍ରଭଞ୍ଜଙ୍କର ଜୀବନବୃତ୍ତାନ୍ତର ଆଲୋଚନା ତାହାଙ୍କ ସମୟର ଦୀର୍ଘ ଦେଢ଼ଶହ ବର୍ଷ ପରେହିଁ ଆରମ୍ଭ ହୋଇଛି। ପୂର୍ବରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଓ ଅଭିମନ୍ୟୁ ସାମନ୍ତସିଂହାର ଭଳି କେତେଜଣ କବି ତାଙ୍କର ନାମୋଲ୍ଲେଖ ମାତ୍ର କରିଛନ୍ତି। ଅଭିମନ୍ୟୁ 'ବିଦଗ୍ଧ ଚିନ୍ତାମଣି'ରେ ଦ୍ୱ୍ୟର୍ଥ ଶୈଳୀରେ ଲେଖିଛନ୍ତି:-''ଉପଇନ୍ଦ୍ର ପଦ ଅଭିମନ୍ୟୁ ମନୁ। ଉପେକ୍ଷା. ଯେ ନୋହିବ ତ ଦିନୁ ଦିନୁ'' (୮/୪୧)। ଏଠାରେ ଉପଇନ୍ଦ୍ର ପଦର ଯୁଗପତ୍ ଦୁଇଟି ଅର୍ଥ। ମୁଖ୍ୟତଃ ବିଷ୍ଣୁଙ୍କ ଚରଣ ବା ପାଦ ଓ ଗୌଣତଃ କବି ଉପେନ୍ଦ୍ର ଭଞ୍ଜଙ୍କର କବିତାର ପଦାବଳୀ। ସଦାନନ୍ଦ 'ଯୁଗଳ ରସାମୃତ ଭଉଁରୀର ଶେଷ (୪୮ତମ) ଛାନ୍ଦରେ ଲେଖିଛନ୍ତି:-

> କାଚ-ମର୍କତ ସମାନ କରନ୍ତିପିଶୁନ ଜନ
> ସାରାସାର ଜ୍ଞାନ ନାହିଁ ଜାଣିମେ କହିଯେ।
> ଉପେନ୍ଦ୍ରଭଞ୍ଜ ସୁକବି ନିଜରସ ଅନୁଭବୀ
> କୃଷ୍ଣଉପାସକ ନୋହି କି କାର୍ଯ୍ୟ ତହିଁ ଯେ॥

ଏଥିରେ ଭିନ୍ନ ମତାବଲମ୍ବୀ ସୁକବିଙ୍କ ପ୍ରତି ଜଣେ ଗୌଡ଼ିଆ ବୈଷ୍ଣବର କଟୁ ଆକ୍ଷେପ ଥିଲେ ହେଁ ସୁକବିଙ୍କ ଜୀବନବୃତ୍ତାନ୍ତ ବିଷୟକ ଆଲୋଚନା ନାହିଁ। ଆକ୍ଷେପଟି ଯେ ସଂପୂର୍ଣ୍ଣ ଲକ୍ଷ୍ୟଚ୍ୟୁତ ହୋଇଛି ତାହା ସଦାନନ୍ଦଙ୍କ ଶିଷ୍ୟ କବି ଅଭିମନ୍ୟୁଙ୍କ ଆକାଂକ୍ଷାରୁ ସ୍ପଷ୍ଟ ହେଉଛି।

## ଜୀବନବୃତ୍ତାନ୍ତର ଉପାଦାନ

ଉପେନ୍ଦ୍ରଭଞ୍ଜଙ୍କର ଜୀବନବୃତ୍ତାନ୍ତ ନିମ୍ନଲିଖିତ ଚତୁର୍ବିଧ ସୂତ୍ରରୁ ଉପଲବ୍ଧ ଉପାଦାନକୁ ନେଇ ରଚିତ ହେଉଛି। ଅନେକ ଆଲୋଚକ କୌଣସି ସୂତ୍ରର ଉଲ୍ଲେଖ ନ କରି କବିଙ୍କ ବିଷୟରେ କିଛି କିଛି ଅଧିକ କଥାର ଅବତାରଣା କରୁଛନ୍ତି। କିନ୍ତୁ, ତାହା ସବୁ ନିରାଧାର ହୋଇଥିବା ହେତୁରୁ ଏଠାରେ ପର୍ଯ୍ୟାଲୋଚନାର ପରିସରଭୁକ୍ତ କରାଯାଉ ନାହିଁ।

୧. ଉପେନ୍ଦ୍ରଭଞ୍ଜ ତାଙ୍କର କେତୋଟି ରଚନା ମଧ୍ୟରେ (ଯଥା :- ରସପଞ୍ଚକର ଶେଷ, ବୈଦେହୀଶ ବିଳାସର ଶେଷ, ବନ୍ଧୋଦୟର ଆଦ୍ୟ, ଲାବଣ୍ୟବତୀର ୧୬ଶ ଛାନ୍ଦ ଆଦିରେ) କିଛି କିଛି ଆତ୍ମପରିଚୟ ଦେଇଛନ୍ତି। ବିଭିନ୍ନ ଛାନ୍ଦ ଓ ଚଉପଦୀ ଆଦିର ଭଣିତି ଅଂଶରେ କବି ନିଜ ବିଷୟରେ ଦେଇଥିବା ନାନା ସୂଚନା ମଧ୍ୟ ତାଙ୍କର ଜୀବନବୃତ୍ତାନ୍ତ ସଂକଳନ ପାଇଁ ଉପାଦେୟ। କିନ୍ତୁ, ଏ ପ୍ରସଙ୍ଗରେ ସବୁବେଳେ ମନେରଖିବା ଉଚିତ ଯେ ଆତ୍ମପରିଚୟାତ୍ମକ ବିବରଣ ନିଜର ଈପ୍ସିତ ଭାବମୂର୍ତ୍ତିକୁ କ୍ଷୁଣ୍ଣ ନ କରିବା ଲକ୍ଷ୍ୟରେହିଁ ପରିବେଷିତ ହୋଇଥାଏ। ଏହି କଥାଟି ଅଶୋକ-ଖାରବେଳାଦିଙ୍କର ଆତ୍ମଶ୍ଳାଘାଗର୍ଭିତ ଅନୁଶାସନାଦି କ୍ଷେତ୍ରରେ ଯେପରି ସତ୍ୟ ବିବିଧ ଆତ୍ମଜୀବନୀ କ୍ଷେତ୍ରରେ ମଧ୍ୟ ସେହିପରି। ଉପେନ୍ଦ୍ରଭଞ୍ଜଙ୍କର ଆତ୍ମପରିଚୟ ଏହି ନିୟମର ବ୍ୟତିକ୍ରମ ହୋଇ ନ ପାରେ। ତେବେ, ସମକାଳୀନ ଅନ୍ୟ କୌଣସି ସୂତ୍ରରୁ ଉପେନ୍ଦ୍ରଙ୍କ ବିଷୟରେ କିଛି ହିଁ ତଥ୍ୟ ମିଳୁ ନଥିବାରୁ ଉପେନ୍ଦ୍ରଙ୍କର ଆତ୍ମ ପରିଚୟ ସବୁଠାରୁ ପ୍ରାଚୀନ ଉପାଦାନ ଓ ସେହି କାରଣରୁ ତାହା ଉପରେ ଅଧିକ ଆସ୍ଥା ସ୍ଥାପନ କରିବାକୁ ହେଉଛି। ଆଉ ମଧ୍ୟ, ନିମ୍ନରେ ଆଲୋଚିତ ଅନ୍ୟାନ୍ୟ ସୂତ୍ରରୁ ଲଭ୍ୟ ଉପାଦାନ ଅପେକ୍ଷା ଖୋଦ୍ କବିଙ୍କ ବକ୍ତବ୍ୟ ନିଶ୍ଚୟ ଅଧିକ ମୂଲ୍ୟବାନ।

୨. ଉପେନ୍ଦ୍ର ଭଞ୍ଜ ଗୁମୁସର ରାଜବଂଶରେ ଜନ୍ମଲାଭ କରିଥିଲେ, ଯୁବରାଜ ଥିଲେ। ଓଡ଼ିଶାର କେତେକ ଗଡ଼ଜାତରେ ରାଜଭୋଗ ବିବରଣ ଟିପିବା ପାଇଁ, ପୁରୀର ଶ୍ରୀମନ୍ଦିରର ଅନୁକରଣରେ, ମାଦଳା-ସେବା ଥିବା ପରି ଗୁମୁସରରେ ମଧ୍ୟ, ଅନ୍ଦାଜ ଖ୍ରୀ. ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରୁ ମାଦଳା-ସେବା ଚଳୁଥିଲା। ଏହାକୁ ଆଶ୍ରୟ କରି ଓଡ଼ିଆ ଗଦ୍ୟରେ ଶ୍ରୀମନ୍ଦିରର ମାଦଳା-ପାଞ୍ଜିର ଅନୁକରଣରେ "ଭଞ୍ଜବଂଶାବଳୀ ପ୍ରାୟ ଖ୍ରୀ.୧୮୧୯ ବେଳେ ଲେଖା ହୋଇଥିଲା। ଏହାର କିୟଦଂଶ ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ 'ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ', କଲିକତା ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ 'ଓଡ଼ିଆ ସାହିତ୍ୟର ପରିଚୟ' ଆଦି ପୁସ୍ତକରେ ଉଦ୍ଧୃତ ହୋଇଛି। କିନ୍ତୁ, ସଂପୂର୍ଣ୍ଣ ପୁସ୍ତକଟି ପ୍ରକାଶ ପାଇନାହିଁ ଓ ତାହା ବର୍ତ୍ତମାନ କେଉଁଠାରେ ଅଛି ଜଣା ନାହିଁ। ମୁଖ୍ୟତଃ ଏହି ଗଦ୍ୟ ଲିଖିତ ରାଜବଂଶାବଳୀକୁ ଆଧାର କରି କେତେକ କବି, କେହି ପଦ୍ୟରେ ତ କେହି ଗଦ୍ୟରେ, ଅନେକଗୁଡ଼ିଏ ରାଜବଂଶାବଳୀ ପ୍ରଣୟନ କରିଛନ୍ତି। ତନ୍ମଧ୍ୟରୁ ପାଞ୍ଚଗୋଟି ପ୍ରକାଶ ପାଇସାରିଲାଣି ମଧ୍ୟ :-

(ଏକ) ସଂସ୍କୃତ ଭାଷାରେ ରଚିତ ଭଞ୍ଜ ବଂଶାବଳୀ। ମୁଖ୍ୟତଃ ଶ୍ଳୋକରେ ରଚିତ ଏହି କ୍ଷୁଦ୍ର ଲେଖାଟି ସତ୍ୟନାରାୟଣ ରାଜଗୁରୁଙ୍କ ଦ୍ୱାରା ସଂପାଦିତ ହୋଇ ପ୍ରାଚୀ ପତ୍ରିକାର ୩ୟ ଓ ୪ର୍ଥ ଖଣ୍ଡରେ ପ୍ରକାଶ ପାଇଛି (ଖ୍ରୀ.୧୯୩୨) ଏହାର ରଚନା କାଳ ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧି। ରଚୟିତା ଗୋପୀନାଥ ଏହାର ନାମ 'ରାଜମାଳିକା' ରଖିଥିଲେ।

(ଦୁଇ) କୌଣସି ଅଜ୍ଞାତ ରଚୟିତାଙ୍କ ଓଡ଼ିଆ ତ୍ରୟୋଦଶାକ୍ଷରୀ ପଦ୍ୟ 'ଭଞ୍ଜବଂଶାନୁଚରିତ'। ଖ୍ରୀ.୧୯୫୧ରେ ମାଗୁଣି ଦାଶଙ୍କ ଦ୍ୱାରା ପ୍ରକାଶିତ ଏହାର ପାଠଟି ଅସଂପୂର୍ଣ୍ଣ ବୋଧହୁଏ। ଏଥିରେ ଖ୍ରୀ. ୧୬୬୬ ପର୍ଯ୍ୟନ୍ତ ବିବରଣ ରହିଛି।

(ତିନି) କବି ସୂର୍ଯ୍ୟମଣି ଟ୍ୟାଉ ପଟ୍ଟନାୟକ (ଖ୍ରୀ.୧୭୭୩-୧୮୩୮) ଛାନ୍ଦ ଆକାରରେ ଲେଖିଥିବା 'ଗୁମୁସର ଭଞ୍ଜବଂଶାବଳୀ'। କବି ଜଣାଇଛନ୍ତି ଯେ ଏହା ଗଦ୍ୟରେ ଲିଖିତ ବଂଶାବଳୀ ଅନୁସାରେ ରଚିତ ହୋଇଛି। ଖ୍ରୀ. ୧୯୭୩ରେ ଦୁର୍ଗାମାଧବ ନନ୍ଦଙ୍କ ଉଦ୍ୟମରେ ପ୍ରକାଶିତ ଏହାର ପାଠରେ। ଖ୍ରୀ.୧୮୧୯ ପର୍ଯ୍ୟନ୍ତ ବିବରଣ ରହିଛି। ପ୍ରକାଶିତ ପାଠରେ ମୋଟ ୧୪ଟି ଛାନ୍ଦ ରହିଛି। କିନ୍ତୁ, ତାହା ଅସଂପୂର୍ଣ୍ଣ। ସୂର୍ଯ୍ୟମଣି ରଚନା ସଂପୂର୍ଣ୍ଣ କରିଥିଲେ କି ନା କହି ହେଉନାହିଁ।

(ଚାରି) ଖ୍ରୀ. ୧୯୭୮ରେ ପ୍ରକାଶିତ ତ୍ରୟୋଦଶାକ୍ଷରୀ ଓଡ଼ିଆ ପଦ୍ୟରେ ରଚିତ ''ଭଞ୍ଜବଂଶ ଓ ଗୁମୁସର ବିଦ୍ରୋହ''। ଏହି ନାମଟି ତାହାର ସଂପାଦକ ମାଗୁଣି ଦାଶଙ୍କ ଦ୍ୱାରା ପ୍ରଦତ୍ତ। କିନ୍ତୁ, ଗ୍ରନ୍ଥରେ ତାହାର କୌଣସି ନାମ ଲେଖାନାହିଁ। ନିଃସନ୍ଦେହ ଭାବରେ ଖ୍ରୀ.୧୮୪୦ରେ ରଚିତ ଏହି ଗ୍ରନ୍ଥଟି ଭାଷା ଓ ଭାବ ଉଭୟ ବିଚାରରୁ ସୂର୍ଯ୍ୟମଣିଙ୍କ ଛାନ୍ଦ ପୋଥିର ରୂପାନ୍ତର, ପାର୍ଥକ୍ୟ ଅତିଅଳ୍ପ। ସଂପାଦକ ଜଣାଇଛନ୍ତି ଯେ ଏହାର ପ୍ରଣେତା ଗଙ୍ଗାପାଣି ମହାପାତ୍ର ବୋଲି ଗଙ୍ଗାପାଣିଙ୍କ ବଂଶଧରମାନେ କହନ୍ତି। କିନ୍ତୁ, ଏହାର ରଚୟିତା ଅନ୍ୟ କେହି ହେବା ହିଁ ସମ୍ଭବପର। ଗଙ୍ଗାପାଣିଙ୍କ ସମୟ ଖ୍ରୀ.୧୮୪୦ ରୁ ଢ଼େର୍ ପରବର୍ତ୍ତୀ।

(ପାଞ୍ଚ) ଖ୍ରୀ. ୧୯୮୨ରେ ମାଗୁଣି ଦାଶଙ୍କ ଦ୍ୱାରା ପ୍ରକାଶିତ ଓଡ଼ିଆ ଗଦ୍ୟରେ ଲିଖିତ ଭଞ୍ଜବଂଶାବଳୀ। ଏହାର ରଚନାକାଳ ଖ୍ରୀ.୧୮୬୨ର ପରବର୍ତ୍ତୀ। ରଚୟିତାଙ୍କ ପରିଚୟ ମିଳୁନାହିଁ।

ଏସବୁ ଛଡ଼ା ଆହୁରି କେତେକ ବଂଶାବଳୀ ଲେଖାହୋଇଛି ଓ ଅପ୍ରକାଶିତ ଅବସ୍ଥାରେ ଏ ଯାବତ୍ ରହିଛି। ମୁଁ ସଂଗ୍ରହ କରିଥିବା 'ଘୁମୁସର ଇତିହାସ' ତନ୍ମଧ୍ୟରୁ ଗୋଟିଏ। ଏହା ଖ୍ରୀ.୧୮୫୧ରେ ଓଡ଼ିଆ ଗଦ୍ୟରେ ଲେଖାଯାଇଥିଲା ଓ ଶିକ୍ଷକ ଗୋବିନ୍ଦ ଦାଶ ''ଜୀର୍ଣ୍ଣତାଳପତ୍ର'' ପୋଥିରୁ ଉତାରିବା ବେଳେ କିଛି କିଛି ଅଧିକ ସଂଯୋଗ ପ୍ରାୟ ଖ୍ରୀ. ୧୯୩୦ ବେଳେ କରିଥିବା ଜଣାଯାଉଛି।

ଏହାଛଡ଼ା ତାରିଣୀଚରଣ ରଥଙ୍କ ଦ୍ୱାରା ପ୍ରଣୀତ ଓ ଖ୍ରୀ.୧୯୧୩ରେ ପ୍ରକାଶିତ 'ଗୁମୁସର ଇତିହାସ' ଓ ଚିନ୍ତାମଣି ମହାନ୍ତିଙ୍କ ଚତୁର୍ଦ୍ଦଶାକ୍ଷରୀ ଓଡ଼ିଆ ପଦ୍ୟରେ ରଚିତ 'ଘୁମୁସର କାବ୍ୟ'ରେ ମଧ୍ୟ ରାଜବଂଶର ଇତିହାସ ରହିଛି। କାବ୍ୟଟିରେ ଉପେନ୍ଦ୍ରଭଞ୍ଜଙ୍କ ବିଷୟରେ ଇତିହାସର ତଥ୍ୟ ସହିତ କିଂବଦନ୍ତୀ ଗୋଳିଆପୋଳିଆ ହୋଇ ରହିଛି।

ରାଜବଂଶାବଳୀ ଗୁଡ଼ିକରେ ଉପେନ୍ଦ୍ରଭଞ୍ଜଙ୍କର ପିତାମହ, ପିତାମହୀ, ପିତାଆଦିଙ୍କ କାର୍ଯ୍ୟକଳାପ ବିଷୟରେ ନାନା କଥା ଲେଖା ହୋଇଥିଲେହେଁ ଖୋଦ୍ ଉପେନ୍ଦ୍ର ତାଙ୍କ

ସଂପର୍କରେ ବିଶେଷ କିଛି ବର୍ଣ୍ଣନା ନାହିଁ। ଅବଶ୍ୟ ରାଜା ନୀଳକଣ୍ଠଙ୍କ ପୁତ୍ର ଉପେନ୍ଦ୍ର ଭଞ୍ଜ ସୁକବି ଥିଲେ ଓ ସେ ଅନପତ୍ୟ ଥିଲେ ବୋଲି ପ୍ରାୟ ସବୁ ବଂଶାବଳୀରେ ଲେଖାଅଛି। କେବଳ ସଂସ୍କୃତ ରାଜମାଳିକାରେ ସେ ଅନପତ୍ୟ ଥିବା କଥା ଲେଖା ହୋଇନାହିଁ।

ମନେ ରଖିବାକୁ ହେବ ଯେ, ବଂଶାବଳୀଗୁଡ଼ିକ ଉପେନ୍ଦ୍ରଙ୍କ ସମୟର ପ୍ରାୟ ଶହେ ବର୍ଷ ପରବର୍ତ୍ତୀ ରଚନା। ପୁଣି, ବଂଶାବଳୀର ପ୍ରଣେତାମାନେ ସମସ୍ତେ ଘନଭଞ୍ଜଙ୍କ ବଂଶଧର ରାଜାମାନଙ୍କର ପୃଷ୍ଠପୋଷକତା ପାଉଥିଲେ। ଘନଭଞ୍ଜ ଉପେନ୍ଦ୍ର ଭଞ୍ଜଙ୍କ ପିତା ନୀଳକଣ୍ଠଙ୍କ ରାଜତ୍ୱର ବିରୋଧୀ ଥିବାରୁ ସମସାମୟିକ ରାଜବାଟୀ-କନ୍ଦଳ ବିଷୟରେ ବଂଶାବଳୀ ଗୁଡ଼ିକର ବିବରଣ ପକ୍ଷପାତିତା ଦୋଷଦୁଷ୍ଟ ହେବା ସମ୍ଭାବନାକୁ ସ୍ୱୀକାର କରିବାକୁ ହେବ।

୩. ବ୍ରିଟିଶ୍ ସରକାରଙ୍କ ଶାସନ କାଳରେ ରଚିତ ଗୁମୁସର ବିଷୟକ କାଗଜପତ୍ରରେ (ଯଥା :- ଗଞ୍ଜାମ ଜିଲ୍ଲା ମ୍ୟାନୁଏଲ୍, ଗୁମୁସରର ବନ୍ଦୋବସ୍ତ ରିପୋର୍ଟ ଆଦିରେ) ଓ ଖ୍ରୀ.୧୯୯୬ରେ ପ୍ରକାଶିତ ବୌଦ ରାଜବଂଶାବଳୀରେ ଉପେନ୍ଦ୍ର ଭଞ୍ଜଙ୍କ ବିଷୟରେ ଅତିଅଳ୍ପ ହେଲେ ହେଁ ଉପାଦେୟ ତଥ୍ୟ ଉଲ୍ଲେଖ ରହିଛି। ବେଳେ ବେଳେ ଉପେନ୍ଦ୍ରଭଞ୍ଜଙ୍କର କାବ୍ୟକବିତାଦିର ଅନୁଲେଖକମାନେ ମଧ କିଛି କିଛି ପ୍ରାସଙ୍ଗିକ ତଥ୍ୟ ପୋଥିରେ ଜଣାଇଛନ୍ତି।

୪. ଅନ୍ୟାନ୍ୟ ପ୍ରାଚୀନ ଓଡ଼ିଆ କବିମାନଙ୍କର ଜୀବନବୃତ୍ତାନ୍ତ ପରି ଉପେନ୍ଦ୍ରଭଞ୍ଜଙ୍କର ଅଧୁନା ପ୍ରଚାରିତ ଜୀବନବୃତ୍ତାନ୍ତ ମଧ ତଥାକଥିତ ଜନଶ୍ରୁତି ବା କିଂବଦନ୍ତୀ ଦ୍ୱାରା ବିଶେଷ ଭାବରେ ପରିପୁଷ୍ଟ। କବି ପ୍ରାଚୀନ କବିଙ୍କର ଜୀବନବୃତ୍ତାନ୍ତ ସହିତ ସଂପୃକ୍ତ କିଂବଦନ୍ତୀ ଆଦିର ଅଧ୍ୟୟନରୁ ମୋର ଦୃଢ଼ ଧାରଣା ଜନ୍ମିଛି ଯେ, ଏହି ସବୁ କିଂବଦନ୍ତୀ/ ଜନଶ୍ରୁତି ମନଗଢ଼ା, ଅଧିକାଂଶ କ୍ଷେତ୍ରରେ ନିଜକୁ କିଂବଦନ୍ତୀ ସଂଗ୍ରାହକ ରୂପେ ପ୍ରଚାର କରୁଥିବା ବ୍ୟକ୍ତିବିଶେଷଙ୍କର କଳ୍ପନାପ୍ରସୂତ। ତେଣୁ, କବିଙ୍କ ଜୀବନବୃତ୍ତାନ୍ତ ଜାଣିବା ପାଇଁ ଏହି ସବୁ କିଂବଦନ୍ତୀ ଓ ଜନଶ୍ରୁତି ଜମାରୁ ସହାୟକ ନୁହନ୍ତି; ବରଂ ବାଧକ।

ଉପରେ ସୂଚିତ ସର୍ବବିଧ ଉପାଦାନ ମଧ୍ୟରୁ କବିଙ୍କ ବିଷୟରେ ଜାଣିବା ପାଇଁ ପ୍ରଥମୋକ୍ତ ଆତ୍ମପରିଚୟ ଅଧିକ ଉପାଦେୟ, ଦ୍ୱିତୀୟୋକ୍ତ ବଂଶାବଳୀର ବିବରଣ ପକ୍ଷପାତୀ ଓ ଶେଷୋକ୍ତ କିଂବଦନ୍ତୀ ବା ଜନଶ୍ରୁତି ପୂର୍ଣ୍ଣତଃ ଅବିଶ୍ୱାସ୍ୟ।

**କିଂବଦନ୍ତୀରେ ଉପେନ୍ଦ୍ରଭଞ୍ଜ**

ଉପେନ୍ଦ୍ରଭଞ୍ଜ ତାଙ୍କ ଲେଖାଗୁଡ଼ିକ ମଧରେ କିଛିକିଛି ଆତ୍ମପରିଚୟ ଦେଇଛନ୍ତି। ଏହି ଦୃଷ୍ଟିରୁ ଦେଖିଲେ ସେ ଏକ ବ୍ୟତିକ୍ରମ। କାରଣ, ଅତି ଅଳ୍ପସଂଖ୍ୟକ ପ୍ରାଚୀନ ଓଡ଼ିଆ କବି ଆତ୍ମପରିଚୟ ଦେବାର ଆବଶ୍ୟକତା ବିଷୟରେ ସଚେତନ। ଏହା ସତ୍ତ୍ୱେ ଉପେନ୍ଦ୍ରଭଞ୍ଜଙ୍କ ଜୀବନବୃତ୍ତାନ୍ତ ପୂର୍ଣ୍ଣାଙ୍ଗ ନୁହେଁ କି ସୁସ୍ପଷ୍ଟ ନୁହେଁ। ଜୀବନ ବୃତ୍ତାନ୍ତକୁ ପୂର୍ଣ୍ଣାଙ୍ଗ କରାଇନେବା ଲକ୍ଷ୍ୟରେ ନୂଆ ନୂଆ କିଂବଦନ୍ତୀର ସୃଷ୍ଟି ହେଉଛି ଓ

ତଦ୍ଦ୍ୱାରା ଅସ୍ପଷ୍ଟତା ବଢ଼ି ବଢ଼ି ଚାଲିଛି। ଅନ୍ୟ ନିର୍ଭରଯୋଗ୍ୟ ଉପାଦାନର ଅଭାବ ଥିବାରୁ, ପ୍ରାଚୀନ ଓଡ଼ିଆ କବିମାନଙ୍କର ଜୀବନବୃତ୍ତାନ୍ତର ସଂକଳନ ପାଇଁ କିଂବଦନ୍ତୀକୁ ଖୁବ୍ ଗୁରୁତ୍ୱ ଦିଆଯାଉଛି। ପରିଣାମତଃ, କିଂବଦନ୍ତୀ-ଶିଳ୍ପ ପ୍ରୋତ୍ସାହ ପାଇ ଆସୁଛି। ଓଡ଼ିଆରେ ବ୍ୟକ୍ତି ବିଶେଷଙ୍କର ଜୀବନଚରିତ ବିଷୟରେ ଐତିହାସିକ ତଥ୍ୟପ୍ରମାଣ ସର୍ବଥା ବିରଳ। ତେଣୁ, କବିମାନଙ୍କର ଜୀବନବୃତ୍ତାନ୍ତ ସଂକଳନ ପାଇଁ ପର୍ଯ୍ୟାପ୍ତ ତଥ୍ୟର ଅଭାବ ରହିଥିବା ଅନସ୍ୱୀକାର୍ଯ୍ୟ। ଏହି ଅଭାବର ପୂରଣ ଲକ୍ଷ୍ୟରେ ବହୁ ଆଲୋଚକ ସୁଲଭ ଇତିହାସ ଜ୍ଞାନରେ କିଂବଦନ୍ତୀଗୁଡ଼ିକୁ ସାଉଁଟିବାରେ ଲାଗନ୍ତି, କିମ୍ବା କବିଙ୍କ ଜୀବନବୃତ୍ତାନ୍ତ ଯେପରି ହୋଇଥିଲେ ଭଲ ହୁଅନ୍ତା ବୋଲି ନିଜେ ଭାବୁଥାନ୍ତି ତାହାକୁ କିଂବଦନ୍ତୀ ବା ଜନଶ୍ରୁତି ମୋହର ମାରି ଚଳାଇ ଦିଅନ୍ତି। ଫଳରେ ଅନେକେ ଗାଲୁଗପ ଇତିହାସର ପୋଷାକ ଗଳାଇ ଇତିହାସ ଆଖ୍ୟା ଧରି ପାଠକ ସମକ୍ଷରେ ଅବତୀର୍ଣ୍ଣ ହୁଅନ୍ତି। ଇତିହାସର ଗବେଷଣା ମାର୍ଗକୁ ଏହି ସବୁ କିଂବଦନ୍ତୀ ପରିଷ୍କାର କରାଉଥିବା ଭଳି ଆପାତତଃ ଜଣାଯାଉଥିଲେ ହେଁ ସଚ୍ଚା ଇତିହାସ ଜିଜ୍ଞାସୁମାନଙ୍କୁ ବାଟବଣା ହିଁ କରାଇଥାନ୍ତି। ସମୟକ୍ରମେ ଏହି ସବୁ କିଂବଦନ୍ତୀ ଆପଣା ବାହୁବିସ୍ତାର କରି ପ୍ରକୃତ ଇତିହାସକୁ ମଧ୍ୟ ଆଚ୍ଛନ୍ନ କରି ପକାନ୍ତି। ଦେଖାଯାଉଛି, ଉପେନ୍ଦ୍ରଭଞ୍ଜଙ୍କର ଜୀବନବୃତ୍ତାନ୍ତର ସଂକଳନ ଉପରେ ଅଜସ୍ର କିଂବଦନ୍ତୀର ଅନିଷ୍ଟକର ପ୍ରଭାବ ପଡ଼ିଛି। ସବୁଗୁଡ଼ିକ କିଂବଦନ୍ତୀର ବିଶ୍ଳେଷଣ ପୂର୍ବକ ମୂଲ୍ୟାଙ୍କନ ଗୋଟି ଗୋଟି କରି ବସିଲେ ଗ୍ରନ୍ଥବିସ୍ତାର ହେବ ଓ ତାହା ଆବଶ୍ୟକ ମଧ୍ୟ ନୁହେଁ। ଭାତ ହାଣ୍ଡିରୁ ଗୋଟିଏ ନ୍ୟାୟରେ ଏଠାରେ ଅଳ୍ପ କେତୋଟି କିଂବଦନ୍ତୀକୁ ନମୁନା ସ୍ୱରୂପ ପରଖି କଲେ ଅନ୍ୟାନ୍ୟ କିଂବଦନ୍ତୀ ଗୁଡ଼ିକର ସ୍ୱଭାବ ସ୍ପଷ୍ଟ ହୋଇଯିବ। ଉପେନ୍ଦ୍ର ଭଞ୍ଜଙ୍କର କବିତ୍ୱ ଶକ୍ତିର ଉଦ୍‌ଗମ ବିଷୟରେ ପରସ୍ପର ବିରୋଧୀ ଦୁଇଟି କିଂବଦନ୍ତୀ ଅଦ୍ଭୁତ ହେଲେ ହେଁ କିପରି ଓଡ଼ିଆ ପଣ୍ଡିତମାନଙ୍କ ଦ୍ୱାରା ସମର୍ଥିତ ହେଉଛି, ତାହା ଭାବିଲେ କ୍ଷୋଭ ହିଁ ଜାତ ହୁଏ।

## କବିତ୍ୱପ୍ରାପ୍ତି କିଂବଦନ୍ତୀ

ଭଞ୍ଜସାହିତ୍ୟର ଅଗ୍ରଗଣ୍ୟ ଗବେଷକ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଉପେନ୍ଦ୍ରଭଞ୍ଜଙ୍କ "ଲାବଣ୍ୟବତୀ" କାବ୍ୟର ମୁଖବନ୍ଧରେ କବି କିପରି କବିତ୍ୱଶକ୍ତି ପାଇଲେ ସେ ବିଷୟରେ ଲେଖିଛନ୍ତି :-

"କିମ୍ବଦନ୍ତୀରୁ ପ୍ରକାଶ ଯେ, ତାଙ୍କ ପିତାମହ ଧନଞ୍ଜୟ ଭଞ୍ଜ ସ୍ୱରଚିତ 'ରଘୁନାଥ ବିଳାସ' କାବ୍ୟ ଉପେନ୍ଦ୍ରଙ୍କୁ ପାଠ କରି ମନ୍ତବ୍ୟ ପ୍ରକାଶ କରିବାକୁ କହିଥିଲେ। ପ୍ରତିଭାବାନ ଉପେନ୍ଦ୍ର କାବ୍ୟକୁ ଆମୂଳଚୂଳ ପାଠ କରିସାରି କହିଲେ, 'ଏ କାବ୍ୟ ପୂର୍ବତନ ସମସ୍ତ କାବ୍ୟମାନଙ୍କ ଠାରୁ ଉତ୍ତମ, କିନ୍ତୁ ଏ କାବ୍ୟରେ କଳାଚାତୁରୀ, ରସମାଧୁରୀ ତଥା ଆଶୟାଦିର ଯଥାଯଥ ବିକାଶ ନାହିଁ. ତେଣୁ ଏହା ଯଥାସମ୍ଭବ

ସୁନ୍ଦର ହୋଇପାରି ନାହିଁ।' ପିତାମହ କହିଲେ, 'ଏହାଠାରୁ ଉତ୍ତମ ଓ ସର୍ବାଙ୍ଗସୁନ୍ଦର କାବ୍ୟ ଲେଖିପାରିବ କି' ? ଉପେନ୍ଦ୍ର ଭଞ୍ଜ ଶୁଣି ସ୍ମିତ ବଦନରେ କହିଲେ, 'ମଣିମାଙ୍କର ଆଶୀର୍ବାଦ ଥିଲେ ଏହି ରାମଚରିତରେ କାବ୍ୟ ଲେଖି ନିଶ୍ଚୟ ପ୍ରଶଂସାଭାଜନ ହେବି'। ଏପରି ବିଷମ ପ୍ରତିଜ୍ଞା କରି କ୍ଷତ୍ରିୟ ଯୁବକ ଉପେନ୍ଦ୍ର ଅଶ୍ୱପୃଷ୍ଠରେ ନୟାଗଡ଼ରେ ଉପସ୍ଥିତ ହୋଇ ରଘୁନାଥଙ୍କ ଶରଣାପନ୍ନ ହେଲେ। ଧ୍ୟାନ, ଧାରଣା ଓ ଉପାସନା ବଳରେ ଦେବ ରଘୁନାଥଙ୍କୁ ପ୍ରୀତ କରି ରାମତାରକ ମନ୍ତ୍ରରେ ସିଦ୍ଧିଲାଭ କଲେ। ତତ୍‌ପରେ ଅଶ୍ୱପୃଷ୍ଠରେ ଘୁମୁସରକୁ ପ୍ରତ୍ୟାବର୍ତ୍ତନ କରିବା ସମୟରେ ଅରଣ୍ୟ ମଧ୍ୟରେ ଅର୍ଦ୍ଧରାତ୍ରିରେ ମନୁଷ୍ୟ-ଶବର ବକ୍ଷଦେଶରେ ଆସୀନ ହୋଇ ଜଣେ ଦଶମହାବିଦ୍ୟା ସାଧକ ତାନ୍ତ୍ରିକ ମନ୍ତ୍ର ଓ ଉପଚାର ବଳରେ ଭଗବତୀ ଦେବୀଙ୍କୁ ଆହ୍ୱାନ କରିବା ଓ ଭୀଷଣ ମୂର୍ତ୍ତି ମହାଭୈରବୀ କରାଳୀକାଳୀଙ୍କ ଅକସ୍ମାତ୍ ଆବିର୍ଭାବରେ ତାନ୍ତ୍ରିକର ଭୀତିରେ ସଂଜ୍ଞାଶୂନ୍ୟ ହୋଇ ଭୂଲୁଣ୍ଠିତ ହେବା ଦର୍ଶନରେ ଉପେନ୍ଦ୍ର ହଠାତ୍ ଅଶ୍ୱପୃଷ୍ଠରୁ ଅବତରଣ କରି ଶବର ବକ୍ଷରେ ଆସୀନ ହେଲେ। ଦେବୀ ''ବରଂ ବୃଣୀଷ୍ୱ'' କହନ୍ତେ ନିର୍ଭୀକ କ୍ଷତ୍ରିୟ ଯୁବକ ଭକ୍ତିନମ୍ର ଭାବରେ ବଦ୍ଧାଞ୍ଜଳି ପୂର୍ବକ କହିଲେ ''ଦେବି କୃପାମୟି ବରାଭୟଦାୟିନି, କୃପୟା ଦେହିମେଽତ୍ୟଦ୍ଭୁତାଂ କବିତ୍ୱଶକ୍ତିମ୍''। ଦେବୀ ପ୍ରୀତ ହୋଇ କହିଲେ, ''ବତ୍ସ, ପ୍ରାକୃତ ଭାଷାୟା ତେଽଭୂତପୂର୍ବଂ କବିତ୍ୱଂ ପ୍ରସରିଷ୍ୟତି''। ଏହା କହି ଦେବୀ ଅନ୍ତର୍ହିତ ହେଲେ। ହୃଷ୍ଟଚିତ୍ତରେ ଉପେନ୍ଦ୍ର ଘୁମୁସରକୁ ଆସି ବର୍ଷକ ମଧ୍ୟରେ 'ବୈଦେହୀଶ-ବିଳାସ' କାବ୍ୟ ରଚନା କରି ସ୍ୱ-ପିତାମହ ଧନଞ୍ଜୟ ଭଞ୍ଜଙ୍କୁ ଦର୍ଶାଇଲେ। କାବ୍ୟରସିକ ପଣ୍ଡିତ ଧନଞ୍ଜୟ ପୌତ୍ରଙ୍କ ରଚିତ କାବ୍ୟରତ୍ନ ପାଠ କରି ପରମ ପ୍ରୀତ ହେଲେ ଓ ଉପେନ୍ଦ୍ରଙ୍କୁ ଭୂରି ଭୂରି ପ୍ରଶଂସା ପ୍ରଦାନ କଲେ''। (ପ୍ରାଚୀସମିତି ପ୍ରକାଶିତ ଲାବଣ୍ୟବତୀର ମୁଖବନ୍ଧ, ପୃ ୧୧୨-୧୧୩)।

ଅଧ୍ୟାପକ ମହାନ୍ତି ଦେବୀଙ୍କଠାରୁ ବରପ୍ରାପ୍ତି ଆଖ୍ୟାନଟି କାଳ୍ପନିକ ହୋଇପାରେ ବୋଲି ସ୍ୱୀକାର କରିବା ସତ୍ତ୍ୱେ ପ୍ରତ୍ୟକ୍ଷଦର୍ଶୀ ବିବରଣ ଦେବା ଶୈଳୀରେ ସଂସ୍କୃତ-ଓଡ଼ିଆ ଦ୍ୱିଭାଷୀ ସଂଳାପର ଉଦ୍ଧୃତି ଦେଇଛନ୍ତି। କିନ୍ତୁ, ଏହି କିଂବଦନ୍ତୀଟିକୁ ସେ କେଉଁଠାରେ, କେବେ, କାହାଠାରୁ ଶୁଣିଥିଲେ ଜଣାଇନାହାନ୍ତି। ସବୁ 'କିଂବଦନ୍ତୀ'ର ଜନକମାନେ ତାହା ହିଁ କରିଥାନ୍ତି। ଲୋକମୁଖର କୌଣସି କିଂବଦନ୍ତୀରେ ସଂସ୍କୃତ ଭାଷାର ସଂଳାପ ରହି ନ ପାରେ। ଏହା ଜଣେ ସଂସ୍କୃତ ପଣ୍ଡିତଙ୍କ କଳ୍ପନାପ୍ରସୂତ ଗଳ୍ପ ମାତ୍ର। ପଣ୍ଡିତେ କିନ୍ତୁ ଉପେନ୍ଦ୍ର ଭଞ୍ଜଙ୍କ ସମକାଳୀନ ଅବସ୍ଥା ବିଷୟରେ ବିଶେଷ ଅବହିତ ନ ଥିଲେ। ସେ ଜାଣି ନଥିଲେ ଯେ, ନୂଆଗଡ଼ (ଯାହାକୁ କିଂବଦନ୍ତୀ ଆଧୁନିକ ଢ଼ଙ୍ଗରେ ନୟାଗଡ଼ କରିଛି) ରାଜ୍ୟରେ ରଘୁନାଥଙ୍କ ପ୍ରତିଷ୍ଠା ଉପେନ୍ଦ୍ରଙ୍କ ସମୟ ଯାଏଁ ହୋଇ ନଥିଲା। ଓଡ଼ଗାଁରେ ରଘୁନାଥଙ୍କୁ ଖ୍ରୀ. ୧୭୬୩ରେ ବୈରାଗୀ ପଟ୍ଟନାୟକ ପ୍ରତିଷ୍ଠା କରିଥିଲେ, ଅଥଚ ତାହାର ଦୀର୍ଘ ୬୦ ବର୍ଷ ପୂର୍ବରୁ ଧନଞ୍ଜୟଙ୍କ ଦେହାନ୍ତ ହୋଇ ସାରିଥାଏ।

ଧନଞ୍ଜୟ ଓ ନୂଆଗଡ଼ ରାଜ୍ୟସ୍ଥ ଓଡ଼ଗାଁର ରଘୁନାଥଙ୍କ ସମକାଳୀନ ବିଦ୍ୟମାନତା ସ୍ୱୀକାର କରିଥିବାରୁ ଏହି କିଂବଦନ୍ତୀଟି ଉପେନ୍ଦ୍ରଭଞ୍ଜଙ୍କ ଜୀବନବୃତ୍ତାନ୍ତକୁ କିପରି ବିଗାଡ଼ି ପକାଇଛି ତାହା ଅଧ୍ୟାପକ ମହାନ୍ତିଙ୍କ ପ୍ରଶିଷ୍ୟ ଡଃ ବାସୁଦେବ ସାହୁଙ୍କ ନିମ୍ନୋକ୍ତ ବକ୍ତବ୍ୟରୁ ସ୍ପଷ୍ଟ ହୋଇଯିବ :-

"ଓଡ଼ଗାଁ ମନ୍ଦିରରେ ଠାକୁରମାନଙ୍କୁ ସ୍ଥାପନ କରିବା ସଂପର୍କରେ ଏକ ପ୍ରାଚୀନ ତାଳପତ୍ର ପୋଥି ଓ ଏକ ତମ୍ବାପଟାରେ ଉଲ୍ଲେଖ ରହିଛି :-

ଶକାବ୍ଦେ ଶର ମାଙ୍ଗଲ୍ୟେ ଋତୁଷ୍ଟ ଉଡୁନାୟକା । ରାମଲକ୍ଷ୍ମଣ ସଂସ୍ଥାପ୍ୟ ବୈରାଗୀ ପଟ୍ଟନାୟକ......ଇତ୍ୟାଦି ।

ଶର ହେଉଛି ୫, ମାଙ୍ଗଲ୍ୟ ହେଉଛି ୮, ଋତୁ ୬, ଉଡୁନାୟକ୧ । ଏହିପରି ୫,୮,୬,୧ କିନ୍ତୁ ଅଙ୍କାନାଂ ବାମତୋ ଗତିଃ । ତେଣୁ ଏହା ହେବ ୧,୬,୮,୫ ଅର୍ଥାତ୍ ୧୬୮୫ ଶକାବ୍ଦ ବା ୧୭୬୩ ଖ୍ରୀଷ୍ଟାବ୍ଦରେ ନୟାଗଡ଼ ରାଜାଙ୍କ ବେବର୍ତ୍ତା ପରମ ରାମଭକ୍ତ ବୈରାଗୀ ପଟ୍ଟନାୟକଙ୍କ ଦ୍ୱାରା ରାମ-ଲକ୍ଷ୍ମଣ ସ୍ଥାପିତ ହୋଇଥିଲେ । ଏକ କିଂବଦନ୍ତୀରୁ ଜଣାଯାଏ ଓଡ଼ଗାଁ ରଘୁନାଥ ମନ୍ଦିରରେ ସାଧନାରତ ଓ ରାମତାରକ ମନ୍ତ୍ରରେ ସିଦ୍ଧ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ହେଉଛନ୍ତି ବୈରାଗୀ ପଟ୍ଟନାୟକଙ୍କ ସମକାଳୀନ । ଉଭୟଙ୍କ ମଧ୍ୟରେ ଦଧିନଉତିର ସିଦ୍ଧଗୁମ୍ଫାଠାରେ ସାକ୍ଷାତ ହୋଇଥିଲା । ଏହି କିଂବଦନ୍ତୀକୁ ବିଶ୍ୱାସ କଲେ ଉପେନ୍ଦ୍ର ଭଞ୍ଜ ୧୭୬୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଜୀବିତ ଥିଲେ ବୋଲି ପ୍ରମାଣିତ ହେବ; କିନ୍ତୁ ଉପେନ୍ଦ୍ରଭଞ୍ଜଙ୍କ ତିରୋଧାନ କାଳ ୧୭୨୦ ଖ୍ରୀଷ୍ଟାବ୍ଦ ବୋଲି ନିର୍ଣ୍ଣିତ ହୋଇଅଛି । ସେହି ଦୃଷ୍ଟିରୁ ଗବେଷକ ଦାମୋଦର ଦାସ ପୂର୍ବୋକ୍ତ ଶ୍ଳୋକଟିର ମାଙ୍ଗଲ୍ୟ ଶବ୍ଦକୁ ୨ ବୋଲି ଅର୍ଥ କରି ବୈରାଗୀ ପଟ୍ଟନାୟକ ୧୬୨୫ ଶକାବ୍ଦ ବା ୧୭୦୩ ଖ୍ରୀଷ୍ଟାବ୍ଦରେ ଓଡ଼ଗାଁରେ ରାମ-ଲକ୍ଷ୍ମଣଙ୍କୁ ସ୍ଥାପନ କରିଥିଲେ ବୋଲି ଦର୍ଶାଇଛନ୍ତି ।

(ଓଡ଼ିଶାର ଦେବଦେବୀ, ପ୍ରଥମଖଣ୍ଡ, ପୃ.୧୮.୧୯) ।

କିଂବଦନ୍ତୀର ଗୁରୁ ଚାପାରେ ପଡ଼ି ଇତିହାସ କିପରି ଆଡ଼ବାଙ୍କ ହୋଇ ପାରେ ତାହା ଏଥିରୁ ସ୍ପଷ୍ଟ ହୁଏ । ମାଙ୍ଗଲ୍ୟର ପ୍ରକୃତ ଅର୍ଥକୁ ଅଗ୍ରାହ୍ୟ କରି ତାହାର ଅର୍ଥ ୨ ବୋଲି କରିବା ଦ୍ୱାରା ଗବେଷକ ଶ୍ରୀ ଦାସ ଗୋଟିଏ କିଂବଦନ୍ତୀକୁ ମୃତ୍ୟୁ ମୁହଁରୁ ବଞ୍ଚାଇବା ପାଇଁ ଇତିହାସକୁ ଛେଦ ପକାଇ ଦେଲେ । ତଥାପି କିଂବଦନ୍ତୀଟି ବଞ୍ଚିପାରିବ ନାହିଁ । କାରଣ, ମଙ୍ଗଳାଷ୍ଟକ, ଅଷ୍ଟମଙ୍ଗଳା ଓ ଅଷ୍ଟମାଙ୍ଗଲ୍ୟ ଦ୍ରବ୍ୟ ହିଁ ଲୋକରେ ପ୍ରଚଳିତ ।

ଓଡ଼ଗାଁରେ ରଘୁନାଥଙ୍କ ପ୍ରତିଷ୍ଠା ଖ୍ରୀ ୧୭୬୩ର ଘଟନା ହୋଇଥିବା ଯୋଗୁଁ ସେଠାରେ ଉପେନ୍ଦ୍ର ରଘୁନାଥଙ୍କ ଶରଣାପନ୍ନ ହେବା କିଂବଦନ୍ତୀ ଓ 'ଚୁଡ଼ାକୁ ଗୁଡ଼ ସାକ୍ଷୀ' ଭଳି ବୈରାଗୀ ପଟ୍ଟନାୟକଙ୍କ ସହ ଉପେନ୍ଦ୍ରଭଞ୍ଜଙ୍କ ଭେଟ କିଂବଦନ୍ତୀ ନିରାଧାର ।

ଭିନ୍ନ କାରଣରୁ ମଧ୍ୟ ଏ ପ୍ରକାର କିଂବଦନ୍ତୀ ମିଥ୍ୟା ବୋଲି ପ୍ରମାଣିତ ହୋଇପାରିବ। ଉପେନ୍ଦ୍ରଭଞ୍ଜ ନିଜେ ଏହାର ପ୍ରମାଣ ଯୋଗାଇଛନ୍ତି। ବୈଦେହୀଶ ବିଳାସର ରଚନା ପୂର୍ବରୁ ଧନଞ୍ଜୟଭଞ୍ଜଙ୍କର ଦେହାନ୍ତ ହୋଯାରିଥିବା ବିଷୟ ଉପେନ୍ଦ୍ର ଭଞ୍ଜ ବୈଦେହୀଶ ବିଳାସ ଶେଷକୁ ଲେଖିଛନ୍ତି।

ବସୁଧାପତି ସେ ନୀଳକଣ୍ଠ ନାମେ ଖ୍ୟାତ।
ବିଧାନରେ ମୁହିଁ ତାହାଙ୍କର ଜ୍ୟେଷ୍ଠ ସୁତ ଯେ॥ (୫୨/୪୯)

ନୀଳକଣ୍ଠ ଧନଞ୍ଜୟ ଭଞ୍ଜଙ୍କର ଜୀବଦ୍ଦଶାରେ ବସୁଧାପତି (ରାଜା) ହେବା ସମ୍ଭବପର ନୁହେଁ। ତେଣୁ ବୈଦେହୀଶ ବିଳାସ ଲେଖି କବି ତାହାକୁ ପିତାମହ ଧନଞ୍ଜୟ ଭଞ୍ଜଙ୍କୁ ଭେଟି ଦେଇଥିବା କଥା କହୁଥିବା କିଂବଦନ୍ତୀଟି ଉପେନ୍ଦ୍ରଭଞ୍ଜଙ୍କୁ ଅଧ୍ୟୟନ ନ କରି ତାଙ୍କ ସଂପର୍କରେ ବାବଦୂକତା କରୁଥିବା ପଣ୍ଡିତଙ୍କର କଳ୍ପନା ପ୍ରସୂତ ମାତ୍ର।

'ବୈଦେହୀଶ ବିଳାସ' ଯେ କବିଙ୍କର ପ୍ରଥମ ରଚନା ନୁହେଁ ତାହା ମଧ୍ୟ ଖୋଦ୍ କବି କହିଛନ୍ତି ଯାହା କିଂବଦନ୍ତୀର ସ୍ରଷ୍ଟା ଓ ଲାଳନପାଳନ କର୍ତ୍ତା ପଣ୍ଡିତମାନେ ଜାଣନ୍ତି ନାହିଁ। ଛାନ୍ଦଭୂଷଣର ଆରମ୍ଭରେ କବି ଜଣାଇଛନ୍ତି :-

କବି ସ୍ତୁତି ଅନ୍ତରେ ଏମନ୍ତ ଭାବି ତ।
କଲି କାମିନୀ ବର୍ଣ୍ଣନା କରି ବହୁ ଗୀତ॥
କେଉଁ କାର୍ଯ୍ୟ ଅଛି ତହିଁ କୃଷ୍ଣ କଥା ଥାଉଁ।
କଲୁଛି ଯାହା ଅବିଘ୍ନେ ସମାପତ ହେଉ॥
କଞ୍ଜପଦେ ଯାର ସରସ୍ୱତୀ ଅଧିକାରୀ।
କହିବି ତାଙ୍କ ଚରିତ କିଞ୍ଚିତ ବିଚାରି॥

ଏଥିରେ କବି ଜଣାଇଛନ୍ତି ଯେ ସେ 'ଛାନ୍ଦଭୂଷଣ' ଲେଖିବା ପୂର୍ବରୁ ବହୁ କାଳ୍ପନିକ କାବ୍ୟ (କବିଙ୍କ ଭାଷାରେ କାମିନୀ ବର୍ଣ୍ଣନାତ୍ମକ ଗୀତ) ଲେଖି ସାରିଥିଲେ। କିନ୍ତୁ, ସେ ପର୍ଯ୍ୟନ୍ତ ଗୋଟିଏ ସୁଦ୍ଧା ବିଷ୍ଣୁ ଚରିତମୂଳକ କାବ୍ୟ ରଚନା କରି ନ ଥିଲେ। ବିଷ୍ଣୁଙ୍କ ପଦ୍ମପାଦର ସେବା ବିଷ୍ଣୁପତ୍ନୀ ସରସ୍ୱତୀଙ୍କ କର୍ମ। କିନ୍ତୁ, କବି ତାଙ୍କ ଲେଖନୀ ନିଃସୃତ ବାଙ୍ମୟୀ ସରସ୍ୱତୀଙ୍କୁ ଅନ୍ୟଥା ନିଯୁକ୍ତ କରିଛନ୍ତି ବୋଲି ଏଠାରେ ଖେଦୋକ୍ତି ପ୍ରକାଶ କରୁଛନ୍ତି। 'ବୈଦେହୀଶ ବିଳାସ'କୁ କବି ତାଙ୍କର 'ବଡ଼ ସିଦ୍ଧି' ବୋଲି ବିଚାର କରୁଥିଲେ :-

''ବିରଚିଲି ରାମାୟଣ ଏ ମୋ ବଡ଼ ସିଦ୍ଧି'' (ବୈଦେହୀଶ ବିଳାସ ୫୨/୫୧)। ଏ ସିଦ୍ଧି କବିଙ୍କର କାବ୍ୟ ଛଡ଼ା ଆଉ କଣ ବା ହୋଇପାରେ? ଏଥିରୁ ସୂଚିତ ହେଉଛି ଯେ କବି ବୈଦେହୀଶ ବିଳାସ ଲେଖିବା ପୂର୍ବରୁ ସାଧାରଣ ସିଦ୍ଧି ପଦବାଚ୍ୟ ଅନେକ କାବ୍ୟ ଲେଖିଥିଲେ। ଆଉମଧ୍ୟ, କବି ତାଙ୍କର ବଡ଼ସିଦ୍ଧି 'ବୈଦେହୀଶ ବିଳାସ'

ଲେଖିଥିଲେ ତାହାକୁ 'କେଉଁ କାର୍ଯ୍ୟ ଅଛି ତହିଁ' ବୋଲି ଅବଜ୍ଞା କରି ନଥାନ୍ତେ। ସବୁ ଦିଗରୁ ବିଚାର କଲେ ସନ୍ଦେହ ରହୁନାହିଁ ଯେ ବୈଦେହୀଶ ବିଳାସ କବିଙ୍କର ଆଦ୍ୟ ଲେଖା ବୋଲି ସୂଚାଉଥିବା କିଂବଦନ୍ତୀଟି ଉପେନ୍ଦ୍ରଭଞ୍ଜଙ୍କୁ ଅଧ୍ୟୟନ କରି ନଥିବା ସଂସ୍କୃତଜ୍ଞ ପଣ୍ଡିତର କାରସାଦି।

କିଂବଦନ୍ତୀଟିର ସଂରଚନା ଏପରି ଯେ କବି ଦେବୀଙ୍କ ଠାରୁ ବର ପାଇବା 'ଘଟଣା'ର ସାକ୍ଷୀ ହେଉଛନ୍ତି ଏକମାତ୍ର ଉପେନ୍ଦ୍ରଭଞ୍ଜ। ସେ ନିଜେ ପ୍ରଘଟ କଲେ ହିଁ ଏହି କିଂବଦନ୍ତୀର ସୃଷ୍ଟି ସମ୍ଭବପର ହେବା କଥା। କିନ୍ତୁ ଦେଖାଯାଉଛି, ଉପେନ୍ଦ୍ରଭଞ୍ଜ ଦେବୀଙ୍କ ଠାରୁ ବରଲାଭ କରି କବି ହୋଇଥିବା କଥା କୌଣସିଠାରେ ସ୍ୱୀକାର କରି ନାହାନ୍ତି। ସେ ବିଶ୍ୱାସ କରୁଥିଲେ ଯେ ତାରକମନ୍ତ୍ରର ପ୍ରସାଦବଶତଃ ହିଁ ତାଙ୍କର କବିତ୍ୱ ଶକ୍ତିର ଉଦୟହେଲା :- "ତାରକମନ୍ତ୍ର ପରସାଦେ, ମୋହର କବି ପଣ ଉଦେ" (ଲାବଣ୍ୟବତୀ ୧୬/୪୨)। ସେ ତାଙ୍କର କାବ୍ୟ ଗୁଡ଼ିକରେ ବିଭିନ୍ନ ବୈଷ୍ଣବ ଦେବତା (ଯଥା :- ରାମ, ବିଷ୍ଣୁ, ଜଗନ୍ନାଥ ଓ କୃଷ୍ଣ) ଓ ପରମ ବିଷ୍ଣୁଭକ୍ତ ଶିବଙ୍କ ବନ୍ଦନା କରିଥିଲେ ହେଁ ଦେବୀଙ୍କ ସ୍ତୁତି ପ୍ରାୟ କରିନାହାନ୍ତି। ଦେବୀ ତାଙ୍କୁ ବର ଦେଇଥିବା ବିଶ୍ୱାସ ତାଙ୍କର ଥିଲେ ଏପରି ଘଟି ନଥାନ୍ତା। ସେ ଯାହା ନିଜେ ବିଶ୍ୱାସ କରୁ ନଥିଲେ ତାହା ପ୍ରଘଟ କରିବାରୁ କିଂବଦନ୍ତୀର ସୃଷ୍ଟି ହୋଇଛି ବୋଲି କୁହାଯାଇପାରିବ ନାହିଁ। କିଂବଦନ୍ତୀର ଜନକ କଦାପି ଉପେନ୍ଦ୍ରଭଞ୍ଜ ନୁହନ୍ତି, କେହି ଜଣେ ଉପେନ୍ଦ୍ର ଭକ୍ତ ପଣ୍ଡିତର ଏ କାମ।

ଭିନ୍ନ ଏକ କିଂବଦନ୍ତୀ

କିଂବଦନ୍ତୀଗୁଡ଼ିକ ଭିନ୍ନ ଭିନ୍ନ ଲୋକଙ୍କର ଅବୈଧ ସନ୍ତାନ ହୋଇଥିବାରୁ ସେ ଗୁଡ଼ିକ ମଧ୍ୟରେ ସୌସାଦୃଶ୍ୟ ଓ ମେଳ ମଧ୍ୟ କମ୍। ଉପେନ୍ଦ୍ରଭଞ୍ଜଙ୍କର କବିତ୍ୱଶକ୍ତିର ଉଦୟ ସଂପର୍କରେ ଭିନ୍ନ ରୂପର କିଂବଦନ୍ତୀକୁ 'ଆବିଷ୍କାର' କରି ଚକ୍ରଧର ମହାପାତ୍ର 'ଯଦୁମଣି ଗ୍ରନ୍ଥାବଳୀ'ର ଅବତରଣିକାରେ ପୃ ୭୩ ରୁ ୭୫ ମଧ୍ୟରେ ଉପେନ୍ଦ୍ରଭଞ୍ଜଙ୍କର ଜୀବନ ବୃତ୍ତାନ୍ତକୁ ଅଦ୍ଭୁତ ଭାବରେ ଚିତ୍ରଣ କରିଛନ୍ତି। ଏଠାରେ ସେହି ଅଜବ କିଂବଦନ୍ତୀର ସାରାଂଶ ମାତ୍ର ଦେଲେ ଯଥେଷ୍ଟ ହେବ। ସବୁ କିଂବଦନ୍ତୀର ଆବିଷ୍କାରକଙ୍କ ଭଳି ଶ୍ରୀ ମହାପାତ୍ର ମଧ୍ୟ, ଏହିସବୁ କଥା ସେ କିପରି ଜାଣିଲେ ଓ ସେ ସବୁର ପ୍ରମାଣ କଣ ତାହା ଫିଟାଇ କହିବାର ଆବଶ୍ୟକତା ଅନୁଭବ କରିନାହାନ୍ତି। ଶ୍ରୀ ମହାପାତ୍ରଙ୍କ ଦ୍ୱାରା ପରିବେଷିତ ଆଖ୍ୟାନ ଅନୁସାରେ :-

ଖ୍ରୀ. ୧୭୦୪ରେ ପିତା ନୀଳକଣ୍ଠ ରାଜ୍ୟରୁ ତଡ଼ା ଖାଇବା ବେଳକୁ ଉପେନ୍ଦ୍ର ୧୧ ବର୍ଷର ବାଳକ। ଏଣେ ଗୁମୁସରରେ ଘନଭଞ୍ଜ ପୁତୁରା ଶତ୍ରୁଞ୍ଜୟଙ୍କ ବିଧବା ପତ୍ନୀ ପ୍ରତିମା ଦେବୀଙ୍କ ସଙ୍ଗେ ଲମ୍ପଟତା କଲେ ଓ ଚାରିବର୍ଷ ପରେ ଶତ୍ରୁଞ୍ଜୟ ପ୍ରତିମାଙ୍କ ଶିଶୁପୁତ୍ର ରଣଭଞ୍ଜଙ୍କୁ ହତ୍ୟା କରି ରାଜ୍ୟ ମାଡ଼ି ବସିଲେ ଓ ନୀଳକଣ୍ଠ

ନୀଳକଣ୍ଠ ନାନା ସ୍ଥାନ ହୋଇ ଶେଷରେ ଶ୍ୟାଳକଙ୍କ ରାଜ୍ୟ ନୂଆଗଡ଼ର ମାଳୀସାହି ଢ଼େଙ୍କଣା ଗ୍ରାମରେ ପୁଅ ଉପେନ୍ଦ୍ରଙ୍କୁ ଧରି ବସବାସ କଲେ। ଢ଼େଙ୍କଣାରେ ଉପେନ୍ଦ୍ରଙ୍କ ମାତା-ପିତା ଉଭୟଙ୍କର ଦେହାନ୍ତ ହୋଇଥିଲା। ସେହି ସମୟକୁ ଉପେନ୍ଦ୍ରଙ୍କ ବୟସ ୧୪ ବର୍ଷ ଓ ସେ ସଂପୂର୍ଣ୍ଣ ନିରକ୍ଷର ଥିଲେ।

ନୀଳକଣ୍ଠଙ୍କ ମୃତ୍ୟୁର ବର୍ଷେ ପରେ (ଖ୍ରୀ.୧୬୦୯ରେ) ମାମୁ ମଲେ ଓ ମାମୁଙ୍କ ପୁଅ ପୁରୁଷୋତ୍ତମ ମାନ୍ଧାତା ରାଜା ହେଲେ। ପୁରୁଷୋତ୍ତମ ଓ ତାଙ୍କ ସାନଭଉଣୀ ଲାବଣ୍ୟବତୀ ସକଳ ବିଦ୍ୟାରେ ପାରଙ୍ଗମ ହୋଇ ସଂସ୍କୃତ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିଥିଲେ। ପୁରୁଷୋତ୍ତମ ବିବାହ କରିଥିଲେ ଯେଉଁ ବାଣପୁର ଜେମା ଶୋଭାବତୀଙ୍କୁ ସେ ମଧ୍ୟ ସୁପଣ୍ଡିତା ଥିଲେ, ଏପରିକି ମୁହେଁ ମୁହେଁ ନୈଷଧଚରିତ ଟୀକା କରି ପାରୁଥିଲେ।

ମାଳୀସାହିର ରତି ମାଲୁଣୀ ମଧ୍ୟସ୍ଥତା କରି ଗଣ୍ଡମୂର୍ଖ ଉପେନ୍ଦ୍ର ସହିତ ପଣ୍ଡିତା ଲାବଣ୍ୟବତୀଙ୍କର ବିବାହ ଘଟାଇ ଦେଲା। ବିବାହ ବେଳକୁ ଉପେନ୍ଦ୍ରଙ୍କ ବୟସ ୧୮ବର୍ଷ ଓ ଲାବଣ୍ୟବତୀ ତାଙ୍କ ଠାରୁ ବର୍ଷେ ସାନ। ଉପେନ୍ଦ୍ର ପତ୍ନୀଙ୍କୁ ଧରି ଗୁମୁସର ରାଜଧାନୀ କୁଲାଡ଼କୁ ଫେରିଲେ। କିଛି କାଳ ପରେ ପୁରୁଷୋତ୍ତମଙ୍କ ପ୍ରଣୀତ ଶୋଭାବତୀ କାବ୍ୟଟିକୁ ଶଳାଭାଉଜ ଶୋଭାବତୀ ଉପେନ୍ଦ୍ରଙ୍କ ପାଖକୁ ପଠାଇଲେ। ଭାଉଜଙ୍କ ନାମରେ ଭାଇ ଗୋଟିଏ କାବ୍ୟ ରଚନା କରିଥିବା ଦେଖି ଭଉଣୀ ଲାବଣ୍ୟବତୀଙ୍କ ମନରେ ଘୋର ଈର୍ଷା ଜାତ ହେଲା। ଜଣେ ମୂର୍ଖର ହାତ ଧରିଥିବାରୁ ଲାବଣ୍ୟବତୀ ନିଜକୁ ଶତ ଧିକ୍କାର କଲେ ଓ ଉପେନ୍ଦ୍ରଙ୍କୁ ଆକ୍ଷେପ କରି ବହୁ କଟୁ କଥା କହିଲେ।

ପତ୍ନୀଙ୍କର ଭର୍ତ୍ସନା ଅସହ୍ୟ ହେବାରୁ ଉପେନ୍ଦ୍ର ବଣକୁ ଯାଇ 'ବାଘୁଣୀ ଦେଈ'ଙ୍କ ପାଖରେ ଅଧିଆ ପଡ଼ିଲେ। ସେଠାରେ ସ୍ୱପ୍ନାଦେଶ ପାଇ ସେ ଢ଼େଙ୍କଣାକୁ ଗଲେ ଓ ସେଠା ରଘୁନାଥଙ୍କ ମନ୍ଦିରରେ ଗୁହାରିଆ ପଡ଼ିଲେ। ଉପେନ୍ଦ୍ରଙ୍କ ପ୍ରତି ପ୍ରସନ୍ନ ହୋଇ ଦେବତା ଆଜ୍ଞା ଦେଲେ ଯେ, ଲାବଣ୍ୟବତୀଙ୍କ ଠାରୁ ବିଦ୍ୟା ଶିକ୍ଷା କଲେ ଉପେନ୍ଦ୍ର ସୁପଣ୍ଡିତ ହେବେ। ତଦନୁସାରେ ସମସ୍ତଙ୍କ ଅଗୋଚରରେ ଉପେନ୍ଦ୍ର ଲାବଣ୍ୟବତୀଙ୍କୁ ଗୁରୁ କରି ତିନି ବର୍ଷ ମଧ୍ୟରେ ସମସ୍ତ ସଂସ୍କୃତ ଶାସ୍ତ୍ରରେ ପାରଦର୍ଶୀ ହେଲେ ଓ ତାରକମନ୍ତ୍ର ଦ୍ୱାରା ସିଦ୍ଧି ଲାଭ କରି ଦୁଇ ମାସ ମଧ୍ୟରେ ଲାବଣ୍ୟବତୀ କାବ୍ୟ ଲେଖି ତାହାକୁ ପତ୍ନୀଙ୍କୁ ଭେଟି ଦେଇ ତାହାର ଗୋଟିଏ ନକଲ ଶଳାଭାଉଜ ଶୋଭାବତୀଙ୍କ ପାଖକୁ ପଠାଇଦେଲେ। କିଛି କାଳ ପରେ ଦୈବାତ୍ ଲାବଣ୍ୟବତୀଙ୍କର ଦେହାନ୍ତ ହେଲା ଓ ଉପେନ୍ଦ୍ର ଶୋଭାବତୀଙ୍କର ସାନ ଭଉଣୀ ବାଣପୁର ଜେମା କୋଟିବ୍ରହ୍ମାଣ୍ଡ ସୁନ୍ଦରୀଙ୍କୁ ଦ୍ୱିତୀୟବାର ବିବାହ କଲେ।

ଏହି କାହାଣୀର ସ୍ରଷ୍ଟା ଯେ ସମକାଳୀନ ଅବସ୍ଥା ଓ ସାହିତ୍ୟ ସୃଷ୍ଟି ବିଷୟରେ ଅବହିତ ଥିଲେ, ଏହା ସ୍ୱୀକାର୍ଯ୍ୟ। ପରିଣାମତଃ ଇତିହାସ ସହିତ ଖାପ ହେବା

ଭଳି ଏହାକୁ ଗଢ଼ାଯାଇଛି ଓ ପ୍ରାମାଣିକତା ପାଇବା ଲକ୍ଷ୍ୟରେ 'ଉପେନ୍ଦ୍ର ଯଶୋଦୟ' ନାମରେ କବିଙ୍କ ଜୀବନବୃତ୍ତାନ୍ତ ପ୍ରକାଶ କରୁଥିବା ଏକ କାବ୍ୟ କଳ୍ପନା କରାଯାଇଛି, ଯାହା କେବଳ ଶ୍ରୀ ମହାପାତ୍ରଙ୍କ ନେତ୍ରଗୋଚର ହୋଇଛି। ଏହି କାବ୍ୟଟି କେଉଁଠି କାହାଠାରେ ଅଛି ସେ ବିଷୟ କେହି ଜାଣନ୍ତି ନାହିଁ। ପ୍ରାଚୀନ କାଳରେ ରାଜା କିମ୍ବା ଭକ୍ତ ନ ହେଲେ 'ଯଶୋଦୟ' ଢ଼ଙ୍ଗର କାବ୍ୟ ରଚିତ ହେବାର ଗୋଟିଏ ବି ଦୃଷ୍ଟାନ୍ତ ନାହିଁ। ଇତିହାସର ରୂପ ଦେବା ଲାଗି ସ୍ରଷ୍ଟାଙ୍କ ଉଦ୍ୟମ ସତ୍ତ୍ୱେ କାହାଣୀଟିର ଅନୈତିହାସିକତା ବିଷୟରେ ସନ୍ଦେହ ରହୁନାହିଁ।

କାହାଣୀ ଅନୁସାରେ ଉପେନ୍ଦ୍ରଙ୍କ ପ୍ରଥମ ରଚନା ଲାବଣ୍ୟବତୀ। ଉପେନ୍ଦ୍ର ଭଞ୍ଜଙ୍କର ଦୁଇଟି ଉପାଧି ଥିଲା (୧) ବୀରବର (୨) ମଙ୍ଗରାଜ। ତାଙ୍କର ମୁଖ୍ୟ ରଚନାଗୁଡ଼ିକ ମଧ୍ୟରୁ ଅଳ୍ପ କେତୋଟିରେ ତାଙ୍କ ଭଣିତିରେ କୌଣସି ଉପାଧି ନାହିଁ। ସେହି ରଚନାଗୁଡ଼ିକ ହେଲେ:- ରସଲେଖା, ଛାନ୍ଦଭୂଷଣ, କଳାକଉତୁକ ଓ ରସତରଙ୍ଗ। ଏହା ମଧ୍ୟରୁ ରସତରଙ୍ଗ କାବ୍ୟଟି ଅବନା ଶୈଳୀରେ, ଅର୍ଥାତ୍ ଆକାରାଦି ମାତ୍ରା ବ୍ୟବହାର ନ କରି ଲେଖାଯାଇ ଥିବାରୁ କୌଣସି ଉପାଧି ତହିଁରେ ସ୍ଥାନ ପାଇବା ସମ୍ଭବପର ନୁହେଁ (ବୀରବରରେ ଈକାର ଓ ମଙ୍ଗରାଜରେ ଆକାର ଥିବାରୁ)। କିନ୍ତୁ ଅନ୍ୟ ତିନୋଟି କାବ୍ୟ ଉପାଧି ପ୍ରାପ୍ତି ପୂର୍ବର ରଚନା। ଅଥଚ, ଲାବଣ୍ୟବତୀ ରଚନା ବେଳକୁ କବି ବୀରବର ଉପାଧି ପାଇସାରିଲେଣି:- ଉପଇନ୍ଦ୍ର ବୀରବର ଭାବଇ (ଲାବଣ୍ୟବତୀ ୧୦/୩୫); ଉପଇନ୍ଦ୍ର ବୀରବର ସେହି ରାମଗୁଣି (ଲାବଣ୍ୟବତୀ ୩୩/୪୨)।

ଉପାଧି ରହିତ ରସଲେଖା କାବ୍ୟର ରଚନାକାଳ କବି ନିଜେ ଜଣାଇଛନ୍ତି:-'ଦିବ୍ୟସିଂହ ଗଜପତି ଅଙ୍କ ସପ୍ତବିଂଶତି ଶେଷ ଦିନେ ଶେଷ ଏହୁ ଗୀତ' (ରସଲେଖା ୨୨/୧୭)। ଦିବ୍ୟସିଂହ ଦେବଙ୍କ ୨୭ ଅଙ୍କ ସରିବା ଦିନଟି ହେଉଛି ଖ୍ରୀ. ୧୭୧୨ର ଅଗଷ୍ଟ ୨୩ ତାରିଖ (ତାରିଖ ନିର୍ଣ୍ଣୟ ପାଇଁ କେଦାରନାଥ ମହାପାତ୍ରଙ୍କ 'ଖୁରୁଧା ଇତିହାସ' ଦ୍ରଷ୍ଟବ୍ୟ)। ଅଥଚ, କାହାଣୀର ବିବରଣ ଅନୁସାରେ ଉପେନ୍ଦ୍ରଙ୍କ ପ୍ରଥମ କାବ୍ୟର ରଚନାକାଳ ଖ୍ରୀ ୧୭୧୬ର ପୂର୍ବବର୍ତ୍ତୀ ହେଉନାହିଁ। କାହାଣୀ ଅନୁସାରେ ଉପେନ୍ଦ୍ରଙ୍କ ଜନ୍ମ ଖ୍ରୀ ୧୬୯୩ରେ ଓ ବିବାହ ଖ୍ରୀ ୧୬୧୧ରେ ହୋଇଥିଲା। ବିବାହର କିଛି କାଳ ପରେ କବି କୁଳାଡ଼କୁ ଫେରିଛନ୍ତି, ଫେରିବାର କିଛି କାଳ ପରେ ଶୋଭାବତୀ କାବ୍ୟ ରଚନା ସରିଛି; ଶୋଭାବତୀ ରଚିତ ହେବାର କିଛିକାଳ ପରେ ଉପେନ୍ଦ୍ର ଦେବଦେବୀଙ୍କୁ ଉପାସନା କରି ବରଲାଭ କରିଛନ୍ତି; ବରଲାଭର ତିନିବର୍ଷରେ ସେ ବିଦ୍ୟାଶିକ୍ଷା କରି ପାଣ୍ଡିତ୍ୟ ଅର୍ଜନ କରିଛନ୍ତି ଓ ତାହାର ଦୁଇମାସରେ ଲାବଣ୍ୟବତୀ ରଚନା କରିଛନ୍ତି। ତେଣୁ ଉପେନ୍ଦ୍ରଙ୍କ ବିବାହ ଓ ଲାବଣ୍ୟବତୀର ରଚନା ମଧ୍ୟରେ ନ୍ୟୂନ ପକ୍ଷେ ପାଞ୍ଚବର୍ଷର ବ୍ୟବଧାନ ରହିବା କଥା। ଅଥଚ,

କାହାଣୀ ଅନୁସାରେ ଉପେନ୍ଦ୍ରଙ୍କ ବିବାହ ସମୟ ତାଙ୍କର 'ରସଲେଖା' ରଚନାର ପରବର୍ତ୍ତୀ ହୋଇ ପଡୁଛି। ତେଣୁ, ଲାବଣ୍ୟବତୀ ରଚନା ବିଷୟକ ଏ କାହାଣୀ ଶୁଦ୍ଧ ଜାଲିଆତି।

ଅନ୍ୟ ଏକ ବିଚାରରୁ ମଧ୍ୟ ଏହି ଆଖ୍ୟାନଟି ମିଛ ବୋଲି ଜାଣିହୁଏ। ମୁଁ 'ଲାବଣ୍ୟବତୀ'ର ବିବାହ ଲଗ୍ନରୁ ମିଳୁଥିବା ଜ୍ୟୋତିଷକ ତଥ୍ୟ ବିଚାର କରି ପ୍ରତିପାଦନ କରିଛି ଯେ ଲାବଣ୍ୟବତୀ ଖ୍ରୀ. ୧୭୩୦ରେ ବା ପରେ ରଚିତ ହୋଇଛି। ତେଣୁ ତାହା କବିଙ୍କର ପ୍ରଥମ ରଚନା ହୋଇ ନପାରେ। ଉପେନ୍ଦ୍ରଭଞ୍ଜ ସୁଭଦ୍ରା ପରିଣୟ (୪/୮)ରେ ନାୟିକାର ଅଙ୍ଗରେ 'ସପତ ଜାତି ଫଳ, ଫୁଲ, ବିହଙ୍ଗ' ଦେଖି ପାରିଥିବା ସ୍ଥଳେ ଲାବଣ୍ୟବତୀ (୭/୬୯)ରେ ନାୟିକା ଅଙ୍ଗରେ ନଅଟି ଫୁଲ ଓ ନଅଟି ପକ୍ଷୀର ସନ୍ଧାନ ପାଇଛନ୍ତି। ଏହା ସୂଚାଉଛି ଯେ କବି ସୁଭଦ୍ରା ପରିଣୟର ବର୍ଣ୍ଣନା ଚାତୁରୀର ଅଭିବୃଦ୍ଧି ଲାବଣ୍ୟବତୀରେ ଘଟାଇଛନ୍ତି। ତେଣୁ, ସୁଭଦ୍ରା ପରିଣୟ କାବ୍ୟଟି ଲାବଣ୍ୟବତୀର ପୂର୍ବବର୍ତ୍ତୀ ରଚନା ବୋଲି ସ୍ଥିର କରିବା ସମୀଚୀନ। ଶ୍ରୀ ମହାପାତ୍ରଙ୍କ ଆଖ୍ୟାନ ଅନୁସାରେ ଲାବଣ୍ୟବତୀ ପ୍ରଥମ ରଚନା ହୋଇଯାଉଥିବାରୁ ତାହା ସତ୍ୟାଶ୍ରିତ ହୋଇ ନ ପାରେ।

**ରାଜବଂଶାବଳୀରେ ଉପେନ୍ଦ୍ର ଭଞ୍ଜ**

ଗୁମୁସର ରାଜବଂଶାବଳୀ ଗୁଡ଼ିକରେ ଉପେନ୍ଦ୍ରଭଞ୍ଜଙ୍କ ନାମ ରାଜା ନୀଳକଣ୍ଠଙ୍କ ପୁତ୍ର ଭାବରେ ସ୍ଥାନ ପାଇଛି। ଅଧିକନ୍ତୁ ଲେଖାଅଛି ଯେ ଉପେନ୍ଦ୍ର ଅନପତ୍ୟ ଥିଲେ। ଉପେନ୍ଦ୍ରଙ୍କ ବିଷୟରେ ଅଧିକ କିଛି ବର୍ଣ୍ଣନା ସେଥିରେ ନାହିଁ, କିନ୍ତୁ ସଂସ୍କୃତ ରାଜମାଳିକା ଛଡ଼ା ଅନ୍ୟ ସବୁଥିରେ ତାଙ୍କ ସମୟର ଗୁମୁସର ରାଜବାଟି-କନ୍ଦଳ ବିସ୍ତାରିତ ଭାବରେ ବର୍ଣ୍ଣିତ ହୋଇଛି। କନ୍ଦଳର ସାରକଥା ହେଲା :-

ଉପେନ୍ଦ୍ରଙ୍କ ପିତାମହ ଧନଞ୍ଜୟ ସ୍ୱୀୟ ସହୋଦର ଗୋବିନ୍ଦ ଭଞ୍ଜଙ୍କ ଉପରେ ରାଜ୍ୟଭାର ଦେଇ ନିଜେ ସାହିତ୍ୟ, ନୃତ୍ୟ, ଗୀତ, କାମୁକତା ଆଦି ଭୋଗବିଳାସରେ ମାତିଥିଲେ। ସେ ବିଳାସ ଉଦ୍ଦେଶ୍ୟରେ ସାତକୋଡ଼ି (୧୪୦) ନର୍ତ୍ତକୀଙ୍କୁ ରଖିଥିଲେ। ତାଙ୍କର ସାତଜଣ ରାଣୀ ଓ ପାଞ୍ଚଜଣ ଭୋଗିନୀଙ୍କର ଗର୍ଭଜାତ ଅଠରଜଣ ପୁଅ ମଧ୍ୟରେ ଜ୍ୟେଷ୍ଠଥିଲେ ଗଙ୍ଗାଧର। କିନ୍ତୁ, ରାଣୀମାନଙ୍କ ମଧ୍ୟରେ ଧନଞ୍ଜୟଙ୍କ ପ୍ରିୟତମା (ସୁଆଗୀ ମହାଦେଇ) ଥିଲେ ନୂଆଗଡ଼ ରାଜଜେମା ହାଡୁଦେଈ। ମତାନ୍ତରେ ହାଡୁଦେଈ ଥିଲେ ପାଟରାଣୀ, କାରଣ ଗଙ୍ଗାଧରଙ୍କ ମାତା ରାଉତଘର ଝିଅ ଥିଲେ, ରାଜକନ୍ୟା ନ ଥିଲେ। ହାଡୁଦେଈଙ୍କର ତିନି ପୁଅ, ବଡ଼ ନୀଳକଣ୍ଠ, ମଝିଆ ବିକ୍ରମ ଓ ସାନ ପ୍ରତାପ। ନୀଳକଣ୍ଠଙ୍କ ପୁଅ ଉପେନ୍ଦ୍ର ଯେ ଉତ୍ତମ କବି ଥିଲେ।

ଧନଞ୍ଜୟ ଭଞ୍ଜ ଦୀର୍ଘକାଳ (ଅଧିକ ମତରେ ୬୫ ବର୍ଷ, ଅଳ୍ପ ମତରେ ୪୬ ବର୍ଷ) ରାଜତ୍ୱ କଲେ। ସେ ବୃଦ୍ଧ ହେବାରୁ ଉତ୍ତରାଧିକାର ପାଇଁ ବିବାଦ ଘନେଇଲା।

ଗଙ୍ଗାଧରଙ୍କ ସହିତ ଗୋବିନ୍ଦ ଭଞ୍ଜ ଓ ତାଙ୍କର ଛଅ ପୁଅଙ୍କର ଭଲ ପଡୁଥିଲା। ହାତୁଦେଈ ନୀଳକଣ୍ଠଙ୍କୁ ଯୁବରାଜ ପଦରେ ଅଧିଷ୍ଠିତ କରାଇବା ପାଇଁ ଧନଞ୍ଜୟଙ୍କୁ ପ୍ରବର୍ତ୍ତାଇଲେ। ଗୋବିନ୍ଦଭଞ୍ଜଙ୍କ ପୁଅମାନେ ଏଥିରେ ବାଧା ସୃଷ୍ଟି କରିବା ଆଶଙ୍କା କରି ଧନଞ୍ଜୟ, ହାତୁଦେଈଙ୍କ ବୋଲରେ ପଡ଼ି, ସେହି ସମସ୍ତଙ୍କୁ ରାଜ୍ୟରୁ ନିକାଲି ଦେଲେ। ଧନଞ୍ଜୟ ବିମୁଖ ହେବା ଜାଣି ଗୋବିନ୍ଦ ଭଞ୍ଜ ମଧ୍ୟ ରାଜ୍ୟ ଛାଡ଼ି ପଳାଇଲେ।

ଶତ୍ରୁପକ୍ଷ ରାଜ୍ୟରୁ ଅନ୍ତର ହେବା ପରେ ହାତୁ ଦେଈ ନୀଳକଣ୍ଠଙ୍କୁ ଶୀଘ୍ର ରାଜା କରାଇବା ପାଇଁ ଷଡ଼ଯନ୍ତ୍ର କଲେ। ସେ ଧନଞ୍ଜୟଙ୍କ ଖାଦ୍ୟରେ ରାନ୍ଧୁଣୀ ଦ୍ୱାରା ବିଷପ୍ରୟୋଗ କରାଇଲେ। ଧନଞ୍ଜୟ ବିଷାକ୍ରାନ୍ତ ହୋଇ ମରିଯିବା ମାତ୍ରେ ହାତୁଦେଈ ଗଙ୍ଗାଧରଙ୍କୁ ଓ ଗଙ୍ଗାଧରଙ୍କ ପୁତ୍ର ଶତ୍ରୁଞ୍ଜୟଙ୍କୁ ମାରି ତୁରନ୍ତ ସିଂହାସନ ଅଧିକାର କରିବାକୁ ନୀଳକଣ୍ଠଙ୍କୁ କହିଲେ। ନୀଳକଣ୍ଠ ଲୋକ ଲଗାଇ ଗଙ୍ଗାଧର ଓ ଶତ୍ରୁଞ୍ଜୟଙ୍କୁ ନିହତ କଲେ ଓ ଶତ୍ରୁଞ୍ଜୟଙ୍କ ଅନ୍ତଃସତ୍ତ୍ୱା ପତ୍ନୀକୁ ବନ୍ଦିନୀ କରି ନିଜେ ରାଜା ହେଲେ। ରାଜବଂଶାବଳୀର ଗଣନା ଅନୁସାରେ ଏହା ଖ୍ରୀ. ୧୭୦୧ରେ ଘଟନା।

ଗୋବିନ୍ଦଭଞ୍ଜଙ୍କ ସାନ ପୁଅ ଘନଭଞ୍ଜ ଏ ବ୍ୟାପାର ଅବଗତ ହୋଇ ଚୋରଙ୍କୁ ଲଗାଇ ଶତ୍ରୁଞ୍ଜୟଙ୍କ ବିଧବାପତ୍ନୀକୁ ଅଟକରୁ ଅପହରଣ କରି ଘେନିଗଲେ। ଯଥା ସମୟରେ ଏହି ବିଧବାଙ୍କର ପୁଅଟିଏ ଜନ୍ମିଲା। ଘନଭଞ୍ଜ ଗୁମୁସରରେ ମେଳି ଭିଆଇଲେ ଓ ଗୋବିନ୍ଦ ଭଞ୍ଜ ଉତ୍ତର ପଟୁ ସୈନ୍ୟବଳ ନେଇ ଆକ୍ରମଣ କଲେ। ରାଜ୍ୟରୁ ନୀଳକଣ୍ଠଙ୍କୁ ତଡ଼ି ଶତ୍ରୁଞ୍ଜୟଙ୍କ କଅଁଳା ପୁଅ ରଣଭଞ୍ଜଙ୍କୁ ରାଜଗାଦିରେ ବସାଇ ଦିଆଗଲା। ଗୋବିନ୍ଦ ଭଞ୍ଜ ହିଁ ରାଜ୍ୟଶାସନ କଲେ। ନୀଳକଣ୍ଠ ମୋଟେ ଦୁଇଟି ବର୍ଷ ରାଜ୍ୟଶାସନ କରିଥିଲେ। ରଣଭଞ୍ଜ ରାଜା ବୋଲି ଘୋଷିତ ହେବାର ୪ ବର୍ଷ ପରେ ଗୋବିନ୍ଦଭଞ୍ଜଙ୍କର ଦେହାନ୍ତ ହେଲା ଓ ଅନନ୍ତର ଘନଭଞ୍ଜ ୬ ବର୍ଷର ଶିଶୁ ରଣଭଞ୍ଜଙ୍କୁ ହତ୍ୟା କରି ନିଜେ ରାଜ୍ୟ ମାଡ଼ିବସିଲେ।

ନୀଳକଣ୍ଠ ରାଜ୍ୟ ହରାଇ ଧରାକୋଟ, ବଡ଼ଗଡ଼ ଓ ଆଠଗଡ଼ (ଗଞ୍ଜାମ)ରେ କିଛି କିଛି କାଳ କଟାଇ ଶେଷକୁ ମାମୁଙ୍କ ରାଜ୍ୟ ନୂଆଗଡ଼କୁ ଯାଇ ମାଳୀସାହିରେ ସ୍ଥାୟୀଭାବରେ ରହିଲେ। ଉପେନ୍ଦ୍ର ମଧ୍ୟ ପିତାଙ୍କ ସହିତ ନାନା ସ୍ଥାନ ହୋଇ ଶେଷରେ ମାଳୀସାହିରେ ରହିଲେ (ନୟାଗଡ଼ ରାଜ୍ୟର ଦୁଇଟି ମାଳୀସାହି ଗ୍ରାମ ମଧ୍ୟରୁ ଆଲୋଚ୍ୟ ମାଳୀସାହି ଗ୍ରାମ ନୟାଗଡ଼ ଥାନା ଅଞ୍ଚଳରେ ନୟାଗଡ଼ ସହରଠାରୁ ୮ କିଲୋମିଟର ଉତ୍ତର-ପଶ୍ଚିମକୁ ଅବସ୍ଥିତ ଓ ଏହି ମାଳୀସାହି ପାଖରେ ଢେଙ୍କଣା ଗ୍ରାମ)। ଏହା ହେଲା ଓଡ଼ିଆ ଗଦ୍ୟ ଓ ପଦ୍ୟ ରଚିତ ଭଞ୍ଜବଂଶାବଳୀଗୁଡ଼ିକରେ ଉପେନ୍ଦ୍ର ଭଞ୍ଜଙ୍କ ସମୟର ରାଜବାଟି କନ୍ଦଳର ବିବରଣ।

ଉପେନ୍ଦ୍ରଭଞ୍ଜ ନିଜେ ଲେଖିଥିବା ବିବରଣ ସହିତ ରାଜବଂଶାବଳୀରେ ପ୍ରଦତ୍ତ ବିବରଣର ଅନେକ ବିଷୟରେ ମେଳ ହେଉନାହିଁ। ଉପେନ୍ଦ୍ରଭଞ୍ଜ ଘଟନାବଳୀ ସହିତ

ସ୍ୱୟଂ ସଂଶ୍ଳିଷ୍ଟ ଅଥଚ ରାଜବଂଶାବଳୀର ଲେଖକମାନେ ଘଟନାକାଳର ଦୀର୍ଘ ଏକ ଶହ ବର୍ଷ ବା ତଦୂର୍ଦ୍ଧ୍ୱକାଳ ପରବର୍ତ୍ତୀ ସମୟର ଲୋକ। ତେଣୁ ଘଟନାର ସତ୍ୟାସତ୍ୟ ଜାଣିବା ପାଇଁ ଉପେନ୍ଦ୍ରଭଞ୍ଜଙ୍କ ବକ୍ତବ୍ୟର ଗୁରୁତ୍ୱ ଅଧିକ।

ନୀଳକଣ୍ଠ ରାଜ୍ୟ ହରାଇଥିବା କଥା ଉପେନ୍ଦ୍ରଭଞ୍ଜ ଜମାରୁ ଜଣାଇ ନାହାନ୍ତି। ରାଜ୍ୟରୁ ତଡ଼ା ଖାଇଥିଲେ ହେଁ ନୀଳକଣ୍ଠ ଦାବି ଛାଡ଼ି ନଥିବା ସ୍ୱାଭାବିକ। ବଂଶାବଳୀଗୁଡ଼ିକ ସ୍ୱୀକାର କରନ୍ତି ଯେ ଘନଭଞ୍ଜ ରଣଭଞ୍ଜଙ୍କୁ ହତ୍ୟା କରି ରାଜ୍ୟ ମାଡ଼ିବସିଥିବା କଥା ଜଣାପଡ଼ିବାରୁ ଚାରିପଟର ରାଜାମାନେ ତାଙ୍କର ବିରୋଧୀ ହେଲେ ଓ ଗୁମୁସରର ଖୋଳ ଅଞ୍ଚଳର କନ୍ଧମାନେ ମେଳିଆ ହେଲେ। ନିଜାମଙ୍କ ଫୌଜଦାର ଲସ୍କର ପଠାଇ ଘନଭଞ୍ଜଙ୍କୁ ଧରି ନେଲେ ଓ ଇଛାପୁରରେ ବନ୍ଦୀକରି ରଖିଲେ। କିଛିକାଳ ବନ୍ଦୀ ଅବସ୍ଥାରେ ରହିବା ପରେ ସେ ଫୌଜଦାରଙ୍କୁ ସାମର୍ଥ୍ୟର ପରିଚୟ ଦେବା ସଙ୍ଗେ ସଙ୍ଗେ ଅଧିକ ପେସ୍‌କସ୍ ଦେବା ପ୍ରତିଶ୍ରୁତି ଦେଇ ଗୁମୁସର ଅଧିକାର କରିବାକୁ ଲସ୍କର ଧରି ଆସିଲେ। ଏହା ଖ୍ରୀ.୧୭୧୮ର ଘଟନା ହେବା ଅନୁମିତ ହୁଏ। କାରଣ, ଘନଭଞ୍ଜଙ୍କ ରାଜତ୍ୱ କାଳ କେଉଁଠି କେଉଁଠି ୩୭ ବର୍ଷ ବୋଲି ଗଣନା କରାଯାଇଛି ତ କେଉଁଠି କେଉଁଠି ୨୭ବର୍ଷ ବୋଲି ଲେଖାଅଛି :-''ସପ୍ତତ୍ରିଂଶ ବରଷ କରି ରାଜତ୍ୱ'' (ସୂର୍ଯ୍ୟମଣି ୬/୧୮), 'ସପ୍ତବିଂଶ ବର୍ଷ କରିଣ ରାଜତ୍ୱ'' (ଗଙ୍ଗାପାଣି ପୃ.୩୮)। ଘନ ଭଞ୍ଜଙ୍କ ରାଜତ୍ୱ ସରିଲା ଖ୍ରୀ.୧୭୪୫ରେ। ରଣଭଞ୍ଜଙ୍କ ହତ୍ୟାଠାରୁ ତାଙ୍କ ରାଜତ୍ୱ ଗଣିଲେ ତାହା ହେଉଛି ୩୭ ବର୍ଷ। କିନ୍ତୁ, ରାଜ୍ୟରେ ମେଳି ଓ ତାଙ୍କର କାରାବାସ ସମୟକୁ ଛାଡ଼ି ନବାବଙ୍କ ସମର୍ଥନରେ ରାଜ୍ୟ ଅଧିକାର କରିବାଠାରୁ ଗଣିଲେ ହେବ ୨୭ବର୍ଷ। ଏହି ଦଶବର୍ଷ ମଧରେ ନୀଳକଣ୍ଠ ହିଁ ରାଜ୍ୟ ଅଧିକାର କରିଥିବେ ଯଦିଚ ଓଡ଼ିଆ ଭଞ୍ଜବଂଶାବଳୀ ଗୁଡ଼ିକରେ ଏକଥା ସ୍ୱୀକୃତ ହୋଇନାହିଁ।

**ଇତିହାସ ନା ପ୍ରଚାର ?**

ଜଣାଯାଉଛି ଓଡ଼ିଆ ଭଞ୍ଜବଂଶାବଳୀଗୁଡ଼ିକର ଲେଖକମାନେ ତଥ୍ୟ ସଂଗ୍ରହ ପାଇଁ ବିଶେଷ ଯତ୍ନବାନ ହୋଇନାହାନ୍ତି। ସେମାନେ ନ୍ୟୂନ ପକ୍ଷେ ଉପେନ୍ଦ୍ର ଭଞ୍ଜ ଦେଇଥିବା ବିବରଣଟକ ଦେଖିଥିଲେ ଭୁଲ୍ ବଂଶଲତା ଦେଇ ନଥାନ୍ତେ। ଉପେନ୍ଦ୍ରଭଞ୍ଜ ରସପଞ୍ଚକ ଶେଷକୁ ନିଜର ବଂଶର ବିବରଣ ଏହିପରି ଦେଇଛନ୍ତି :-

କୁନ୍ଦେନ୍ଦୁ କୀର୍ତ୍ତି ରଣରଣ କାନ୍ତି କୃତୀଶୂର ରଣଭଞ୍ଜ ନୃପତି ॥
କୃଶାନୁତେଜ ତାଙ୍କ ତନୁଜ କୃତରୁ ପ୍ରତାପ ପ୍ରତାପ ଭଞ୍ଜ ॥
କନିଷ୍ଠ ସୁତ ତାଙ୍କ ଭୂଭୃତ କରି ଗୋପୀନାଥ ନାମ ବିଦିତ ॥
କବି ନୃବର ତାଙ୍କ କୁମର କହି ଧନଞ୍ଜୟ ନାମ ତାଙ୍କର ॥
କାଶ୍ୟପୀକାନ୍ତ ତାହାଙ୍କ ସୁତ କୃତଜ୍ଞ ନୀଳକଣ୍ଠ ଭଞ୍ଜ ସତ ॥
କୁମର ଜ୍ୟେଷ୍ଠ ତାଙ୍କର ଶ୍ରେଷ୍ଠ କବି ପଣର ଅତି ପରିନିଷ୍ଠ ॥

ଉପେନ୍ଦ୍ର ଦେଇଥିବା ବଂଶାବଳୀ ଏହିପରି : ରଣଭଞ୍ଜ, ତାଙ୍କ ପୁଅ ପ୍ରତାପ, ପ୍ରତାପଙ୍କ ସାନପୁଅ ଗୋପୀନାଥ, ଗୋପୀନାଥଙ୍କ ପୁଅ ଧନଞ୍ଜୟ ଓ ଧନଞ୍ଜୟଙ୍କ ପୁଅ ନୀଳକଣ୍ଠ। ଏମାନେ ସମସ୍ତେ ରାଜା। ନୀଳକଣ୍ଠଙ୍କ ବଡ଼ ପୁଅ ସୁକବି ଉପେନ୍ଦ୍ର। କିନ୍ତୁ, ଭଞ୍ଜବଂଶାବଳୀ ଗୁଡ଼ିକରେ ଗୋପୀନାଥଙ୍କ ପିତାମହଙ୍କ ନାମ କେଉଁଠି ରାଜେନ୍ଦ୍ର ତ କେଉଁଠି ଗଜେନ୍ଦ୍ର ତ କେଉଁଠି ପୁରୁଷୋତ୍ତମ। ରଣଭଞ୍ଜ ସେଠାରେ ଉପେକ୍ଷିତ। ବଂଶାବଳୀଗୁଡ଼ିକର ଏହି ପ୍ରମାଦ ତାହାର ରଚୟିତାମାନଙ୍କର ତଥ୍ୟ ସଂଗ୍ରହ ପାଇଁ ପ୍ରୟାସର ଅଭାବକୁ ସୂଚାଉଛି।

ଉପେନ୍ଦ୍ରଭଞ୍ଜ ସ୍ୱପିତାଙ୍କ ବିଷୟରେ "କୃତଜ୍ଞ ନୀଳକଣ୍ଠ ଭଞ୍ଜସତ" ଲେଖିଥିବା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ। ଓଡ଼ିଆ ରାଜବଂଶାବଳୀଗୁଡ଼ିକ ନୀଳକଣ୍ଠଙ୍କୁ ପିତାଙ୍କ ହତ୍ୟାର କାରଣ ଓ ଭ୍ରାତୃହନ୍ତା ରୂପେ ଚିତ୍ରଣ କରନ୍ତି। କିନ୍ତୁ, ପରିସ୍ଥିତି ଓ ଘଟନା ପ୍ରବାହକୁ ବିଶ୍ଳେଷଣ କଲେ ଅନୁମିତ ହୁଏ ଯେ ଏଥିରେ ସ୍ଥାନ ପାଇଥିବା ଅଭିଯୋଗ ସତ୍ୟାଶ୍ରିତ ହୋଇ ନ ପାରେ। ଏହି ସମସ୍ତ ରାଜବଂଶାବଳୀ ସ୍ୱୀକାର କରନ୍ତି ଯେ ଧନଞ୍ଜୟ ଭଞ୍ଜ ଗଙ୍ଗାଧରଙ୍କ ଦାବିର ସମର୍ଥକମାନଙ୍କୁ ରାଜ୍ୟରୁ ତଡ଼ି ଦେଇଛନ୍ତି ଓ ନୀଳକଣ୍ଠଙ୍କ ଶୁଭାନୁଧାୟିନୀ ମାତା ହାଡ଼ୁଦେଈଙ୍କ ବୋଲରେ ଚଳିଛନ୍ତି। ହାଡ଼ୁଦେଈ ନୀଳକଣ୍ଠଙ୍କୁ ଯୁବରାଜ କରାଇବା ପାଇଁ ଚାପ ପକାଉଥିବା କଥା ମଧ୍ୟ ସ୍ୱୀକୃତ। ଏହି ପରିସ୍ଥିତିରେ ଧନ୍ୟଞ୍ଜୟ ଭଞ୍ଜଙ୍କୁ ମାରିବାର ପ୍ରୟୋଜନ ନୀଳକଣ୍ଠଙ୍କ ପକ୍ଷେ ନ ଥିଲା। ଧନଞ୍ଜୟ ଜୀବିତ ରହିଲେ ହିଁ ନୀଳକଣ୍ଠ ଯୁବରାଜ ହୋଇପାରିବେ ଓ ତଦ୍ଦ୍ୱାରା ରାଜସିଂହାସନର ଉତ୍ତରାଧିକାର ନେଇ ବିବାଦରେ ତାଙ୍କର ଜିତାପଟ ହେବ। ଅପରପକ୍ଷରେ, ଧନଞ୍ଜୟଙ୍କ ମତିଗତି ଯୋଗୁଁ ଗଙ୍ଗାଧର ହିଁ କ୍ଷୋଭିତ ହେବା ସ୍ୱାଭାବିକ। କାରଣ, ନୀଳକଣ୍ଠ ଯୁବରାଜ ଭାବରେ ଅଭିଷିକ୍ତ ହୋଇଗଲେ ଗଙ୍ଗାଧର ତାଙ୍କ ଦାବି ହରାଇବେ। ନୀଳକଣ୍ଠଙ୍କୁ ଯୁବରାଜ କରାଇବା ପୂର୍ବରୁ ଧନଞ୍ଜୟଙ୍କୁ ମରାଇବା ଗଙ୍ଗାଧରଙ୍କ ପାଇଁ ଜରୁରି। ତେଣୁ, ଗଙ୍ଗାଧରଙ୍କ ପକ୍ଷରୁ ହିଁ ଧନଞ୍ଜୟଙ୍କୁ ବିଷ ପ୍ରୟୋଗ କରାଯାଇଥିବା ସମ୍ଭବ। ଧନଞ୍ଜୟଙ୍କ ହତ୍ୟା ପରେ ନୀଳକଣ୍ଠ ପକ୍ଷ ଓ ଗଙ୍ଗାଧରଙ୍କ ପକ୍ଷ ମଧ୍ୟରେ ସଂଘର୍ଷ ଘଟିବା ଅନିବାର୍ଯ୍ୟ ଥିଲା। ଗଙ୍ଗାଧରଙ୍କ ପରାକ୍ରାନ୍ତ ସମର୍ଥକମାନେ ପାଖରେ ନ ଥିବାରୁ ନୀଳକଣ୍ଠଙ୍କ ସମର୍ଥକ ଗୋଷ୍ଠୀ ଗଙ୍ଗାଧର ଓ ତାଙ୍କ ପୁଅ ଶତ୍ରୁଞ୍ଜୟଙ୍କୁ ମାରିପକାଇଥିବା ଜଣାଯାଉଛି। କିନ୍ତୁ, ଅନୁମିତ ହେଉଛି ଯେ, ନୀନକଣ୍ଠ-ବିରୋଧୀ ଗୋଷ୍ଠୀ ଧନଞ୍ଜୟ-ହତ୍ୟା ଅପବାଦ ନୀଳକଣ୍ଠଙ୍କ ଉପରେ ଲଦିଦେଇ ତାଙ୍କୁ ପ୍ରଜାବର୍ଗଙ୍କ ମଧ୍ୟରେ ବଦ୍‌ନାମ କରାଇବାକୁ ଯତ୍ନ କରିଥିଲେ। ବିଷ ପ୍ରୟୋଗ ଦ୍ୱାରା ଧନଞ୍ଜୟଙ୍କ ମୃତ୍ୟୁ ହୋଇଛି। ବଂଶାବଳୀର ବର୍ଣ୍ଣନା ଅନୁସାରେ ହାଡ଼ୁଦେଈ ଏ କାର୍ଯ୍ୟରେ ଚମ୍ପା ନାନୀ ନାମକ ଜଣେ ରାନ୍ଧୁଣିଆଣୀ ବିଧବା ବ୍ରାହ୍ମଣୀଙ୍କୁ ନିଯୁକ୍ତ କରିଥିଲେ ଓ ଏଥିପାଇଁ ଚମ୍ପା ନାନୀକୁ ଏକ ଗ୍ରାମ ଇନାମ (ନିଷ୍କର) ଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ। ଧନଞ୍ଜୟଙ୍କ ମୃତ୍ୟୁପରେ ନୀଳକଣ୍ଠ ରାଜା ହୋଇଛନ୍ତି। କିନ୍ତୁ, ସେ ଚମ୍ପା ନାନୀକୁ

କୌଣସି ଅନୁଗ୍ରହ ଦେଖାଇଥିବା କଥା ଲେଖାହୋଇ ନାହିଁ । ତେଣୁ, ବିଷ ପ୍ରୟୋଗକାରିଣୀ ନୀଳକଣ୍ଠଙ୍କ ପକ୍ଷର ଲୋକ ନ ହୋଇ ଗଙ୍ଗାଧର ଓ ତାଙ୍କ ସମର୍ଥକ ଗୋବିନ୍ଦଭଞ୍ଜଙ୍କ ଲୋକ ହେବା ହିଁ ସମ୍ଭବ । ମନେ ରଖିବାକୁ ହେବ, ଗୋବିନ୍ଦ ଭଞ୍ଜ ଦୀର୍ଘକାଳ ଧରି ରାଜ୍ୟଶାସନ ବୁଝୁଥିବାରୁ ରାଜବାଟୀର କର୍ମଚାରୀ ବର୍ଗକୁ ସେ ହିଁ ନିଯୁକ୍ତି ଦେଇଥିବେ । ଗୋବିନ୍ଦ ଭଞ୍ଜଙ୍କ ଲୋକେ ନୀଳକଣ୍ଠ ପିତୃହନ୍ତା ବୋଲି ଯେଉଁ ଅପବାଦ ରଟନା କରିଥିଲେ, ଉପେନ୍ଦ୍ରଙ୍କ "କୃତଜ୍ଞ ନୀଳକଣ୍ଠ ଭଞ୍ଜ ସତ" ମଧ୍ୟରେ ତାହାର ଖଣ୍ଡନ ଅଛି । ଧନଞ୍ଜୟ ନୀଳକଣ୍ଠଙ୍କୁ ଯୁବରାଜ କରାଇବା ଯୋଗାଡ଼ରେ ଥିଲେ । କିନ୍ତୁ, ଗଙ୍ଗାଧର ଧନଞ୍ଜୟଙ୍କୁ ହତ୍ୟା କଲେ ଓ ପିତାଙ୍କ ପ୍ରତି କୃତଜ୍ଞ ନୀଳକଣ୍ଠ ଏହାର ପ୍ରତିଶୋଧ ନେଲେ । ଏହା ହେଉଛି ଉପେନ୍ଦ୍ରଭଞ୍ଜଙ୍କ ଉକ୍ତି । ଉପେନ୍ଦ୍ରଭଞ୍ଜଙ୍କର ବଚନକୁ ବିଶ୍ୱାସ ନ କରି ଭଞ୍ଜବଂଶାବଳୀଗୁଡ଼ିକରେ ଅସମୀଚୀନ 'କୃତଘ୍ନ' ଅଭିଯୋଗକୁ ମାନିଯିବାର କୌଣସି ଯୌକ୍ତିକତା ନାହିଁ ।

ସବୁଗୁଡ଼ିକ ବଂଶାବଳୀ ଲେଖାହୋଇଛି ଘନଭଞ୍ଜଙ୍କ ବଂଶଧର ରାଜାମାନଙ୍କ ଠାରୁ ଅନୁଗ୍ରହ ପାଉଥିବା ଲୋକଙ୍କ ଦ୍ୱାରା । ଧନଞ୍ଜୟ ଓ ନୀଳକଣ୍ଠଙ୍କୁ ବଦନାମ କରାଇବା ଘନ ଭଞ୍ଜଙ୍କ ସ୍ୱାର୍ଥର ଅନୁକୂଳ ଥିଲା । ଘନଭଞ୍ଜ ଶତ୍ରୁଞ୍ଜୟଙ୍କ ଶିଶୁପୁତ୍ରକୁ ଗାଦିରେ ବସାଇ ଶାସନ ଚଳାଇଲେ ଓ ସୁବିଧା ଉଣ୍ଡି ତାଙ୍କୁ ନିଶ୍ଚିହ୍ନ କରିଦେଇ ରାଜଗାଦି ମାଡ଼ି ବସିଲେ । ନିଃସନ୍ଦେହ ଭାବରେ ଧନଞ୍ଜୟ ଥିଲେ ରାଜା । ତାଙ୍କ ମୃତ୍ୟୁ ପରେ ଗଙ୍ଗାଧର ରାଜା ହେବା କଥା । କିନ୍ତୁ, ଧନଞ୍ଜୟ ନୀଳକଣ୍ଠଙ୍କୁ ଗାଦିରେ ବସାଇବାକୁ ଯୋଜନା କରିବାରୁ ଗଙ୍ଗାଧର ଧନଞ୍ଜୟଙ୍କୁ ମାରିଲେ । ଏହାପରେ ରାଜବାଟୀରେ ଘଟିବା ଲଢ଼େଇରେ ଗଙ୍ଗାଧର ଓ ତାଙ୍କ ପୁଅ ଶତ୍ରୁଞ୍ଜୟ ମଲେ । ଜ୍ୟେଷ୍ଠାଂଶ ଲୋପ ପାଇଲେ କନିଷ୍ଠାଂଶ ରାଜ୍ୟାଧିକାର ପାଇବା କଥା । ତେଣୁ, ଗଙ୍ଗାଧରଙ୍କ ଅଂଶ ଲୋପ ପାଇବାରୁ ନୀଳକଣ୍ଠହିଁ ରାଜା ହେବା କଥା । ଶତ୍ରୁଞ୍ଜୟଙ୍କ ପତ୍ନୀ ଗର୍ଭବତୀ ସତ କିନ୍ତୁ ଗର୍ଭସ୍ଥ ଭ୍ରୂଣ ଗାଦିରେ ବସି ନପାରେ ଓ କୌଣସି ସମୟରେ ରାଜସିଂହାସନ ଶୂନ୍ୟ ରହିବା କଥା ନୁହେଁ । ତେଣୁ ଧନଞ୍ଜୟଙ୍କ ମୃତ୍ୟୁ ବେଳକୁ ଜନ୍ମଲାଭ କରି ନଥିବା ରଣଭଞ୍ଜର ରାଜସିଂହାସନ ଉପରେ କୌଣସି ନ୍ୟାୟସଙ୍ଗତ ଦାବି ନଥିଲା । ନୀଳକଣ୍ଠଙ୍କୁ ଉତ୍ତରାଧିକାରରୁ ବଞ୍ଚିତ କରାଇବା ପାଇଁ ଏକ ଉପାୟ ତାଙ୍କ ପ୍ରତି ଧନଞ୍ଜୟଙ୍କୁ ହତ୍ୟା କରିଥିବା ଅଭିଯୋଗ । ଜଣେ ହତ୍ୟାକାରୀ ନିହତର ଉତ୍ତରାଧିକାରୀ ହୋଇ ନ ପାରେ । ତେଣୁ, ତାଙ୍କ ବିରୋଧରେ ଗୋବିନ୍ଦଭଞ୍ଜଙ୍କ ପକ୍ଷର ପିତୃହନ୍ତା ଅଭିଯୋଗ । ସମସ୍ତ ଘଟନା କ୍ରମ ସୂଚାଉଛି ଯେ ଉତ୍ତରାଧିକାର ବିବାଦ ବେଳର ଅସଲ ଖଳନାୟକ ହେଉଛନ୍ତି ଗୋବିନ୍ଦ ଭଞ୍ଜ ଓ ତାଙ୍କ ପୁଅ ଘନ ଭଞ୍ଜ । ଏମାନେ "ଦ୍ୱୟୋର୍ବିବାଦେ ତୃତୀୟସ୍ୟ ଲାଭ" ନୀତିରେ ଆସ୍ଥା ରଖି ଗଙ୍ଗାଧର ଓ ତାଙ୍କ ବଂଶଧର ମାନଙ୍କୁ ଆକ୍ରମଣ କରିଥିଲେ ଓ ନିଜର ସ୍ୱାର୍ଥ ସାଧନ କରିଥିଲେ । ଏମାନଙ୍କ ପ୍ରଭାବିତ ଅପପ୍ରଚାରକୁ ଗ୍ରହଣ କରି ଭଞ୍ଜବଂଶାବଳୀର ଲେଖକମାନେ ଧନଞ୍ଜୟ ନୀଳକଣ୍ଠଙ୍କ ଚରିତ୍ରସଂହାର କରିଛନ୍ତି ।

## ଆତ୍ମପରିଚୟ

କିଂବଦନ୍ତୀ ଗୁଡ଼ିକର ନିରାଧାର କପୋଳକଳ୍ପନା, ଭଞ୍ଜବଂଶାବଳୀ ଗୁଡ଼ିକର ପକ୍ଷପାତିତା ଓ ଅନ୍ୟ ସୂତ୍ରରୁ ବିଶେଷ କିଛି ତଥ୍ୟ ମିଳିପାରୁନଥିବା ଦୃଷ୍ଟେ ଉପେନ୍ଦ୍ର ଭଞ୍ଜଙ୍କର ଜୀବନ ବୃତ୍ତାନ୍ତ ତାଙ୍କର ଆତ୍ମପରିଚୟ ଉପରେ ନିର୍ଭର କରି ସଂକଳିତ ହେବା ସମୀଚୀନ ହେବ। ତାହା ସଂକ୍ଷେପତଃ ନିମ୍ନଲିଖିତ ପ୍ରକାରେ ହୋଇପାରେ :-

**୧. ବଂଶ :-**

ଉପେନ୍ଦ୍ର ଗୁମୁସରର ଭଞ୍ଜ ରାଜବଂଶରେ ଜନ୍ମଗ୍ରହଣ କରିଥିଲେ। ଏହି ବଂଶ ଅତି ପ୍ରାଚୀନ। ଏମାନେ ସମୟକ୍ରମେ ପ୍ରବେଶ କଲେ : 'କ୍ରମେ ଗୁମୁସରେ ହେଲେ ପ୍ରବେଶ' (ରସ ପଞ୍ଚକ = ରପ, ଶେଷ)। ଏହି ବଂଶର ଆଦିପୁରୁଷ ଗୋଟିଏ ମୟୂର ଡିମ୍ବକୁ ଭଞ୍ଜନ କରିବାରୁ ଜାତ ହେଲେ। ତେଣୁ, ବଂଶର ସଂଜ୍ଞା ଭଞ୍ଜ ହୋଇଥିଲା ବୋଲି କୁହାଯାଏ। ମୟୂରାଣ୍ଡରୁ ଜାତ ଏହି ଅଦ୍ଭୁତ ପୁରୁଷଙ୍କୁ ବସିଷ୍ଠ ପାଳିଥିଲେ ଓ ଶ୍ରୀରାମ ତାଙ୍କୁ ରାଜଟୀକା ଦେଇଥିଲେ। ଏହି ବଂଶର ଇଷ୍ଟଦେବୀ ଦୁର୍ଗା (ଦୁର୍ଗାଙ୍କର ପ୍ରତିମା ସ୍ୱର୍ଣ୍ଣନିର୍ମିତ ହୋଇଥିବାରୁ ଅଧୁନା ତାଙ୍କୁ କନକଦୁର୍ଗା କୁହାଯାଉଛି) :-

ଯେ ବଂଶେ ଇଷ୍ଟ ଦୁର୍ଗାଦେବୀ। ବରହିକୋଷରୁ ସମ୍ଭବି।।
ମନୁଷ୍ୟ ଏହି ଅଦଭୁତ। ଭଞ୍ଜକୁ ଭଞ୍ଜନାମ ସତ।।୩୯।।
ବିଶିଷ୍ଟ ବଶିଷ୍ଠ ପାଳକା। ଶ୍ରୀରାମେ ଦେଲେ ରାଜଟୀକା।।
(ଲାବଣ୍ୟବତୀ = ଲା୧୬/୩୯,୪୦)
ପତ୍ର ଯେ ଷଡ଼ମୁଖର ତା କୋଷ ଉଭବ ନର
ଭଞ୍ଜ ଉପଇନ୍ଦ୍ର ଗୀତେ କହେ।। (ରପ, ପକାରଚଉପଦୀ)।

ମୟୂରଠାରୁ ଜାତ ହେବାରୁ ଭଞ୍ଜବଂଶ ବୋଲି କୁହାଯାଏ "ବରହି ବଂଶେ ଉଭବ" (ବୈଦେହୀଶ ବିଳାସ = ବୈ.୫୨/୪୭); "ଶିଖୀକୁଳ ଭବ ଭଞ୍ଜ "(ରସିକ ହାରାବଳୀ = ରହା.୧୧/୨୧)। ସୂର୍ଯ୍ୟବଂଶୀ ଶ୍ରୀରାମ ଏହି ବଂଶକୁ ରାଜଟୀକା ଦେଇଥିବାରୁ ଏମାନଙ୍କୁ ସୂର୍ଯ୍ୟବଂଶୀୟ ବୋଲି ମଧ୍ୟ କୁହାଯାଏ। "କଞ୍ଜେଶ ବଂଶ" (ରପ, ଶେଷ); ପ୍ରଭାକର ବଂଶୀ ଉପଇନ୍ଦ୍ର" (ରପ, ପକାର ଚଉପଦୀ)।

**୨. ବଂଶଲତା :-**

'ରସପଞ୍ଚକ' ଶେଷକୁ ଉପେନ୍ଦ୍ର ତାଙ୍କ ପୂର୍ବପୁରୁଷଙ୍କ ପରିଚୟ ଦେଇଛନ୍ତି (ପୂର୍ବେ ଉଦ୍ଧୃତ)। ତଦନୁସାରେ ସୂର୍ଯ୍ୟବଂଶରେ ଜାତ ରଣଭଞ୍ଜ ଗୁମୁସରର ରାଜା ଥିଲେ। ସେ ଶୁଭ୍ରକୀର୍ତ୍ତିମାନ, କନ୍ଦର୍ପତୁଲ୍ୟ ରୂପବାନ୍ ଓ ବୀର ଥିଲେ। ତାଙ୍କର ପୁତ୍ର ଅଗ୍ନିତୁଲ୍ୟ ତେଜିୟାନ୍ ପ୍ରତାପଭଞ୍ଜ ପ୍ରତାପୀଥିଲେ। ତାଙ୍କ ପରେ ତାଙ୍କର ସାନପୁଅ ଗୋପୀନାଥ ରାଜା ହେଲେ। ତାଙ୍କ ପୁତ୍ର ରଜା ଧନଞ୍ଜୟ କବି ଥିଲେ। ତାଙ୍କ ପୁତ୍ର ନୀଳକଣ୍ଠ ଭଞ୍ଜ ରାଜା ହେଲେ। ସେ ପ୍ରକୃତରେ କୃତଜ୍ଞ। ତାଙ୍କର ଜ୍ୟେଷ୍ଠପୁତ୍ର (ଉପେନ୍ଦ୍ର) ଶ୍ରେଷ୍ଠ କବିତ୍ୱରେ କୁଶଳୀ ଥିଲେ।

୩. ପିତାମହ :-

ଉପେନ୍ଦ୍ର ତାଙ୍କ ପିତାମହଙ୍କର ବଡ଼ ପ୍ରଶଂସକ ଥିଲେ। ସେ ଲେଖିଛନ୍ତି ଯେ ଭଞ୍ଜବଂଶର ରାଜା ଧନଞ୍ଜୟ ସକଳ ଗୁଣର ନିଳୟ ଥିଲେ। ଘୁମୁସରର ରାଜାଭାବରେ ତଥା କବି ଭାବରେ ସେ ଲୋକରେ ବିଖ୍ୟାତ ଥିଲେ। କବିର ଦୁଇଅର୍ଥ :୧.ପଣ୍ଡିତ, ୨. କାବ୍ୟକର୍ତ୍ତା। ଧନଞ୍ଜୟ ଉଭୟ ଅର୍ଥରେ କବି। ଗଣେଶର ଦୁଇ ଅର୍ଥ ୧. ରାଜା, ୨. ସେନାପତି। ଧନଞ୍ଜୟ ଉଭୟ ଅର୍ଥରେ ଗଣେଶ।

ସେ କୁଳେ ନୃପ ଧନଞ୍ଜୟ। ସମସ୍ତ ଗୁଣର ନିଳୟ ॥୪୦
ଘୁମୁସର ଅଧିପ ପଣେ। ଲୋକେ ବିଖ୍ୟାତ କବିଗୁଣେ ॥୪୧॥ (ଲା.୧୬)
ବରହି ବଂଶେ ଉଭବ ନୃପ ଧନଞ୍ଜୟ।
ବିଶିଷ୍ଟେ ଘୁମୁସର ଅଧିକ ଗୁଣାଳୟ ଯେ ॥୪୭ ॥
ବେନି ଅର୍ଥେ ସେ କବି ଗଣେଶ ବୋଲି ଜାଣ ॥୪୮॥ (ବୈ.୫୨)।

ଏ ଭଳି ପ୍ରଶଂସା ମୂଳକ ବକ୍ତବ୍ୟରୁ ସୂଚନା ମିଳୁଛି ଯେ ଉପେନ୍ଦ୍ରଙ୍କ ପିତାଙ୍କ ସ୍ୱାର୍ଥ ପ୍ରତି (ତେଣୁ ଉପେନ୍ଦ୍ରଙ୍କ ସ୍ୱାର୍ଥ ପ୍ରତି) ଧନଞ୍ଜୟ ଅନୁକୂଳ ଥିଲେ। ଉପେନ୍ଦ୍ରଙ୍କ ପିତା ଧନଞ୍ଜୟଙ୍କୁ ହତ୍ୟା କରିଥିବା ଅଭିଯୋଗ ଏଥିରୁ ସିଦ୍ଧ ହେଉନାହିଁ।

୪. ପିତା :-

ଧନଞ୍ଜୟଙ୍କ ପୁତ୍ର ନୀଳକଣ୍ଠ ପିତୃତୁଲ୍ୟ ଘୁମୁସର ରାଜା ଭାବରେ ବିଖ୍ୟାତ ଓ ବନ୍ଦନୀୟ ଥିଲେ। ଏହା ପ୍ରକୃତ କଥା (ପ୍ରମାଣ)।

ତଦ୍‌ବତ ତାହାଙ୍କ ତନୁଜ। ନରେଶ ନୀଳକଣ୍ଠ ଭଞ୍ଜ ॥୪୧॥(ଲା.୧୬)
ବନ୍ଦନ ତଦ୍‌ବତ ତାଙ୍କ ନନ୍ଦନ ପ୍ରମାଣ ଯେ ॥୪୮
ବସୁଧାପତି ସେ ନୀଳକଣ୍ଠ ନାମେ ଖ୍ୟାତ ॥୪୯ ॥ (ବୈ.୫୨)

ନୀଳକଣ୍ଠ ସତରେ କୃତଜ୍ଞ ଥିଲେ :- "କୃତଜ୍ଞ ନୀଳକଣ୍ଠ ଭଞ୍ଜସତ"। କୃତଜ୍ଞ ଶବ୍ଦର ଐତିହାସିକ ତାତ୍ପର୍ଯ୍ୟ ପୂର୍ବରୁ ଆଲୋଚିତ ହୋଇଛି।

ଉପେନ୍ଦ୍ର ଭଞ୍ଜ ନୀଳକଣ୍ଠଙ୍କ ରାଜତ୍ୱ ଲୋପ ପାଇଥିବାର ସୂଚନା କୌଣସିଠାରେ ଦେଇ ନାହାନ୍ତି। ଅଳ୍ପ କେତେ ସ୍ଥାନରେ ସେ ନିଜକୁ "ଉପଇନ୍ଦ୍ରଭଞ୍ଜ ନୃପତି" (ସୁଭଦ୍ରା ପରିଣୟ ୪/୨୭) କହିଛନ୍ତି। ତେଣୁ ସେତେବେଳକୁ ନୀଳକଣ୍ଠଙ୍କ ଦେହାନ୍ତ ହୋଇ ସାରିଥିବ। କିନ୍ତୁ, ପରେ ସେ ନିଜକୁ ନୃପତି ବୋଲି ନ କହି ରଜା ନୀଳକଣ୍ଠଙ୍କ ଜ୍ୟେଷ୍ଠପୁତ୍ର ଓ ପାଟକୁମାର (ଅର୍ଥାତ୍ ଜ୍ୟେଷ୍ଠ ରାଜପୁତ୍ର) ବୋଲି କହିବା ଦ୍ୱାରା ନିଜେ ରାଜ୍ୟ ହରାଇବାର ସୂଚନା ମିଳୁଛି। ହେଲେ ହେଁ, ସେ ଘନଭଞ୍ଜଙ୍କ ରାଜତ୍ୱକୁ ସ୍ୱୀକୃତି ଦେଇ ନାହାନ୍ତି।

୫. ଜନ୍ମ :-

ଉପେନ୍ଦ୍ରଭଞ୍ଜଙ୍କର ଜନ୍ମ ସମୟକୁ ଆନୁମାନିକ ଭାବରେ ହିଁ ନିରୂପଣ କରାଯାଇ ପାରେ। 'ରସଲେଖା' ତାଙ୍କର ଅନ୍ୟତମ ଆଦ୍ୟ ରଚନା। କାରଣ, ଏହା ଲେଖାହେବା ବେଳକୁ ଉପେନ୍ଦ୍ରଭଞ୍ଜ କୌଣସି ଉପାଧି ପାଇ ନଥିଲେ। ରସଲେଖା ରଚନା ଶେଷ ହେବା ସମୟ ସେହି କାବ୍ୟର ଶେଷକୁ କବି ଜଣାଇଛନ୍ତି :-

"ଦିବ୍ୟସିଂହ ଗଜପତି ଅଙ୍କ ସପତ ବିଂଶତି ଶେଷଦିନେ ଶେଷ ଏହୁ ଗୀତ"। ଦିବ୍ୟସିଂହ ଦେବଙ୍କର ୨୭ ଅଙ୍କର ଶେଷ ଦିନଟି ଥିଲା ଖ୍ରୀ ୧୭୧୦ର ଅଗଷ୍ଟ ୨୩ ତାରିଖ। ସେତେବେଳକୁ କବିଙ୍କ ବୟସ ପ୍ରାୟ ୨୫ ବର୍ଷ ହୋଇପାରେ ବୋଲି ଅନୁମାନ କରାଯାଇପାରେ। ତେଣୁ, କବିଙ୍କ ଜନ୍ମ ଖ୍ରୀ.୧୬୮୫ ପାଖାପାଖି ହୋଇପାରେ।

୬. ଭ୍ରାତା :-

ଉପେନ୍ଦ୍ର ପିତାଙ୍କର ଜ୍ୟେଷ୍ଠପୁତ୍ର ଥିଲେ (ଲା.୧୬/୪୨): "ତାହାଙ୍କ ଜ୍ୟେଷ୍ଠ ସୁତ ମୁହିଁ।" ଅନ୍ୟତ୍ର ମଧ ସେ ଜ୍ୟେଷ୍ଠପୁତ୍ର ଥିବାକଥା ଜଣାଇଛନ୍ତି। କିନ୍ତୁ, ଭାଇମାନଙ୍କର ସଂଖ୍ୟା ଜଣାଇ ନାହାନ୍ତି : "ବିଧାନରେ ମୁହିଁ ତାହାଙ୍କର ଜ୍ୟେଷ୍ଠ ସୁତ" (ବୈ.୫୨/୪୯), "କୁମର ଜ୍ୟେଷ୍ଠ ତାଙ୍କର "(ରପ.ଶେଷ)।

ଉପେନ୍ଦ୍ର ଭଞ୍ଜ ନିଜକୁ "ପାଟ କୁମାର" ବୋଲାଇଛନ୍ତି (ରପ.ରକାର ଓ ପକାର ଚଉତିଶା)। ପାଟକୁମାରର ଅର୍ଥ ଯେଉଁ ରାଜପୁତ୍ର (କୁମାର) ଭବିଷ୍ୟତରେ ରାଜା ହେବେ। ସେ ଶେଷ ଅବସ୍ଥାରେ ମଧ ପାଟଦେଉ ଭାବରେ ଲୋକରେ ପରିଚିତ ଥିଲେ।

କେତେକ ଭଞ୍ଜବଂଶାନୁଚରିତରେ ଲେଖାଅଛି ଯେ ନୀଳକଣ୍ଠଙ୍କ ବଂଶଧର କେହି ରହିଲେ ନାହିଁ। ଭଞ୍ଜ ବଂଶାନୁଚରିତ (ପୃ.୨୭)ରେ ଲେଖାଅଛି :-

ଯେଣୁ କରି ସେ ବଂଶ କରିଥିଲେ କ୍ଷୟ।
ବୁଡ଼ିଲା ତାଙ୍କ ବଂଶ ନୋହିଲା ଉଦୟ।

ଉପେନ୍ଦ୍ର ଅନପତ୍ୟ ଥିବା କଥା ସୂର୍ଯ୍ୟମଣିଙ୍କ ଘୁମୁସର ଭଞ୍ଜବଂଶାବଳୀ କହେ :— "ତାଙ୍କର ଅନ୍ୱୟ କେହି ନ ଥିଲେ"। ତେଣୁ ଅନୁମିତ ହୁଏ ତାଙ୍କର ଜଣେ ମାତ୍ର ଭାଇ ଥିଲେ ଯେ ସନ୍ତାନହୀନ ଅବସ୍ଥାରେ ମରିଯାଇଥିଲେ।

୭. କବିତ୍ୱ :-

କବିତ୍ୱଶକ୍ତି ଉପେନ୍ଦ୍ରଙ୍କ ପିତୃପିତାମହଙ୍କ ଠାରେ ମଧ ଥିଲା। ଧନଞ୍ଜୟଙ୍କ କବିତ୍ୱ ସୁବିଦିତ ଓ ତାଙ୍କର ରଚିତ ବହୁ କାବ୍ୟକବିତା ପ୍ରକାଶିତ ମଧ। ଉପେନ୍ଦ୍ର ଭଞ୍ଜଙ୍କ କହିବା ଅନୁସାରେ ନୀଳକଣ୍ଠ ଭଞ୍ଜ ମଧ କବିଥିଲେ :-

ସେ କୁଳେ ନୃପ ଧନଞ୍ଜୟ। ସମସ୍ତ ଗୁଣର ନିଳୟ ।।୪୦।।
ଘୁମୁସର ଅଧିପପଣେ। ଲୋକେ ବିଖ୍ୟାତ କବିଗୁଣେ ।।
ତଦ୍‌ବତ ତାହାଙ୍କ ତନୁଜ। ନରେଶ ନୀଳକଣ୍ଠ ଭଞ୍ଜ ।।୪୧।।(ଲା.୧୬)

ନୀଳକଣ୍ଠଙ୍କ କବିତ୍ୱ ଶକ୍ତି ନଥିଲେ ସେ ପିତାମହ ଧନଞ୍ଜୟଙ୍କ ତୁଲ୍ୟ (ତଦ୍‌ବଦ) ବୋଲି ଉପେନ୍ଦ୍ର କହି ନ ଥାନ୍ତେ। ଅନ୍ୟତ୍ର ମଧ୍ୟ ନୀଳକଣ୍ଠ ତାଙ୍କ ପିତା ଧନଞ୍ଜୟଙ୍କ ତୁଲ୍ୟ ବନ୍ଦନୀୟ ବୋଲି କବି ଜଣାଇଛନ୍ତି : ''ବନ୍ଦନ ତଦ୍‌ବତ ତାଙ୍କ ନନ୍ଦନ'' (ବୈ.୫୨/୪୮)।

ନୀଳକଣ୍ଠ ଭଞ୍ଜଙ୍କ ଦ୍ୱାରା ରଚିତ ବହୁସଂଖ୍ୟକ ଚଉପଦୀ ତାଳପତ୍ର ପୋଥିରେ ବିଭିନ୍ନ କବିଙ୍କ ପ୍ରଣୀତ ଚଉପଦୀର ସଂଗ୍ରହ ମଧ୍ୟରେ ଦେଖିବାକୁ ମିଳୁଛି। ତାଙ୍କର ଦୁଇଟି ଚଉପଦୀ ଡଃ ଜାନକୀ ବଲ୍ଲଭ ମହାନ୍ତିଙ୍କ ଓଡ଼ିଆ ଗୀତିକାବ୍ୟ ସଂକଳନରେ ପ୍ରକାଶ ପାଇଛି। ସେ ବହୁସଂଖ୍ୟକ ଗୀତ ଲେଖିଥିବା କଥା ଭଞ୍ଜବଂଶାନୁଚରିତରେ ସ୍ୱୀକୃତ ହୋଇଛି (ପୃ୨୭) :-

ଉପେନ୍ଦ୍ରଭଞ୍ଜ ନାମେ ତାଙ୍କର ତନୟ। ଗୀତ ନିର୍ବାହ ସେ କଲେ ଅପ୍ରମେୟ॥
ଯେଣୁକରି ସେ ବଂଶ କରିଥିଲେ କ୍ଷୟ। ବୁଡ଼ିଲା ତାଙ୍କ ବଂଶ ନୋହିଲା ଉଦୟ॥

ଏଥିରେ 'ସେ' ସର୍ବନାମଟି ଉପେନ୍ଦ୍ରଭଞ୍ଜଙ୍କୁ ବୁଝାଇଲା ଭଳି ଆପାତତଃ ଜଣାପଡୁଥିଲେ ହେଁ ତାହା ପ୍ରକୃତରେ ନୀଳକଣ୍ଠଙ୍କ ପ୍ରତି ଉଦ୍ଦିଷ୍ଟ। କାରଣ, ବଂଶାନୁଚରିତର ବର୍ଣ୍ଣନା ଅନୁସାରେ ନୀଳକଣ୍ଠ ହିଁ ଗଙ୍ଗାଧରଙ୍କ ବଂଶ ନାଶ କରିଥିଲେ।

୮. କବିତ୍ୱ ପ୍ରାପ୍ତି :-

ଉପେନ୍ଦ୍ର ଭଞ୍ଜ ଶ୍ରୀରାମଙ୍କୁ ନିରନ୍ତର ଉପାସନା କରୁଥିଲେ ଓ ବିଶ୍ୱାସ ପୋଷଣ କରୁଥିଲେ ଯେ ତାଙ୍କର କବିତ୍ୱ ଓ ଶବ୍ଦଜ୍ଞାନ ଶ୍ରୀରାମଙ୍କ କରୁଣା ବଳରେ ସମ୍ଭବପର ହୋଇଛି :-

'ବଚିତ୍ରକର୍ମା ରଘୁନାଥ ତାଙ୍କ ଧ୍ୟାନରେ ଉପଇନ୍ଦ୍ର
ବିଚିତ୍ର ଚରିତ ରଚନେ ସମର୍ଥ।'' (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ =କୋ.୧୦/୩୧)।
'ତରଣିକୁଳର ସାର ଆଶ୍ରୟରୁ ନିରନ୍ତର
କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ-ସମୁଦ୍ର ପାର'' (କୋ.୧୪/୩୪)
''କହେ ଉପଇନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ।
ଜାତ କଲେ କ୍ଷୀରାର୍ଣ୍ଣବୁ ସୁଧା ମୋର ଗିରାର୍ଣ୍ଣବୁ ରସଗୀତ॥ (କୋ. ୧୬/୩୦)

ସେ ଆଉ ମଧ୍ୟ ବିଶ୍ୱାସ କରୁଥିଲେ ଯେ ପୂର୍ବଜନ୍ମର ସୁକୃତିଜନିତ ଭାଗ୍ୟ ବଳରେ ସେ ପାଣ୍ଡିତ୍ୟ ଅର୍ଜନ କରିଥିଲେ ''ସଂଖ୍ୟାବାନ ପୂର୍ବଭାଗ୍ୟ ବଶରୁ ବୋଲାଇ'' (ସୁଭଦ୍ରା ପରିଣୟ = ସୁ.୧/୧୪)।

ଉପେନ୍ଦ୍ର ଜଣାଇଛନ୍ତି ଯେ ବାରେବା ଗ୍ରାମରେ ସୀତାରାମଙ୍କୁ ଉପାସନା କରି ପ୍ରସନ୍ନ କରାଇଥିଲେ : ''ବାରେବାରେ ସେବାରେ ମନାଇ ସୀତାରାମ'' (ବୈ.୫୨/୫୦)। ଅନେକ ବାରେବା ଗୋଟିଏ ଗ୍ରାମର ନାମ ବୋଲି ବୋଧହୁଏ ଜାଣି ନଥିବାରୁ 'ବାରେବାରେ' ର ଅର୍ଥ ଥରେ ଥରେ ବୋଲି କରନ୍ତି। କିନ୍ତୁ, କବି ନିରନ୍ତର ରାମଙ୍କ ଉପାସନା କରୁଥିବା କଥା ଅନେକଠାରେ ଲେଖିଥିବାରୁ 'ଥରେ ଥରେ'

ଅର୍ଥର ଯୋଗ୍ୟତା ରହୁନାହିଁ। ଗୁମୁସରର ଇତିହାସ ସହିତ ବାରେବା ଗ୍ରାମ ବହୁଭାବରେ ଜଡ଼ିତ। ବାରେବା କନ୍ଧମାନଙ୍କର ପ୍ରଭାବର ଏକ କେନ୍ଦ୍ର ଥିଲା। ଏହା ଗୁମୁସରର ସୀମାନ୍ତ କରଡ଼ାମାଳ ଅନ୍ତର୍ଭୁକ୍ତ ଏକ ଗ୍ରାମ। ଘନଭଞ୍ଜ ଶତ୍ରୁଞ୍ଜୟଙ୍କ ଅନ୍ତଃସତ୍ତ୍ୱା ବିଧବା-ପତ୍ନୀଙ୍କୁ ଅପହରଣ କରି ଏହିଠାରେ ରଖିଥିଲେ। ରଣ ଭଞ୍ଜ ଏହିଠାରେ ଜନ୍ମଗ୍ରହଣ କରିଥିଲେ। ଘନ ଭଞ୍ଜ ଶିଶୁ ରଣଭଞ୍ଜଙ୍କୁ ହତ୍ୟା କରିବା ଯୋଗୁଁ ଯେତେବେଳେ କନ୍ଧମାନେ ଘନଭଞ୍ଜଙ୍କ ବିପକ୍ଷରେ ମେଳିଆ ହେଲେ ସେତେବେଳେ (ଅର୍ଥାତ୍ ପ୍ରାୟ ଖ୍ରୀ. ୧୭୦୮ ବେଳେ) ନୀଳକଣ୍ଠ ଭଞ୍ଜ ଏହିଠାରୁ ଘନ ଭଞ୍ଜ ବିରୋଧୀ ଆକ୍ରମଣ ଚଳାଇଥିବା ସମ୍ଭବ ବୋଲି ମନେ ହୁଏ। ସେହି ସମୟରେ ଉପେନ୍ଦ୍ର ଭଞ୍ଜ ପିତାଙ୍କ ସହିତ ବାରେବାରେ ରହିଥିବା ଅବସରରେ ରାମଙ୍କ ଉପାସନା କରିଥିଲେ ଓ କବିତ୍ୱଶକ୍ତି ଲାଭ କରିଥିଲେ ବୋଲି ଅନୁମିତ ହୁଏ।

୯. ତାରକ ମନ୍ତ୍ର:-

ବୋଧହୁଏ ବାରେବା ଗ୍ରାମରେ ଅବସ୍ଥାନ କରୁଥିବା ସମୟରେ କବି ମନ୍ତ୍ର ଗ୍ରହଣ କରିଥିଲେ। ତାଙ୍କର ମନ୍ତ୍ର ଥିଲା ରାମ ତାରକମନ୍ତ୍ର: "ଭାଗ୍ୟେ ଗ୍ରହଣ ତାରକମନ୍ତ୍ର" (ବୈ.୧/୩)। ସେ ରାମଙ୍କ ଉପାସନା ତାରକ ମନ୍ତ୍ର ଦ୍ୱାରା କରୁଥିଲେ। ତେଣୁ ତାରକମନ୍ତ୍ର ବଳରେ ତାଙ୍କଠାରେ କବିତ୍ୱଶକ୍ତିର ଉଦୟ ହେବା କଥା ସେ ଜଣାଇଛନ୍ତି :"ତାରକମନ୍ତ୍ର ପରସାଦେ, ମୋହର କବିପଣ ଉଦେ" (ଲା.୧୬/୪୨)।

ସମସ୍ତଙ୍କ ପକ୍ଷେ ଦୀକ୍ଷାଗ୍ରହଣ ଅପରିହାର୍ଯ୍ୟ। ସଂପ୍ରଦାୟ ଭେଦରେ ଦୀକ୍ଷାମନ୍ତ୍ର ଭିନ୍ନଭିନ୍ନ ହୁଏ। ମନ୍ତ୍ରଗୁରୁ ଶିଷ୍ୟକୁ ସ୍ୱସଂପ୍ରଦାୟସମ୍ମତ ମନ୍ତ୍ର ମଧ୍ୟରୁ ଗୋଟିଏ ମନ୍ତ୍ର ବାଛି କରି ଦେଇଥାନ୍ତି। ଉପେନ୍ଦ୍ରଭଞ୍ଜଙ୍କ ମନ୍ତ୍ରଗୁରୁ କୌଣସି ରାମାନନ୍ଦୀ ସାଧୁ ହୋଇଥିବା ସମ୍ଭବ।

ଉପେନ୍ଦ୍ର ଭଞ୍ଜ ଯେଉଁ ତାରକ ମନ୍ତ୍ର ଦୀକ୍ଷାଗ୍ରହଣ କରିଥିଲେ, ତାହା 'ରାମ'-ଏହି ଦୁଇ ବର୍ଣ୍ଣାତ୍ମକ ମନ୍ତ୍ର। କୃଷ୍ଣ ତାରକ ନାମକ ପୃଥକ୍ ମନ୍ତ୍ର ରହିଛି। 'ରାମ' ମନ୍ତ୍ର ରାମତାରକ ମନ୍ତ୍ର ମଧ୍ୟ ବୋଲାଏ।

କାରକ ତାରକମନ୍ତ୍ର ଯାହା ନାମ ପୁଣି।
ଉପଇନ୍ଦ୍ର ବୀରବର ସେହି ରାମ ଗୁଣି (ଲା ୩୩/୪୨)।
ତାରକମନ୍ତ୍ର ନାମ ଯାହାର,
ତ୍ରାଣ ସେହି ଉପଇନ୍ଦ୍ର ଭଞ୍ଜର (ଛାନ୍ଦଭୂଷଣ = ଛା.୧୬)।

ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଧନଞ୍ଜୟ ମଧ୍ୟ ରାମୋପାସକ ଥିଲେ ଓ ରଘୁନାଥ ବିଳାସ କାବ୍ୟ ରଚନା କରିଥିଲେ। ଅନୁମାନ କରାଯାଇପାରେ ଯେ ଉପେନ୍ଦ୍ର କୌଣସି ରାମାନନ୍ଦ ବୈଷ୍ଣବ ଗୁରୁଙ୍କ ଠାରୁ ଦୀକ୍ଷାଗ୍ରହଣ କରି ଏହି ତାରକମନ୍ତ୍ର ନେଇଥିଲେ।

ପୁରୀର କୁଣ୍ଡେଇବେଣ୍ଟ ସାହିରେ ଥିବା 'ଗୁମୁସର ମଠ'ଟି ଗୁମୁସର ରାଜାଙ୍କ ଦ୍ୱାରା ପ୍ରାୟ ଖ୍ରୀ.୧୭ଶ ଶତାବ୍ଦୀରେ ପ୍ରତିଷ୍ଠିତ ରାମାନନ୍ଦୀ ସଂପ୍ରଦାୟର ମଠ। ଏଥିରେ

ସୀତାରାମ ଶ୍ରୀ ବିଗ୍ରହ ପୂଜାପାଆନ୍ତି। ତେଣୁ, ଅନୁମିତ ହୁଏ ଯେ, ଉପେନ୍ଦ୍ରଭଞ୍ଜ ତାଙ୍କ ପିତୃ-ପିତାମହଙ୍କ ସଂପ୍ରଦାୟର ଗୁରୁଙ୍କ ଠାରୁ ହିଁ ଦୀକ୍ଷାମନ୍ତ୍ର ଗ୍ରହଣ କରିଥିଲେ।

କବି ,ତାରକମନ୍ତ୍ରଦ୍ୱାରା ରାମଙ୍କୁ ପ୍ରସନ୍ନ କରାଇ କବିତ୍ୱଶକ୍ତି ଲାଭ କରିଥିବା ବିଷୟ ତାଙ୍କର ଆଦ୍ୟ ରଚନାଗୁଡ଼ିକରେ ପ୍ରକାଶ କରିନାହାନ୍ତି। ଅନ୍ୟତମ ଆଦ୍ୟ ଲେଖା 'ରସଲେଖା'ରେ ୨୨ଟି ଯାକ ଛାନ୍ଦରେ ସେ 'ହରିହର'ଙ୍କୁ ସ୍ତୁତି କରିଛନ୍ତି। ସେଠାରେ ରାମଙ୍କୁ ସ୍ତୁତି ନ ଥିବା ତାତ୍ପର୍ଯ୍ୟ ପୂର୍ଣ୍ଣ। ପରେ ସେ ହରିଙ୍କ ସ୍ଥାନରେ ରାମଙ୍କୁ ସ୍ତୁତି କରିଛନ୍ତି। ଫଳରେ 'କଳାକଉତୁକ'ରେ କବି ରାମ/ସୀତାରାମଙ୍କ ଉପାସକ ଥିବା ଜଣାଇ "କହେ ଉପଇନ୍ଦ୍ର ଶିବେ ସେ ଉପାସକ" (୨/୨୯) ଲେଖିଛନ୍ତି। ପ୍ରେମ ସୁଧାନିଧିରେ ମଧ କବି "ରାଘବ-ଶିବଭାବନା କରି ନିରନ୍ତର" ଲେଖିଛନ୍ତି।

କବିଙ୍କ ମଧ ଜୀବନର ରଚନାଗୁଡ଼ିକରେ ବିଷ୍ଣୁଙ୍କ ସ୍ତୁତି ପ୍ରାଧାନ୍ୟ ଲାଭ କରିଛି। କବିଙ୍କ ରାମ କେବଳ ରାମାୟଣ ଚରିତର ରାମ ନୁହନ୍ତି, ସେ ବୈକୁଣ୍ଠ ବାସୀ ବିଷ୍ଣୁଙ୍କଠାରୁ ଭିନ୍ନ ନୁହନ୍ତି : "କହେ ଉପଇନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ" (କୋ.୧୬/୩୦)। ସେ ରାମଙ୍କ କୃପାରୁ କବି ହେବା କଥା କହିଥିବା ପରି ବିଷ୍ଣୁଙ୍କ କୃପାରୁ କବି ହୋଇଥିବା କଥା ମଧ କହିଛନ୍ତି (କୋ.୧/୬୩)। ତାଙ୍କ ବିଚାରରେ ରାମ ବିଷ୍ଣୁ, ବିଷ୍ଣୁ ଜଗନ୍ନାଥ ଓ ଜଗନ୍ନାଥ କୃଷ୍ଣ। ରାମଲୀଳାର ରାମ ଓ କୃଷ୍ଣଲୀଳାର କୃଷ୍ଣ ଏକା ଦେବ, ସେ ଜଗନ୍ନାଥ, ସେ ବିଷ୍ଣୁ। କବି ଠାଏଁ କୃଷ୍ଣଙ୍କ କୃପାଲାଭ କରି କବି ଭାବରେ ଦକ୍ଷତା ଅର୍ଜନ କରିଥିବା କଥା କହିଛନ୍ତି :-

କରେ ଗିରି ରଖିଥିଲେ ଯେ ହରି ବ୍ରଜର ରକ୍ଷ।
କଳାକୁ ସେ ଦୟା ଉପେନ୍ଦ୍ର ହେଲା କବିରେ ଦକ୍ଷ ॥

(ରସପଞ୍ଚକ, କକାର ଚଉତିଶା)

ସେ ରାମଙ୍କ ସହିତ ଶିବଙ୍କୁ ଉପାସନା କରିବାର ଯଥାର୍ଥତା ତାଙ୍କର ପୌଢ଼ ରଚନା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ପ୍ରକାଶ କରିଛନ୍ତି :-

ଯେହୁ ତାରକ ପ୍ରବର୍ତ୍ତକ ଜଗତେ ତାରକ ସ୍ୱଭାବେ ସେହି ତ।
ମହାଗୁରୁ ଭାବୁ ସେ କାଶୀଶ୍ୱରଙ୍କୁ ବନ୍ଦନା କରିବା ବିହିତ (୬/୩୦)॥

ତାରକମନ୍ତ୍ରର ପ୍ରବର୍ତ୍ତକ ଶିବ। ଶିବ ସର୍ବଦା ରାମ ନାମ ଜପୁଥିଲେ। ତେଣୁ ଉପେନ୍ଦ୍ର ଭଞ୍ଜ ଶିବଙ୍କୁ ମହାଗୁରୁ ଭାବନା କରି ଉପାସନା କରୁଥିଲେ।

**୧୦. ଆଦ୍ୟ ରଚନା :-**

ଉପେନ୍ଦ୍ର ଭଞ୍ଜଙ୍କର ଦୁଇଟି ଉପାଧି ଥିଲା :- ୧. ବୀରବର ୨. ମଙ୍ଗରାଜ. ଠାଏଁ ଠାଏଁ ସେ ବୀରବର ଉପାଧିକୁ ବର୍ଣ୍ଣସଂଖ୍ୟା ଅନୁରୋଧରେ କେବଳ ବୀର ବୋଲି ଲେଖିଛନ୍ତି (ଲା.୧୮/୫୭, ଲା.୩୪/୩୪. ଚଉପଦୀଭୂଷଣ-୯ ଚଉପଦୀ)। ତାଙ୍କର ରସଲେଖା (କାଞ୍ଚନିକ କାବ୍ୟ), ଛାନ୍ଦଭୂଷଣ(କୃଷ୍ଣକାବ୍ୟ), କଳାକଉତୁକ (କୃଷ୍ଣକାବ୍ୟ) ଓ

କ୍ଷୁଦ୍ର ଚଉପଦୀରେ କୌଣସି ଉପାଧି ଉଲ୍ଲିଖିତ ହୋଇନାହିଁ। ତେଣୁ ଏହି ସବୁ ତାଙ୍କର ଆଦ୍ୟ ଜୀବନର ରଚନା ହେବା ସମ୍ଭବ। ଉପେନ୍ଦ୍ରଭଞ୍ଜଙ୍କ ପ୍ରାରମ୍ଭିକ କୃତି, ଅଧ୍ୟାୟରେ ବିଶଦ ଆଲୋଚନା ପରେ ମୁଁ ଦର୍ଶାଇଛି ଯେ ରସଲେଖା ନାମଧେୟ କାଞ୍ଚନିକ କାବ୍ୟ ତାଙ୍କର ପ୍ରାଥମିକ ଅବସ୍ଥାର ରଚନା। ଏହା ପୂର୍ବରୁ ସେ ଆଉ କିଛି କାଞ୍ଚନିକ କାବ୍ୟ ଲେଖିଥାଇ ପାରନ୍ତି, କିନ୍ତୁ ସେ ସବୁ ଅଦ୍ୟାବଧି ପ୍ରକାଶ ପାଇନାହିଁ।

## ୧୧. ବୀରବର ଉପାଧି

ଉପେନ୍ଦ୍ରଭଞ୍ଜଙ୍କର ଅଧିକାଂଶ ରଚନାରେ କେବଳ ବୀରବର ଉପାଧି ସ୍ଥାନ ପାଇଛି, ଯଥା :-ପ୍ରେମସୁଧାନିଧି, ରସିକ ହାରାବଳୀ, ସୁବର୍ଣ୍ଣରେଖା, ସୁଭଦ୍ରା ପରିଣୟ, ଚଉପଦୀଚନ୍ଦ୍ର, ରାମଲୀଳାମୃତ, ବୈଦେହୀଶ ବିଳାସ, ବଜାରବୋଲି, ବାଇଶିପଦିଆ ଛାନ୍ଦ, ଗୀତାଭିଧାନ, ଲାବଣ୍ୟବତୀ ଓ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ। ବୀରବର ଉପାଧି ପ୍ରାପ୍ତିର ସମୟ ଅନ୍ଦାଜ ଖ୍ରୀ. ୧୭୧୫ ପାଖାପାଖି ହୋଇପାରେ।

ରାଜ୍ୟାଧିକାର ଫେରିପାଇବା ପାଇଁ ଚାଲିଥିବା ସଂଘର୍ଷରେ ଉପେନ୍ଦ୍ର ତାଙ୍କ ପିତା ନୀଳକଣ୍ଠଙ୍କୁ ଗୁରୁତ୍ୱପୂର୍ଣ୍ଣ ସହାୟତା ଦେଇ ପାରିଥିବାରୁ ଘନ ଭଞ୍ଜ ରାଜ୍ୟରୁ ବିତାଡ଼ିତ ହୋଇ ଇଚ୍ଛାପୁରରେ ବନ୍ଦୀଥିବାବେଳେ ନୀଳକଣ୍ଠ ଉପେନ୍ଦ୍ରଙ୍କୁ 'ବୀରବର' ଉପାଧି ଦେଇଥାଇ ପାରନ୍ତି। କବି-ପଣ୍ଡିତ ଥାଇ ସେନାପତି ହେବାରୁ 'ବୀରବର' ଉପାଧି ପାଇବାର ଦୃଷ୍ଟାନ୍ତ ଆକବରଙ୍କ ରାଜସଭାର ପ୍ରସିଦ୍ଧ ବୀରବଲ। ବୀରବଲ ଶବ୍ଦଟି ବୀରବରର ଅପଭ୍ରଂଶ। 'ବୀରବର' ଉପେନ୍ଦ୍ରଭଞ୍ଜଙ୍କର 'ପଦ' ଅର୍ଥାତ୍ ରାଜଦତ୍ତ ଉପାଧି ବୋଲି ସେ ଜଣାଇଛନ୍ତି :-

''ସଂଜ୍ଞା ଭଞ୍ଜ ନାମ ଉପଇନ୍ଦ୍ର ପଦ ବୀରବର ଯେ (ସୁ.୧୦/୩୭)।

## ୧୨. ସିଂହାସନ ପ୍ରାପ୍ତି :-

ଉପେନ୍ଦ୍ର ଭଞ୍ଜଙ୍କର ଜୀବନବୃତ୍ତାନ୍ତର ଆଲୋଚକମାନେ ଅର୍ବାଚୀନ ବଂଶାବଳୀଗୁଡ଼ିକର ବିବରଣକୁ ଗ୍ରହଣ କରି ସେ ରାଜା ହୋଇଥିବା କଥା ସ୍ୱୀକାର କରୁନାହାନ୍ତି। ନିଜେ ଉପେନ୍ଦ୍ର ଅନେକ ଠାରେ ନିଜର ପରିଚୟ ନୃପତି ବୋଲି ଦେଇଛନ୍ତି। ସୁଭଦ୍ରା ପରିଣୟରେ ସେ ଲେଖିଛନ୍ତି ''ଉପଇନ୍ଦ୍ର ଭଞ୍ଜ ନୃପତି'' (୪/୨୭)। କବିଙ୍କର 'ନାୟକର ବିଦେଶାନୁଚିନ୍ତା' ଗୀତର ଦ୍ୱିବିଧ ପାଠାନ୍ତର 'ଓଡ଼ିଆ ଗୀତିକାବ୍ୟ ସଂକଳନ'ରେ ପ୍ରକାଶ ପାଇଛି। ସେଥିର ଭଣିତିରେ 'ଭଣେ ଉପଇନ୍ଦ୍ର ଭଞ୍ଜ ନୃପତି' ଓ 'ଭଣଇ ଉପଇନ୍ଦ୍ର ଭଞ୍ଜ ନୃପତି' ରହିଛି। କବିଙ୍କର 'ରମଣୀ ରତନ ବେଦଯୁଗ ରତୁ ବୟସୀ' ଚଉପଦୀର ଭଣିତିରେ ରହିଛି : ''କହେ ଉପଇନ୍ଦ୍ର ନୃପକୁଳ ଚନ୍ଦ୍ର''। 'ରସେ ରସିକା ରସି ନିକର' ଚଉପଦୀର ଭଣିତି ''ଭଣେ ଉପଇନ୍ଦ୍ର ନୃପକୁଳଚନ୍ଦ୍ର'' ରହିଛି। ଏହାର ଏକ ପାଠାନ୍ତରରେ କିନ୍ତୁ ନୃପକୁଳଚନ୍ଦ୍ର ସ୍ଥାନରେ 'କବିକୁଳଚନ୍ଦ୍ର' ଲେଖାଅଛି। ଉପେନ୍ଦ୍ରଙ୍କ ନୃପତି ହେବା ବକ୍ତବ୍ୟ ମିଥ୍ୟା ନ ହୋଇପାରେ। ପିତାଙ୍କ ଦେହାନ୍ତ ପରେ ସେ କିଛି କାଳ ସିଂହାସନାରୂଢ଼ ହୋଇଥିବା ସମ୍ଭବ।

ଇଂରାଜି ଅମଳର ପୁରୁଣା ବନ୍ଦୋବସ୍ତ ରିପୋର୍ଟ ଆଦି ସରକାରୀ ରେକର୍ଡ଼ପତ୍ରରେ ଉପେନ୍ଦ୍ରଭଞ୍ଜ ଗୁମୁସରର ଜଣେ ପୂର୍ବତନ ରାଜା ବୋଲି ଲେଖାଅଛି। ଟି.ଜେ.ମାଲ୍ଟବିଙ୍କ ଦ୍ୱାରା ଖ୍ରୀ. ୧୮୮୨ରେ ପ୍ରଣୀତ ଗଞ୍ଜାମ ଜିଲା ମ୍ୟାନୁଏଲ୍‌ରେ ଲେଖାଅଛି ଯେ ଅନ୍ୟତମ ସୁପରିଚିତ ଯଥା ସର୍ବାଧିକ ଖ୍ୟାତିବନ୍ତ ଓଡ଼ିଆ କବି ଉପେନ୍ଦ୍ରଭଞ୍ଜ ଗୁମୁସରର ଜନୈକ ରାଜା ଥିଲେ :-

"One of the best known and most celebrated authors in the language was Upendra Bhonja, one of the Rajas of Goomsar" (The Ganjam District Manual, p.164)

ହଣ୍ଟର ମଧ୍ୟ ତାଙ୍କ 'ଓଡ଼ିଶା'ରେ "Upendra Bhọnj, a raja of Gumsar" ଲେଖିଛନ୍ତି। ଘନ ଭଞ୍ଜଙ୍କ ବଂଶଧର ରାଜାମାନଙ୍କ ପଟକୁ ଆଉଜି ଥିବା ଓଡ଼ିଆ ଭଞ୍ଜ ବଂଶାବଳୀଗୁଡ଼ିକ ଉପେନ୍ଦ୍ରଭଞ୍ଜଙ୍କ ରାଜ୍ୟପ୍ରାପ୍ତି ବିଷୟ ଜଣାଇ ନଥିଲେ ବି ସେ ରାଜା ହୋଇଥିବା ନିଃସନ୍ଦେହ। ଅନ୍ୟଥା, ନୃପତି କି ନୃପକୁଳଚନ୍ଦ୍ର ଭାବରେ ସେ ଆତ୍ମପରିଚୟ ଦେଇ ନଥାନ୍ତେ। ସଂସ୍କୃତ ଭାଷାରେ ପ୍ରଣୀତ 'ରାଜମାଳିକା'ରେ ଉପେନ୍ଦ୍ର ଭଞ୍ଜ ଘନ ଭଞ୍ଜଙ୍କ ପୂର୍ବରୁ ରାଜା ହୋଇଥିବା କଥା ପରୋକ୍ଷରେ ସ୍ୱୀକାର କରାଯାଇଛି :-

ଧନଞ୍ଜୟ ସୁତଃ ଶ୍ରୀମାନ୍ ନୀଳକଣ୍ଠ ଇତି ଶ୍ରୁତଃ।
ତସ୍ୟ ପୁତ୍ରୋଽଭବଦ୍ଧୀମାନୁପେନ୍ଦ୍ର ଭଞ୍ଜ ସଂଜ୍ଞକ ॥
ଭାଷା ପ୍ରବନ୍ଧ ରଚନାଂ ଚକ୍ରେ ଧୀରୋ ମହାକବିଃ
କାଳେ ବିନଷ୍ଟା ସର୍ବେ ତେ ଘନଭଞ୍ଜୋ ମହୀପତି ॥

ଏଥିରେ ଧନଞ୍ଜୟ ଭଞ୍ଜଙ୍କୁ ହତ୍ୟା କରାଯାଇଥିବା କଥା ଲେଖା ନାହିଁ କି ଶିଶୁ ରଣଭଞ୍ଜଙ୍କର ରାଜତ୍ୱର ଉଲ୍ଲେଖ ନାହିଁ। ଧନଞ୍ଜୟଙ୍କ ପରେ ନୀଳକଣ୍ଠ ଓ ଉପେନ୍ଦ୍ରଭଞ୍ଜ ଓ ସେମାନଙ୍କର ଅନ୍ତେ ଘନ ଭଞ୍ଜ ରାଜା ହେବା ବିଷୟ ଲେଖାଅଛି। ଉପେନ୍ଦ୍ରଭଞ୍ଜଙ୍କ ମୃତ୍ୟୁ (କାଳେ ବିନଷ୍ଟା ସର୍ବେ ତେ) ପରେ ଘନଭଞ୍ଜ ରାଜା ହେଲେ ବୋଲି ଏଥିରେ କୁହାଯାଇଥିଲେ ହେଁ ତାହା କେବଳ ଧନଞ୍ଜୟ ଓ ନୀଳକଣ୍ଠଙ୍କ ମୃତ୍ୟୁବୋଲି ଧରିବାକୁ ପଡୁଛି।

ପୂର୍ବରୁ ସୂଚାଇ ଦିଆଯାଇଛି ଯେ ଆନୁମାନିକ ଖ୍ରୀ. ୧୭୧୮ ପାଖାପାଖି ଘନଭଞ୍ଜ ଇଚ୍ଛାପୁର ଅଟକବନ୍ଦୀ ଅବସ୍ଥାରୁ ମୁକୁଳି ଏଣେ ଚିକାକୋଲର ଫୌଜଦାର ଓ ତେଣେ ଖୋରଧାର ଗଜପତି ରାଜାଙ୍କ ସମର୍ଥନ ପାଇଁ ରାଜ୍ୟ ଅଧିକାର କରି ନେଇଛନ୍ତି। ନୀଳକଣ୍ଠଙ୍କ ଦେହାନ୍ତ ତାର କିଛିକାଳ ପୂର୍ବେ ଘଟିଥିବା ଓ ଉପେନ୍ଦ୍ର କିଛିକାଳ ରାଜଗାଦିରେ ବସିଥିବା ଅନୁମିତ ହୁଏ। ସୁଭଦ୍ରା ପରିଣୟ ସେତିକି ବେଳର ରଚନା।

୧୩. ରାଜ୍ୟଚ୍ୟୁତି :-

ଘନଭଞ୍ଜ ରାଜ୍ୟରୁ ତଡ଼ା ଖାଇ ମେଳିଆ ହେଲେ ଓ ନିଜାମ ସରକାରଙ୍କ ଦ୍ୱାରା ଇଛାପୁରଠାରେ ବନ୍ଦୀ ହୋଇ କେତେ କାଳ କଟାଇବା ପରେ ସେଠାର ଫୌଜଦାରଙ୍କୁ ସ୍ୱୀୟ ପରାକ୍ରମ ଓ ଆନୁଗତ୍ୟର ପରିଚୟ ଦେଇ ମନାଇଲେ। ସେ ସାରୁ ଓ ସିକିରି ନାମକ ଦୁଇଟି ଗ୍ରାମ ଇନାମ ସ୍ୱରୂପ ପାଇଲେ। ତାହାର କିଛି କାଳ ପରେ, ବୋଧହୁଏ ନୀଳକଣ୍ଠଙ୍କ ମୃତ୍ୟୁର ସୁଯୋଗ ନେଲେ, ବାର୍ଷିକ ସାତ ହଜାର ଟଙ୍କା ପେସ୍‌କସ୍ ଦେବାକୁ ଚୁକ୍ତିବଦ୍ଧ ହୋଇ ଫୌଜଦାରଙ୍କ ସହାୟତା ଓ ଖୋରଧା ଗଜପତିଙ୍କ ସମର୍ଥନ ପାଇ ଗୁମୁସରକୁ ପୁଣି ଦଖଲ କରିନେଲେ। ସୂର୍ଯ୍ୟମଣିଙ୍କ ଭଞ୍ଜବଂଶାବଳୀ ଓ ଗଙ୍ଗାପାଣିଙ୍କ ବଂଶାବଳୀ ଏହା ପଷ୍ଠ ଦଶ ଚତୁର୍ବିଂଶ ଶକାବ୍ଦରେ ଅର୍ଥାତ୍ ଖ୍ରୀ.୧୭୦୨ରେ ଘଟିଥିବା କହେ। ପୂର୍ବେ ଆଲୋଚିତ ଗଦ୍ୟ ଭଞ୍ଜବଂଶାବଳୀ ଦ୍ୱୟରେ ଧନଞ୍ଜୟଙ୍କ ମୃତ୍ୟୁ ଖ୍ରୀ. ୧୭୦୧ରେ ହୋଇଥିବା କଥା ଲେଖାଅଛି। ଏହାପରେ ନୀଳକଣ୍ଠଙ୍କ ରାଜତ୍ୱ ୨ ବର୍ଷ। ଶିଶୁ ରଣଭଞ୍ଜଙ୍କୁ ରାଜା ବୋଲି ଘୋଷଣା କରି ଗୋବିନ୍ଦ ଭଞ୍ଜ-ରଣଭଞ୍ଜଙ୍କ ରାଜତ୍ୱ ୪ ବର୍ଷ। ରଣ ଭଞ୍ଜଙ୍କ ହତ୍ୟା ପରେ ଘନଭଞ୍ଜଙ୍କ ବିରୋଧରେ ସଂଘର୍ଷ, ଘନଭଞ୍ଜଙ୍କ କାରାବାସ, କାରାବାସରୁ ମୁକୁଳି ଗୁମୁସର ପୁଣି ଦଖଲ କରିବା ପାଇଁ ଆୟୋଜନ ଆଦି ପାଇଁ ସମୟ ଦେବାକୁ 'ଚତୁର୍ବିଂଶ'ର ପ୍ରକୃତ ଚତ୍ୱାରିଂଶ ହେବ ବୋଲି ନିରୂପଣ କରାଯାଇ ପାରେ। ଅତଏବ, ଘନଭଞ୍ଜ ଉପେନ୍ଦ୍ରଭଞ୍ଜଙ୍କୁ ରାଜ୍ୟଚ୍ୟୁତ କରାଇବା ସମୟ ହେଉଛି ଖ୍ରୀ. ୧୭୧୮। ଏହିଠାରୁ ଘନଭଞ୍ଜଙ୍କ ରାଜତ୍ୱ ୩୭ବର୍ଷ। ବର୍ଷ ପରିମାଣଟି ପ୍ରାୟ ସର୍ବସମ୍ମତ। ତେଣୁ ଘନଭଞ୍ଜଙ୍କ ଦେହାନ୍ତ ହେଉଛି ଖ୍ରୀ. ୧୭୫୫ରେ। ଘନଭଞ୍ଜଙ୍କ ପରେ ତାଙ୍କ ପୁଅ ୧୯ବର୍ଷ ରାଜତ୍ୱ କରିଥିବା ଗଣନା ତାରିଣୀଚରଣ ରଥ ତାଙ୍କ ଗୁମୁସର ଇତିହାସରେ ଦେଇଛନ୍ତି (ଯାହାକୁ ଚିନ୍ତାମଣି ମହାନ୍ତି ଗୁମୁସର କାବ୍ୟରେ ସମର୍ଥନ ଜଣାଇଛନ୍ତି)। ତେବେ କୃଷ୍ଣଭଞ୍ଜଙ୍କ ଦେହାନ୍ତ କାଳ ହେଉଛି ଖ୍ରୀ.୧୭୭୪ ରେ। ପ୍ରକୃତରେ କୃଷ୍ଣଭଞ୍ଜଙ୍କ ଦେହାନ୍ତ ଖ୍ରୀ. ୧୭୭୩ରେ ହୋଇଥିବା କଥା ଇଂରାଜି ସରକାରଙ୍କ ନଥିପତ୍ରରୁ ତଥା ସବୁ ବଂଶାବଳୀରୁ ଜଣାଯାଏ। ଗଣନାରେ ବର୍ଷଟିଏ ତାରତମ୍ୟ ଖଣ୍ଡିଆ ବର୍ଷକୁ ଗୋଟା ବର୍ଷ ବୋଲି ଗଣନା କରିବା ଯୋଗୁଁ ଘଟିଥିବା ସମ୍ଭବ।

ଖ୍ରୀ. ୧୭୧୮ରେ ଘନଭଞ୍ଜ ଗୁମୁସର ଦଖଲ କରିନେବା ପରେ ଉପେନ୍ଦ୍ରଭଞ୍ଜ ରାଜ୍ୟରୁ ଅନ୍ତର ହୋଇଯାଇଥିବା ସୁନିଶ୍ଚିତ। ଏତିକିବେଳେ ସେ ମାମୁଙ୍କ ରାଜ୍ୟ ନୂଆଗଡ଼ରେ ଆଶ୍ରୟ ନେଇଥିବା ସମ୍ଭବ।

ଘନଭଞ୍ଜ ରାଜ୍ୟାଧିକାର କରିବା ପରେ ଉପେନ୍ଦ୍ରଭଞ୍ଜ ଆଉ ନିଜକୁ ନୃପତି ବୋଲାଇ ନାହାନ୍ତି। ପ୍ରଥମେ ପ୍ରଥମେ ଘନଭଞ୍ଜଙ୍କୁ ଚାରିପଟର ରାଜାମାନେ ସେ ରାଜପୁତ୍ର ନ ହୋଇ ଆଟରାଜାଙ୍କ ପୁତ୍ର ହୋଇଥିବାରୁ ସମର୍ଥନ ଦେଉନଥିଲେ।

ଏପରିକି ତାଙ୍କର ରାଜ୍ୟାଭିଷେକ ବିଧି ମଧ୍ୟ ପାଳିତ ହୋଇ ନଥିଲା। କିନ୍ତୁ, ଘନଭଞ୍ଜ ଖୋରଧା ରାଜାଙ୍କ ସମର୍ଥନ ପାଇଯିବାରୁ ନିଜ ଆସ୍ଥାନକୁ ଦୃଢ଼ କରିପାରିଥିଲେ। ଫଳରେ ରାଜସିଂହାସନ ପ୍ରତି ଉପେନ୍ଦ୍ରଙ୍କ ନ୍ୟାଯ୍ୟ ଦାବି ଉପେକ୍ଷିତ ହୋଇଥିଲା।

**୧୪. ମଙ୍ଗରାଜ ଉପାଧି :-**

ଉପେନ୍ଦ୍ରଭଞ୍ଜଙ୍କର ଅନ୍ୟତର ଉପାଧି 'ମଙ୍ଗରାଜ'ର ଉଲ୍ଲେଖ ତାଙ୍କର ଭାବବତୀ, କୁଞ୍ଜବିହାର, ଚଉପଦୀଭୂଷଣ, ଯମକରାଜ ଚଉତିଶା, ରସପଞ୍ଚକ ଓ ବନ୍ଧୋଦୟରେ ମିଳେ। ରସପଞ୍ଚକ ଓ ବନ୍ଧୋଦୟ ନିଶ୍ଚିତ ଭାବରେ କବିଙ୍କର ପରିଣତ ବୟସର ଲେଖା। ତେଣୁ କବି ପରିଣତ ବୟସରେ ଏହି ଉପାଧିଟିକୁ ପାଇଥିବା ଅନୁମିତ ହୁଏ।

ମୁଁ ଅନ୍ୟତ୍ର 'ଭଞ୍ଜଙ୍କ ରଚନାରେ ଜ୍ୟୋତିଷିକ ତଥ୍ୟ' ଅଧ୍ୟାୟରେ ପ୍ରତିପାଦିତ କରିଛି ଯେ ଲାବଣ୍ୟବତୀ କାବ୍ୟର ରଚନାକାଳ ଖ୍ରୀ. ୧୭୩୦ରେ କିମ୍ବା ତାର ଅଳ୍ପକାଳ ପରେ ହେବାହିଁ ସମ୍ଭବପର। ଲାବଣ୍ୟବତୀରେ କେବଳ ମାତ୍ର ବୀରବର ଉପାଧିର ଉଲ୍ଲେଖ ଅଛି, 'ମଙ୍ଗରାଜ'ର ନାହିଁ। ତେଣୁ, କବି 'ମଙ୍ଗରାଜ' ଉପାଧିଟିକୁ ଖ୍ରୀ. ୧୭୩୫ ନିକଟରେ ପାଇଥିବା ସମ୍ଭବ।

**୧୫. କବିଖ୍ୟାତି :-**

ଉପେନ୍ଦ୍ରଭଞ୍ଜଙ୍କର କବିତ୍ୱ ସିଦ୍ଧି ଅସାମାନ୍ୟ କିନ୍ତୁ ତାଙ୍କର ସେହି ସିଦ୍ଧିକୁ ସ୍ୱୀକୃତି ଦେବାଭଳି ତାଙ୍କର ଉପାଧି କିଛି ନଥିଲା। ତାଙ୍କର ଦୁଇଟିଯାକ ଉପାଧି ରାଜକୀୟ ଥିଲା। ଜଣେ ସୁକବି ଭାବରେ ସ୍ୱୀୟ ଜୀବଦ୍ଦଶାରେ ମଧ୍ୟ ବିଶେଷ ଖ୍ୟାତି ଅର୍ଜନ କରିଥିଲେ ଓ ସେ ବିଷୟରେ ନିଜେ ସଚେତନ ଥିଲେ।

''ଉପେନ୍ଦ୍ର ହେଲା କବିରେ ଦକ୍ଷ'' (ଉପ.କକାର ଚଉତିଶା)।

''କହେ ଉପେନ୍ଦ୍ର ଭଞ୍ଜ ଉତ୍ତମ କବି ପୁଞ୍ଜ
ଦୁର୍ଲଭ ମାର୍ଗେ ମୋ ସଂଚାର'' (କୋ.୧୩/୧୮)।

ଅଳଂକାର ଓ ଛନ୍ଦ ଶାସ୍ତ୍ରରେ ତାଙ୍କର ଅବାଧ ପ୍ରବେଶ ଥିବା କଥା ଓ ତାଙ୍କର କାବ୍ୟ କାଳିଦାସଙ୍କ କୃତି ସଙ୍ଗେ ତୁଳନୀ ହେବା କଥା ମଧ୍ୟ ସେ କହିଛନ୍ତି ରସପଞ୍ଚକ ଶେଷକୁ :-

କଥିତ କୀର୍ତ୍ତି ଗୀତେ ଏହି ମତି କାଳିଦାସ ବାଣୀ ପରାୟ ସ୍ଥିତି।
କଳା ପିଙ୍ଗଳ ଶାସ୍ତ୍ରେ ଅନର୍ଗଳ କେତେ ପ୍ରବନ୍ଧେ ପୂରାଇ ଭୂତଳ॥

ତାଙ୍କର ଅନ୍ୟତମ କାବ୍ୟ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'କୁ ସେ ଶ୍ରୀହର୍ଷଙ୍କର 'ନୈଷଧ ଚରିତ' ପରି ବୋଲି କହିଛନ୍ତି : ''ଘେନ ନୈଷଧ ପରାଏ; ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରାଏ'' (କୋ.୧୧/୩୧)।

ରାମଲୀଳାମୃତରେ କବି ନିଜକୁ ସୁକବି ବୋଲି ଅଭିହିତ କରିଛନ୍ତି : ''ସୁକବି ଭଞ୍ଜ ବୀରବରର ରଚନା''। ପରେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ମଧ୍ୟ ତାଙ୍କୁ ସୁକବି ବୋଲି କହିଛନ୍ତି ''ଉପେନ୍ଦ୍ରଭଞ୍ଜ ସୁକବି'' (ଯୁଗଳ ରସାମୃତ ଭଉଁରୀ.୪୮ ଛାନ୍ଦ)

'ଆଜ ଦେଖିଲିରେ' ମାନ ଉଦ୍ଧାରଣ କରହେ କାରଣ' ଚଉପଦୀ ଦୁଇଟିରେ ଉପେନ୍ଦ୍ର 'କବିକୁଳଚନ୍ଦ୍ର' ବୋଲି ଆତ୍ମପରିଚୟ ଦେଇଛନ୍ତି। କବି ସୂର୍ଯ୍ୟମଣି ଉପେନ୍ଦ୍ର ଭଞ୍ଜ କବିରାଜ ବୋଲି ଲେଖିଛନ୍ତି : "ତାହାଙ୍କର କୁମର ଉପେନ୍ଦ୍ରଭଞ୍ଜ, ଛାନ୍ଦ କବିତ୍ୱରେ ସେହି କବିରାଜ" (ଭଞ୍ଜବଂଶାବଳୀ ୫/୨୯)। ସଂସ୍କୃତ ରାଜମାଳିକା ତାଙ୍କୁ ମହାକବି ଆଖ୍ୟା ଦେଇଛି। ମୃଗୁଣୀ ସ୍ତୁତି ନାମକ ଏକ କ୍ଷୁଦ୍ର ରଚନା ଉପେନ୍ଦ୍ରଭଞ୍ଜଙ୍କର ବୋଲି କୁହାଯାଉଥିଲେ ହେଁ ତାହାର ଭଣିତିରେ 'କବି ଚକ୍ରବରତି' ରହିଛି। ବୌଦର ରାଜବଂଶାବଳୀ (ଖ୍ରୀ. ୧୮୭୨)ରେ ତାଙ୍କୁ କବିଚନ୍ଦ୍ର ବୋଲି ଅଭିହିତ କରାଯାଇଛି :

ଘୁମୁସର ରାଜାଙ୍କ ନନ୍ଦନ ଉପଇନ୍ଦ୍ର।
ଉତ୍କଳ ମଣ୍ଡଳରେ ଅଟନ୍ତି କବିଚନ୍ଦ୍ର॥

କେତେକ ତାଳପତ୍ର ପୋଥିର ଲେଖାନକାରମାନେ ମଧ କବିଙ୍କ ରଚନାର ପ୍ରଶଂସା ବାକ୍ୟ ନକଲରେ ଯୋଗ କରିଥିବା ଦେଖାଯାଏ। ଲାବଣ୍ୟବତୀ କାବ୍ୟର ନକଲ ଆରମ୍ଭରେ ଜଣେ ଲେଖନକାର ନିମ୍ନୋକ୍ତ ପ୍ରଶଂସା ବାକ୍ୟ ଲେଖିଛି :

"ଉପେନ୍ଦ୍ର ମୁଖଭାରତୀ କବିକୁଳାଧିପାଳଂକୃତି, ଯଥା ନଭସି ଭାନ୍ତରେ ସମୁଦିତ କ୍ଷପାନାୟକ, ତଥୈବ ବିଦୁଷାଂ ମନଃ ସରସି ହଂସବଦ୍ କ୍ରୀଡ଼ତି ରସପ୍ରକର ମାଧୁରୀ ରସିକଃ ବେତ୍ତି ଯଃ ସୋତ୍ତମଃ॥

ଏପରି ଆଖ୍ୟାମାନ ପ୍ରାଚୀନ ହେଲେହେଁ ଏହା ମଧରୁ କୌଣସିଟି ଲୋକପ୍ରିୟତା ଅର୍ଜନ କରିପାରିନାହିଁ, ଯେପରିକି ଆଧୁନିକ 'କବିସମ୍ରାଟ' ଆଖ୍ୟା ଅର୍ଜନ କରିଛି। 'କବି ସମ୍ରାଟ' ଆଖ୍ୟାଟିକୁ ବୋଧହୁଏ ପ୍ରଥମେ ଜଗବନ୍ଧୁ ସିଂହ ତାଙ୍କୁ ପ୍ରାଚୀନ ଉତ୍କଳ ଲେଖା ମଧରେ ଦେଇଛନ୍ତି। "କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଉତ୍କଳରେ ସୁବିଖ୍ୟାତ ଓ ସୁପରିଚିତ" (ପୃ.୧୫୧, ପୁସ୍ତକ ଆକାରରେ ପ୍ରକାଶ ପୂର୍ବରୁ ଏହା ସାହିତ୍ୟ ପତ୍ରରେ ମଧ ପ୍ରକାଶ ପାଇଥିଲା)। କିନ୍ତୁ, ଅନ୍ୟତ୍ର ସେହି ସିଂହ ମହାଶୟ "କବିଚନ୍ଦ୍ର ଉପେନ୍ଦ୍ରଭଞ୍ଜ" ବୋଲି ମଧ ଲେଖିଯାଇଛନ୍ତି (ପୃ.୭୮)। ତାଙ୍କର ଅର୍ଦ୍ଧଶତାବ୍ଦୀ ପୂର୍ବରୁ 'ଉତ୍କଳ ଦୀପିକା' ତାହାର ତା.୨୦-୧୦-୧୮୬୬ ସଂଖ୍ୟାରେ ଉପେନ୍ଦ୍ରଭଞ୍ଜଙ୍କୁ " ଓଡ଼ିଷ୍ୟାର କବିକୁଳକେଶରୀ" କହିଥିଲା।

୧୬. କୃତି ସମର୍ପଣ :-

କବି ଭାବରେ ଉପେନ୍ଦ୍ରଭଞ୍ଜଙ୍କର ଖ୍ୟାତି ବ୍ୟାପିବା ପରେ ଅନେକ ରାଜ୍ୟର ରାଜା ତାଙ୍କ ନାମରେ ଭଣିତି କରି କାବ୍ୟ ରଚନା କରିବା ପାଇଁ କବିଙ୍କୁ ଅନୁରୋଧ କରୁଥିଲେ। କବିମାନେ ରାଜପୃଷ୍ଠପୋଷକତା ବିନିମୟରେ ପୃଷ୍ଠପୋଷକ ରାଜାଙ୍କ ନାମରେ କାବ୍ୟ ପ୍ରଣୟନ କରିବା ଏକ ସୁପ୍ରାଚୀନ ବିଶିଷ୍ଟ ପରଂପରା। ଏଥିରୁ ଅନୁମେୟ ଯେ, ରାଜ୍ୟଚ୍ୟୁତ ଉପେନ୍ଦ୍ରଭଞ୍ଜ ଅନେକ ରାଜାଙ୍କର ଆନୁକୂଲ୍ୟ ପାଉଥିଲେ। 'ବନ୍ଧୋଦୟ'ରେ ସ୍ୱରଚିତ କାବ୍ୟାଦିର ତାଲିକା ଦେଇ ସେ ଲେଖିଛନ୍ତି :-

ତ୍ରୈଲୋକ୍ୟମୋହିନୀ ଆଦି ଯେ ଗୀତ। ନିର୍ମିତ ଛାନ୍ଦପୋଥି ପାଞ୍ଚ ସାତ ॥
ସେ ଅର୍ଥ ପାର୍ଥିବ-ମାର୍ଗଣେ ପୁଣ। ହୋଇଛି ଯେଣୁକରି ବିତରଣ ॥
ବାଲ୍ମୀକେ ମହାନାଟକ ପ୍ରକାରେ। ଦତ୍ତ ହେଲା ପ୍ରାୟ ହନୁମନ୍ତରେ ॥
ଏଣୁ ସେ ଲେଖା ନୋହିଲା ଲେଖାରେ। ନ ଗ୍ରହି ଦାନଧନ ଭୂଲେଖରେ ॥

କବି କହିଛନ୍ତି: ସେ ତ୍ରୈଲୋକ୍ୟମୋହିନୀ ଆଦି ପାଞ୍ଚସାତ ଖଣ୍ଡ ଛାନ୍ଦକାବ୍ୟ ଲେଖି ରାଜାମାନଙ୍କୁ ଦେଇଛନ୍ତି। ରାଜାମାନେ କାବ୍ୟରୂପ ଧନ ମାଗିଛନ୍ତି ଓ ବାଲ୍ମୀକି ମହାନାଟକ ଲେଖି ହନୁମାନଙ୍କ ନାମରେ ଭଣିତି କରିଥିବା ପରି କବି ଏହି କାବ୍ୟଗୁଡ଼ିକୁ ରାଜାମାନଙ୍କ ନାମରେ ଭଣିତ କରିଛନ୍ତି। ବ୍ରାହ୍ମଣ (ଭୂଲେଖ)କୁ ପ୍ରଦତ୍ତ ଧନ ଫେରାଇ ନେବା ଅନୁଚିତ ତେଣୁ କବି ଏହି ଅର୍ପିତ ଗ୍ରନ୍ଥଗୁଡ଼ିକୁ ନିଜର ଲେଖାଭାବରେ ଗଣି ନାହାନ୍ତି।

କବି କେଉଁ ରାଜା(ମାନ)ଙ୍କୁ ଏହିପରି ଭାବରେ କେଉଁକେଉଁ କାବ୍ୟ ଦେଇଛନ୍ତି ତାହା ଅନୁମାନ କରିହେଉନାହିଁ। କବି ତୈଲୋକ୍ୟମୋହିନୀ ନାମଟିକୁ ଦେଇଛନ୍ତି। ରାଜା ଘନଭଞ୍ଜଙ୍କ ଭଣିତି ଯୁକ୍ତ 'ତ୍ରୈଲୋକ୍ୟ ମୋହିନୀ' ନାମକ କାବ୍ୟଟିଏ ମିଳୁଛି। ମୁଁ ପୂର୍ବେ ଅନୁମାନ କରିଥିଲି ଯେ ଏହା ଉପେନ୍ଦ୍ରଭଞ୍ଜ ଲେଖି ଘନଭଞ୍ଜଙ୍କୁ ଅର୍ପଣ କରିଥିଲେ। କିନ୍ତୁ ଇତିମଧରେ ଡଃ ଦୁର୍ଗାମାଧବ ନନ୍ଦଙ୍କ ଉଦ୍ୟମରେ ଆଉ ଗୋଟିଏ 'ତ୍ରୈଲୋକ୍ୟମୋହିନୀ' ଲୋକଲୋଚନକୁ ଆସିଛି। ଏହି ନବାବିଷ୍କୃତ ତ୍ରୈଲୋକ୍ୟ ମୋହିନୀର ଭଣିତି 'ଯୁବଭଞ୍ଜ' ନାମରେ ହୋଇଛି। ଯୁବଭଞ୍ଜ କେଉଁରାଜ୍ୟର ରାଜା ତାହା ସ୍ପଷ୍ଟ ହେଉନାହିଁ। ଏ ବିଷୟ 'ଉପେନ୍ଦ୍ରଭଞ୍ଜଙ୍କ ରଚନାବଳୀ' ଅଧାୟରେ ଅଧିକ ଆଲୋଚିତ ହେବ।

**୧୭. ଶେଷ ସମୟ :-**

ପ୍ରାୟ ଖ୍ରୀ. ୧୭୩୫ ନିକଟରେ ମଙ୍ଗରାଜ ଉପାଧି ପାଇବା ପରେ କବି ମଙ୍ଗରାଜ ଭଣିତି ଯୁକ୍ତ ରଚନାଗୁଡ଼ିକୁ ରଚନା କରିଥିଲେ। ତେଣୁ କବିଙ୍କ ଲେଖନୀ ଚାଳନା ପ୍ରାୟ ଖ୍ରୀ. ୧୭୪୦ ଯାଏଁ ସକ୍ରିୟ ଥିବା ଅନୁମିତ ହୁଏ।

ଓଡ଼ିଶା ମ୍ୟୁଜିଅମ୍‌ର ଗୋଟିଏ 'ଲାବଣ୍ୟବତୀ' ତାଳପତ୍ର ପୋଥି (ସଂ ୦୨୧୯୨୬) ଶେଷକୁ ଲେଖାଅଛି :-

ଶ୍ରୀ ବୀରକେଶରୀ ପଞ୍ଚଶ ଅଙ୍କେ। ଏ ଗୀତ ପୂର୍ଣ୍ଣ ହେଲା ନିଃଶଙ୍କେ।
ନୀଳକଣ୍ଠ ଭଞ୍ଜ ଜ୍ୟେଷ୍ଠ ତନୁଜ। ନାମମୋହର ଉପଇନ୍ଦ୍ର ଭଞ୍ଜ ॥
ତାରକମନ୍ତ୍ର ପରସାଦୁକରି। କବିତ୍ୱପଣ ଭବେ ମୋହରି ॥
ପ୍ରଭୁ ରଘୁବଂଶ କଇରବ ଚନ୍ଦ୍ର। ସୀତାନୟନ ଚକୋର ଚନ୍ଦ୍ର ॥
ସୀତାରାମ ଲକ୍ଷ୍ମଣ ଷଟପଦ। ପଦ୍ମେଣ ମୋ ମନ ଷଟପଦ ॥
ସୁଜନମାନଙ୍କୁ ମୋର ଜଣାଣ। ଦୋଷ ନ ଘେନିଣ ମୋହର ଗୁଣ ॥

ଏହି ଅଂଶରେ ଏତେଗୁଡ଼ିଏ ପ୍ରମାଦ ରହିଛି ଏହା ଉପେନ୍ଦ୍ରଭଞ୍ଜଙ୍କ ପୋଖତ ହାତର ଲେଖା ବୋଲି ବିଶ୍ୱାସ ଜନ୍ମୁନାହିଁ। 'ନାମ ମୋହର ଉପଇନ୍ଦ୍ର ଭଞ୍ଜ', 'ପ୍ରଭୁରଘୁବଂଶ କଇରବ ଚନ୍ଦ୍ର' ଓ 'ଦୋଷ ନ ଘେନିଣ ମୋହର ଗୁଣ' ପାଦରେ ଅକ୍ଷରଟିଏ ଲେଖା ଅଧିକା ଅଛି। ଏ ଦୋଷ ଅନୁଲେଖକ 'ମୋର'କୁ ମୋହର ଓ 'କୈରବ' କୁ କଇରବ ଲେଖିଥିବା ଯୋଗୁଁ ହେବା ଅସମ୍ଭବ ନୁହେଁ। ଉଦ୍ଧୃତିର 'କଇରବଚନ୍ଦ୍ର' ଓ 'ଦୋଷ ନ ଘେନିଣ ମୋହର ଗୁଣ' ଅଭିବ୍ୟକ୍ତିର ଅର୍ଥ ଜଣାପଡୁନାହିଁ। ଏଥିରୁ ଅନୁମିତ ହୋଇପାରେ ଯେ କୌଣସି ଅଳ୍ପବିଦ୍ୟ ଅନୁଲେଖକ ନିଜେ ପୋଥି ଉତାରିଥିବା କାଳକୁ ଏଠାରେ ଲେଖି ଉପେନ୍ଦ୍ରଭଞ୍ଜଙ୍କ ନାମରେ ଭଣିତି ଦେଇଅଛି। ଅତଏବ ଏହା ଉପରେ ନିର୍ଭର କରି ଉପେନ୍ଦ୍ର ଭଞ୍ଜ ବୀରକେଶରୀ ଦେବଙ୍କ ୨୫ଅଙ୍କ ଯାଏଁ ଜୀବିତ ଥାଇ ସେହିବର୍ଷ 'ଲାବଣ୍ୟବତୀ' କାବ୍ୟର ପୁନର୍ଲେଖନ (କାରଣ ଲାବଣ୍ୟବତୀର ରଚନା ଖ୍ରୀ. ୧୭୩୦ ନିକଟରେ ହେବା ଅନ୍ୟଥା ପ୍ରମାଣିତ) କରିଥିଲେ ବୋଲି ନିରୂପଣ କରିବା ଯୁକ୍ତିଯୁକ୍ତ। ହେବ ନାହିଁ। ଯଦିଚ, କବିମାନେ କାବ୍ୟକୁ ପୁନର୍ଲେଖନ କରିବା ଅବସରରେ ପାଠରେ ଯୋଗବିଯୋଗ କରିବା ଜଣାଅଛି (ଯଥା :- ନରସିଂହ ସେଣ ପ୍ରଥମେ ପରିମଳାବତୀ ଲେଖି ପରେ ସାମାନ୍ୟ ପରିବର୍ତ୍ତିତ ରୂପରେ 'ପରିମଳା' କାବ୍ୟ ପ୍ରସ୍ତୁତ କରିଥିଲେ)। ବୀରକେଶରୀଙ୍କ ୨୫ଅଙ୍କ ଖ୍ରୀ.୧୭୫୬ରେ ପଡ଼ିଥିଲା।

ବଉଦର ପଦ୍ମଲୋଚନ ରାଜଗୁରୁଙ୍କ ଦ୍ୱାରା ଖ୍ରୀ. ୧୮୭୨ରେ ରଚିତ 'ବଂଶାନୁଚରିତ' (ବୌଦରାଜବଂଶାବଳୀ ନାମରେ ଖ୍ରୀ. ୧୯୯୬ରେ ପ୍ରକାଶିତ) ଅନୁଯାୟୀ ଉପେନ୍ଦ୍ରଭଞ୍ଜ ବଉଦର ରାଜା ନୀଳାମ୍ବର ଭଞ୍ଜଙ୍କ ରାଜସଭାକୁ ଯାଇ ଶ୍ରୀକୃଷ୍ଣ ଲୀଳାମୃତ ନାମକ ଏକ କାବ୍ୟ ନୀଳାମ୍ବରଙ୍କ ନାମରେ ଭଣିତି କରି ସମର୍ପଣ କରିଥିଲେ (ପୃ.୩୦୦) :-

ଘୁମୁଷର ରାଜାଙ୍କ ନନ୍ଦନ ଉପଇନ୍ଦ୍ର। ଉତ୍କଳମଣ୍ଡଳରେ ଅଟନ୍ତି କବିଚନ୍ଦ୍ର ॥
ଶ୍ରୀକୃଷ୍ଣଲୀଳାମୃତ ପ୍ରବନ୍ଧ ନିର୍ମାକରି। ନୀଳାମ୍ବର ଦେବଙ୍କ ନାମରେ ମୋଦଭରି ॥
ସଭାକରି ରାଜନ ବସିଣଥିଲେ ଦିନେ। ଘୁମୁଷର ରାଜ୍ୟରୁ ଆସିଲେ ତତକ୍ଷଣେ ॥
ଚିତ୍ରପୁସ୍ତକରେ ସେ ଗୀତକୁ ଲେଖିକରି। ଭେଟିଲେ ଯେଉଁଠାରେ ବିଜୟ ଦଣ୍ଡଧାରୀ ॥
ଦେଖିଣ ନରପତି ଆଦର ତାଙ୍କୁ କଲେ। ବହୁତ ସୁନିଆରେ ହରଷେ ବୋଧ କଲେ ॥
ଆପଣା ନିଜ ଦେଶେ କ୍ରମରେ ଗଲେ ଚଳି। ସେ ଗୀତ ରାଜା କଲେ ହୃଦରେ ମୁକ୍ତାମାଳି ॥

ବଂଶାନୁଚରିତ ଅନୁସାରେ ନୀଳାମ୍ବର ଘୁମୁସର ରାଜାଙ୍କ ମୃତ୍ୟୁଶଯ୍ୟା ନିକଟରେ ଗୁମୁସରରେ ଥିଲେ। ଏହା ଖ୍ରୀ. ୧୭୭୩ର ଘଟନା। ଏହାର କିଛି ଦିନଠି ନୀଳାମ୍ବରଙ୍କ ଦେହାନ୍ତ ହେଲା ଓ ସେ ମୋଟ ୧୮ ବର୍ଷ ରାଜତ୍ୱ କରିଥିବା କଥା ବଂଶାନୁଚରିତ କହେ। ତେଣୁ ନୀଳାମ୍ବରଙ୍କ ରାଜତ୍ୱ ଖ୍ରୀ. ୧୭୫୬ରୁ ୧୭୭୪ ଥିବା ଜଣାଯାଏ। ତାଙ୍କ ସମୟରେ ଉପେନ୍ଦ୍ର ବଉଦ ଯାଇଥିବା ବର୍ଣ୍ଣନାକୁ ନାନା କାରଣରୁ ଗ୍ରହଣ କରି ହେଉ ନାହିଁ। ପ୍ରଥମ କାରଣ ହେଲା, ଉପେନ୍ଦ୍ର ଗୁମୁସରରୁ ବଉଦ ଯାଇଥିବା ଓ

ସେଠାରୁ ଗୁମୁସରକୁ ବାହୁଡ଼ିବା ବର୍ଣ୍ଣନା ବଂଶାନୁଚରିତ ଦିଏ। କିନ୍ତୁ, ଉପେନ୍ଦ୍ର ଭଞ୍ଜ ଖ୍ରୀ. ୧୭୧୮ ନିକଟରେ ରାଜ୍ୟ ହରାଇବା ପରେ ନୂଆଗଡ଼ ପଳାଇଛନ୍ତି ଓ ସେଠାରୁ ଗୁମୁସରକୁ ଫେରିବା ସମ୍ଭବପର ନୁହେଁ। ଦ୍ୱିତୀୟ କାରଣ ହେଲା,, ନୀଳାମ୍ବର ଘନଭଞ୍ଜଙ୍କ ପୁଅ କୃଷ୍ଣଭଞ୍ଜଙ୍କର ଅତ୍ୟନ୍ତ ପ୍ରୀତିପାତ୍ର ଥିବା ପ୍ରମାଣ ବଂଶାନୁଚରିତ ଦିଏ। ଉପେନ୍ଦ୍ରଭଞ୍ଜ ତାଙ୍କ ବିପକ୍ଷ ଘନଭଞ୍ଜଙ୍କ ପୁଅର ପ୍ରୀତିପାତ୍ରର ଅନୁଗତ ରହିବା ବର୍ଣ୍ଣନା ସତ୍ୟମୂଳକ ହୋଇନପାରେ। ତୃତୀୟ କାରଣ ହେଲା, ନୀଳାମ୍ବର ଉପେନ୍ଦ୍ରଭଞ୍ଜଙ୍କର ପୁତୁରା ଲେଖା ହେବେ, ବୟସରେ ତାଙ୍କଠାରୁ ପ୍ରାୟ ୨୫ବର୍ଷ ସାନ। ସତୁରିରୁ ଅଧିକ ବୟସରେ ଉପେନ୍ଦ୍ର ନୀଳାମ୍ବରଙ୍କ ପାଖକୁ ଯାଇ ଅଯାଚିତ ଭାବରେ ତାଙ୍କ ନାମରେ ଗୋଟିଏ କାବ୍ୟ ଭଣିତି କରି ଅର୍ପଣ କରିଥିବା ବର୍ଣ୍ଣନା ଉପେନ୍ଦ୍ରଙ୍କ 'ପାର୍ଥିବ-ମାର୍ଗଣ'ଙ୍କୁ ସେ ଗ୍ରନ୍ଥଦେବା ବକ୍ତବ୍ୟର ବିରୁଦ୍ଧାଚରଣ କରୁଛି। ଚତୁର୍ଥ କାରଣ ହେଲା, ପଦ୍ମଲୋଚନଙ୍କ ପୂର୍ବରୁ ଜନ୍ ବୀମସ୍ 'କୃଷ୍ଣଲୀଳାମୃତ' ସଂଗ୍ରହ କରି ଯେଉଁ ଟିପ୍ପଣୀ ପ୍ରସ୍ତୁତ କରିଥିଲେ (ହଣ୍ଟରଙ୍କ 'ଓଡ଼ିଶା'ର ଓଡ଼ିଶାର ସାହିତ୍ୟ ଶୀର୍ଷକ ନବମ ପରିଶିଷ୍ଟରେ ମୁଦ୍ରିତ) ତଦନୁସାରେ କୃଷ୍ଣଲୀଳାମୃତର କବି ନୀଳାମ୍ବର ଭଞ୍ଜ ହଳଦିଆର ରାଜା ଥିଲେ। ନୀଳାମ୍ବରଙ୍କ ଭଣିତି ଥାଇ ବହୁଚଉପଦୀ ଓ ବନ୍ଧ ରଚନା ମିଳୁଛି ଯାହା ପ୍ରମାଣ ଦେଉଛି ଯେ ନୀଳାମ୍ବର, ସେ ଯେଉଁଠାର ରାଜା ହୁଅନ୍ତୁ ପଛକେ, ନିଜେ ଜଣେ କବିଥିଲେ।

କେତେକ ଆଲୋଚକ ମନେ କରନ୍ତି ଯେ ଉପେନ୍ଦ୍ରଭଞ୍ଜ ତାଙ୍କ ଲେଖାରେ ଠାଏଁ ଠାଏଁ ବ୍ୟକ୍ତ କରିଥିବା ଜୀବନଦର୍ଶନ ଓ ମତାମତ ତାଙ୍କର ବ୍ୟକ୍ତିଗତ ଜୀବନର ଅଭିଜ୍ଞତାରୁ ହିଁ ସଂଗ୍ରହ କରିଥିବା ସମ୍ଭବ। ସବୁକବି ପ୍ରାଚୀନ ଗ୍ରନ୍ଥାଦିର ଅଧ୍ୟୟନରୁ, ସମସାମୟିକ ସମାଜର ଅନୁଭବରୁ ତଥା ସ୍ୱୀୟ ବିଚାରବୁଦ୍ଧିର ପ୍ରୟୋଗରୁ ଜୀବନ ଦର୍ଶନ ସଂଗ୍ରହ କରିଥାନ୍ତି ଓ କାବ୍ୟରେ କଳ୍ପନାଶକ୍ତି ଖଟାଇ ଚରିତୋପଯୋଗୀ, ଘଟନାନୁକୂଳ ମତାମତ ସମଧିକତଃ ପ୍ରକାଶ କରିଥାନ୍ତି। ଏହି କାରଣରୁ ଉପେନ୍ଦ୍ର କାବ୍ୟରେ ଲେଖିଥିବା ମତାମତକୁ ତାଙ୍କ ଜୀବନବୃତ୍ତାନ୍ତ ସହିତ ଯୋଡ଼ିବା ଅବିଚାର ହେବ। ସେ ଲେଖିଛନ୍ତି "ସଙ୍ଗ ବେଶ୍ୟାର, ନାହିଁ ଯାହାର, ସେ ରସ ନଜାଣେ ପଶୁ ଗୁଆର" (ରସପଞ୍ଚକ)। ଏଥିରୁ ତାଙ୍କ ଚରିତ୍ରର କଳନା କରା ନ ଯାଉ।



ସପ୍ତମ ଅଧ୍ୟାୟ

# ଉପେନ୍ଦ୍ରଭଞ୍ଜଙ୍କ ପ୍ରାରମ୍ଭିକ କୃତି

'ଉପେନ୍ଦ୍ର ଭଞ୍ଜଙ୍କର ଜୀବନ ବୃତ୍ତାନ୍ତର ଅନ୍ୱେଷଣ' ଅଧ୍ୟାୟରେ ଆଲୋଚିତ ହୋଇଛି ଯେ ଉପେନ୍ଦ୍ର ଭଞ୍ଜଙ୍କ ଆଦ୍ୟ ରଚନା ବିଷୟରେ ଦୁଇଟି ପରସ୍ପର ବିରୋଧୀ କିଂବଦନ୍ତୀକୁ ପଣ୍ଡିତମାନେ ପ୍ରଚାର କରିଛନ୍ତି। ଗୋଟିଏ କିଂବଦନ୍ତୀ ବୈଦେହୀଶ ବିଳାସକୁ ପ୍ରଥମ ରଚନା ବୋଲି ଦର୍ଶାଉଥିବା ବେଳେ ଅନ୍ୟଟି ଲାବଣ୍ୟବତୀ ପ୍ରଥମ ରଚନା ବୋଲି କହୁଛି। ଦେଖାଇ ଦିଆଯାଇଛି ଯେ ଦୁଇଟିଯାକ କିଂବଦନ୍ତୀର ଅସତ୍ୟତା ଖୋଦ୍ ଉପେନ୍ଦ୍ର ଭଞ୍ଜଙ୍କ ଉକ୍ତି ଦ୍ୱାରା ପ୍ରମାଣିତ ହେଉଛି। ଉପେନ୍ଦ୍ର ଭଞ୍ଜ ଯୋଗାଇଥିବା ତଥ୍ୟ ଅପ୍ରତୁଳ ହେଲେ ହେଁ ତାହାର ଉପଯୋଗ ଦ୍ୱାରା କବିଙ୍କର ଆଦ୍ୟ ରଚନା ବିଷୟରେ କିଛି ଅନୁମାନ କରାଯାଇପାରେ।

ଉପେନ୍ଦ୍ର ଭଞ୍ଜଙ୍କର ଦୁଇଟି ଉପାଧି ଥିଲା।:- ୧. ବୀରବର; ୨. ମଙ୍ଗରାଜ। ତାହାଙ୍କର ମୁଖ୍ୟ ରଚନାଗୁଡ଼ିକ ମଧ୍ୟରୁ ଅଳ୍ପକେତୋଟିରେ ଏହି ଦୁଇ ଉପାଧି ମଧ୍ୟରୁ କୌଣସିଟି ବ୍ୟବହୃତ ହୋଇନାହିଁ। ସେହି ରଚନା ଗୁଡ଼ିକ ହେଲେ:- ରସଲେଖା, ଛାନ୍ଦଭୂଷଣ, କଳାକଉତୁକ ଓ ରସତରଙ୍ଗ। ଏହା ମଧ୍ୟରୁ ରସତରଙ୍ଗ କାବ୍ୟଟି ଅବନା ଅର୍ଥାତ୍ ଆକାରାଦି ମାତ୍ରାହୀନ ହୋଇଥିବା ହେତୁ ଉପାଧି ମଧ୍ୟରୁ କୌଣସିଟି ଏଥିରେ ସ୍ଥାନ ପାଇବା ଭଳି ନୁହେଁ। ବୀରବର ଉପାଧିରେ ଦୀର୍ଘ ଇକାର ମାତ୍ରା ଓ ମଙ୍ଗରାଜ ଉପାଧିରେ ଆକାର ମାତ୍ରା ରହିଛି। ତେଣୁ, ରସତରଙ୍ଗରେ କୌଣସି ଉପାଧି ବ୍ୟବହୃତ ହୋଇନଥିଲେ ହେଁ ତାହାର ରଚନା ବେଳକୁ କବି କୌଣସି ଉପାଧି ପାଇ ନଥିଲେ ବୋଲି କହି ହେଉ ନାହିଁ। କିନ୍ତୁ, ଅନ୍ୟ ତିନୋଟି କାବ୍ୟ କବିଙ୍କର ଉପାଧି ପ୍ରାପ୍ତି ପୂର୍ବର ରଚନା ହେବା ଅନୁମେୟ। ଏହି ତିନୋଟି ଯାକ କାବ୍ୟ ପ୍ରକାଶିତ କିନ୍ତୁ ଉପାଧି ପ୍ରାପ୍ତି ପୂର୍ବରୁ କବି ଅନ୍ୟାନ୍ୟ କାବ୍ୟ ମଧ୍ୟ ରଚନା କରିଥିବା ସମ୍ଭବ ଯାହା ଅଦ୍ୟାବଧି ଅପ୍ରକାଶିତ ରହିଛି।

ଉକ୍ତ ରଚନାତ୍ରୟ ମଧ୍ୟରୁ ଆନୁପୂର୍ବ ନିର୍ଣ୍ଣୟ ପାଇଁ ଉପେନ୍ଦ୍ରଭଞ୍ଜ ଛାନ୍ଦ ଭୂଷଣ ଆରମ୍ଭରେ ତାହା ରଚନା କରିବାର ଉଦ୍ଦେଶ୍ୟ ନେଇ ଯାହା ଜଣାଇଛନ୍ତି ତାହା ବିଚାର୍ଯ୍ୟ। କବି ଛାନ୍ଦଭୂଷଣର ଗ୍ରନ୍ଥାରମ୍ଭରେ ଲେଖିଛନ୍ତି:-

କବି ସ୍ତୁତି ଅନ୍ତରେ ଯେ ଏମନ୍ତ ଭାବି ତ। କଳି କାମିନୀବର୍ଣ୍ଣନା କରି ବହୁଗୀତ ॥
କେଉଁକାର୍ଯ୍ୟେ ଅଛି ତହିଁ କୃଷ୍ଣକଥା ଥାଉଁ। କଳ୍ପଛି ଯାହା ଅବିଘ୍ନେ ସମାପତ ହେଉ ॥
କଞ୍ଜପଦେ ଯାର ସରସ୍ୱତୀ ପରିଚାରୀ। କହିବି ତାଙ୍କ ଚରିତ କିଞ୍ଚିତ ବିଚାରି ॥

କବି ଏଠି ଜଣାଉଛନ୍ତି ଯେ ଛାନ୍ଦଭୂଷଣ ରଚନା କଳ୍ପନା କରିବା ପୂର୍ବେ ସେ ''କାମିନୀବର୍ଣ୍ଣନା କରି'' ଅନେକ ଗୀତ ଅର୍ଥାତ୍ କାଳ୍ପନିକ କାବ୍ୟ ଲେଖିଥିଲେ କିନ୍ତୁ କୃଷ୍ଣଙ୍କ ଚରିତାତ୍ମକ କୌଣସି କାବ୍ୟ ଲେଖି ନଥିଲେ। ବାଗ୍‌ଦେବୀ ସରସ୍ୱତୀ କୃଷ୍ଣଙ୍କର ପଦସେବିକା ତେଣୁ କୃଷ୍ଣକଥା ନେଇ ପଦ ରଚନା ପାଇଁ ସେ ବାଗ୍‌ଦେବୀଙ୍କୁ ଉପଯୋଗ କରୁଛନ୍ତି। ସରସ୍ୱତୀଙ୍କୁ କୃଷ୍ଣପରିଚାରିଣୀ ରୂପେ ଉପସ୍ଥାପନ କରିଥିବାରୁ ଜଣାଯାଏ ଯେ କବିଙ୍କ କୃଷ୍ଣ ବିଷ୍ଣୁଙ୍କ ନାମାନ୍ତର ସେ କେବଳ ଦେବକୀନନ୍ଦନ କୃଷ୍ଣ ନୁହନ୍ତି।

ଛାନ୍ଦଭୂଷଣରେ କୃଷ୍ଣଙ୍କ ଗୋପଲୀଳାର ଏକ ଅଂଶ ବର୍ଣ୍ଣିତ ହୋଇଛି, ଏଥିରେ ନାୟିକା ବୃନ୍ଦାବତୀ। କଳାକଉତୁକ ମଧ୍ୟ କୃଷ୍ଣଙ୍କ ଗୋପଲୀଳା ବିଷୟକ କାବ୍ୟ, ଯହିଁରେ ନାୟିକା ଚନ୍ଦ୍ରାବଳୀ। ଉପେନ୍ଦ୍ରଭଞ୍ଜଙ୍କର 'ଚନ୍ଦ୍ରାବଳୀ', ସାରଳା ଦାସଙ୍କ ମହାଭାରତର ଚନ୍ଦ୍ରାବଳୀ ପରି, ରାଧାଙ୍କ ନାମାନ୍ତର ମାତ୍ର। ତେଣୁ ଛାନ୍ଦଭୂଷଣ ରଚନା ପୂର୍ବରୁ କଳାକଉତୁକ (ତଥା କୃଷ୍ଣ କି ରାମଙ୍କ ଚରିତାତ୍ମକ କୌଣସ କାବ୍ୟ) କବି ଯେ ଲେଖି ନଥିଲେ ଏହା ନିଶ୍ଚିତ କଥା। ରସଲେଖା ଏକ କାଳ୍ପନିକ କାବ୍ୟ। କବି ଜଣାଇଥିବା ''କଳି କାମିନୀବର୍ଣ୍ଣନା କରି ବହୁ ଗୀତ'' ମଧ୍ୟରୁ ରସଲେଖା ନିଶ୍ଚୟ ଗୋଟିଏ। ରସଲେଖା ରଚନା ସଂପୂର୍ଣ୍ଣ ହେଲା ଖ୍ରୀ.୧୭୧୦ ଅଗଷ୍ଟ ୨୩ ତାରିଖରେ (ଦିବ୍ୟସିଂହ ଗଜପତି ଅଙ୍କ ସପତିବିଂଶତି ଶେଷ ଦିନେ ଶେଷ ଏହୁ ଗୀତ' ବୋଲି କବି ସେହି କାବ୍ୟ ଶେଷକୁ ଜଣାଇଛନ୍ତି)। ଏହି ପ୍ରକାରେ କବିଙ୍କର ଉପାଧି ବ୍ୟବହୃତ ହୋଇନଥିବା ତିନୋଟି କାବ୍ୟର ରଚନା କ୍ରମ ଏହିପରି :-

୧. ରସଲେଖା (ରଚନା ସମାପ୍ତି ତା. ୨୩/୮/୧୭୧୦)।
୨. ଛାନ୍ଦ ଭୂଷଣ (କବିଙ୍କର ପ୍ରଥମ ପୌରାଣିକ କାବ୍ୟ)।
୩. କଳା କଉତୁକ (କୃଷ୍ଣକାବ୍ୟ)।

ଛାନ୍ଦ ଭୂଷଣ ଲେଖିବା ପୂର୍ବରୁ କବି ରସଲେଖା ଛଡ଼ା ଆଉ ଆଉ ଅନେକ କାଳ୍ପନିକ କାବ୍ୟ ଲେଖିଥିଲେ। କିନ୍ତୁ, ସେଗୁଡ଼ିକୁ ଚିହ୍ନଟ କରାଯାଇ ପାରୁନାହିଁ। ପ୍ରକାଶିତ କାଳ୍ପନିକ କାବ୍ୟଗୁଡ଼ିକରେ କବିଙ୍କର ବୀରବର ଉପାଧି ବ୍ୟବହୃତ ହୋଇଥିବାରୁ ସେଗୁଡ଼ିକ ଛାନ୍ଦଭୂଷଣ ରଚନାର ପୂର୍ବବର୍ତ୍ତୀ ହୋଇ ନ ପାରନ୍ତି।

ଉପେନ୍ଦ୍ରଭଞ୍ଜଙ୍କର 'କୁଞ୍ଜବିହାର' ନାମକ ସାତ ଛାନ୍ଦ ବିଶିଷ୍ଟ କୃଷ୍ଣଚରିତ ବିଷୟକ କାବ୍ୟ ଖ୍ରୀ.୧୯୯୧ରେ ପ୍ରଥମେ ପ୍ରକାଶ ପାଇଲା। ଏହାର ସଂପାଦକ ଡଃ ପୂର୍ଣ୍ଣଚନ୍ଦ୍ର ମିଶ୍ର ତାହାର ମୁଖବନ୍ଧରେ କୁଞ୍ଜବିହାରକୁ ଉପେନ୍ଦ୍ରଙ୍କ ପ୍ରାରମ୍ଭିକ ରଚନା ବୋଲି ମତ ବ୍ୟକ୍ତ କରିଛନ୍ତି। ''ଉପେନ୍ଦ୍ରଭଞ୍ଜ ପ୍ରାରମ୍ଭିକ ଅବସ୍ଥାରେ ରାଧାକୃଷ୍ଣଲୀଳାକୁ ନେଇ କିଛି

ଚଉପଦୀ ଓ କୁଞ୍ଜବିହାର କାବ୍ୟ ରଚନା କରିସାରିବା ପରେ କବି ହୋଇ ଖ୍ୟାତି ରଖିବା ଲାଳସାରେ କବି କ୍ରିବିରେ ଅଗୋଚର ଚନ୍ଦ୍ରାବଳୀ କୃଷ୍ଣ ଲୀଳାତ୍ମକ କାବ୍ୟ କଳାକଉତୁକକୁ ଆଦ୍ୟ ପ୍ରାନ୍ତ 'କ' ନିୟମରେ ଓ ବୃନ୍ଦାବତୀ କୃଷ୍ଣ କେଳିବର୍ଣ୍ଣିତ ଛାନ୍ଦଭୂଷଣକୁ କ, ଖ ଆଦି ୩୪ ଅକ୍ଷର ନିୟମରେ ରଚନା କରିଥିଲେ'' (ମୁଖବନ୍ଧ, ପୃ.୧୯)।

ବୋଧହୁଏ ଗବେଷକମାନେ ଭବିଷ୍ୟତରେ କାଳେ ଏପରି ନିର୍ଦ୍ଧାରଣ ଦେବେ ବୋଲି ପୂର୍ବାନୁମାନ କରିବାରୁ ଉପେନ୍ଦ୍ରଭଞ୍ଜ ଛାନ୍ଦଭୂଷଣକୁ ତାଙ୍କର ପ୍ରଥମ କୃଷ୍ଣକାବ୍ୟ ଓ ତାହା ପୂର୍ବରୁ ଅନେକ କାଳ୍ପନିକ କାବ୍ୟ ରଚନା କରିଥିଲେ ବୋଲି ଛାନ୍ଦଭୂଷଣରେ ଜଣାଇଛନ୍ତି। ତଥାପି ଖୋଦ୍ କବିଙ୍କ ଉକ୍ତିକୁ ଅବଜ୍ଞା କରି ଗବେଷକମାନେ ନିଜର ନିର୍ଣ୍ଣୟ ଦେବାରୁ ହଟୁନାହାନ୍ତି। ଉପେନ୍ଦ୍ରଙ୍କ ଉକ୍ତିକୁ ବିଶ୍ୱାସ କଲେ ତାଙ୍କର ପ୍ରାରମ୍ଭିକ ରଚନା କାଳ୍ପନିକ କାବ୍ୟ, 'କାମିନୀବର୍ଣ୍ଣନା' ବିଷୟକ ବହୁ 'ଗୀତ'। ତେଣୁ, ''କବି ଜୀବନର ଆଦ୍ୟ କାଳରେ ତଥା ଯୁଗାନୁରୋଧରେ କୃଷ୍ଣଚରିତ୍ର ତଥା ଲୀଳାକୁ କେନ୍ଦ୍ର କରି ସ୍ୱକୀୟ ଲେଖନୀ ଚାଳନା ଦ୍ୱାରା କୃଷ୍ଣୈକପ୍ରାଣତାର ପରିଚୟ ପ୍ରଦାନ କରିଛନ୍ତି'' (ମୁଖବନ୍ଧ, ପୃ ୧୮) ବୋଲି ଡଃ ମିଶ୍ର ଦେଇଥିବା ମତ ଗଭୀର ବିଚାରପ୍ରସୂତ ନୁହେଁ।

କୁଞ୍ଜବିହାରରେ ଉପେନ୍ଦ୍ରଭଞ୍ଜ ତାଙ୍କର ଦ୍ୱିବିଧ ଉପାଧି (ବୀରବର ଓ ମଙ୍ଗରାଜ) ମଧ୍ୟରୁ କେବଳ ମଙ୍ଗରାଜ ଉପାଧି ବ୍ୟବହାର କରିଛନ୍ତି। ଏହି ଉପାଧିର ବ୍ୟବହାର ନ ଥିବା ପୂର୍ବାଲୋଚିତ କାବ୍ୟତ୍ରୟ ଅପେକ୍ଷା ଉପାଧିଯୁକ୍ତ କୁଞ୍ଜବିହାରକୁ ପ୍ରାଚୀନତର ବୋଲି କହିବା ଅଯୁକ୍ତିକର। ଡଃ ମିଶ୍ର ଲେଖିଛନ୍ତି : ''କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ସ୍ୱରଚିତ ସର୍ବଶ୍ରେଷ୍ଠ କୃତିଗୁଡ଼ିକରେ ମଙ୍ଗରାଜ ଉପାଧିର ପ୍ରୟୋଗ କରି ନ ଥିଲେ ମଧ୍ୟ ନିଜର ପ୍ରାରମ୍ଭିକ କ୍ଷୁଦ୍ର କ୍ଷୁଦ୍ର କାବ୍ୟ, କେତେକ ଚଉତିଶା, ଚଉପଦୀ ଓ ଚିତ୍ରକାବ୍ୟ ବନ୍ଧୋଦୟରେ ଏହି ଉପାଧିର ପ୍ରୟୋଗ କରିଛନ୍ତି'' (ମୁଖବନ୍ଧ ପୃ.୧୨)। ମଙ୍ଗରାଜ ଉପାଧିର ପ୍ରୟୋଗ କୁଞ୍ଜବିହାରରେ ଥିବା ପରି ଭାବବତୀ ଓ ଚଉପଦୀ ଭୂଷଣରେ ଅଛି। ଯମକରାଜ ଚଉତିଶାରେ ମଧ୍ୟ ଅଛି। ମଙ୍ଗରାଜ ଉପାଧି ପ୍ରାରମ୍ଭିକ କ୍ଷୁଦ୍ର ରଚନାରେ ରହିଛି ବୋଲି ନିର୍ଣ୍ଣୟ କଲେ କବିଙ୍କର ଶେଷଜୀବନର ରଚନା ବନ୍ଧୋଦୟରେ କିପରି ରହିଲା ଏ ପ୍ରଶ୍ନ ବିଚାର୍ଯ୍ୟ। ଡଃ ମିଶ୍ର ଏ ବିଷୟରେ ସଚେତନ ନୁହନ୍ତି। ସେ ଆଉ ମଧ୍ୟ ଲକ୍ଷ୍ୟ କରି ନାହାନ୍ତି ଯେ ମଙ୍ଗରାଜ ଉପାଧିର ବ୍ୟବହାର 'ରସପଞ୍ଚକ'ରେ ରହିଛି :- ''ପଦେ ଉପେନ୍ଦ୍ର ମଙ୍ଗରାଜ କହି'' (ପକାର ଚଉତିଶା)। ରସ ପଞ୍ଚକକୁ ତ ପ୍ରାରମ୍ଭିକ ରଚନା ବୋଲି କହି ହେବ ନାହିଁ। ରସପଞ୍ଚକ ରଚନା ବେଳକୁ କବି ''କେତେ ପ୍ରବନ୍ଧେ ପୂରାଇ ଭୂତଳ'' 'କବି ଗର୍ବପର୍ବତକୁ କୁଳିଶ' ଓ 'କବିପଣରେ ଅତି ପରିନିଷ୍ଠ' ହୋଇ 'ଉପେନ୍ଦ୍ର ହେଲା କବିରେ ଦକ୍ଷ' ବୋଲି ଆତ୍ମପରିଚୟ ଦେଇଛନ୍ତି। ତେଣୁ 'ମଙ୍ଗରାଜ' ଉପାଧି କେବଳ ପ୍ରାରମ୍ଭିକ ରଚନାରେ ବ୍ୟବହାର କରାଯାଇଛି ବୋଲି କହିଲେ ତଥ୍ୟବିରୋଧୀ ହେବ।

ନିର୍ବିବାଦ ତଥ୍ୟ ହେଲା :-

୧. କବିଙ୍କର ଦୁଇଟି ଉପାଧି :- ବୀରବର ଓ ମଙ୍ଗରାଜ।

୨. ପ୍ରକାଶିତ ରଚନାଗୁଡ଼ିକ ମଧ୍ୟରୁ ରସଲେଖା, ଛାନ୍ଦଭୂଷଣ, କଳାକଉତୁକ ଓ ରସତରଙ୍ଗରେ କୌଣସି ଉପାଧି ବ୍ୟବହୃତ ହୋଇନାହିଁ। ଦୁଇଟିଯାକ ଉପାଧିରେ ବନା ଥିବାରୁ ତାହା ରସତରଙ୍ଗରେ ବ୍ୟବହାର ହେବା ଭଳି ନୁହେଁ।

୩. କବିଙ୍କର ଅଧିକାଂଶ ଗ୍ରନ୍ଥରେ କେବଳ ବୀରବର ଉପାଧିର ବ୍ୟବହାର ରହିଛି (ସେଠାରେ ମଙ୍ଗରାଜ ବ୍ୟବହୃତ ହୋଇନାହିଁ)। ଏହି ଗ୍ରନ୍ଥଗୁଡ଼ିକ ହେଲା :- ବୈଦେହୀଶ ବିଳାସ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ, ସୁଭଦ୍ରାପରିଣୟ, ପ୍ରେମ ସୁଧାନିଧି, ରସିକ ହାରାବଳୀ, ସୁବର୍ଣ୍ଣରେଖା, ରାମଲୀଳାମୃତ, ଚଉପଦୀଚନ୍ଦ୍ର, ବଜାରବୋଲି, ଗୀତାଭିଧାନ ଓ ବାଇଶି ପଦିଆ।

୪. କବିଙ୍କର ଅଳ୍ପ କେତୋଟି ରଚନାରେ ମଙ୍ଗରାଜ ଉପାଧିର ବ୍ୟବହାର ରହିଛି (ସେଠାରେ ବୀରବର ବ୍ୟବହୃତ ହୋଇନାହିଁ)। ଏହି ରଚନା ଗୁଡ଼ିକ ହେଲା :- କୁଞ୍ଜବିହାର, ଭାବବତୀ ଓ ଯମକରାଜ ଚଉତିଶା।

୫. କବିଙ୍କର ପରିଣତ ବୟସର ଦୁଇଟି କୃତି ରସପଞ୍ଚକ ଓ ବନ୍ଧୋଦୟରେ ମଙ୍ଗରାଜ ଓ ବୀରବର ଦୁଇଟି ଯାକ ଉପାଧି ବ୍ୟବହୃତ ହୋଇଛି କବି ଚଉପଦୀ ଭୂଷଣରେ ମଙ୍ଗରାଜ ଉପାଧି ସାଙ୍ଗକୁ 'ବୀର' ଉପାଧି ବ୍ୟବହାର କରିଛନ୍ତି। ଲାବଣ୍ୟବତୀର ୧୮ ଓ ୩୪ ଛାନ୍ଦରେ ମଧ୍ୟ କବି ନିଜକୁ ବୀର ବୋଲି ପରିଚୟ ଦେଇଛନ୍ତି। ବୀର ବୀରବରର ସଂକ୍ଷିପ୍ତରୂପ।

ଏହି ସବୁ ନିର୍ବିବାଦ ତଥ୍ୟ ଦୃଷ୍ଟେ ଉପାଧିଶୂନ୍ୟ ରଚନା ଗୁଡ଼ିକ ଉପାଧିପ୍ରାପ୍ତି ପୂର୍ବର, ତେଣୁ ପ୍ରାରମ୍ଭିକ ଅବସ୍ଥାର ବୋଲି ସ୍ଥିର କରିବା ଯୁକ୍ତିସମ୍ମତ। ଦ୍ୱିବିଧ ଉପାଧି ମଧ୍ୟରୁ ଉପାଧିଟି ପ୍ରାଚୀନତର ତାହାର ନିର୍ଣ୍ଣୟ ଦୁରୂହ। ମଙ୍ଗରାଜକୁ ପ୍ରଥମ ଉପାଧି ବୋଲି ଧରିଲେ ତାଙ୍କର ଅଧିକାଂଶ ମୁଖ୍ୟ ରଚନାରେ ତାହା କାହିଁକି ଲେଖା ହୋଇନାହିଁ, ଏ ପ୍ରଶ୍ନ ଉଠିବ। ବୀରବରକୁ ଆଦ୍ୟ ଉପାଧି ବୋଲି ଧରିଲେ କୁଞ୍ଜବିହାର, ଭାବବତୀ ଓ ଯମକରାଜ ଚଉତିଶାରେ ତାହା କାହିଁକି ଲେଖା ହୋଇନାହିଁ, ଏ ପ୍ରଶ୍ନ ଉଠିବ। କବି ତାଙ୍କ ଶେଷ ଜୀବନର ରଚନାରେ ଦୁଇଟିଯାକ ଉପାଧି ବ୍ୟବହାର କରିଥିବାରୁ ଗୋଟିଏ ଉପାଧି ପାଇବାରୁ ଅନ୍ୟଟିକୁ ଛାଡ଼ିଛନ୍ତି ବୋଲି କୁହାଯାଇ ପାରିବ ନାହିଁ। ଏହି ପରିସ୍ଥିତିରେ ମଙ୍ଗରାଜ ଉପାଧିଟି ବୀରବରର ପରବର୍ତ୍ତୀ ବୋଲି ସ୍ଥିର କଲେ ତଥ୍ୟର ବିରୋଧ ଅତି କମ୍ ହେବ। କାରଣ, କେବଳ ମଙ୍ଗରାଜ ଉପାଧି ଉଲ୍ଲିଖିତ ହୋଇଥିବା ରଚନା ଗୁଡ଼ିକର ସଂଖ୍ୟା ଅତି କମ୍।

କବିଙ୍କର ମଙ୍ଗରାଜ ଉପାଧିର ତାତ୍ପର୍ଯ୍ୟ ସଂପର୍କରେ ଦୁଃଖିଶ୍ୟାମ ପଟ୍ଟନାୟକଙ୍କ ଅଭିମତ ବିଚାର୍ଯ୍ୟ। 'ଭାବବତୀ'ର ମୁଖବନ୍ଧରେ ସେ ଲେଖିଛନ୍ତି :-

"ଭଞ୍ଜ ରାଜବଂଶରେ ମଙ୍ଗରାଜ ଉପାଧି ପ୍ରଚଳିତ ଥିବା ଐତିହାସିକ ପ୍ରମାଣ ପ୍ରତିଷ୍ଠିତ ନୁହେଁ। ସେହି ଦୃଷ୍ଟିରୁ 'ଯମକରାଜ ଚଉତିଶା' ଓ ଆଉ କେତେକ କବିତାର ଭଞ୍ଜୀୟ କୃତିତ୍ୱ ଉପରେ ସନ୍ଦେହ ଆରୋପିତ ହୁଏ। 'ମଙ୍ଗରାଜ' ଶବ୍ଦର ଅର୍ଥ ଦୃଷ୍ଟିରୁ (ମଙ୍ଗ-ପ୍ରାନ୍ତ, ତାହାର ରାଜା) କୌଣସି ଏକ ପ୍ରାନ୍ତର ବା ମଣ୍ଡଳର ରାଜା ବୋଲି ଯଦି ଉପେନ୍ଦ୍ର ତାଙ୍କର ବାଲ୍ୟକାଳର ଅପରିପକ୍ୱ ମନରେ ସ୍ୱଭାବ ସୁଲଭ ରାଜସିଂହାସନର ଲାଳସା ପରିହାର କରି ନ ପାରି ବ୍ୟବହାର କରିଥିବେ, ତେବେ ହୁଏତ କେତେକ କାବ୍ୟ ଭଞ୍ଜୀୟ ରଚନା ଭାବରେ ଗ୍ରହଣ କରାଯାଇପାରେ। କିନ୍ତୁ ତାଙ୍କର କବିତ୍ୱର ପ୍ରକୃତ ପରିଚାୟକ ଗ୍ରନ୍ଥରାଜି (ଯଥା:-ବୈଦେହୀଶ ବିଳାସ, ଲାବଣ୍ୟବତୀ, ସୁଭଦ୍ରା ପରିଣୟ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରେମସୁଧାନିଧି ଇତ୍ୟାଦି)ରେ ମଙ୍ଗରାଜ ପଦବୀ ଦେଖିବାକୁ ମିଳେ ନାହିଁ। ହୁଏତ ଏହି ରଚନା ବେଳେ ଉପେନ୍ଦ୍ର ରାଜସିଂହାସନ ପ୍ରତି ସଂପୂର୍ଣ୍ଣ ବୀତଶ୍ରଦ୍ଧ ହୋଇ ସାରସ୍ୱତ ରାଜ୍ୟର ସମ୍ରାଟ୍ ପଦରେ ଅଧିଷ୍ଠିତ ହେଲେଣି। ଏହି ଦୃଷ୍ଟିରୁ ବିଚାର କଲେ ଭାବବତୀ ଉପେନ୍ଦ୍ର ଭଞ୍ଜଙ୍କ ଏକ ପ୍ରାଥମିକ ରଚନା। ଏହାର ଷଷ୍ଠ ଛାନ୍ଦ ଶେଷରେ 'ଉପଇନ୍ଦ୍ର ମଙ୍ଗରାଜ ଏ ଭଣି'ରୁ ଏହା ସ୍ପଷ୍ଟ ପ୍ରତୀତ ହୁଏ। ଭାଷା, ଭାବ ଓ ଶୈଳୀ ଦୃଷ୍ଟିରୁ ମଧ୍ୟ ଏହା ଭଞ୍ଜୀୟ ପ୍ରତିଭାର ପ୍ରଥମ କାବ୍ୟକୃତି କହିଲେ ଅତ୍ୟୁକ୍ତି ହେବ ନାହିଁ। xxx ଭାବବତୀ ଏକ କ୍ଷୁଦ୍ରତମ କାବ୍ୟ ହେଲେ ହେଁ ପ୍ରଥମ ଭଞ୍ଜକାବ୍ୟ ଭାବରେ ପ୍ରଥମେ ସମାଲୋଚକଙ୍କୁ ଆକର୍ଷିତ କରିବ।"

ଭାବବତୀକୁ ପ୍ରଥମ ଭଞ୍ଜକାବ୍ୟ ପ୍ରତିପାଦନ କରିବା ଉଦ୍ଦେଶ୍ୟରେ ଶ୍ରୀ ପଟ୍ଟନାୟକ ଉପସ୍ଥାପନ କରିଥିବା ଯୁକ୍ତିଗୁଡ଼ିକ ଗଭୀର ଅଧ୍ୟୟନ ପ୍ରସୂତ ନୁହେଁ। ଭଞ୍ଜ ରାଜବଂଶରେ ମଙ୍ଗରାଜ ଉପାଧି ନଥିବା କଥା ସତ୍ୟ ନୁହେଁ। ବାସ୍ତବରେ ଅନ୍ୟ ରାଜବଂଶ ଅପେକ୍ଷା ଭଞ୍ଜ ରାଜବଂଶରେ ମଙ୍ଗରାଜ ଉପାଧିର ପ୍ରଚଳନ ଅଧିକ ଥିଲା। ଉପେନ୍ଦ୍ରଭଞ୍ଜଙ୍କର ପିତାମହ ଧନଞ୍ଜୟଙ୍କର ଜଣେ ସାନଭାଇ ଥିଲେ ଜଗନ୍ନାଥ, ଏହାଙ୍କର ପଦବୀ ଥିଲା ମଙ୍ଗରାଜ। ଧନଞ୍ଜୟ ତାଙ୍କୁ ଜଗନ୍ନାଥ ପ୍ରସାଦ ମୁଠା (ଅଞ୍ଚଳ)ର ଦାୟିତ୍ୱ ଦେଇଥିବା ବିଷୟ 'ଭଞ୍ଜବଂଶାନୁଚରିତ' (ମାଗୁଣି ଦାଶଙ୍କ ଦ୍ୱାରା ସଂପାଦିତ) ମଧ୍ୟରେ ବର୍ଣ୍ଣିତ ହୋଇଛି।

"ତାଙ୍କର ଚାରିଭାଇ ପୁଣି ହେଲେ ଜାତ। ଜଗନ୍ନାଥ ମଙ୍ଗରାଜ ପଦ ହେଲା ଖ୍ୟାତ॥

x x x x

ଜଗନ୍ନାଥ ମଙ୍ଗରାଜଙ୍କୁ ଜଗନ୍ନାଥ ପ୍ରସାଦ। ହରିଶରଣ ଭୂୟାଁଙ୍କୁ ବୁଗୁଡ଼ା ହଦ॥
ସଦାଶିବ ବଡ଼ଜେନାଙ୍କୁ ବାଲିପଦର। ମୁଠାକୁ ଭୋଗକର ବୋଲି ନରବର॥
ଆପଣେ ଭୋଗରେ ହୋଇ ଆସକତି। ସଂଗୀତ ସାହିତ୍ୟରେ ଦିନ ନେଉଥାନ୍ତି॥"

ଧନଞ୍ଜୟଙ୍କର ଜନୈକ ପୁତ୍ରଥିଲେ ବଳଭଦ୍ର, ଏ ମଧ୍ୟ ମଙ୍ଗରାଜ ଉପାଧି ପାଇଥିଲେ। ବଳଭଦ୍ର ଭଞ୍ଜ ମଧ୍ୟ, ବୋଧହୁଏ ଜଗନ୍ନାଥ ଭଞ୍ଜଙ୍କ ପରେ, ଜଗନ୍ନାଥ

ପ୍ରସାଦ ମୁଠା ପାଉଥିଲେ। ବଳଭଦ୍ର ନିଜ ଉପାଧି ଅନୁସାରେ ନାମିତ କରି ମଙ୍ଗରାଜପୁର ଶାସନ ପ୍ରତିଷ୍ଠା କରିଥିଲେ। ଏହି ବିଷୟ ଗଙ୍ଗାପାଣି ମହାପାତ୍ରଙ୍କ ନାମରେ ପ୍ରଚଳିତ "ଭଞ୍ଜବଂଶାବଳୀ" ଓ ସୂର୍ଯ୍ୟମଣି ଚ୍ୟାଉ ପଟ୍ଟନାୟକଙ୍କ 'ଭଞ୍ଜବଂଶାବଳୀ'ରେ ଲେଖାଅଛି :-

"ଜଗନ୍ନାଥ ପ୍ରସାଦରେ ଆପଣ। ଦିବ୍ୟ ମଣ୍ଡପ କରି ନିରିମାଣ।
xxx ମଙ୍ଗରାଜପୁର, ନାମେ ଶାସନ କଲେ ଧୀରବର।"

ଧନଞ୍ଜୟଙ୍କ ପରେ ରାଜା ହେଲେ ନୀଳକଣ୍ଠ। ମଙ୍ଗରାଜ ପଦବୀ ବ୍ୟବହାର କରୁଥିବା ଉପେନ୍ଦ୍ର ନୀଳକଣ୍ଠଙ୍କ ପୁତ୍ର। ନୀଳକଣ୍ଠଙ୍କୁ ଗାଦିରୁ ତଡ଼ି ରାଜା ହେଲେ ଘନ ଭଞ୍ଜ। ଦେଖାଯାଉଛି, ବୋଧହୁଏ ଉପେନ୍ଦ୍ରଙ୍କ ପରେ, ଘନ ଭଞ୍ଜଙ୍କର ଜନୈକ ପୁତ୍ର ରାମଚନ୍ଦ୍ର ମଧ ମଙ୍ଗରାଜ ପଦ ପାଇଥିଲେ। ଘନଭଞ୍ଜଙ୍କ ପୁଅମାନଙ୍କ ସଂପର୍କରେ ଭଞ୍ଜ ବଂଶାନୁଚରିତରେ ଲେଖାଅଛି :-

"ରାମଚନ୍ଦ୍ର ଭଞ୍ଜେ ଏକ ତହୁଁ ଜାତ। ମଙ୍ଗରାଜ ପଦ ତାହାଙ୍କର ଖ୍ୟାତ॥

ଏଥିରୁ ଜଣାପଡୁଛି, ଭଞ୍ଜବଂଶରେ ପ୍ରତ୍ୟେକ ରାଜାଙ୍କର ଜଣେ ପୁଅ ମଙ୍ଗରାଜ ପଦ ପାଉଥିଲେ। ଦେଖାଯାଉଛି, ଅନ୍ୟ ମଙ୍ଗରାଜମାନେ ରାଜାଙ୍କର ଜ୍ୟେଷ୍ଠପୁତ୍ର ନୁହନ୍ତି, କିନ୍ତୁ ଉପେନ୍ଦ୍ର ଜ୍ୟେଷ୍ଠପୁତ୍ର। ତେଣୁ ଅନୁମାନ କରାଯାଇ ପାରେ ଯେ ଉପେନ୍ଦ୍ରଙ୍କର ସାନ ଭାଇଙ୍କର ମୃତ୍ୟୁ ପରେ ନୀଳକଣ୍ଠଙ୍କର ଅନ୍ୟ କେହି ପୁତ୍ର ନଥିବାରୁ ଓ ଉପେନ୍ଦ୍ର ନିଃସନ୍ତାନ ହୋଇ ଥିବାରୁ ନିଜେ ମଙ୍ଗରାଜ ପଦ ଗ୍ରହଣ କରିଥିଲେ। ତାହା ହୋଇଥିଲେ ମଙ୍ଗରାଜ ପଦ ବୀରବରର ପରବର୍ତ୍ତୀ।

କୁଳ ପରଂପରାରେ ଚଳି ଆସୁଥିବା ମଙ୍ଗରାଜ ପଦକୁ ସ୍ୱୀକାର କରିବାରୁ ଜଣେ ରାଜକବିଙ୍କର ଗୌରବ ହାନି ହେଉଛି ବୋଲି କାହିଁକି ବିଚାର କରାଯାଉଛି ବୁଝି ହେଉନାହିଁ। ଯାହା ପାଇଁ 'ବୀରବର' ହେବା ଶ୍ରେୟ ସେ 'ମଙ୍ଗରାଜ', ହେଲେ କାହିଁକି ହେୟ ହେବେ ? "ତାଙ୍କର ବାଲ୍ୟକାଳର ଅପରିପକ୍ୱ ମନରେ ସ୍ୱଭାବ ସୁଲଭ ରାଜସିଂହାସନର ଲାଳସା ପରିହାର କରି ନ ପାରି" ସେ ମଙ୍ଗରାଜ ବୋଲାଇଲେ ବୋଲି ନିରାଧାର କଳ୍ପନା କରାଯାଉଛି। ଉପେନ୍ଦ୍ରଭଞ୍ଜଙ୍କ ଜୀବନ ବୃତ୍ତାନ୍ତରେ ସପ୍ରମାଣ ନିର୍ଣ୍ଣୟ କରାଯାଉଛି ଯେ ସେ ରାଜଗାଦି ପ୍ରତି ତାଙ୍କର ଦାବି ଛାଡ଼ି ନଥିଲେ; ସେ "ରାଜସିଂହାସନ ପ୍ରତି ସଂପୂର୍ଣ୍ଣ ବୀତଶ୍ରଦ୍ଧ ହୋଇ"ଥିବା ବିଚାର ଖୋଦ୍ ଭଞ୍ଜଙ୍କ ଉକ୍ତିର ବିରୁଦ୍ଧ ହେଉଛି। ସେ ରାଜା ନୀଳକଣ୍ଠଙ୍କର ଜ୍ୟେଷ୍ଠପୁତ୍ର, ନିଜେ ପାଟକୁମାର (ଅର୍ଥାତ୍ ଜ୍ୟେଷ୍ଠ ରାଜପୁତ୍ର) ବୋଲି ତାଙ୍କର ଶେଷଜୀବନ ପର୍ଯ୍ୟନ୍ତ ଆତ୍ମପରିଚୟ ଦେଇ ଲାଗିଛନ୍ତି : "ପାଟକୁମାର ଖ୍ୟାତି ପ୍ରବନ୍ଧେ କହିଲା" (ରସପଞ୍ଚକ, ପକାର ଚଉପଦୀ)। ସୁଭଦ୍ରା ପରିଣୟ (୪ର୍ଥ ଛାନ୍ଦ)ରେ ଓ ଅନ୍ୟତ୍ର ସେ ନିଜର ପରିଚୟ 'ନୃପତି' ବୋଲି ଦେଇଛନ୍ତି। ସୁଭଦ୍ରା ପରିଣୟ କଣ 'ଅପରିପକ୍ୱ ମନ'ର ସୃଷ୍ଟି ?

ମଙ୍ଗରାଜ ଉପାଧିକୁ କବି ବାଲ୍ୟକାଳରେ ବ୍ୟବହାର କରିଥିଲେ, କିନ୍ତୁ ପରେ ବ୍ୟବହାର କଲେ ନାହିଁ -ବୋଲି ଶ୍ରୀ ପଟ୍ଟନାୟକ କହିବା ଭ୍ରମାତ୍ମକ। ପରିଣତ ବୟସର ରଚନା ରସପଞ୍ଚକ ଓ ବନ୍ଧୋଦୟରେ ଉପେନ୍ଦ୍ର ଏହି ଉପାଧିକୁ ବ୍ୟବହାର କରିଛନ୍ତି। ତେଣୁ 'ମଙ୍ଗରାଜ' ଉପାଧି ଯୋଗେ 'ଭାବବତୀ' ପ୍ରଥମ ଭଞ୍ଜକାବ୍ୟ ବୋଲି ନିର୍ଦ୍ଧାରଣ ଅହେତୁକ। ବରଂ କହିବା ଯୁକ୍ତିଯୁକ୍ତ ହେବ ଯେ ଏହି ଉପାଧି ଯୋଗେ ଭାବବତୀ (ଓ କୁଞ୍ଜବିହାର ଆଦି) ତାଙ୍କର ଶେଷ ଅବସ୍ଥାର ଲେଖା।

ଶ୍ରୀ ପଟ୍ଟନାୟକ ଭାବବତୀର "ଭାଷା, ଭାବ ଓ ଶୈଳୀ ଦୃଷ୍ଟିରୁ ମଧ ଏହା ଭଞ୍ଜୀୟ ପ୍ରତିଭାର ପ୍ରଥମ କାବ୍ୟକୃତି' ବୋଲି ମଧ କହିଛନ୍ତି। ଡଃ ପୂର୍ଣ୍ଣଚନ୍ଦ୍ର ମିଶ୍ର ମଧ 'କୁଞ୍ଜବିହାରକୁ' ପ୍ରାରମ୍ଭିକ ରଚନା ବୋଲି ପ୍ରତିପାଦିତ କରିବା ପାଇଁ ଏହି ଯୁକ୍ତିକୁ କୁଞ୍ଜବିହାରର ମୁଖବନ୍ଧ (ପୃ.୨୭)ରେ ପ୍ରୟୋଗ କରିଛନ୍ତି : "କୁଞ୍ଜବିହାର କାବ୍ୟର ଭାଷା, ଭାବ, ଶବ୍ଦ ସଂଯୋଜନା, ରଚନାଶୈଳୀ, ସରଳ କଳ୍ପନା ଆଦିକୁ ଅନୁଧ୍ୟାନ କଲେ ଏହାକୁ ତାଙ୍କ ପାଣ୍ଡିତ୍ୟର ଆଦ୍ୟ ପ୍ରସବ (?) ପ୍ରାରମ୍ଭିକ ରଚନା ବୋଲି ମୁକ୍ତକଣ୍ଠରେ ସ୍ୱୀକାର କରାଯାଇପାରେ"। ସ୍ରଷ୍ଟାମାନଙ୍କର ଶେଷ କୃତିଟି ସବୁବେଳେ ଶ୍ରେଷ୍ଠ କୃତି ହେଉଥିଲେ ଏମାନଙ୍କର ମତ ଗ୍ରହଣୀୟ ହୋଇପାରନ୍ତା। କିନ୍ତୁ, ବାସ୍ତବ କ୍ଷେତ୍ରରେ ତାହା ସବୁବେଳେ ଘଟେ ନାହିଁ। ଯେ କୌଣସି କବିଙ୍କର ଜୀବନୀ ଅଧ୍ୟୟନ କଲେ ଜଣାଯିବ ଯେ ତାହାଙ୍କର ପରକାଳୀନ କୃତିଗୁଡ଼ିକ ସବୁସ୍ଥଳେ ପୂର୍ବକାଳୀନ କୃତି ଅପେକ୍ଷା ଉତ୍କୃଷ୍ଟତର ନୁହନ୍ତି। ସାରଳା ଦାସ ମହାଭାରତ ଲେଖିବା ପରେ ଚଣ୍ଡୀପୁରାଣ ଲେଖିଲେ। ଚଣ୍ଡୀପୁରାଣ କଣ ମହାଭାରତକୁ ଟପିଛି? କାଳିନ୍ଦୀ ଚରଣ ପାଣିଗ୍ରାହୀ 'ମାଟିର ମଣିଷ' ଲେଖିବା ପରେ 'ଲୁହାର ମଣିଷ' ଲେଖିଲେ। ତଦ୍ୱାରା କଣ 'ଲୁହାର ମଣିଷ' ଶ୍ରେଷ୍ଠତର ହୋଇ ପାରିଲା? ଉପେନ୍ଦ୍ର ଭଞ୍ଜଙ୍କର ଜୀବନୀର କଷଟୀରେ ମଧ ଏପରି ଉକ୍ତିର ମୂଲ୍ୟହୀନତା ପ୍ରତିପାଦିତ ହୋଇ ପାରିବ। କବି ପ୍ରଥମେ ପ୍ରେମ-ସୁଧାନିଧି, ପରେ ରସିକ ହାରାବଳୀ ଓ ତାହା ପରେ ସୁବର୍ଣ୍ଣରେଖା ଲେଖିଥିଲେ। ସୁବର୍ଣ୍ଣରେଖା ଶେଷକୁ ସେ ଏ ବିଷୟ ଜଣାଇଛନ୍ତି :-

ପାଞ୍ଚ ଛାନ୍ଦେ ଶେଷ ହୋଇଲା ଏ ରସ କରିବ ରସିକ ବଶ।
ହେଜନେ, ପ୍ରେମ ସୁଧାନିଧି ରସିକ ହାରାବଳୀର ଏ ଶେଷ ॥୧୮॥
ସୁବର୍ଣ୍ଣରେଖାର ବର୍ଣ୍ଣନା ଯେତେକ ରସେ ଏହୁ ତିନି ଗୀତ।
କହେ ଉପଇନ୍ଦ୍ର ଭଞ୍ଜ ବୀରବର ଅନୁଭବୁ ଏ ବିଦିତ॥

କେବଳ ଏହି କାବ୍ୟତ୍ରୟ ମଧରେ ନୁହେଁ ଉପେନ୍ଦ୍ରଙ୍କ ସବୁକାବ୍ୟ ମଧରେ କ୍ଷୁଦ୍ରତମ ସୃଷ୍ଟି ହେଉଛି. ସୁବର୍ଣ୍ଣରେଖା, ଏଥିରେ ଛୋଟ ଛୋଟ ପାଞ୍ଚ ଗୋଟି ଛାନ୍ଦ ରହିଛି। ଶ୍ରୀ ପଟ୍ଟନାୟକ ଯେଉଁ ଭାବବତୀକୁ 'କ୍ଷୁଦ୍ରତମ' କାବ୍ୟ ବୋଲି କହିଛନ୍ତି

ତାହା ସୁବର୍ଣ୍ଣରେଖା ଅପେକ୍ଷା ଆକାରରେ ବଡ଼। ଭାବବତୀରେ ସାତୋଟି ଛାନ୍ଦ ରହିଛି। ଭାଷା, ଭାବ ଓ ଶୈଳୀର ନିକିତିରେ ତୁଳିଲେ ସୁବର୍ଣ୍ଣରେଖା, ପ୍ରେମ ସୁଧାନିଧି ଓ ରସିକ ହାରାବଳୀ ଅପେକ୍ଷା ସର୍ବଥା ନିକୃଷ୍ଟ ବିବେଚିତ ହେବ। ନିଜେ ଶ୍ରୀ ପଟ୍ଟନାୟକ ଉପେନ୍ଦ୍ରଙ୍କ ଶ୍ରେଷ୍ଠ କୃତି ମଧ୍ୟରେ ପ୍ରେମ ସୁଧାନିଧିକୁ ଗଣିଛନ୍ତି କିନ୍ତୁ ତାହାର ପରବର୍ତ୍ତୀକାଳିନ ରଚନା ରସିକ ହାରାବଳୀ ଓ ସୁବର୍ଣ୍ଣରେଖାକୁ ଗଣନା କରିନାହାନ୍ତି। ଖୋଦ୍ ଉପେନ୍ଦ୍ରଭଞ୍ଜ ବନ୍ଧୋଦୟର ଗ୍ରନ୍ଥତାଲିକା ମଧ୍ୟରେ ପ୍ରେମ ସୁଧାନିଧି ଓ ରସିକ ହାରାବଳୀକୁ ସ୍ଥାନ ଦେଇ ସୁବର୍ଣ୍ଣରେଖାକୁ ଉପେକ୍ଷା କରିବା ଦ୍ୱାରା ପ୍ରକାରାନ୍ତରେ ତାହାଙ୍କର ପରବର୍ତ୍ତୀକାଳୀନ କୃତିଟି ନିକୃଷ୍ଟ ବୋଲି ସ୍ୱୀକାର କରିଛନ୍ତି। ଜଣେ ସ୍ରଷ୍ଟାର ରଚନାର ଗତି ଗୋଟିଏ ସରଳରେଖାରେ ସମାଲୋଚକ 'ଉନ୍ନତି' ବୋଲି ସାମୟିକ ଭାବରେ ବିଚାରୁଥିବା ଦିଗକୁ ହିଁ ଗତି କରେ ନାହିଁ। ନର୍ତ୍ତକୀର ଶେଷ ନୃତ୍ୟ କି ଗାୟିକାର ଶେଷ ଗୀତ ଯଦି ତାହାର ଶ୍ରେଷ୍ଠ ପ୍ରଦର୍ଶନ ନୁହେଁ ଲେଖକର ଶେଷ କୃତି କିପରି ଶ୍ରେଷ୍ଠକୃତି ହେବ ? ଭାବବତୀ ଓ କୁଞ୍ଜବିହାର ଉପେନ୍ଦ୍ରଭଞ୍ଜଙ୍କର ଉତ୍କୃଷ୍ଟ ରଚନା ନ ହେଲେ ହେଁ ତାହାଙ୍କର ଶେଷ ଜୀବନର ରଚନା, ଏହା ମଙ୍ଗରାଜ ଉପାଧି ଦ୍ୱାରା ପ୍ରତିପାଦିତ ହେଉଛି। ବୋଧହୁଏ, ଏହି କାରଣରୁ ଉପେନ୍ଦ୍ର ବନ୍ଧୋଦୟରେ ଗ୍ରନ୍ଥତାଲିକା ଦେବାବେଳେ ନିକଟ ଅତୀତରେ ରଚନା କରିଥିବା ଏ ଦୁଇ କାବ୍ୟକୁ ଭୁଲି ନଥିଲେ।

ଉପେନ୍ଦ୍ରଭଞ୍ଜଙ୍କର ଜୀବନର ମଧ୍ୟଭାଗରେ ତଥା ଶେଷଭାଗର ରଚନାଗୁଡ଼ିକର ଆନୁପୂର୍ବ ନିରୂପଣ ଗଭୀରତର ଓ ବ୍ୟାପକତର ଅଧ୍ୟୟନ ସାପେକ୍ଷ। ତାଙ୍କର ଆଦ୍ୟଜୀବନର ଲେଖାଗୁଡ଼ିକର ଆନୁପୂର୍ବ ନିରୂପଣ ଅପେକ୍ଷାକୃତ ସୁସାଧ୍ୟ। ତାହାଙ୍କର ଅଦ୍ୟାବଧି ପ୍ରକାଶିତ ଗ୍ରନ୍ଥଗୁଡ଼ିକ ମଧ୍ୟରେ ରସଲେଖା ପ୍ରଥମେ, ତାହାପରେ ଛାନ୍ଦଭୂଷଣ ଓ ଆହୁରି ପରେ କଳାବତୀଙ୍କ ଲେଖା ଯାଇଛି। ଏହି ତିନୋଟି ଯାକ କାବ୍ୟ ଉପେନ୍ଦ୍ର ଭଞ୍ଜ ବୀରବର ଉପାଧି ପାଇବା ପୂର୍ବରୁ ଲେଖା।



*ଅଷ୍ଟମ ଅଧ୍ୟାୟ*

# ଭଞ୍ଜଙ୍କ ରଚନାରେ ଜ୍ୟୌତିଷିକ ତଥ୍ୟ

ଉପେନ୍ଦ୍ର ଭଞ୍ଜ ଜ୍ୟୋତିଷ ଶାସ୍ତ୍ରରେ ଦକ୍ଷତା ଅର୍ଜନ କରିଥିଲେ ବୋଲି ତାହାଙ୍କର ଅନେକ ଜୀବନୀ ଲେଖକ ମତ ପୋଷଣ କରିଛନ୍ତି। ଉପେନ୍ଦ୍ର ଭଞ୍ଜ ବହୁ ସ୍ଥାନରେ ଜ୍ୟୋତିଷର ପରିଭାଷା (ଜ୍ୟୋତିଷ ଶାସ୍ତ୍ରରେ ପ୍ରଚଳିତ ବିଶେଷ ଶବ୍ଦାବଳି ଓ ଅଭିବ୍ୟକ୍ତି), ଜ୍ୟୋତିଷକୁ ସଂପୃକ୍ତ କରି ଉପମାଦି ଅର୍ଥାଳଙ୍କାର ଓ ଜ୍ୟୋତିଷଶାସ୍ତ୍ରଗତ କେତେକ ତଥ୍ୟର ଉଲ୍ଲେଖ କରିଛନ୍ତି। କବି ଜ୍ୟୋତିଷରେ ନିପୁଣ ଥିବା ହେତୁରୁ ଏହା କରି ପାରିଛନ୍ତି ବୋଲି ଜୀବନୀ ଆଲୋଚକମାନେ ମତ ଦେଉଛନ୍ତି।

ଉପେନ୍ଦ୍ର ଭଞ୍ଜ ଯେଉଁ ରାଜନବର ପରିବେଶରେ ବଢ଼ିଥିଲେ ତହିଁରେ ଫଳିତ ଜ୍ୟୋତିଷ (ହୋରାଶାସ୍ତ୍ର) ଆଦୃତ ହେଉଥିଲା। ପ୍ରତ୍ୟେକ ରାଜଧାନୀରେ ରାଜାଶ୍ରିତ ହୋଇ ଜ୍ୟୋତିଷୀମାନେ ରହୁଥିଲେ ଓ ଘୁମୁସର ଭଞ୍ଜ ରାଜାମାନଙ୍କର ପୃଷ୍ଠପୋଷକତା ମଧ୍ୟ ଅନେକ ଜ୍ୟୋତିଷୀ ପାଉଥିବା ନିଶ୍ଚୟ କଥା (ଭଞ୍ଜନଗରର ପଣ୍ଡିତ ଶ୍ରୀଧର ଶତପଥୀ ଭଞ୍ଜରାଜାଙ୍କର ଏକତମ ରାଜଜ୍ୟୋତିଷୀ ପରିବାରର ବଂଶଜ)। ଯୁବରାଜ ଉପେନ୍ଦ୍ର ଭଞ୍ଜଙ୍କ ସାଂସ୍କୃତିକ ଜୀବନର ସଙ୍ଗୀ ଭାବରେ ଅନେକ ଜ୍ୟୋତିଷୀ ମିଳିଥିବେ। ଜ୍ୟୋତିଷୀମାନଙ୍କର ସଂସର୍ଗ ହେତୁରୁ ଜ୍ୟୋତିଷର ଶୁଭାଶୁଭ କାଳ, ଜ୍ୟୋତିଷିକ ପରିଭାଷା ଆଦି ନେଇ କିଛି କିଛି ଜ୍ଞାନ ଆହରଣ କରିବା ତାଙ୍କ ପକ୍ଷେ ସ୍ୱାଭାବିକ ଓ ସହଜ କଥା ହୋଇଥିବ। ଏହି ଦୃଷ୍ଟିରୁ ବିଚାର କଲେ ଉପେନ୍ଦ୍ର ଯେଉଁ ବୈନାସିକ ନାଡ଼ି ଆଦି ଜ୍ୟୋତିଷର ପରିଭାଷା ବ୍ୟବହାର କରିଛନ୍ତି ତାହା ତାଙ୍କର ଶାସ୍ତ୍ରନୈପୁଣ୍ୟକୁ ପ୍ରମାଣିତ କରୁଛି ବୋଲି କୁହାଯାଇ ନ ପାରେ। ଶାସ୍ତ୍ରର ପରିଭାଷା ଜ୍ଞାନ ଓ ପରିଭାଷା ଆଶ୍ରୟରେ ନିଷ୍କର୍ଷ ତତ୍ତ୍ୱଜ୍ଞାନ ସମାନ ନୁହେଁ। ରୋଗର ନାମ ମାତ୍ର ଜାଣିଗଲେହିଁ ବୈଦ୍ୟ ହୋଇଯାଏ ନାହିଁ। ଉପେନ୍ଦ୍ର ଭଞ୍ଜଙ୍କ ଜ୍ୟୋତିଷ ଜ୍ଞାନକୁ କଳନା କରିବା ପାଇଁ ସେ ଯୋଗାଇଥିବା ଜ୍ୟୌତିଷିକ ତଥ୍ୟାବଳୀକୁ ପରୀକ୍ଷା କରିବା ସମୀଚୀନ। କିନ୍ତୁ, ଜୀବନୀ ଆଲୋଚକମାନେ ତାହା କରି ନାହାନ୍ତି।

ଉପମା, ଶ୍ଳେଷ ଆଦି ଅଳଂକାରର ପ୍ରୟୋଗ ବେଳକୁ ଉପେନ୍ଦ୍ରଭଞ୍ଜ ଅନେକଠାରେ ଜ୍ୟୋତିଷ ପ୍ରତି ତାଙ୍କର ଆଗ୍ରହକୁ ସ୍ପଷ୍ଟ କରିଥାନ୍ତି। ବୈଦେହୀଶ ବିଳାସ ପଞ୍ଚମ ଛାନ୍ଦରେ ରାମାଦି ଚାରିଭାଇଙ୍କ ଜନ୍ମ ପୃଥିବୀର କାଳିମାକୁ ନାଶ କରିବା ସଙ୍ଗେ

ଚନ୍ଦ୍ର, ଶୁକ୍ର ଓ ମଙ୍ଗଳ ଉଦୟ ଫଳରେ ରାତ୍ରିର ଅନ୍ଧକାର ଲୋପ ପାଇବାକୁ ତୁଳନା କରିଛନ୍ତି :-

"ବିଧୁ, ଗୁରୁ, ଭାର୍ଗବ, ଅଙ୍ଗାର ଉଦିତ। ବିନଶ୍ୟତି ଧାତ୍ରୀ ନିବିଡ଼ ଧ୍ୱାନ୍ତ"॥ ଅନ୍ୟତ୍ର ସେହି ଛାନ୍ଦରେ ହିଁ କବି ଶ୍ଳେଷରେ କହୁଛନ୍ତି: "ବୃଷଧନୁ ଯୁକ୍ତ ରାମଚନ୍ଦ୍ର ସହଜେ"। ଏଥିରେ ବୃଷର ଦୁଇ ଅର୍ଥ ଶ୍ରେଷ୍ଠ ଓ ରାଶି ବିଶେଷ, ଧନୁର ଦୁଇଅର୍ଥ କୋଦଣ୍ଡ ଓ ରାଶିବିଶେଷ ଓ ରାମଚନ୍ଦ୍ରର ଦୁଇ ଅର୍ଥ ଦାଶରଥି ଓ ରମଣୀୟ ଚନ୍ଦ୍ର। ସେହି ବୈଦେହୀଶ ବିଳାସରେ ୧୮ଶ ଛାନ୍ଦରେ କବି ଶ୍ଳେଷ ପ୍ରୟୋଗ ଦ୍ୱାରା ଦଶରଥଙ୍କ ଅନ୍ତିମ ଅବସ୍ଥାକୁ ଏକ ଚାନ୍ଦ୍ରମାସ ସହ ସମାନ କରାଇବାକୁ ଯାଇ ନିଜର ଜ୍ୟୋତିଷ ସହ ପରିଚିତିକୁ ସ୍ପଷ୍ଟ କରିଛନ୍ତି :-

ବଦୁଁ ପ୍ରତିପଦୁଁ ତହିଁ ପକ୍ଷ ବାର ଯୋଗ ହୋଇ, ପୂର୍ଣ୍ଣେ ରାଜା କ୍ଷୟା ତିଥି ହେଲା ଯେ।
ବିଦିତ ଏଣୁ ସେ କ୍ଷଣ ମାସ ସଦୃଶ ପ୍ରମାଣ। କରଣ ରାଶି ସଞ୍ଚାର ଥିଲା ଯେ ॥୧୧॥

ବୈଦେହୀଶ ବିଳାସର ଅନ୍ୟ କେତେ ସ୍ଥଳରେ ତଥା ଅନ୍ୟାନ୍ୟ ଗ୍ରନ୍ଥରେ ଉପେନ୍ଦ୍ରଭଞ୍ଜ ଜ୍ୟୋତିଷ ତଥ୍ୟର ବ୍ୟବହାର କରିଛନ୍ତି। ଏଠାରେ ସେ ସବୁକୁ ସଂଗ୍ରହ କଲେ ବାହୁଲ୍ୟ ମାତ୍ର ହେବ। ତାଙ୍କର ଅନ୍ୟତମ ଶେଷ ଜୀବନର ରଚନା ବନ୍ଧୋଦୟରେ ସେ ଅନ୍ୟତମ ବନ୍ଧ ଭାବରେ ରାଶି କୁଣ୍ଡଳୀର ଆକାରକୁ ବ୍ୟବହାର କରିଛନ୍ତି। ଏ ସବୁ ସୂଚାଉଛି ଯେ ତାଙ୍କର ଜ୍ୟୋତିଷ ପ୍ରତି ଆଗ୍ରହଥିଲା ଓ ସେ ଜ୍ୟୋତିଷର ପରିଭାଷା ସହିତ ପରିଚିତ ଥିଲେ। ଏହି ପରିଚିତି ଜ୍ୟୋତିଃ ଶାସ୍ତ୍ରରେ ତାଙ୍କର ନିପୁଣତା ହେତୁ କି ଜ୍ୟୋତିଷୀମାନଙ୍କ ସଂସର୍ଗ ମାତ୍ରରୁ ଲବ୍ଧ ହୋଇଛି ତାହା ନିରୂପିତ ହୋଇନାହିଁ।

ଉପେନ୍ଦ୍ରଭଞ୍ଜଙ୍କର ଫଳିତ ଜ୍ୟୋତିଷ ଉପରେ ଦୃଢ଼ ଆସ୍ଥା ରହିଥିଲା। ତାଙ୍କ ପ୍ରଣୀତ ବହୁ କାବ୍ୟରେ ନାୟକ-ନାୟିକାଙ୍କ ଜନ୍ମ, ନାୟିକାର ଯୌବନ ପ୍ରାପ୍ତି ଓ ବିବାହ, ଅଭିଷେକାଦି ଘଟନା ଜ୍ୟୋତିଷଶାସ୍ତ୍ର ସମ୍ମତ ଶୁଭ ଲଗ୍ନରେ ଘଟିଥିବା କଥା ସେ ଲେଖିଛନ୍ତି। ତାହାଙ୍କ କାବ୍ୟରେ ଜନ୍ମ ବିବାହାଦି ଲଗ୍ନ ଗଣାଇବା ପାଇଁ ଜ୍ୟୋତିଷୀ-ଗଣକମାନେ ଆହୂତ ହେବାର ଯେଉଁ ବର୍ଣ୍ଣନା ରହିଛି ତାହା ତାତ୍କାଳିକ ସାମାଜିକ ଚଳଣିର ପ୍ରତିଫଳନ। କେତେକ ସ୍ଥଳେ ଉପେନ୍ଦ୍ର ଭଞ୍ଜ 'ଶୁଭ ବେଳାରେ ବିବାହ ହେଲା', 'ଉଚିତ ଲଗ୍ନ ଗଣନା କଲେ' ଭଳି ମାମୁଲି ଭାବରେ କହି ନ ଦେଇ ପଞ୍ଜାଙ୍ଗର ସବିସ୍ତାର ବିବରଣ ଓ ଗ୍ରହାବସ୍ଥିତି ମଧ୍ୟ ଜଣାଇଛନ୍ତି। ଏହା ଉପେନ୍ଦ୍ରଭଞ୍ଜଙ୍କର ଏକ ବିଶେଷତ୍ୱ, ଅନ୍ୟ କବିମାନେ କ୍ୱଚିତ ଏତେମାତ୍ରାରେ ବିବରଣ ଦେବାକୁ ଯାଇଛନ୍ତି। ଦଶରଥ ରାମଙ୍କୁ ରାଜା କରିବା ସ୍ଥିର କରିବା ବେଳେ ବଶିଷ୍ଠ, ବାମଦେବାଦି ପଣ୍ଡିତମାନେ ଲଗ୍ନ ବିଚାର ପାଇଁ ରାମଙ୍କ କୋଷ୍ଠୀରେ ଚନ୍ଦ୍ରଙ୍କ ଅବସ୍ଥିତି ଦେଖି ରାଶିଫଳ ବିଚାର କରିବା ବିଷୟ ବୈଦେହୀଶ ବିଳାସର ୧୭ଶ ଛାନ୍ଦରେ ବର୍ଣ୍ଣିତ ହୋଇଛି :-

ବୁଝିଲେ ଲଗ୍ନ ମଗ୍ନ ହୋଇ ସୁଝିଲେ ମଙ୍ଗଳ ଦାନରେ ତହିଁ
ବୃହସ୍ପତି ରାଶି ଅଷ୍ଟମେ ବିଳସି ନୃପତି ହୋଇବେ କେହି ।
ବାମଦେବ ଉତ୍ତର, ବକ୍ତା ବଶିଷ୍ଠ ହେବେ ଈଶ୍ୱର ।।

ଏହି ସମୟକୁ ଗୋଚରରେ ମଙ୍ଗଳ ଦ୍ୱାଦଶ (ଦାନ) ରାଶିଗତ ଓ ବୃହସ୍ପତି ଅଷ୍ଟମ ରାଶିସ୍ଥ ହୋଇଥିବା ହେତୁରୁ ରାଜା ହେବା ପାଇଁ ଏହା ଅନୁକୂଳ ସମୟ ନ ଥିବା ବିଷୟ ବାମଦେବ କହିବାରୁ ବଶିଷ୍ଠ କହିଲେ ସେ ଯୋଗୀ (ଈଶ୍ୱର) ହେବେ । ଗୋଚରରେ ମଙ୍ଗଳର ଦ୍ୱାଦଶ ସ୍ଥିତି ଓ ବୃହସ୍ପତିର ଅଷ୍ଟମସ୍ଥିତି ଅଶୁଭପ୍ରଦ । ଏଥିରୁ ଜଣାଯାଉଛି ଯେ ଉପେନ୍ଦ୍ର ଭଞ୍ଜ ଫଳିତ ଜ୍ୟୋତିଷ ଉପରେ ଆସ୍ଥାବାନ୍ ଥିଲେ ଓ ଗୋଚର ଫଳର ମୂଳସୂତ୍ର ଜାଣିଥିଲେ ।

ଉପେନ୍ଦ୍ରଭଞ୍ଜ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ୩୨ ଛାନ୍ଦରେ ନାୟକ-ନାୟିକା ଉଭୟଙ୍କର ଜନ୍ମ ପତ୍ରିକାର ଗ୍ରହସ୍ଥିତି ସହିତ ଯେଉଁ ବିବରଣ ଦେଇଛନ୍ତି ସେଥିରୁ ମଧ୍ୟ ଜ୍ୟୋତିଷ ସହିତ ତାଙ୍କର ପରିଚିତ ଅନୁମାନ କରାଯାଇପାରେ । ନାୟକର ଜନ୍ମ ମାଘ କୃଷ୍ଣପଞ୍ଚମୀ କନ୍ୟାରାଶି ଚିତ୍ରା ନକ୍ଷତ୍ରରେ ବୋଲି ସେ ଜଣାଇଛନ୍ତି । ଏଥିରେ ତିଥି ସହିତ ନକ୍ଷତ୍ରର ମେଳ ହେଉନାହିଁ । ମାଘ କୃଷ୍ଣ ପଞ୍ଚମୀ ବେଳକୁ ରବ୍ୟଂଶ ମକରର ୨୧ ଅଂଶରୁ କମ୍ ହେବ ଓ ଚନ୍ଦ୍ରସ୍ଫୁଟ କନ୍ୟାର ୨୧ ଅଂଶରୁ କମ୍ ହେବ । କିନ୍ତୁ, କନ୍ୟାର ୨୩ ଅଂଶ ୪୦ ଲିତା ଟପିଲେହିଁ ଚିତ୍ରା ନକ୍ଷତ୍ର । ଏହା ସୂଚାଉଛି ଉପେନ୍ଦ୍ର ଭଞ୍ଜ ତିଥି ସହିତ ନକ୍ଷତ୍ରକୁ ସୂକ୍ଷ୍ମ ଭାବରେ ମିଳାଇ ପାରିନାହାନ୍ତି । ସେ ନାୟକ ନାୟିକାଙ୍କର ଯେଉଁ ଦୁଇଟି କୁଣ୍ଡଳୀ ଦେଇଛନ୍ତି ସେହି ଉଭୟରେ ଶନି ତୁଳାରେ ଓ ରାହୁ ସିଂହରେ । ଦୁଇଟି ଜାତକର ଦୁଇ ଗ୍ରହ ସମାନ ରାଶିସ୍ଥ ହେଲେ ବୟସର ପାର୍ଥକ୍ୟ ଦେଢ଼ବର୍ଷରୁ ଅଧିକ ହେବା କଥା ନୁହେଁ । ଉପେନ୍ଦ୍ର ନାୟକର ବୃହସ୍ପତିକୁ ଧନୁରେ ଅଥଚ ନାୟିକାର ବୃହସ୍ପତିକୁ କର୍କଟରେ ରଖିଛନ୍ତି । ଏହା ନାୟକ ଠାରୁ ନାୟିକା ପ୍ରାୟ ସାତ ବର୍ଷ କନିଷ୍ଠ ଥିବା ସୂଚାଉଛି । ନାୟକ କୋଷ୍ଠୀର ଏହି ତିନୋଟି ଗ୍ରହ ଶହ ଶହ ବର୍ଷ ମଧ୍ୟରେ ନାୟିକାର କୋଷ୍ଠୀର ଅବସ୍ଥାକୁ ଯିବାର ସମ୍ଭାବନା ନାହିଁ । ଉପେନ୍ଦ୍ରଭଞ୍ଜ ଗ୍ରହମାନଙ୍କର ଫଳଦାତୃତ୍ୱ ଉପରେ ବିଶ୍ୱାସ ରଖି ଗ୍ରହମାନଙ୍କୁ ରାଶିସ୍ଥିତି ଦେଇଛନ୍ତି କିନ୍ତୁ ଗଣିତ-ଜ୍ୟୋତିଷର ବିଷୟୀଭୂତ ଗ୍ରହମାନଙ୍କର ଗତିର ବେଗ ବିଷୟ ଆୟତ୍ତ କରିପାରି ନଥିବାରୁ ନାୟକ-ନାୟିକାଙ୍କ ଜାତକ ମଧ୍ୟରେ ସମୟ ବ୍ୟବଧାନ ରକ୍ଷା କରି ପାରି ନାହାନ୍ତି ।

ଉପେନ୍ଦ୍ର ଭଞ୍ଜଙ୍କର ଫଳିତ ଜ୍ୟୋତିଷ ଜ୍ଞାନ ଓ ଗଣିତ ଜ୍ୟୋତିଷ ଜ୍ଞାନାଭାବ ଲାବଣ୍ୟବତୀରେ ଅଧିକ ପରିସ୍ଫୁଟ ହେଉଛି । ଲାବଣ୍ୟବତୀର ତୃତୀୟ ଛାନ୍ଦରେ ନାୟିକାର ଯୌବନୋଦ୍‌ଗମ ସମୟର ବିବରଣ କବି ଦେଇଛନ୍ତି :-

ଶୁକ୍ଳପକ୍ଷ ଦଶମୀ ବୁଧବାରେ। ସିଦ୍ଧ ସାଧ୍ୟ ଯୋଗ ଯୋଗ ହେବାରେ।
ଦିନ ଅଷ୍ଟଦଣ୍ଡ ଭୋଗ ଆଦିତ୍ୟ। ଶୁକ୍ରବେଳା ତୁଳ ଲଗ୍ନ ବିଦିତ।।
ପୁଷ୍ୟା ନକ୍ଷତ୍ର କର୍କଡ଼ା ଚନ୍ଦ୍ରରେ। ବୃହସ୍ପତି ଛନ୍ତି ଉଚ୍ଚ କେନ୍ଦ୍ରରେ।।
ସ୍ଥିତ ଶଉରୀ ମଙ୍ଗଳ ମକରେ। ମେଷେ ଅସୁରଗୁରୁ ଲୀଳା କରେ।।
ଧନ୍ୟ ହୋଇଅଛି ରାହୁ କନ୍ୟାରେ। ବୁଧ ମିଥୁନରେ କେତୁ ମୀନରେ।।
ସିଂହେ ସ୍ଥିତ ହୋଇଛି ବିକର୍ତ୍ତନ। ସୌଖ୍ୟ ଗ୍ରହ ଦୃଷ୍ଟିଲଗ୍ନେ ପତନ।।
ଏ ସମୟରେ ରମଣୀ ରତନ। ଗର୍ଭୁ ଲଭିଣ ଭଜିଲା ଚେତନ।।

ଲାବଣ୍ୟବତୀର ସବୁ ସଂସ୍କରଣରେ ଏହି ପାଠ ରହିଛି। ମୁଁ ଦୁଇଟି ତାଳପତ୍ର ପୋଥିର ପାଠ ମଧ ଦେଖିଛି। ଏହି ପାଠ ହିଁ ପୋଥିରେ ରହିଛି କେବଳ ଗୋଟିଏ ପୋଥିରେ 'ବୁଧବାରେ' ସ୍ଥାନରେ 'ଗୁରୁବାରେ' ଲେଖାଅଛି। ତେଣୁ, ପାଠର ଶୁଦ୍ଧତା ସନ୍ଦେହାତୀତ। ପ୍ରଥମ ରଜ ପାଇଁ ଶୁଭଦାୟକ ବାର, ତିଥି, ଯୋଗ, ନକ୍ଷତ୍ର, ଲଗ୍ନ ଆଦିକୁ କବି ବାଛିଛନ୍ତି। ବୁଧବାର (ଓ ଗୁରୁବାର ମଧ), ଶୁକ୍ଳ ଦଶମୀ, ସିଦ୍ଧ ଓ ସାଧ୍ୟ ଯୋଗ, ତୁଳ ଲଗ୍ନ, ପୁଷ୍ୟା ନକ୍ଷତ୍ର ଏ ସବୁ ଶୁଭଦ ବୋଲି ଜ୍ୟୋତିଃଶାସ୍ତ୍ରରେ କଥିତ। ଶାସ୍ତ୍ର ସହିତ ଅପରିଚିତ ଲୋକ ଏପରି ବିବରଣ ଦେବାକୁ ଗଲେ ତନ୍ମଧ୍ୟରୁ ପ୍ରତିକୂଳ କିଛି ପଞ୍ଜାଙ୍ଗ ନିଶ୍ଚୟ ଲେଖିପକାଇଥାନ୍ତେ। ଗ୍ରହମାନଙ୍କ ରାଶିସ୍ଥିତି କବି ଯେଉଁପରି ସୂଚାଇଛନ୍ତି ତାହା ମଧ ଫଳିତଜ୍ୟୋତିଷ ଜ୍ଞାନକୁ ସୂଚାଉଛନ୍ତି। ଉତ୍ତମ ଫଳଦାୟକ ହେବେ ବୋଲି ରବି, ଚନ୍ଦ୍ର, ବୁଧ, ଶନି, ରାହୁ ଓ କେତୁଙ୍କୁ ସ୍ୱଗୃହୀ କରାଯାଇଛି ଓ ମଙ୍ଗଳ ଓ ବୃହସ୍ପତିଙ୍କୁ ତୁଙ୍ଗୀ କରାଯାଇଛି। ଲଗ୍ନପ୍ରତି ଶୁଭଗ୍ରହର ଦୃଷ୍ଟି ପଡ଼ିବ ବୋଲି ସ୍ୱୟଂ ଲଗ୍ନାଧିପତି ଶୁକ୍ରଙ୍କୁ ସପ୍ତମରେ ଅବସ୍ଥାପିତ କରାଯାଇଛି। ଏଥିରୁ ସନ୍ଦେହ ରହୁନାହିଁ ଯେ ଉପେନ୍ଦ୍ରଭଞ୍ଜ ଫଳିତ ଜ୍ୟୋତିଷ ଉତ୍ତମ ରୂପେ ଆୟତ୍ତ କରିଥିଲେ।

ଏହି ଗ୍ରହଚକ୍ରରୁ ଆଉ ମଧ ଜାଣିହୁଏ ଯେ ଉପେନ୍ଦ୍ରଭଞ୍ଜ ଗଣିତଜ୍ୟୋତିଷ ଜ୍ଞାନ ଅର୍ଜନ କରିନଥିଲେ। ରବିଙ୍କୁ ସିଂହରେ ଓ ଚନ୍ଦ୍ରଙ୍କୁ ପୁଷ୍ୟା କର୍କଟରେ ରଖି ସେତେବେଳକୁ ଶୁକ୍ଳ ଦଶମୀ ଥିଲା ବୋଲି ସେ ଲେଖିଛନ୍ତି। ଏପରି ରବିଚନ୍ଦ୍ରଙ୍କ ସ୍ଥିତି ଦଶମୀତିଥିର ତ ନୁହେଁ ଶୁକ୍ଳ ପକ୍ଷର ମଧ ନୁହେଁ। ଫଳିତ ଜ୍ୟୋତିଷକୁ ଧରି ଭଲ ତିଥି ଓ ଗ୍ରହସ୍ଥିତିକୁ କବି ବାଛିଲେ କିନ୍ତୁ ଗଣିତ ଜ୍ୟୋତିଷରେ ଅନଭିଜ୍ଞ ଥିବାରୁ ଗ୍ରହସ୍ଥିତି ସହିତ ତିଥି ମେଳ ଖାଇଲା ନାହିଁ। ସେହିପରି ଉପେନ୍ଦ୍ର କୁଣ୍ଡଳୀରେ ବୁଧ ଓ ଶୁକ୍ରଙ୍କ ଅବସ୍ଥିତିକୁ ଠିକ୍ ଭାବରେ ଦେଇପାରି ନାହାନ୍ତି। କୁଣ୍ଡଳୀରେ ବୁଧକୁ ରବିଠାରୁ ୪୦ ଅଂଶରୁ ଅଧିକ ଓ ଶୁକ୍ରକୁ ୧୦୦ ଅଂଶରୁ ଅଧିକ ଦୂରବର୍ତ୍ତୀ କରି ରଖାଯାଇଛି। କିନ୍ତୁ, ଗଣିତ ଜ୍ୟୋତିଷୀର ସାଧାରଣ ଜ୍ଞାନ ଥିବା ଲୋକ ଜାଣେ ଯେ କସ୍ମିନ୍‌କାଳେ ରବିଠାରୁ ବୁଧ ୨୮ଅଂଶ ଓ ଶୁକ୍ର ୪୮ ଅଂଶରୁ ଅଧିକ

ଦୂରବର୍ତ୍ତୀ ହୋଇ ନପାରନ୍ତି। ଆହୁରି ମଧ୍ୟ, କବି ଯୋଗାଇଥିବା ରବି ଚନ୍ଦ୍ରଙ୍କ ଅବସ୍ଥାନ ବା ତିଥି-ନକ୍ଷତ୍ର ସହିତ 'ସିଦ୍ଧ-ସାଧ୍ୟ' ଯୋଗର କୌଣସି ସମ୍ପର୍କ ରହୁନାହିଁ। ଗୋଟିଏ ସମୟର ଦୁଇଟି ଯୋଗର ନାମୋଲ୍ଲେଖ କରିଥିବାରୁ ହିଁ ଜଣାଯାଉଛି ଯେ କବି 'ଯୋଗ'ର ତାତ୍ପର୍ଯ୍ୟ ବୁଝିନଥିଲେ। ରବି ଚନ୍ଦ୍ରଙ୍କ ଅବସ୍ଥିତି ସେ ଯାହା ଦେଇଛନ୍ତି ସେଥିରେ ରଜୋବତୀ ହେବା ସମୟର ଯୋଗଟି ବ୍ୟତୀପାତ, ବରୀୟାନ୍, ପରିଘ ବା ଶିବ ହୋଇପାରେ। ଏଥିରୁ ଜଣାପଡୁଛି ଗଣିତ ଜ୍ୟୋତିଷ ସହିତ ଉପେନ୍ଦ୍ରଙ୍କର ପରିଚିତ ନଥିଲା।

ଉପେନ୍ଦ୍ରଭଞ୍ଜଙ୍କ ପ୍ରଦତ୍ତ ଜ୍ୟୋତିଷିକ ତଥ୍ୟଗୁଡ଼ିକୁ ପରୀକ୍ଷା କରିବା ବେଳେ ମୁଁ ଏକ ଅଭାବିତପୂର୍ବ ବିଷୟ ଦେଖିବାକୁ ପାଇଲି। ଉପେନ୍ଦ୍ରଭଞ୍ଜ ଲାବଣ୍ୟବତୀର ବିବାହ ପ୍ରଶ୍ନ ଦେବାକୁ ଯାଇ ଗୋଟିଏ ବାସ୍ତବ ସମୟର ଗ୍ରହକୁଣ୍ଡଳୀ ଦେଇଛନ୍ତି (ଲାବଣ୍ୟବତୀର ୩୦ ଛାନ୍ଦରେ) :-

ଜ୍ୟେଷ୍ଠ ଶୁକ୍ଳ ଦ୍ୱାଦଶୀ ସୋମବାର ହୋଏ।
ସଂକ୍ରାନ୍ତି କଳାକୁ ଭୋଗ ଦିବସ କୋଡ଼ିଏ।।
ସ୍ୱାତୀ ତାର ତୁଳ ଚନ୍ଦ୍ର ଶୁଭନାମେ ଯୋଗ।
ସେ ଦିନବେଳର ଷଡ଼ ଘଡ଼ିହୋଏ ଭୋଗ।।
ରବି ବୁଧ ଶୁକ୍ର ମିଥୁନରେ ହୋଏ ସ୍ଥିତି।
କର୍କଡ଼ା ଲଗ୍ନରେ ମଗ୍ନ ଉଚ୍ଚେ ବୃହସ୍ପତି।।
ଚନ୍ଦ୍ର କେନ୍ଦ୍ରବର୍ତ୍ତୀ ତୁଳେ ଶନିଶ୍ଚର ମୀନେ।
ମଙ୍ଗଳ ମଙ୍ଗଳ ତାର ତୃତୀୟରେ କନ୍ୟେ।।
ସ୍ୱର୍ଭାନୁ ମକରେ କରେ ବିଳାସକୁ ତୋଷେ।
ଏହି କାଳେ ବର ବିଭା ମଣ୍ଡପରେ ବସେ।।

ଏହା ମୁଦ୍ରିତ ପୁସ୍ତକଗୁଡ଼ିକର ପାଠ। ଜ୍ୟେଷ୍ଠ ଶୁକ୍ଳ ଦ୍ୱାଦଶୀ ବେଳକୁ ସୌର ମାସର ୨୦ ଦିନ ହେଲେ ରବି ମିଥୁନସ୍ଥ ନ ହୋଇ ବୃଷସ୍ଥ ହିଁ ହେବ। ତେଣୁ ତିଥି ବିଚାରରୁ 'ରବି ବୁଧ ଶୁକ୍ର ମିଥୁନରେ ହୋଏ' ପାଠ ନିଶ୍ଚୟ ଭୁଲ ଅଥବା ତାହା ଯଦି ଠିକ୍ ତେବେ ତିଥି ଭୁଲ୍। ମୁଁ ପରୀକ୍ଷା କରିଥିବା ଦୁଇଟି ତାଳପତ୍ର ପୋଥିରେ ଏହି ଅଂଶର ପାଠ ରହିଛି : 'ରବି ବୃଷେ ବୁଧ ଶୁକ୍ର ମିଥୁନରେ'। ତେଣୁ କବି ନିର୍ଦ୍ଦେଶ କରିଥିବା ଗ୍ରହସ୍ଥିତି ତାଳପତ୍ର ପୋଥି ପାଠରେ ରହିଛି ବୋଲି ଅନୁମିତ ହୁଏ। ବାର, ତିଥି, ନକ୍ଷତ୍ର ଆଦି ଯେଉଁ ସବୁ ବିବରଣ କବି ଯୋଗାଇଛନ୍ତି ତାହା ଖ୍ରୀ.୧୭୩୦ର ମଇ ମାସ ୧୮ ତାରିଖଦିନ ଘଟିଥିଲା। ସେହି ଦିନଟି ବୃଷ ୨୦ ଦିନ ଜ୍ୟେଷ୍ଠ ଶୁକ୍ଳ ଦ୍ୱାଦଶୀ ସ୍ୱାତୀ ନକ୍ଷତ୍ର ତୁଳା ରାଶିଥିଲା। ସେହିଦିନ କବି ବର୍ଣ୍ଣନା କରିଥିବା ମତେ ବୃଷରେ ରବି, ମିଥୁନରେ ବୁଧ ଓ ଶୁକ୍ର, କର୍କଟରେ ବୃହସ୍ପତି, କନ୍ୟାରେ ମଙ୍ଗଳ, ତୁଳାରେ ଚନ୍ଦ୍ର, ମକରରେ ରାହୁ (ସ୍ୱର୍ଭାନୁ) ଓ

ମୀନରେ ଶନି ଥିଲେ। ଇତିହାସରେ ଏହି ଗୋଟିଏ ଦିନ ଛଡ଼ା ଅନ୍ୟ କୌଣସି କାଳରେ ଏ ସବୁ ଯୋଗ ଘଟିବା ସମ୍ଭବପର ନୁହେଁ। କେବଳ ଯୋଗର ନାମଟି ଠିକ୍ ନୁହେଁ। ପୂର୍ବେ ତାଳପତ୍ର ପୋଥିରେ ପଞ୍ଜିକାର ପ୍ରସାର ଥିବା ସମୟରେ ପଞ୍ଜିକାଗୁଡ଼ିକ ବଡ଼ ସଂକ୍ଷିପ୍ତ ଥିଲା। ଉପେନ୍ଦ୍ରଭଞ୍ଜ ଯେଉଁ ପଞ୍ଜିକାରୁ ବିବାହ ଦିବସର ବିବରଣ ନେଲେ ସେଥିରେ ପ୍ରତ୍ୟେକ ଦିନର ଯୋଗ ଓ କରଣ ଲେଖା ହୋଇ ନଥିବା ଅନୁମେୟ। ଗଣିତ ଜ୍ୟୋତିଷ ଜାଣିଥିବା ଲୋକ ରବ୍ୟଂଶ ଓ ଚନ୍ଦ୍ରସ୍ଫୁଟରୁ ସହଜରେ ଯୋଗ ହିସାବ କରିପାରେ କିନ୍ତୁ ଉପେନ୍ଦ୍ରଭଞ୍ଜଙ୍କର ସେପରି ଜ୍ଞାନ ନଥିବାରୁ ସେ ମଙ୍ଗଳକର ଅର୍ଥର ଶୁଭ ନାମଟିକୁ ବାଛିଲେ ଓ ତାହା ଭୁଲ୍ ହୋଇଗଲା।

ଏଥିରୁ ଉପେନ୍ଦ୍ର ଭଞ୍ଜଙ୍କର ଜୀବନର ଗୋଟିଏ ତାରିଖ ଖ୍ରୀ.୧୭୩୦ ମଇ ୧୮ ମିଳିଯାଉଛି। ତାରିଖଟି ସମ୍ଭବତଃ ଲାବଣ୍ୟବତୀ ଲେଖାହେଉଥିବା ବର୍ଷର ପଂଜିକାର। ଉପେନ୍ଦ୍ରଙ୍କର ଗଣନା ଜ୍ଞାନ କମ୍‌ଥିବା ହେତୁରୁ ସେ ଗଣନା କରି ଭବିଷ୍ୟତ୍‌ର ଗୋଟିଏ ତାରିଖର ଗ୍ରହାବସ୍ଥାନକୁ ଦେଇପାରିବା ସମ୍ଭାବନା ନାହିଁ। ଜେଣେ ପୋଖତ ଗଣକ ମଧ ଦୀର୍ଘକାଳ ପରିଶ୍ରମ ନ କଲେ ଭବିଷ୍ୟତର ଗୋଟିଏ ସମୟର ଗ୍ରହାବସ୍ଥାନ ଠିକ୍ କରି ପାରିବ ନାହିଁ। ତେଣୁ ସ୍ଥିର କରାଯାଉଛି ଯେ ଖ୍ରୀ. ୧୭୩୦ରେ କବି ଲାବଣ୍ୟବତୀ କାବ୍ୟରଚନା କରୁଥିଲେ ଓ ସେହି ବର୍ଷର ପଞ୍ଜିକାରୁ ଗୋଟିଏ ବିବାହତିଥି ବାଛି ସେତେବେଳର ଗ୍ରହବସ୍ଥାନକୁ ଲେଖିଥିଲେ।

ଉପେନ୍ଦ୍ରଭଞ୍ଜଙ୍କ ଜୀବନୀ ଆଲୋଚନା ପ୍ରସଙ୍ଗରେ ଏହି ତଥ୍ୟଟି ବଡ଼ ଉପାଦେୟ। କବିଙ୍କ ଜୀବନବୃତ୍ତାନ୍ତର ଆଲୋଚକମାନେ ତାହାଙ୍କ ମୃତ୍ୟୁ ଖ୍ରୀ ୧୭୨୦ ବା ୧୭୨୫ ନିକଟରେ ହୋଇଥିବା ମତ ଦେଉଛନ୍ତି। କବି ତାଙ୍କର ଅନ୍ୟତମ ପ୍ରାଥମିକ କାବ୍ୟ 'ରସଲେଖା' ସଂପୂର୍ଣ୍ଣ କରିଥିଲେ ଦିବ୍ୟସିଂହ ଦେବଙ୍କ ୨୭ଅଙ୍କର ଶେଷଦିନ (ଭାଦ୍ରବ ଶୁକ୍ଳ ଏକାଦଶୀ ଖ୍ରୀ.୧୭୧୦ ଅଗଷ୍ଟ ୨୩ ତାରିଖ)। କବି ଅଳ୍ପାୟୁ ଥିଲେ ବୋଲି ଗୋଟିଏ ମନଗଢ଼ା କିଂବଦନ୍ତୀ ସୃଷ୍ଟିକରି କବିଙ୍କ ଦେହାନ୍ତ ଖ୍ରୀ.୧୭୨୫ (ଏପରିକି ୧୭୨୦) ପୂର୍ବରୁ ହେବା କଥା କୁହାଯାଉଛି। ବର୍ତ୍ତମାନ ଲାବଣ୍ୟବତୀର ବିବାହ ତିଥି ଗଣନାରୁ ଜଣାଯାଉଛି ଯେ କବି ଖ୍ରୀ.୧୭୩୦ ବେଳକୁ ଲାବଣ୍ୟବତୀ ରଚନା କରୁଥିଲେ। ଲାବଣ୍ୟବତୀ ଯେ କବିଙ୍କର ଅନ୍ତିମ ରଚନା ନୁହେଁ, ଏହା ନିଃସନ୍ଦେହ। ଲାବଣ୍ୟବତୀ ରଚନା ପରେ ରସପଞ୍ଚକ ରଚିତ ହେବା ଅନୁମିତ ହୁଏ ଓ ବଣ୍ଡୋଦୟ ନିଶ୍ଚିତ ଭାବରେ ଲାବଣ୍ୟବତୀ ରଚନାର କିଛିକାଳ ପରେ ଲେଖାହୋଇଛି କାରଣ ବଣ୍ଡୋଦୟର ପ୍ରଥମ ଛାନ୍ଦରେ କବି ସ୍ୱକୃତ ଗ୍ରନ୍ଥଗୁଡ଼ିକର ତାଲିକା ଦେବା ମଧ୍ୟରେ ଲାବଣ୍ୟବତୀକୁ ସ୍ଥାନ ଦେଇଛନ୍ତି। କବି ସ୍ୱଳ୍ପାୟୁ ଥିଲେ ବୋଲି ଚଳାଯାଇଥିବା କିଂବଦନ୍ତୀର କିଛି ମୂଲ୍ୟ ନାହିଁ।

## ନବମ ଅଧ୍ୟାୟ

# ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀ

ବିଖ୍ୟାତ ଓଡ଼ିଆ କବି ଉପେନ୍ଦ୍ର ଭଞ୍ଜଙ୍କର ନିରଳସ ଲେଖନୀ କେଉଁ କେଉଁ ରଚନା ସୃଷ୍ଟି କରିଛି ? ଗତ ଶତାଧିକ ବର୍ଷ ମଧ୍ୟରେ ଜନ୍‌ବୀମ୍‌ସ (ଖ୍ରୀ.୧୮୭୧ରେ ପ୍ରକାଶିତ ହଣ୍ଟରଙ୍କ 'ଓଡ଼ିଶା'ର ସାହିତ୍ୟ ବିଷୟକ ନବମ ଅନୁସୂଚୀର ପ୍ରକୃତ ରଚୟିତା), ମନମୋହନ ଚକ୍ରବର୍ତ୍ତୀ (୧୮୯୭-୯୮), ମଧୁସୂଦନ ଦାସ (୧୯୦୩) ତାରିଣୀଚରଣ ରଥ (୧୯୧୪), ଜଗବନ୍ଧୁ ସିଂହ (୧୯୧୬-୧୭), ବିଜୟଚନ୍ଦ୍ର ମଜୁମଦାର (୧୯୨୩), ବିନାୟକ ମିଶ୍ର (୧୯୨୮), ଚିନ୍ତାମଣି ମହାନ୍ତି (୧୯୩୮), ଡଃ ହରେକୃଷ୍ଣ ମହତାବ୍ (୧୯୪୮), ଡଃ ନଟବର ସାମନ୍ତରାୟ (୧୯୫୩), ଅନନ୍ତ ପଦ୍ମନାଭ ପଟ୍ଟନାୟକ (୧୯୫୯), ସୂର୍ଯ୍ୟନାରାୟଣ ଦାସ (୧୯୬୭), ଗୌରୀକୁମାର ବ୍ରହ୍ମା (୧୯୭୫) ପ୍ରମୁଖ ଗବେଷକଗଣ ଏହି ଦୁରୂହ ପ୍ରଶ୍ନର ସମାଧାନ ନାନାଭାବରେ କରି ଆସିଛନ୍ତି । ଠିକ୍ ସେହି ବିଷୟ ଆଲୋଚନା କଲାବେଳକୁ ସେହିମାନଙ୍କ ନିର୍ଦ୍ଧାରଣଗୁଡ଼ିକୁ ଯଥାସ୍ଥାନରେ ଉଲ୍ଲେଖ କରି ତାହାର ଖଣ୍ଡନମଣ୍ଡନ କରିବାକୁ ଗଲେ ଅବଶ୍ୟ ସୁସଙ୍ଗତ ହୋଇଥାନ୍ତା । କିନ୍ତୁ, ସେପରି କଲେ ଆଲୋଚନାର ଆକାର ଏତେମାତ୍ରାରେ ବଢ଼ିଯିବ ଯେ ସମଗ୍ର ବିଷୟଟିକୁ ମୋ ପରିକଳ୍ପିତ ଗୋଟିଏ ଅଧ୍ୟାୟ ମଧ୍ୟରେ ପରିବେଷଣ କରି ହେବ ନାହିଁ। ତେଣୁ, କ୍ଳିପ୍ରତା ଅନୁରୋଧରେ, ପୂର୍ବବର୍ତ୍ତୀ ଗବେଷକଗଣଙ୍କର ନିର୍ଦ୍ଧାରଣ ଗୁଡ଼ିକର ଉପାଦେୟତା ନିର୍ବିଶେଷରେ, ସେମାନଙ୍କର ବାରଂବାର ନାମୋଲ୍ଲେଖକୁ କିଛି ପରିମାଣରେ ଏଡ଼ି ଦେବାକୁ ହୋଇଛି। ଡଃ ନଟବର ସାମନ୍ତରାୟ ଏ ସଂପର୍କରେ ଗୋଟିଏ ନିରାଟ ସତ୍ୟ କଥା କହିଛନ୍ତି ଯେ "ହଣ୍ଟରଙ୍କ ଠାରୁ ଆରମ୍ଭ କରି ରସଲକୁଣ୍ଡାର ଭଞ୍ଜସାହିତ୍ୟ ପରିଷଦ ପର୍ଯ୍ୟନ୍ତ ସମସ୍ତେ ହଣ୍ଟରଙ୍କୁ ଅନୁସରଣ କରିଛନ୍ତି; କିନ୍ତୁ ହଣ୍ଟର ସାହେବଙ୍କ ସେଇ ତାଲିକା ନିର୍ଭରଯୋଗ୍ୟ କି ନୁହେଁ ସେ ବିଷୟରେ କେହି ହେଲେ ଚିନ୍ତା କରିଥିବାର ଆଭାସ୍ କେଉଁ ଠାରେ ନାହିଁ" (ସାହିତ୍ୟାଦର୍ଶ, ପୃ୨୨୮)। କେବଳ ହଣ୍ଟରଙ୍କର ତାଲିକାର ଭୁଲ୍‌କୁ ନୁହେଁ, ଅନ୍ୟାନ୍ୟ ଗବେଷକଙ୍କର ଭୁଲ୍‌କୁ ମଧ୍ୟ ପରବର୍ତ୍ତୀ ଗବେଷକମାନେ ସହି କରି ଲାଗିଛନ୍ତି। ଏପରି ପରିସ୍ଥିତିରେ ଉପସ୍ଥିତ ଆଲୋଚନାରେ ଉପେନ୍ଦ୍ରଭଞ୍ଜଙ୍କର ରଚନାବଳୀ ସଂକ୍ରାନ୍ତ ଭ୍ରମଗୁଡ଼ିକର ପ୍ରବର୍ତ୍ତକଙ୍କ

ନାମକୁ ସୂଚିତ କରିଦେବା ଯଥେଷ୍ଟ ହେବ ବୋଲି ବିବେଚନା କରିଛି ଓ ପରବର୍ତ୍ତୀ ବହୁ ଗବେଷକ ଯେ ସେହି ସବୁ ଭ୍ରମକୁ ଦୀର୍ଘଜୀବୀ କରାଇ ଭ୍ରମ-ପ୍ରବର୍ତ୍ତକଙ୍କର ପଦାଙ୍କର ଅନ୍ଧାନୁସରଣ କରି ଚାଲିଛନ୍ତି ସେକଥା ତୁହାଇ ତୁହାଇ ଘୋଷଣା କରିବାର ଆବଶ୍ୟକତା ରହିଛି ବୋଲି ମନେ କରିନାହିଁ।

ସ୍ୱୟଂ କବି ଉପେନ୍ଦ୍ରଭଞ୍ଜ ସ୍ୱରଚିତ ଅଗଣିତ ରଚନା ମଧ୍ୟରୁ ମୁଖ୍ୟ ମୁଖ୍ୟ କେତୋଟିର ଏକ ତାଲିକା ବନ୍ଧୋଦୟ (ମୁଦ୍ରିତ ଗ୍ରନ୍ଥର ନାମ ଚିତ୍ରକାବ୍ୟ ବନ୍ଧୋଦୟ)କାବ୍ୟର ଆରମ୍ଭରେ ଦେଇଛନ୍ତି। ଉପେନ୍ଦ୍ର ସେଠାରେ ଯାହା ଲେଖିଛନ୍ତି ତାହାର ବ୍ୟାଖ୍ୟା ଉପରେ ତାହାଙ୍କର ରଚନାବଳୀର ପରିଚୟ କିଛି ମାତ୍ରାରେ ନିର୍ଭର କରୁଥିବାରୁ ନିମ୍ନରେ ପ୍ରାସଙ୍ଗିକ ପଦଗୁଡ଼ିକୁ ପୂରା ଉଦ୍ଧାର କରୁଛି। କଟକ ପ୍ରିଣ୍ଟିଂ କମ୍ପାନୀ ଦ୍ୱାରା ଖ୍ରୀ.୧୯୦୬ରେ 'ଚିତ୍ରକାବ୍ୟ ବନ୍ଧୋଦୟ' ନାମରେ ପ୍ରଥମବାର ପ୍ରକାଶିତ ଏହି କାବ୍ୟର ପ୍ରଥମ ଛାନ୍ଦରେ ଥିବା ପ୍ରାସଙ୍ଗିକ ପଦଗୁଡ଼ିକୁ ଦେଇ, ଖ୍ରୀ. ୧୯୦୫ରେ ଉତ୍କଳ ସାହିତ୍ୟର ୮ମ ଭାଗର ୧୦ମ ସଂଖ୍ୟାରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ତାଳପତ୍ର ପୋଥିରୁ ଦେଇଥିବା ଉଦ୍ଧୃତି ପ୍ରକାଶିତ କାବ୍ୟର ପାଠ ଠାରୁ ଭିନ୍ନ ହେବା ସ୍ଥଳଗୁଡ଼ିକରେ ତାଳପତ୍ର ପୋଥିରୁ ପାଠକୁ ଚନ୍ଦ୍ରବନ୍ଧନୀ ମଧ୍ୟସ୍ଥକରି ଦେଖାଇ ଦେଇଛି।

ଏଣୁ ଏ କବି ବିଚାରଇ ଚିତ୍ତେ (ଚିତ୍ତ)।
କରି ମୁଁ ଅନେକ ପ୍ରକାଶ ଗୀତେ (ପରକାରେ ଗୀତ)॥୯
ଅଶେଷ ଚଉତିଶା ଚଉପଦୀ।
ତାହା କେତେ ଯେ (ଟି) କହିବି ସମ୍ପାଦି॥୧୦॥
ଗାହା (ତାହା) ଦୋହା ଷୋଡ଼ଶେନ୍ଦୁ ଛ (ସୁଛନ୍ଦ ଛଅ) ପୋଇ।
ଇତ୍ୟାଦି କବିତ୍ୱ ଗଣନା ନାହିଁ (ନୋହି)॥୧୧॥
ରସ କୃଷ୍ଣ ବିଷୟ (ବିଷୟେ) ଯେତେ ଗ୍ରନ୍ଥ।
ଚିତ୍ତୋଇ ତହୁଁ କିଛି (କିଛି ଚିତ୍ତୋଇ ତହୁଁ) ଲେଖେ ଏଥ॥୧୨॥
ପୁରାଣ ଛାଇ (ଛଇ) କଳ୍ପନା ମାଧୁରି।
ଚାରୁ ଚିତ୍ରଲେଖା (ଚିତ୍ରରେଖା) ହେମମଞ୍ଜରୀ॥୧୩॥
ରସଲେଖା କାମକଳା ରଚିତ।
ମନୋରମା ପ୍ରେମଲତା ସୁଗୀତ॥୧୪॥
ଭାବବତୀ ମୁକ୍ତାବତୀ ପ୍ରମାଣ।
ବରକଲୀଳା ଯେ ଛାନ୍ଦଭୂଷଣ॥୧୫॥
ଷଡ଼ଗତୁ କଳାକଉତୁକର।
କ'ନିୟମ (ସ'ନିୟମ) ସାଦ୍ୟ ସୁଭଦ୍ରା ସାର॥୧୬॥
ବୈଦେହୀଶ ବିଳାସ ସେହି ବାଦ୍ୟ।
ପ୍ରସିଦ୍ଧ ଅବନା ଦ୍ୱାଦଶ ଛାନ୍ଦ॥୧୭॥

ରାମଲୀଳାମୃତ ଶ୍ଳେଷ ଚରିତ (ଶ୍ଳେଷେ ରଚିତ)।
ପ୍ରେମସୁଧାନିଧି ଯମକେ (ଯମକ) ସ୍ଥିତ ॥୧୮॥
ରସିକ ହାରାବଳୀ ନାମେ ଗୀତ।
କୁଞ୍ଜବିହାରାଦି (ବିହାର ଯେ) ଶ୍ୟାମ ଚରିତ ॥୧୯॥
ଅଳଂକାର ରୀତି (ମଧ୍ୟେ) ରସପଞ୍ଚକ।
ଲାବଣ୍ୟବତୀ ରସିକ ତୋଷକ ॥୨୦॥
ପୁରୁଷୋତ୍ତମ ମାହାତ୍ମ୍ୟ ରଚନ॥
ନାନା କୋଷ ଶବ୍ଦେ ଗୀତାଭିଧାନ ॥୨୧ ॥
ଛାନ୍ଦ କୋଟୀ ତାରା (ତାରା କୋଟୀ) ଚନ୍ଦ୍ରମା ପରି॥
ଯା ନାମ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ॥୨୨॥
ତ୍ରୈଲୋକ ମୋହିନୀ ଆଦି ଯେ (ଯେ ଆଦ୍ୟ) ଗୀତ।
ନିର୍ମିତ ଛାନ୍ଦ ପୋଥି ପାଞ୍ଚସାତ (ପଞ୍ଚଶତ)॥୨୩॥
ସେ ଅର୍ଥ ପାର୍ଥିବ-ମାର୍ଗଣେ ପୁଣ।
ହୋଇଛି ଯେଣୁକରି ବିତରଣ ॥୨୪॥
ବାଲ୍ମୀକେ ମହାନାଟକ ପ୍ରକାରେ।
ଦତ୍ତ ହେଲାପ୍ରାୟ ହନୁମନ୍ତରେ॥୨୫॥
ସେ ଏଣୁ ଲେଖା ନୋହିଲା ଲେଖାରେ।
ନ ଗ୍ରହି ଦାନଧନ ଭୂଲେଖରେ ॥୨୬॥
ଏତେ ପ୍ରକାରେ କରି ଛାନ୍ଦ ଗୀତ।
ଚିତ୍ର କବିତ୍ୱେ ବଲାଇଲି ଚିତ୍ତ ॥୨୭ ॥

ଏଥିର ପ୍ରଥମ ଚାରି (୯ ରୁ ୧୨) ପଦ ମଧରେ କବି କି କି ପ୍ରକାରର କବିତ୍ୱ କରିଛନ୍ତି ତାହାର ସୂଚନା (ଚଉତିଶା, ଚଉପଦୀ, ଗାହା, ଦୋହା, ପୋଇ ଇତ୍ୟାଦି) ଲେଖିସାରି ୧୩ରୁ ୨୨ ପଦ ମଧରେ ସ୍ୱରଚିତ ପ୍ରଧାନ ପ୍ରଧାନ ଗ୍ରନ୍ଥର ପରିଚୟ ଦେଇଛନ୍ତି ଓ ଅବଶିଷ୍ଟ ପଦଗୁଡ଼ିକରେ ଜଣାଇଛନ୍ତି ଯେ ସେ ଲେଖିଥିବା ଅନେକ କାବ୍ୟକୁ କେତେକ ରାଜାଙ୍କ ନାମରେ ଅଙ୍କିତ କରି ସମର୍ପଣ କରି ସାରିଥିବା ହେତୁରୁ ଏହି ତାଲିକାରେ ଅନ୍ତର୍ଭୁକ୍ତ କରିନାହାନ୍ତି। ସେ ଲେଖିଥିବା ଅଗଣିତ (ଗଣନା ନାହିଁ) କାବ୍ୟ ମଧରୁ କେତୋଟି ରସ (କାଳ୍ପନିକ କାବ୍ୟ), କୃଷ୍ଣ (କୃଷ୍ଣ ଓ ରାମ ଚରିତ ମୂଳକ କାବ୍ୟ) ଓ ବିଷୟ (ଅଳଂକାର, କୋଶ ଗ୍ରନ୍ଥ) ରଚନାକୁ ମନେ ପକାଇ (ଚିହ୍ନୋଇ ତହୁଁ କିଛି) ଏଠାରେ ଜଣାଇଛନ୍ତି। ତାଲିକାଟିକୁ ଅଧୟନ କଲେ ଜଣାଯିବ ଏଥିରେ ସେ ବଛା ବଛା କେତୋଟି ଗ୍ରନ୍ଥକୁ ସ୍ଥାନ ଦେଇଛନ୍ତି ଓ ସ୍ଥାନିତ ପ୍ରତ୍ୟେକ ଗ୍ରନ୍ଥର ଉଲ୍ଲେଖନୀୟ ସ୍ୱାତନ୍ତ୍ର୍ୟ କିଛି ନା କିଛି ରହିଥିବା କଥା ସେ ଜଣାଇଛନ୍ତି।

ଏହି ପ୍ରକାରେ ତାଲିକାଟି ପୂର୍ଣ୍ଣାଙ୍ଗ ନୁହେଁ। ବନ୍ଧୋଦୟ ଲେଖା ହେବା ପରେ ରଚିତ କାବ୍ୟ ସବୁ ତ ଏଥିରେ ସ୍ଥାନ ପାଇ ନ ଥିବା ସ୍ୱାଭାବିକ, ବନ୍ଧୋଦୟ ପୂର୍ବରୁ ଯେଉଁ ଅପ୍ରଧାନ କାବ୍ୟଗୁଡ଼ିକୁ (ଯଥା : ସବୁର୍ଣ୍ଣରେଖା) କବି ଲେଖିଥିଲେ ଯାହାର ପ୍ରାଧାନ୍ୟ ଅଭାବ ଥିବାରୁ ହୁଏତ ତାଲିକା କଲାବେଳେ କବିଙ୍କର ସ୍ମରଣ ହେଲା ନାହିଁ ଅଥବା ସ୍ମରଣ ହେଲେ ସୁଦ୍ଧା ଏପରି ଏକ ସୁନିର୍ବାଚିତ ତାଲିକାରେ ସ୍ଥାନ ପାଇବା ଭଳି ଗୌରବ ଯାହାର ନାହିଁ ବୋଲି କବି ସ୍ଥିର କଲେ ସେହି ସବୁ କାବ୍ୟ ମଧ୍ୟ ଏ ତାଲିକାରେ ସ୍ଥାନ ପାଇନାହାନ୍ତି। କବିଙ୍କର ରଚନାବଳୀ ନିରୂପଣ କଲାବେଳେ ସ୍ୱୟଂ କବିଙ୍କ ଦ୍ୱାରା ପ୍ରସ୍ତୁତ ଏହି ତାଲିକାଟି ଆଦୌ ବିଚାର୍ଯ୍ୟ। ଏଥିରେ ସ୍ଥାନ ପାଇଥିବା କେତୋଟି ଗ୍ରନ୍ଥ ବର୍ତ୍ତମାନ ଉପଲବ୍ଧ ହେଉ ନ ଥିବା ହେତୁରୁ ଏହାକୁ ବିଚାରକୁ ନ ନେଲେ କବିଙ୍କର ରଚନାବଳୀର ବିବରଣ ଅପୂର୍ଣ୍ଣ ରହିଯିବା ନିଶ୍ଚିତ। ଅନୁଧ୍ୟାନ କଲେ ସ୍ପଷ୍ଟ ହେବ ତାଲିକାଟି ପ୍ରଥମ ଭାଗରେ (୧୦ ପଦରୁ ୧୫ ପଦର ପ୍ରଥମ ପାଦ ମଧ୍ୟରେ) କାଳ୍ପନିକ କାବ୍ୟ (ରସ) ଓ ମଧ୍ୟ ଭାଗରେ (୧୫ ପଦର ଦ୍ୱିତୀୟ ପାଦରୁ ୧୮ ପଦର ପ୍ରଥମ ପାଦ ମଧ୍ୟରେ) ପୌରାଣିକ କାବ୍ୟ (କୃଷ୍ଣ) ଗୁଡ଼ିକୁ ଅନ୍ତର୍ଭୁକ୍ତ କରେ ଓ ଶେଷ ଭାଗରେ (ପ୍ରେମସୁଧାନିଧିରୁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଯାଏଁ) କାବ୍ୟର ପ୍ରାଧାନ୍ୟ କ୍ରମେ ଲେଖାହୋଇଛି। ଏଣୁ ସ୍ଥିର କରାଯାଇପାରେ ଯେ ଉପେନ୍ଦ୍ରଭଞ୍ଜ ରଚନା ଗୁଡ଼ିକର ସୃଷ୍ଟିକ୍ରମ ଅନୁସାରେ ତାଲିକାଟିକୁ ଲେଖି ନାହାନ୍ତି। ସେ ସ୍ୱବିବେଚନା ମତେ ଶ୍ରେଷ୍ଠ ରଚନାଗୁଡ଼ିକୁ ଅଲଗା କରି ଅନ୍ୟଗୁଡ଼ିକୁ କ୍ରମଶଃ କାଳ୍ପନିକ କାବ୍ୟ, କୃଷ୍ଣଲୀଳାମୂଳକ କାବ୍ୟ ଓ ରାମଲୀଳାମୂଳକ କାବ୍ୟ ଭାବେ ବର୍ଗୀକୃତ କରିସାରି ଶ୍ରେଷ୍ଠ ବିବେଚିତ ରଚନା ଗୁଡ଼ିକୁ ତାଲିକା ଶେଷକୁ ସ୍ଥାନ ଦେଇଛନ୍ତି। ଏହି ଦୃଷ୍ଟିରେ କବିଙ୍କୁ ଏଠାରେ ସ୍ୱକୃତିର ମୂଲ୍ୟାଙ୍କନ କରିବାରେ ଜଣେ ସମାଲୋଚକ ଭାବରେ ବିଚାର କରାଯାଇ ପାରେ। ନିମ୍ନରେ ଉପେନ୍ଦ୍ରଭଞ୍ଜ ପ୍ରସ୍ତୁତ କରିଥିବା ତାଲିକାକୁ ଧରି ଅଦ୍ୟାବଧି ଜ୍ଞାତ ରଚନାଗୁଡ଼ିକର ନାମୋଲ୍ଲେଖ କରୁଛି।

**କୋକିଳ/ଯମକରାଜ ଚଉତିଶା; କେଳିବାହୁଡ଼ା ଚଉତିଶା;**
**ଚିଟାଉ ଚଉତିଶା/ଛାନ୍ଦ**

ବନ୍ଧୋଦୟର ଉକ୍ତିର ୧୦ମ ପଦରେ କବି ବହୁତ ଗୁଡ଼ିଏ ଚଉତିଶା ଓ ଚଉପଦୀ (ଅଶେଷ) ଲେଖିଥିବା କଥା ଜଣାଇଛନ୍ତି। ସେହିକାରଣରୁ ସେଗୁଡ଼ିକର ନାମ ଦେଇ ନାହାନ୍ତି ('ତାହା କେତେ ଯେ କହିବି ସଂପାଦି)। ଚଉତିଶା ଗୁଡ଼ିକ ମଧ୍ୟରୁ ଅଳ୍ପ କେତୋଟି ମାତ୍ର ଲୋକ ଲୋଚନକୁ ଆସିପାରିଛି।

କବିଙ୍କର କୋକିଳ ଚଉତିଶା (ନାମାନ୍ତର ଯମକରାଜ ଚଉତିଶା) ସଠିକ ପ୍ରକାଶ ପାଇଛି। ତାଙ୍କର କେଳିବାହୁଡ଼ା ଚଉତିଶାଟି ମଧ୍ୟ ଏକାଧିକ ବାର ପ୍ରକାଶ ପାଇଛି (ଡଃ ମହତାବଙ୍କ ଓଡ଼ିଶା ଇତିହାସର ସାହିତ୍ୟ ପରିଶିଷ୍ଟ ଦ୍ରଷ୍ଟବ୍ୟ)।

ଚିଟାଉ ଚଉତିଶାର ଅନ୍ୟନାମ ଚିଟାଉ ଛାନ୍ଦ, ଯାହାକୁ 'ଉପେନ୍ଦ୍ରଭଞ୍ଜ ଜୀବନୀ'ରେ ଦାମୋଦର ଦାସ ଭୁଲ୍‌ରେ (ଅଥବା ମୁଦ୍ରଣ ପ୍ରମାଦ ଯୋଗୁଁ) 'ଚିହ୍ନାଉ ଛାନ୍ଦ' ବୋଲି ନାମିତ କରିଛନ୍ତି। କବିଙ୍କର ଆହୁରି ଅନେକ ଅନେକ (ହୁଏତ ବିଂଶାଧିକ) ଚଉତିଶା ପ୍ରକାଶ ନ ପାଇ ରହିଥାଇ ପାରେ ବା ନଷ୍ଟ ହୋଇଯାଇ ଥାଇପାରେ।

'ଉପେନ୍ଦ୍ର' ଭଣିତିଯୁକ୍ତ 'ନୀଳାଦ୍ରୀଶ ଚଉତିଶା' ଖ୍ରୀ-୧୯୫୬ରେ ସଦାଶିବ ରଥ ଶର୍ମାଙ୍କ ଦ୍ୱାରା ସଂଗୃହୀତ ହୋଇ ଖ୍ରୀ.୧୯୮୦ରେ ପ୍ରକାଶିତ ହେଲା। ଚଉତିଶା ପ୍ରକାଶ ପାଇବା ପୂର୍ବରୁ ତାହାର ପଦେ ଦୁଇ ପଦ ଉଦ୍ଧୃତି ବିଭିନ୍ନ ସ୍ଥାନରେ ସନ୍ନିବେଶିତ ହେଉଥିଲା ଓ ତାହା ଉପେନ୍ଦ୍ରଭଞ୍ଜଙ୍କ ରଚନା ବୋଲି ଗୃହୀତ ହୋଇ ଆସୁଥିଲା। ସଂପୂର୍ଣ୍ଣ ଚଉତିଶାଟି ପ୍ରକାଶ ପାଇବାରୁ ଜଣାଯାଉଛି ଏହା ପ୍ରକୃତରେ ଉପେନ୍ଦ୍ର ନାମଧାରୀ କବିତ୍ୱଶକ୍ତି ବର୍ଜିତ କୌଣସି ପଣ୍ଡିତ (ସମ୍ଭବତଃ ଷଟ୍‌କର୍ମ ସଚେତନ କ୍ଷତ୍ରିୟ) ଶବ୍ଦ ସଂଯୋଜନାକୁ ଅତିଶୟ କୃତ୍ରିମ ଓ ଜଟିଳ କରି ଲେଖିଛି। ଏହାର ବହୁ ଅଂଶ ଅବୋଧ ଓ କବିତ୍ୱ ବର୍ଜିତ। ଏଥିରେ ଅନେକତ୍ର (୨ୟ ଓ ୧୦ମ ପଦରେ) ପାଦାଦ୍ୟ ନିୟମ ରକ୍ଷା ହୋଇନାହିଁ ଓ ମିତ୍ରାକ୍ଷର ନିୟମ ଭଙ୍ଗ ଘଟିଛି। ଏହି ସବୁ କାରଣରୁ ଏହା ଉପେନ୍ଦ୍ରଭଞ୍ଜଙ୍କର ରଚନା ଭଳି ପ୍ରତୀତି ଜନ୍ମୁନାହିଁ।

ହଣ୍ଟରଙ୍କ ଓଡ଼ିଶାରେ ମୁଦ୍ରଣ-ପ୍ରମାଦ ଯୋଗୁଁ ଉପେନ୍ଦ୍ରଭଞ୍ଜଙ୍କ ରଚନା ବୋଲି ଉଲ୍ଲିଖିତ Bachutisa (ଅର୍ଥାତ୍ ବା'ଚଉତିଶା) ନାମଟି ଭୁଲ୍‌ରେ Bachantisa ବୋଲି ଛପା ହୋଇଯାଇଛି। ବୀମ୍‌ସଙ୍କର ହସ୍ତାକ୍ଷରର u ଅକ୍ଷରଟିକୁ ଲଣ୍ଡନର ମୁଦ୍ରାକର ଅନେକତ୍ର n ବୋଲି ଗ୍ରହଣ କରିଛି। ଫଳତଃ ବା'ଚଉତିଶା 'ବଛନ୍ତିଶ' ହୋଇଯାଇଛି। କଳାକଉତୁକ, ପୀୟୂଷ ରତ୍ନାକର ଆଦି ଅନ୍ୟାନ୍ୟ ଗ୍ରନ୍ଥର ନାମରେ ଅନୁରୂପ ଭ୍ରମ ରହିଛି। ହଣ୍ଟର ନିଜେ ଓଡ଼ିଆ ଭାଷା ଜାଣି ନଥିବା ଯୋଗୁଁ ମୁଦ୍ରଣ ବେଳେ ତାହାକୁ ସଂଶୋଧନ କରିପାରି ନାହାନ୍ତି। ତେବେ ବହୁ ଓଡ଼ିଆ ଗବେଷକ 'ନକଲ ମେ ଅକଲ କ୍ୟା' ନ୍ୟାୟରେ 'ବଛନ୍ତୀଶ' ନାମକ କାବ୍ୟ ଉପେନ୍ଦ୍ରଭଞ୍ଜ ରଚନା କରିଛନ୍ତି ବୋଲି ଉଲ୍ଲେଖ କରିବା ବଡ଼ ମଜାଦାର କଥା। ଅନନ୍ତ ପଦ୍ମନାଭ ପଟ୍ଟନାୟକଙ୍କ ପର୍ଯ୍ୟନ୍ତ ଅଧିକାଂଶ ଗବେଷକ ଏହି ଭ୍ରମର ଗଡ୍ଡାଳିକା ପ୍ରବାହରେ ପଡ଼ିଛନ୍ତି। 'ବଛନ୍ତୀଶ'ର ଜନକ 'ବା ଚଉତିଶା'କୁ ମଧ୍ୟ ଉପେନ୍ଦ୍ରଭଞ୍ଜଙ୍କ ଦ୍ୱାରା ରଚିତ ବୋଲି ନିର୍ଣ୍ଣୟ କରିହେଉ ନାହିଁ। ଲୋକନାଥ ଆଦିଙ୍କ ନାମରେ ଭଣିତ ଏକାଧିକ 'ବା ଚଉତିଶା' ମୁଦ୍ରିତ ହେଲାଣି କିନ୍ତୁ କୌଣସିଟି ଉପେନ୍ଦ୍ରଭଞ୍ଜଙ୍କର ନୁହେଁ। ହଣ୍ଟରଙ୍କ ତାଲିକାରେ ଜଣେ କବିଙ୍କର ରଚନା ଅନ୍ୟ ଜଣେ କବିଙ୍କର ରଚନା ଭାବରେ ପରିଗଣିତ ହେବା ଦୃଷ୍ଟାନ୍ତ ରହିଛି। ତେଣୁ 'ବା ଚଉତିଶା' ପ୍ରକାଶ ପାଇ ନ ଥିବା ଅବସ୍ଥାରେ ହଣ୍ଟରଙ୍କ ତାଲିକା ଉପରେ ଭରସା କରି ତାହା ଉପେନ୍ଦ୍ରଭଞ୍ଜ ଲେଖିଥିଲେ ବୋଲି କହି ହେଉ ନାହିଁ।

## ଚଉପଦୀ ଭୂଷଣ; ଚଉପଦୀ ଚନ୍ଦ୍ର

ଉପେନ୍ଦ୍ରଭଞ୍ଜ ଅଶେଷ ଚଉପଦୀ ଲେଖିଥିବା ନିଃସନ୍ଦେହ, ଏଗୁଡ଼ିକ ଶତାଧିକ ହୋଇପାରେ। ତାଙ୍କର ଚଉପଦୀ ଗୁଡ଼ିକ ବିଭିନ୍ନ କବିଙ୍କର ଚଉପଦୀର ସଂଗ୍ରହ ତାଳପତ୍ର ପୋଥିରେ ଓ ପ୍ରାଚୀନ ଗୀତର କେତେକ ଆଧୁନିକ ସଂଗ୍ରହ ପୁସ୍ତକରେ ବିଞ୍ଛି ହୋଇ ରହିଛନ୍ତି। ନିରୋଳ ଭାବରେ କେବଳମାତ୍ର ଉପେନ୍ଦ୍ରଭଞ୍ଜ ପ୍ରଣୀତ ଚଉପଦୀଗୁଡ଼ିକର ସଂଗ୍ରହ ହୋଇଥିବା କୌଣସି ତାଳପତ୍ର ପୋଥି ମୋ ଦୃଷ୍ଟିରେ ପଡ଼ିନାହିଁ। 'ସଂଗୀତ ଉପେନ୍ଦ୍ରଭଞ୍ଜ' ନାମରେ ୨୫/୨୬ଟି ଚଉପଦୀର ସଂଗ୍ରହ ପୁସ୍ତକର ଏକାଧିକ ସଂସ୍କରଣ ବଜାରରେ ମିଳୁଛି। ଏହି ସଂଗ୍ରହଟି ବିଂଶ ଶତାବ୍ଦୀରେହିଁ ପ୍ରସ୍ତୁତ ହୋଇଛି। ଏଣୁତେଣୁ (ଯଥା, ଚଉପଦହରାରୁ) ଉପେନ୍ଦ୍ରଭଞ୍ଜଙ୍କର କେତୋଟି ଲୋକପ୍ରିୟ ଚଉପଦୀ ଗୀତ ସଂଗ୍ରହ କରାଯାଇ (ଭୁଲ୍‌ରେ ଏହି ସଂଗ୍ରହ ମଧ୍ୟକୁ ବଡ଼ଖେମୁଣ୍ଡିର ବିଂଶ ଶତାବ୍ଦୀର ରାଜା କୃପାମୟ ଦେବଙ୍କର ଗୋଟିଏ ଚଉପଦୀ ପଶି ଆସିଛି) ଏହା ପ୍ରସ୍ତୁତ ହୋଇଛି। 'ସଂଗୀତ ଉପେନ୍ଦ୍ରଭଞ୍ଜ' ନାମଟି ମଧ୍ୟ ଆଧୁନିକ; ପୂର୍ବେ ଏ ସବୁର ନାମରେ ସଂଗୀତ ନଥିଲା, ଥିଲା ଚଉପଦୀ। ସ୍ୱର, ତାଳ, ବାଦ୍ୟ ଆଦି ସଂଯୁକ୍ତ ହେବା ପରେ ଚଉପଦୀ ସଂଗୀତ ହେବ। 'ସଂଗୀତ ଉପେନ୍ଦ୍ରଭଞ୍ଜ'ରେ ମୁଦ୍ରିତ କେତୋଟି ଚଉପଦୀ ସହିତ ଆଉ କେତୋଟି ଛାନ୍ଦ-ଚଉପଦୀକୁ ମିଶାଇ ଲାବଣ୍ୟନିଧି ନାମରେ ମୁଦ୍ରିତ ତିନି ଚାରି ପ୍ରକାର ସଂଗ୍ରହପୁସ୍ତିକା ବଜାରରେ ମିଳୁଛି। ଭିନ୍ନ ଭିନ୍ନ 'ଲାବଣ୍ୟନିଧି' ପୁସ୍ତିକାରେ ଭିନ୍ନ ଭିନ୍ନ ସଂଖ୍ୟକ (କେଉଁଠି ୧୦, କେଉଁଠି ୧୫ ତ କେଉଁଠି ୧୬) ଛାନ୍ଦ-ଚଉପଦୀ ସଂଗୃହୀତ ହୋଇଛି। ଉପେନ୍ଦ୍ରଭଞ୍ଜଙ୍କ ରଚନାବଳୀର ତାଲିକା ମଧ୍ୟରେ ଆଲୋଚକମାନେ ଅକାରଣ ସଂଗୀତ ଉପେନ୍ଦ୍ରଭଞ୍ଜ ଓ ଲାବଣ୍ୟନିଧିକୁ ଅନ୍ତର୍ଭୁକ୍ତ କରିଆସୁଛନ୍ତି। ଅବିମିଶ୍ର ଭାବରେ ଉପେନ୍ଦ୍ରଭଞ୍ଜଙ୍କର ଚଉପଦୀଗୁଡ଼ିକର ଏକ ଯଥାସମ୍ଭବ ପୂର୍ଣ୍ଣାଙ୍ଗ ସଂକଳନ ପାଇଁ ଉଦ୍ୟମ ହେଲେ ଉକ୍ତ ପୁସ୍ତିକାଦ୍ୱୟ ତହିଁରେ ଲୀନ ହୋଇଯିବେ।

ହଣ୍ଟର ତାଙ୍କ ତାଲିକାରେ 'ସଂଗୀତ କୌମୁଦୀ' ନାମକ ଏକ ଗ୍ରନ୍ଥକୁ ଅନ୍ତର୍ଭୁକ୍ତ କରି ତାହା ଏକ ସଂଗୀତ ଶାସ୍ତ୍ର (a treatise on music) ବୋଲି ଲେଖିଛନ୍ତି ଓ ଅନ୍ୟାନ୍ୟ ଗବେଷକ ନିର୍ବିଚାରରେ ତାହାକୁ ମାନି ଯାଇଛନ୍ତି। ହଣ୍ଟର ତାଙ୍କ 'ଓଡ଼ିଶା'ର ଦ୍ୱିତୀୟ ଖଣ୍ଡର 'ଓଡ଼ିଶାର ସାହିତ୍ୟ' ପରିଶିଷ୍ଟଟି "based upon manuscripts (vernacular and English)" ବୋଲି ଜଣାଇଥିବା ସତ୍ତ୍ୱେ ସେଥିରେ ଏତେ ମାତ୍ରାରେ ଭ୍ରମପ୍ରମାଦ ଅଛି ଯେ ତାହାକୁ ଅନ୍ୟ ପ୍ରମାଣ ନ ମିଳିଲେ ଗ୍ରହଣ କରି ହେଉନାହିଁ। ଓଡ଼ିଆରେ ଏପରି କୌଣସି ସଂଗୀତଶାସ୍ତ୍ର ଲେଖା ହୋଇଥିବା ବିଶ୍ୱାସ ହେଉନାହିଁ। ସଂଗୀତ ଶାସ୍ତ୍ରରେ ବ୍ୟବହାର୍ଯ୍ୟ ପାରିଭାଷିକ ଶବ୍ଦାବଳୀ ଓଡ଼ିଆରେ ଅଦ୍ୟାବଧି ଅଭାବ। ବିଚ୍ଛନ୍ଦଚରଣ ପଟ୍ଟନାୟକ 'ସଂଗୀତକୌମୁଦୀ' ଏକ ଗୀତ ସଂଗ୍ରହ

(a collection of songs) ବୋଲି ଜଣାଇଛନ୍ତି। ଶ୍ରୀ ପଟ୍ଟନାୟକ ହଣ୍ଟରଙ୍କ ସଂଗୀତଶାସ୍ତ୍ରକୁ ଗୀତ ସଂଗ୍ରହରେ ପରିଣତ କରାଇଦେଲେ। ସେ ଏପରି କୌଣସି ପୋଥି ଦେଖିଥିବା ସମ୍ଭବପର ମନେ ହେଉନାହିଁ। କାରଣ, ଯଦି ତାହା ଗୀତସଂଗ୍ରହ ହୁଅନ୍ତା ତେବେ ସଂଗୀତ-କୌମୁଦୀ ନାମ ନିଅନ୍ତା ନାହିଁ।

'ଚଉପଦୀ ଭୂଷଣ' ନାମରେ ଖ୍ରୀ. ୧୮୮୩ରୁ ମୁଦ୍ରିତ ( ଓ ପରେ ପୁନର୍ମୁଦ୍ରିତ) ଏକ ଚଉପଦୀ ସଂଗ୍ରହ ପୁସ୍ତକ ପ୍ରକୃତରେ ଗୋଟିଏ ଏକକ ରଚନା ଯାହାର ୩୪ଟି ଚଉପଦୀ ମଧ୍ୟରୁ ପ୍ରତ୍ୟେକଟିର ପାଦାଦ୍ୟ ବର୍ଣ୍ଣ କ୍ରମାନ୍ୱୟରେ କ ଠାରୁ କ୍ଷ ଯାଏଁ ବ୍ୟଞ୍ଜନ ବର୍ଣ୍ଣ। ଏହା ବଳଦେବ ରଥଙ୍କର 'ଚଉପଦୀ ରତ୍ନାକର' ଓ ଚଉପଦୀ ଚନ୍ଦ୍ରୋଦୟ ପରି ଗୋଟିଏ ଚଉପଦୀ ଗୁଚ୍ଛ, ଯାହାକୁ ଆଜିକାଲି ଚଉପଦୀ-ଚଉତିଶା ଆଖ୍ୟା ଦିଆଯାଉଛି। ବଳଦେବ ରଥଙ୍କର ବିଖ୍ୟାତ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ମଧ୍ୟରେ ମଧ୍ୟ ବର୍ଣ୍ଣନିୟମରେ ରଚିତ ୩୪ଟି ଚଉପଦୀ ଥିବା ଯୋଗୁଁ ଉପେନ୍ଦ୍ରଭଞ୍ଜଙ୍କ ଚଉପଦୀ ଭୂଷଣକୁ ଭୁଲ୍‌ରେ 'ଉପେନ୍ଦ୍ରଭଞ୍ଜ ଚମ୍ପୂ' ବୋଲି ନାମିତ କରାଯାଉଛି। ଉପେନ୍ଦ୍ରଙ୍କ ପିତାମହ ଧନଞ୍ଜୟ ଭଞ୍ଜଙ୍କର ମଧ୍ୟ 'ଚଉପଦୀ ଭୂଷଣ' ନାମରେ ଅନ୍ୟ ଏକ ଚଉପଦୀଗୁଚ୍ଛ ରହିଛି। କିନ୍ତୁ, ଧନଞ୍ଜୟ କେତୋଟି ବର୍ଣ୍ଣକୁ ପାଦାଦ୍ୟ କରି ଏକାଧିକ ଚଉପଦୀ ରଚନା କରିଥିବାରୁ ସେଥିରେ ଥିବା ମୋଟ ଚଉପଦୀର ସଂଖ୍ୟା ୩୪ରୁ ଅଧିକ ହୋଇଛି।

ଉପେନ୍ଦ୍ର ଭଞ୍ଜ ପ୍ରଣୀତ 'ଚଉପଦୀ ଚନ୍ଦ୍ର' ଖ୍ରୀ. ୧୮୭୬ରୁ ମୁଦ୍ରିତ ହୋଇ ପ୍ରକାଶିତ ହେଲାଣି। ଚନ୍ଦ୍ରର ଷୋଳ କଳା ପରି ଏଥିରେ ଷୋଳଟି ଚଉପଦୀ ରହିଛି ଯାହାର ପାଦାଦ୍ୟ ବର୍ଣ୍ଣ ଯଥାକ୍ରମେ ଅ ଠାରୁ ଅଃ ଏହି ଷୋଳଟି ସ୍ୱରବର୍ଣ୍ଣ। 'ଚଉପଦୀ ଭୂଷଣ'ରେ ଓ 'ଚଉପଦୀ ଚନ୍ଦ୍ର'ରେ କୌଣସି ନିର୍ଦ୍ଦିଷ୍ଟ କଥାବସ୍ତୁ ନଥିଲେ ସୁଦ୍ଧା ନିର୍ଦ୍ଦିଷ୍ଟ ବର୍ଣ୍ଣଶୃଙ୍ଖଳାରେ ଏମାନେ ଗୁଚ୍ଛା ହୋଇଥିବା କାରଣରୁ ଏହି ଦୁଇକୁ ଗ୍ରନ୍ଥ ଭାବରେ ଗଣନା କରାଯିବା ସଙ୍ଗତ ଅଟେ। ବିଚ୍ଛନ୍ଦଚରଣ ପଟ୍ଟନାୟକ ଚଉପଦୀ ଚନ୍ଦ୍ର 'ଚଉପଦୀ ଚନ୍ଦ୍ରିକା' ନାମରେ ଆଉ ଏକ ଗୀତସଂଗ୍ରହ (a collection of songs) ଉପେନ୍ଦ୍ରଭଞ୍ଜଙ୍କର ରହିଛିବୋଲି 'କବିସମ୍ରାଟ ଉପେନ୍ଦ୍ରଭଞ୍ଜ ସ୍ମରଣିକା'' (ଇଂରାଜି, ୧୯୫୦)ରେ ଲେଖିଛନ୍ତି। ଏପରି ଗ୍ରନ୍ଥର ଅସ୍ତିତ୍ୱ ଥିବା ସନ୍ଦେହଜନକ।

'ଚଉପଦୀ ଚନ୍ଦ୍ର' ବିଷୟ ଆଲୋଚନା ପ୍ରସଙ୍ଗରେ ବନ୍ଧୋଦୟର ପୂର୍ବୋଦ୍ଧୃତ ୧୧ ପଦ ''ଗାହା ଦୋହା ଷୋଡ଼ଶେନ୍ଦୁ ଛ ପୋଇ, ଇତ୍ୟାଦି କବିତ୍ୱ ଗଣନା ନାହିଁର ବ୍ୟାଖ୍ୟା ଆବଶ୍ୟକ ହେଉଛି। ଏଥିରେ ଉଲ୍ଲିଖିତ 'ଗାହା', 'ଦୋହା', 'ଷୋଡ଼ଶେନ୍ଦୁ' ଓ 'ଛପୋଇ'କୁ କବି କବିତ୍ୱ କହିଥିବା ପରି ଲାଗେ। ଏ ସବୁ କବି ଏତେ ଅଧିକ ସଂଖ୍ୟାରେ ଲେଖିଛନ୍ତି ଯେ ସେ ଗୁଡ଼ିକୁ ଏହି ତାଲିକାରେ ଗଣନା କରାଯାଉ ନାହିଁ (ବା ଗଣି ହେଉ ନାହିଁ) ବୋଲି କବି ସୂଚାଇଛନ୍ତି। ଏଥିରେ ଉଲ୍ଲିଖିତ

ଗାହା ଓ ଦୋହାକୁ ଉପେନ୍ଦ୍ରଭଞ୍ଜଙ୍କ ଦ୍ୱାରା ରଚିତ ଦୁଇଟି ଗ୍ରନ୍ଥର ନାମ ଓ ସେଥିରେ ନୀତିଗର୍ଭକ କାହାଣୀମାନ ବର୍ଣ୍ଣିତ ହୋଇଛି ବୋଲି ହଣ୍ଟରଙ୍କ ତାଲିକାରେ ଯେଉଁ ନିର୍ଦ୍ଧାରଣ ରହିଲା ତାହା ପରବର୍ତ୍ତୀ ଗବେଷକମାନଙ୍କୁ ଭ୍ରମରେ ପକାଇଲା । ଗାହା ଓ ଦୋହାର ଗଣନା ନାହିଁ ବୋଲି କବି ସ୍ପଷ୍ଟତଃ ଘୋଷଣା କରିଥିବା ହେତୁ ସେହି ଦୁଇଟି ପୃଥକ୍ ଗ୍ରନ୍ଥର ନାମ ବୋଲି ବିଚାରିବା ଭୁଲ୍ । ଗାହା ଓ ଦୋହା ନାମରୁ ଅନୁମାନ କରିବାକୁ ହେଉଛି ଯେ ଏସବୁ ଅଣଓଡ଼ିଆ ରଚନା । ପ୍ରାକୃତରେ ଗାହା ଓ ଦୋହା ଦୁଇପ୍ରକାର ଛନ୍ଦୋବଦ୍ଧ ରଚନା । ଗାହାର ସଂସ୍କୃତ ନାମ ଆର୍ଯ୍ୟା ଓ ଦୋହାର ଦ୍ୱିପଥା । ଗାହାର ୨୭ ପ୍ରକାର ଓ ଦୋହାର ୨୩ ପ୍ରକାର ଭେଦ ରହିଥିବା ପିଙ୍ଗଳ ଦର୍ଶାଇଛନ୍ତି । ପ୍ରାକୃତ ପରି ଅପଭ୍ରଂଶରେ ମଧ୍ୟ ଗାହା ଓ ଦୋହାର ଲୋକପ୍ରିୟତା ସ୍ୱୀକୃତ ହୁଏ । ପ୍ରାଚୀନ ଓଡ଼ିଆ ରଚନାରେ ମଧ୍ୟ ମଧ୍ୟେ ମଧ୍ୟେ ଗାହା ଓ ଦୋହା ଖଞ୍ଜା ଯାଉଥିଲା । ନରସିଂହ ସେଣଙ୍କ 'ଗୋପକେଳି'ରେ 'ଗାହା' ବହୁସ୍ଥାନରେ ସନ୍ନିବେଶିତ ହୋଇଛି । ହିନ୍ଦି ଭାଷାରେ ମଧ୍ୟ ଦୋହା ରଚନା ସୁପ୍ରଚୁର । ଓଡ଼ିଆରେ ଦୋହାକୁ ଦୁହା ଓ ତୁହା ମଧ୍ୟ ବୋଲାଯାଏ ।

''ଭାଟେ କଯେବାର କଉନ୍ତି ସେ ତୁହାପଢ଼ି ।
ଆଗରେ ବୀରକାହାଳୀ ବାଜେ ଯୋଡ଼ି ଯୋଡ଼ି ॥

''ଢଗ ଅବା ଢ଼ମାଳୀ କି ଅବା ପୋଇ ଦୋହା ।
କୃଷ୍ଣରସ ହୋଇଲେ କେ ନ ଶୁଣିବ ତାହା ॥''

ଓଡ଼ିଆରେ ଗାହା କି ଦୋହା ନାମଧେୟ ରଚନା ବର୍ତ୍ତମାନ୍ ଥିବା ଜଣାନାହିଁ କିନ୍ତୁ ପୂର୍ବେ ନିଶ୍ଚୟ ଥିଲା । ବ୍ରଜବୋଲି, ଖରୋଠା (ହିନ୍ଦି), ମୈଥିଳୀ, ବଙ୍ଗଳା ଆଦି ଉତ୍ତର ଭାରତର ଭାଷାରେ ( ଓ ଏସବୁର ଜନନୀ ପ୍ରାକୃତ-ଅପଭ୍ରଂଶ ଭାଷାରେ) ପ୍ରଚୁର ମିଳେ । ଏ ସବୁ ଗାନୋପଯୋଗୀ କ୍ଷୁଦ୍ର କ୍ଷୁଦ୍ର ରଚନା । ଉପେନ୍ଦ୍ର ଭଞ୍ଜ ଯେ ଓଡ଼ିଆ ଓ ସଂସ୍କୃତ ଛଡ଼ା ବଙ୍ଗଳା, ଖରୋଠା, ତେଲଙ୍ଗା ଆଦି ଅନେକ ଭାଷା ଆୟତ୍ତ କରିଥିଲେ ତାହାର ପ୍ରମାଣ 'ବୈଦେହୀଶ ବିଳାସ' (୪୯ ଛାନ୍ଦ, 'ବର୍ଣ୍ଣନ ପଞ୍ଚଭାଷାରେ'), ଛନ୍ଦୋଦୟ (ମହାରଥବନ୍ଧ, 'ଏ ବନ୍ଧେ ସଂସ୍କୃତ, ବଙ୍ଗଳା, ତୈଲଙ୍ଗ, ଖୋରଠାରୀତି') ଆଦିରେ ମିଳୁଛି । ଅଦ୍ୟାବଧି ଉପେନ୍ଦ୍ର ପ୍ରଣୀତ କୌଣସି ଗାହା କି ଦୋହା ମିଳିନାହିଁ । ହୁଏତ, ଓଡ଼ିଶାରେ ଅଣଓଡ଼ିଆ ରଚନା ପାଇଁ ପୁଣି କୁନି କୁନି ସଂସ୍କୃତ ସୁଭାଷିତ, ମୁକ୍ତକ ଢ଼ଙ୍ଗର ରଚନା ପାଇଁ ଗ୍ରାହକତା ଓ ଆଦରର ଅଭାବ ହେତୁରୁ ଓଡ଼ିଆ ଅନୁଲେଖକମାନେ ଏ ଗୁଡ଼ିକୁ ନକଲ ନ କରିବାରୁ ଏହି ରଚନାଗୁଡ଼ିକ ତାଳପତ୍ର ପୋଥି ସହ 'ଆଖୁ ଅନଳ ହୀରାରେ' ବିନାଶ ପ୍ରାୟ ହେଲେ । ମାଗୁଣି ଦାଶ ଭଞ୍ଜଙ୍କ କେତେକ କୁନିକୁନି କବିତା ଛାପିଥିବା କଥା ମୋତେ କହୁଥିଲେ, ତାହା ଅସଲ କି ନୁହେଁ ଜାଣେନା ।

ଗାହା ଓ ଦୋହା ପରେ କବି ଯେଉଁ ଷୋଡ଼ଶେନ୍ଦୁ ଛ ପୋଇ କଥା ଲେଖିଛନ୍ତି ସେଥିର ପୋଇ ଭିନ୍ନ ଅନ୍ୟସବୁ ଅବୋଧ। ତେଣୁ, ଏହି ଅଂଶରେ ପାଠରେ ଭ୍ରମ ରହିଛି ବୋଲି ସିଦ୍ଧାନ୍ତ କରିବା ସମୀଚୀନ ବୋଧ ହେଉଛି। ପ୍ରକାଶିତ 'ଚିତ୍ରକାବ୍ୟ ବନ୍ଧୋଦୟ' ମଧ୍ୟରେ ଅଶୁଦ୍ଧିର ମାତ୍ରା ବିଷୟ ବିଚାର କଲେ ଉଦ୍ଧୃତ ଅଂଶରେ ମଧ୍ୟ କିଛି ଅଶୁଦ୍ଧି ରହିଥିବା ଅନୁମାନ କରାଯାଇ ପାରେ। ବନ୍ଧୋଦୟର କୌଣସି ତାଳପତ୍ର ପୋଥି ମୋ ଦୃଷ୍ଟିରେ ପଡ଼ିନାହିଁ। ଗବେଷକମାନଙ୍କ ମଧ୍ୟରୁ ଏକମାତ୍ର ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଏକ ତାଳପତ୍ର ପୋଥିରୁ ଏ ଅଂଶଟି ଉଦ୍ଧାର କରିଥିବା ଜଣାପଡ଼ୁଛି। ଉଲ୍ଲେଖନୀୟ ଯେ ପଣ୍ଡିତ ରଥଙ୍କର ଏହି ଅଂଶର ପାଠ ହେଲା 'ସୁଛନ୍ଦ ଛଅ ପୋଇ'। ଏହି ପାଠାନ୍ତର ମଧ୍ୟ ସିଦ୍ଧ କରୁଛି ଯେ ପୋଇ ଛଡ଼ା ଅବଶିଷ୍ଟ ପଦଗୁଡ଼ିକ, ବିଶେଷତଃ 'ଶୋଡ଼ଶେନ୍ଦୁ' ଓ ସୁଛନ୍ଦ ଅବୋଧ୍ୟ। ପ୍ରହ୍ଲାଦ ପ୍ରଧାନଙ୍କ ବ୍ୟାଖ୍ୟାନକୁ ସମର୍ଥନ କରି ଗୌରୀକୁମାର ବ୍ରହ୍ମା 'ଷୋଡ଼ଶେନ୍ଦୁ'ର ଅର୍ଥ ଷୋଳଟି ଚଉପଦୀ ବିଶିଷ୍ଟ ଚଉପଦୀଚନ୍ଦ୍ର ଜାତୀୟ ରଚନା ଯାହାର ନାମାନ୍ତର 'ଷୋଡ଼ଶା' ବୋଲି ମତ ଦେଇଛନ୍ତି (ଭଞ୍ଜଭୂମିକା, ପୃ ୫୮୦)। ଷୋଡ଼ଶେନ୍ଦୁ ଶବ୍ଦଟି ଏହି ଏକମାତ୍ର ପାଠାନ୍ତରରେ ଉଲ୍ଲିଖିତ ହେବା ଛଡ଼ା ଅନ୍ୟତ୍ର ଅଲଭ୍ୟ ହେବା ହେତୁରୁ ଏଠାରେ ପାଠଟି ସାର୍ଥକ ନୁହେଁ ବୋଲି ସ୍ଥିର କରିବା ଯୁକ୍ତିଯୁକ୍ତ ହେବ। 'ଚଉପଦୀ ଚନ୍ଦ୍ର'କୁ ଅନ୍ୟତମ ଷୋଡ଼ଶେନ୍ଦୁ ବୋଲି ନିରୂପଣ କଲେ ଉପେନ୍ଦ୍ର ଭଞ୍ଜ ଏହି ଜାତୀୟ ଅନେକଗୁଡ଼ିଏ ('ଗଣନା ନାହିଁ' ଆଲୋଚ୍ୟ) ଲେଖା ରଚନା କରିଥିବା ସ୍ୱୀକାର କରିବାକୁ ପଡ଼ିବ, ଅଥଚ ଏ ଜାତୀୟ ଦ୍ୱିତୀୟ ରଚନା ମିଳିନାହିଁ। ଏହି ଜାତୀୟ ଓଡ଼ିଆ ରଚନା ଏକକ ସୃଷ୍ଟି ହୋଇଥିବାରୁ ଆଦର ନ ପାଇବାର କିଛି କାରଣ ନାହିଁ। ଦେଖାଯାଉଛି ଏହି ଢଙ୍ଗର ରଚନା ଓଡ଼ିଆରେ ଅତ୍ୟଳ୍ପ, ସର୍ବମୋଟ ୪/୫ଟି ମାତ୍ର ମିଳିଛି। ତୁଳନାତ୍ମକ ଭାବରେ ଦେଖିଲେ କ ଠାରୁ କ୍ଷ ବର୍ଣ୍ଣକୁ ପାଦାଦ୍ୟ କରି ରଚିତ ୩୪ଗୋଟି ଚଉପଦୀ ବିଶିଷ୍ଟ ଉପେନ୍ଦ୍ରଭଞ୍ଜଙ୍କ 'ଚଉପଦୀଭୂଷଣ' ଜାତୀୟ ରଚନା ଓଡ଼ିଆରେ ଅଧିକ ସଂଖ୍ୟାରେ ରହିଛି। ଲକ୍ଷ୍ୟ କରାଯାଇପାରେ ଯେ ଏହି ୩୪ଟି ଚଉପଦୀ ବିଶିଷ୍ଟ ରଚନା ପାଇଁ ମଧ୍ୟ ଓଡ଼ିଆ ଭାଷାର ଶବ୍ଦଭଣ୍ଡାରରେ କୌଣସି ନାମ ନାହିଁ। ଏହି ଅଭାବ ପୂରଣ ପାଇଁ ଏବେ ଶହେ ବର୍ଷ ହେବ ଚମ୍ପୂ ନାମଟି ଭୁଲ୍‌ରେ ବ୍ୟବହୃତ ହେଉଛି ବୋଲି ନିଷ୍କର୍ଷ ହୋଇଯିବା ପରେ 'ଚଉପଦୀ-ଚଉତିଶା' ନାମଟି ସଦ୍ୟ ଉଦ୍ଭାବିତ ହୋଇଛି। ତେଣୁ, ଷୋଳଟି ଚଉପଦୀ ବିଶିଷ୍ଟ ରଚନା ପାଇଁ ଓଡ଼ିଆରେ ନାମଟିଏ ନ ଥିବା ହିଁ ସ୍ୱାଭାବିକ। ଉପେନ୍ଦ୍ରଭଞ୍ଜ ୧୬ ଚଉପଦୀ ବିଶିଷ୍ଟ ରଚନା ପାଇଁ 'ଷୋଡ଼ଶେନ୍ଦୁ' ନାମଟିକୁ ଫାନ୍ଦିକରି ଏଠାରେ ବ୍ୟବହାର କରିଛନ୍ତି ବୋଲି ସନ୍ଦେହ କଲେ ୩୪ଟି ଚଉପଦୀ ବିଶିଷ୍ଟ ରଚନା ପାଇଁ ଅନୁରୂପ ଭାବରେ ନାମଟିଏ ଯୋଡ଼ି, ଏଠାରେ କାହିଁକି ଉଲ୍ଲେଖ କଲେ ନାହିଁ ଏ ପ୍ରଶ୍ନ ଉଠିବ।

ଆଉ ମଧ୍ୟ ବିଚାର୍ଯ୍ୟ ଯେ ଉପେନ୍ଦ୍ର ଭଞ୍ଜ ଚଉପଦୀଚନ୍ଦ୍ର ଜାତୀୟ ବହୁତ ଗୁଡ଼ିଏ ରଚନା ଲେଖିବା ସମ୍ଭାବନା ନାହିଁ। ତେଣୁ ତାହା ଷୋଡ଼ଶେନ୍ଦୁ ହେବା ସମ୍ଭବ ନୁହେଁ। ଏପରି ରଚନାରେ କୌଣସି କଥାବସ୍ତୁ (plot) ନଥାଏ ; ତେଣୁ, ଆଉ ଏକ ଚଉପଦୀଚନ୍ଦ୍ର ଲେଖିଲେ କାବ୍ୟଶିଳ୍ପର କୌଣସି ନୂତନତା ସେଥିରେ ଫୁଟିବ ନାହିଁ। ଉପେନ୍ଦ୍ର ଭଞ୍ଜଙ୍କର ରଚନାବଳୀ ପ୍ରତି ଦୃଷ୍ଟି ଦେଲେ ସ୍ପଷ୍ଟ ହୁଏ ଯେ ତାଙ୍କର ପ୍ରତ୍ୟେକ ରଚନାର କିଛି ନା କିଛି ବୈଶିଷ୍ଟ୍ୟ ରହିଛି। ସେ ଏକା କଥାକୁ ବାରଂବାର ପୁନରାବୃତ୍ତି କରିବା ସ୍ୱଭାବର ଲୋକ ନୁହନ୍ତି। ତେଣୁ, ତାହାଙ୍କ ଲେଖନୀରୁ ଅଗଣିତ 'ଷୋଡ଼ଶେନ୍ଦୁ' ଆଶାକରିବା ଭୁଲ୍। ଷୋଡ଼ଶେନ୍ଦୁର ଅନ୍ୟ ନାମ ଷୋଡ଼ଶା ବୋଲି ଯାହା କୁହାଯାଉଛି ତାହା ମଧ୍ୟ ଠିକ୍ ନୁହେଁ। ଷୋଡ଼ଶା ଶବ୍ଦଟି ଚଉତିଶା ଢାଞ୍ଚାରେ ଗଢ଼ା ହୋଇଛି। ଚଉତିଶାର ଅର୍ଥ ୩୪ଟି ପଦ (୩୪ଟି ଚଉପଦୀ ନୁହେଁ) ସଂକଳିତ ରଚନା। ତେଣୁ ଷୋଡ଼ଶାର ଅର୍ଥ ୧୬ଟି ପଦ (ଅ ଠାରୁ ଅଃ ପାଦାଦ୍ୟ ବର୍ଣ୍ଣଥାଇ) ବିଶିଷ୍ଟ ରଚନା ହେବା କଥା। ଏହି ପ୍ରକାରେ ୧୬ଟି ଚଉପଦୀ (ପଦନୁହେଁ) ବିଶିଷ୍ଟ ରଚନାର ନାମ ଷୋଡ଼ଶା ହେବା କଥା ନୁହେଁ। ସବୁ ଦିଗରୁ ବିଚାର କଲେ ଉଦ୍ଧୃତିର ୧୧ ପଦର 'ଷୋଡ଼ଶେନ୍ଦୁ ଛ' ଓ ତାହାର ପାଠାନ୍ତର 'ସୁଛନ୍ଦ ଛଅ' ପାଠ ଭୁଲ୍ ବୋଲି ନିରୂପଣ କରିବାକୁ ପଡ଼ିବ। ଏହା ସୁବିଦିତ ଯେ ଉପେନ୍ଦ୍ର ଭଞ୍ଜ ଚଉପଦୀ, ଚଉତିଶା, ଗାହା, ଦୋହା ଓ ପୋଇ ଛଡ଼ା ଅନେକ ଗୁଡ଼ିଏ ଗୋଟିକିଆ ଛାନ୍ଦ (ଗୋଟିଏ ବୃତ୍ତରେ ରଚିତ ବହୁପଦୀ) ସ୍ତୁତି, ଢ଼ଗ, ବୋଲି ଆଦି ମଧ୍ୟ ଲେଖିଥିଲେ। ଛାନ୍ଦ ମଧ୍ୟରୁ ଦୁଇଟି 'ଲାବଣ୍ୟନିଧି' ମଧ୍ୟରେ ପ୍ରକାଶ ପାଇଛି। ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ 'ଓଡ଼ିଆ ଗୀତିକାବ୍ୟ ସଂକଳନ ମଧ୍ୟରେ ଚିଟାଉ ଛାନ୍ଦ ଓ ବିଦେଶାନୁଚିନ୍ତା ପ୍ରକାଶ ପାଇଛି। ଅନନ୍ତ ପଦ୍ମନାଭ ପଟ୍ଟନାୟକ ଜଣାଇଛନ୍ତି "ଯାଗାଗ୍ନି, ପଶା, ନାଶ ବିଷୟରେ ଉପେନ୍ଦ୍ରଭଞ୍ଜଙ୍କ କେତେ ଖଣ୍ଡ କବିତା ଆମ୍ଭମାନଙ୍କ ହସ୍ତଗତ ହୋଇଛି" (କବିସମ୍ରାଟ ଉପେନ୍ଦ୍ରଭଞ୍ଜ, ପୃ.୪୩)। ପୁଣି "ଏତଦ୍ ବ୍ୟତୀତ କବିଙ୍କ ଢ଼ଗଢ଼ମାଳିକା ନାମରେ ଖଣ୍ଡିଏ ତାଳପତ୍ର ଗ୍ରନ୍ଥ ଅଛି। କୁଲାଡ଼ ନିକଟବର୍ତ୍ତୀ ଏକ ଗାଁର ସାମନ୍ତଙ୍କ ଘରେ ତାହା ଅତ୍ୟନ୍ତ ଜୀର୍ଣ୍ଣ ଅବସ୍ଥାରେ ପଡ଼ି ରହିଛି" (ତତ୍ରସ୍ଥ. ପୃ.୨୪)। ମନେ ହେଉଛି ଉପେନ୍ଦ୍ରଭଞ୍ଜ ତାଙ୍କର ଗଣନା ନଥିବା ବିଭିନ୍ନ ପ୍ରକାରର କବିତ୍ୱ ମଧ୍ୟରେ ଛାନ୍ଦ ଓ ଢ଼ଗକୁ ମଧ୍ୟ ଅନ୍ତର୍ଭୁକ୍ତ କରିଥିବେ। ସଂଶିତ ପାଠଟି ମୂଳରେ ଏହିପରି ଥିଲା ବୋଲି ଅନ୍ଦାଜ କରାଯାଇପାରେ : "ଗାହା ଦୋହା ସେ ଛନ୍ଦଢ଼ଗ ପୋଇ। ଇତ୍ୟାଦି କବିତ୍ୱ ଗଣନା ନାହିଁ"। ତେବେ ସମସ୍ୟାଟି ପାଠଗତ। ଶୁଦ୍ଧ ଅନ୍ଦାଜି ଦ୍ୱାରା ଏହାର ସମାଧାନ ହେବା ଉଚିତ ନୁହେଁ। ଏଥିପାଇଁ ବନ୍ଧୋଦୟର ଅନେକଗୁଡ଼ିଏ ତାଳପତ୍ର ପୋଥିରେ ସମାନ ପ୍ରକାରର ପାଠର ଅନୁସନ୍ଧାନ କରିବାକୁ ପଡ଼ିବ। ସେ ପର୍ଯ୍ୟନ୍ତ ସମସ୍ୟାଟି ଅସମାହିତ ହୋଇ ରହିବ ହିଁ ରହିବ।

## ଷୋଳ ପୋଇ/ବାର ପୋଇ/ଦଶ ପୋଇ

ଉଦ୍ଧୃତିର ୧୧ ପଦରେ ଗଣନା ନ ଥିବା ବିଭିନ୍ନ ପ୍ରକାରର କବିତ୍ୱ (ଆଙ୍ଗିକ) ମଧ୍ୟରେ ଛ ପୋଇ ନାମକ ଏକ ନିର୍ଦ୍ଦିଷ୍ଟ ରଚନା ଉଲ୍ଲିଖିତ ହୋଇଛି ବୋଲି ବହୁ ଆଲୋଚକ ମତ ଦେଇ ଆସୁଛନ୍ତି। "ଛ ପୋଇ" ପରେ ପରେ କବି ଇତ୍ୟାଦି ପଦ ବସାଇ ତାହାର ଗଣନା ନାହିଁ ବୋଲି ଲେଖିଥିବାରୁ ଅନୁମେୟ ଯେ 'ଷୋଡ଼ଶେନ୍ଦୁ' ପରି ଛ ଅକ୍ଷରର ପାଠ ଭୁଲ୍ ଓ ଏଠାରେ 'ଛ ପୋଇ' ନାମକ ଏକ ନିର୍ଦ୍ଦିଷ୍ଟ ରଚନା ଉଲ୍ଲିଖିତ ହୋଇ ନ ପାରେ। ଏ ବିଷୟରେ ଗୌରୀକୁମାର ବ୍ରହ୍ମାଙ୍କ ମତ ହେଲା : "କେହି କେହି କହନ୍ତି ଭଞ୍ଜେ 'ଛପୋଇ' ଲେଖି ତାଙ୍କର ଛଅଟି ପୋଇ ରଚନାର ସୂଚନା ଦେଇଛନ୍ତି, ଯଥା :- ଛପୋଇ, ନ ପୋଇ, ଦଶ ପୋଇ, ରସ ପୋଇ, ବାର ପୋଇ ଓ ଷୋଳ ପୋଇ" (ଭଞ୍ଜଭୂମିକା, ପୃ ୪୪୩)। କବି ନିଜେ ପୋଇ ରଚନା ଗୁଡ଼ିକର ଗଣନା ନାହିଁ ବୋଲି କହିଥିବା ଦୃଷ୍ଟେ ପୋଇର ମୋଟ ସଂଖ୍ୟା କବି ଏଠାରେ ଲେଖିଛନ୍ତି ବୋଲି କିପରି କୁହାଯିବ ? ବିଜୟ ଚନ୍ଦ୍ର ମଜୁମଦାର ଉଦ୍ଧୃତିର ୧୧ ପଦରୁ 'ଛ ପୋଇ' ନାମଟିକୁ ଗ୍ରହଣ କରି ତାହା ଉପେନ୍ଦ୍ରଭଞ୍ଜଙ୍କର ରଚନା-ବିଶେଷ ବୋଲି ଖ୍ରୀ. ୧୯୨୩ରେ ସର୍ବ ପ୍ରଥମେ ତାଲିକାଭୁକ୍ତ କଲେ। ଅନ୍ୟମାନେ ତାହାକୁ ଅନ୍ଧାନୁସରଣ କରୁଛନ୍ତି। କିନ୍ତୁ, 'ଉପେନ୍ଦ୍ରଭଞ୍ଜ ଜୀବନୀ'ର ଲେଖକ ଦାମୋଦର ଦାସ ଉପେନ୍ଦ୍ର ଭଞ୍ଜଙ୍କର 'ଛ ପୋଇ' ନାମକ ରଚନା ପ୍ରକାଶିତ ହୋଇ ସାରିଛି ବୋଲି ଲେଖିଛନ୍ତି। "ପୋଇ : ଏକ ପର୍ଯ୍ୟାଲୋଚନା" ଅଧ୍ୟାୟରେ ଦେଖାଇ ଦିଆଯାଇଛି ଯେ ଓଡ଼ିଆରେ ଅନେକ 'ଛ ପୋଇ'ର ଅସ୍ତିତ୍ୱ ଥିଲେ ହେଁ ତାହା ମଧ୍ୟରୁ କୌଣସିଟି ଉପେନ୍ଦ୍ରଭଞ୍ଜଙ୍କର ନୁହେଁ। ଏ ଭଳି ବିଷୟରେ ଶ୍ରୀଯୁକ୍ତ ଦାସଙ୍କ ବକ୍ତବ୍ୟ ଭ୍ରାନ୍ତିଜନକ ମାତ୍ର।

ଉପେନ୍ଦ୍ରଭଞ୍ଜଙ୍କ ଭଣିତି ଯୁକ୍ତ ପୋଇ ଭାବରେ କେବଳ 'ଷୋଳ ପୋଇ'ଟି ଡଃ ଜାନକୀ ବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ ହୋଇ ପ୍ରକାଶ ପାଇଛି। ଏଥିରେ ରାମଚରିତ ବର୍ଣ୍ଣିତ।

ରାଜା ଯୁବ ଭଞ୍ଜଙ୍କ ନାମରେ ଭଣିତି ଯୁକ୍ତ 'ଦଶପୋଇ'ର ପ୍ରକୃତ ପ୍ରଣେତା ଉପେନ୍ଦ୍ର ଭଞ୍ଜ ବୋଲି ତାରିଣୀଚରଣ ରଥ ଖ୍ରୀ. ୧୯୧୪ରେ ସର୍ବ ପ୍ରଥମେ ନିର୍ଣ୍ଣୟ ଦେଲେ ଓ ସେହିଠାରୁ ତାହା ଭଞ୍ଜଙ୍କ ରଚନା ତାଲିକାର ଅନ୍ତର୍ଭୁକ୍ତ ହୋଇ ଆସୁଛି। ଦଶ ପୋଇ ପ୍ରକାଶ ପାଇଛି। ସେହି ଯୁବଭଞ୍ଜଙ୍କ ଭଣିତି ବହନ କରି ବାର ପୋଇ ନାମକ ଏକ ରଚନା ତାଳପତ୍ର ପୋଥିରେ ମିଳୁଛି। ଦୁଇଟି ଯାକ ପୋଇର ଉପଜୀବ୍ୟ ବିଷୟବସ୍ତୁ କୃଷ୍ଣଚରିତ। ଖଲିକୋଟରୁ ଓଡ଼ିଶା ମ୍ୟୁଜିଅମ୍‌କୁ ବାର ପୋଇର ମିଳିଥିବା ଖଣ୍ଡିଏ ତାଳପତ୍ର ପୋଥିର ଆରମ୍ଭରେ 'ଉପେନ୍ଦ୍ରଭଞ୍ଜଙ୍କ ବାର ପୋଇ ଲେଖନ' ଲେଖାଅଛି ; ଯଦିଚ ଭିତରେ ପ୍ରତ୍ୟେକ ପୋଇ ଶେଷର ଭଣିତିରେ ରାଜା

ଯୁବଭଞ୍ଜଙ୍କ ନାମ ହିଁ ରହିଛି। ଲେଖନକାରଙ୍କ ଏପରି ସ୍ପଷ୍ଟ ଉକ୍ତିରୁ ଅନୁମିତ ହେଉଛି ଯେ ଯୁବ ଭଞ୍ଜ ପ୍ରକୃତ କବି ନୁହନ୍ତି। ଉପେନ୍ଦ୍ରଭଞ୍ଜ ହିଁ କବି। ଉପେନ୍ଦ୍ରଭଞ୍ଜ 'ତ୍ରୈଲୋକ୍ୟମୋହିନୀ' ଆଦି ଅନେକ ଗୀତକୁ ରାଜାମାନଙ୍କୁ ସମର୍ପିତ କରିଥିବା କଥା ବନ୍ଧୋଦୟର ପୂର୍ବୋଦ୍ଧୃତ ୨୩ରୁ ୨୬ ପଦ ମଧ୍ୟରେ ଜଣାଇଛନ୍ତି। ସେହି ରାଜାମାନଙ୍କ ମଧ୍ୟରୁ ଯୁବ ଭଞ୍ଜ ଜଣେ ରାଜାହେବା ଓ ସେହି ଗୀତ ଗୁଡ଼ିକ ମଧ୍ୟରେ ଦଶ ପୋଇ ଓ ବାର ପୋଇ ଅନ୍ତର୍ଭୁକ୍ତ ହେବା ସ୍ଥିର କରାଯାଇପାରେ।

ଯୁବ ଭଞ୍ଜ କେଉଁ ରାଜ୍ୟର ରାଜା ତାହା ଜଣାପଡୁନାହିଁ। ଅଧିକାଂଶ ଆଲୋଚକଙ୍କ ମତରେ ଯୁବଭଞ୍ଜଙ୍କ ପ୍ରକୃତ ନାମ ଯୁଗଭଞ୍ଜ ଓ ସେ ବଉଦର ରାଜା ଥିଲେ। ପଦ୍ମଲୋଚନ ରାଜଗୁରୁଙ୍କ ଦ୍ୱାରା ଖ୍ରୀ.୧୮୭୨ରେ ରଚିତ 'ବଂଶାନୁଚରିତ' ଗ୍ରନ୍ଥଟି 'ବୌଦ ରାଜବଂଶାବଳୀ' ନାମରେ ନିକଟରେ ପ୍ରକାଶ ପାଇଛି। ଏହାର ବିବରଣ ଅନୁସାରେ ଯୋଗାନନ୍ଦ ଭଞ୍ଜ ବା ଯୁଗଭଞ୍ଜ ନାମଧେୟ ଜଣେ ରାଜା ଖ୍ରୀ. ୧୭୦୬ ରୁ ୧୭୫୬ ମଧ୍ୟରେ ବଉଦରେ ରାଜତ୍ୱ କରୁଥିଲେ। ଯୁଗ ବା ଯୋଗାନନ୍ଦ ଭଞ୍ଜ ଜଣେ କବି ଭାବରେ ଅନେକ ଗୁଡ଼ିଏ ଗୀତର ରଚୟିତା ଓ ସେହି ଗୀତଗୁଡ଼ିକ ମଧ୍ୟରେ 'ଦଶପୋଇ' ଏକତମ ବୋଲି ରାଜଗୁରୁ ଜଣାଇଛନ୍ତି :-

ଦକ୍ଷିଣେଶ୍ୱରୀ କାଳୀ ଦେବୀଙ୍କ ପରସନ୍ନେ।
ବହୁତ ଗୀତ କଲେ ବିଶୁଦ୍ଧ କବିପଣେ॥
ଦଶପୋଇ ବୋଲିଣ ଯେବଣ ଗୀତ କଲେ।
ଦଶଦିଗ ମନୁଷ୍ୟ ଶୁଣିଣ ତୋଷ ହେଲେ॥ (ବୌଦରାଜବଂଶାବଳୀ, ପୃ.୨୯୧)

ବୌଦ ରାଜବଂଶାବଳୀର ସଂପାଦକ ପଣ୍ଡିତ ନୀଳମଣି ମିଶ୍ର ଏହା ନେଇ ତାହାର ଭୂମିକା (ପୃ.ଣ)ରେ ଲେଖିଛନ୍ତି :- "ଆଜି ସୁଦ୍ଧା ଯୁଗଭଞ୍ଜଙ୍କୁ ଘୁମୁସରର ନୀଳକଣ୍ଠ ଭଞ୍ଜଙ୍କ ପୁତ୍ର କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ସହିତ ଚିହ୍ନିତ କରାଯାଉଥିଲା ଏବଂ ଯୁଗଭଞ୍ଜ ରୂପକ ଛଦ୍ମନାମରେ ଉପେନ୍ଦ୍ର ଭଞ୍ଜ ଦଶପୋଇ ଓ ବାରପୋଇ ରଚନା କରିଥିଲେ ବୋଲି କୁହାଯାଉଥିଲା। କିନ୍ତୁ ବୌଦ ନରେଶ ଦମଣ ଭଞ୍ଜଙ୍କ ପୁତ୍ର ଯୋଗାନନ୍ଦ ଭଞ୍ଜ ଯୁଗଭଞ୍ଜ ନାମରେ ଦଶପୋଇ ଓ ବାର ପୋଇ ରଚନା କରିଥିବାର ପ୍ରମାଣ 'ବୌଦରାଜ ବଂଶାବଳୀ'ରୁ ମିଳୁଥିବାରୁ ଯୁଗଭଞ୍ଜ ବା ଯୁବଭଞ୍ଜ ସମ୍ବନ୍ଧୀୟ ଅନୁମାନ ଭ୍ରମାତ୍ମକ ବୋଲି ଜଣାଯାଏ।"

ପଣ୍ଡିତ ମିଶ୍ର ବହୁ କଥା ପ୍ରତି ଦୃଷ୍ଟି ନ ଦେଇ ଅତି ତରବରରେ ଏପ୍ରକାର ନିର୍ଦ୍ଧାରଣରେ ଉପନୀତ ହୋଇଛନ୍ତି। ପ୍ରଥମ କଥା ହେଲା, ରାଜଗୁରୁଙ୍କ ବର୍ଣ୍ଣନା ସତ୍ତ୍ୱେ, ବଉଦ ରାଜବଂଶରେ ଯୋଗାନନ୍ଦ କି ଯୁଗ ଭଞ୍ଜ ନାମରେ କେହି ରାଜା ଥିବା ପ୍ରମାଣିତ ହେଉନାହିଁ। ଖ୍ରୀ. ୧୯୦୭ରେ ପ୍ରକାଶିତ ବଉଦ-ବନ୍ଦୋବସ୍ତ ରିପୋର୍ଟର ପୃ୩-୪ରେ ବଉଦର ପୂର୍ବ ରାଜାମାନଙ୍କର ତାଲିକା ପ୍ରଦତ୍ତ ହୋଇଛି। ଏହି ତାଲିକାରେ

ରାଜଗୁରୁଙ୍କ ତାଲିକାର ଯୋଗାନନ୍ଦ ବା ଯୁଗଭଞ୍ଜଙ୍କ ନାମ ନାହିଁ। ତାଙ୍କ ସ୍ଥାନରେ ଗଜେନ୍ଦ୍ରଙ୍କ ନାମ ରହିଛି। ବନ୍ଦୋବସ୍ତ ରିପୋର୍ଟଟି ବଉଦ-ରାଜ ତରଫରୁ ପ୍ରସ୍ତୁତ ତେଣୁ ବଉଦର ପୂର୍ବ ରାଜାମାନଙ୍କ ନାମ ଓ କ୍ରମ ବିଷୟରେ ତାହାର ମହତ୍ତ୍ୱ ରାଜଗୁରୁଙ୍କ ତାଲିକାଠାରୁ ଅଧିକ। ରାଜଗୁରୁଙ୍କ ବଂଶାନୁଚରିତ ବଉଦରାଜାଙ୍କୁ ଭେଟି ଦିଆଯାଇଥିଲା ଓ ତାହା ରାଜବାଟୀରେ ହିଁ ଥିଲା। ତେଣୁ, ରାଜଗୁରୁ ଗଜେନ୍ଦ୍ରଙ୍କ ସ୍ଥାନରେ ଯୋଗାନନ୍ଦଙ୍କୁ ରଖିବା କଥାକୁ ବଉଦରାଜ ପ୍ରତ୍ୟାଖ୍ୟାନ କରି ବଂଶାବଳୀ ସଂଶୋଧନ କରିଛି। ଦ୍ୱିତୀୟ କଥା ହେଲା, ଯୋଗାନନ୍ଦ କେବଳ 'ଦଶପୋଇ' ଲେଖିଥିବା କଥା ରାଜଗୁରୁ କହନ୍ତି। 'ବାରପୋଇ' କଥା ଜମାରୁ ଲେଖିନାହାନ୍ତି। ପଣ୍ଡିତ ମିଶ୍ର ବାରପୋଇ ମଧ ଯୋଗାନନ୍ଦ ଲେଖିଥିବା ବିଷୟ ମନରୁ କାଢ଼ି ଲେଖିଛନ୍ତି। ବାରପୋଇର କବି ଯୁବଭଞ୍ଜ ନୁହନ୍ତି, ପ୍ରକୃତରେ ଉପେନ୍ଦ୍ରଭଞ୍ଜ, ବୋଲି ଆମେ ବାରପୋଇର ପ୍ରାଚୀନ ପୋଥିର ଶିରୋନାମାରୁ ପାଉ ଓ ସେହି ତାଳପତ୍ର ପୋଥି ରାଜଗୁରୁଙ୍କ ଅପେକ୍ଷା ପ୍ରାଚୀନତର ନିଶ୍ଚୟ। ତେଣୁ ଯୁଗଭଞ୍ଜ 'ଦଶପୋଇ'ଟିକୁ ଲେଖିଛନ୍ତି ବୋଲି ରାଜଗୁରୁ କହିବାରୁ ପଣ୍ଡିତ ମିଶ୍ର ଦଶ ପୋଇ ସହିତ ବାରପୋଇ ମଧ ଯୁଗଭଞ୍ଜ ଲେଖିଥିବା ନିର୍ଣ୍ଣୟ ଅକାରଣ କରିଛନ୍ତି। ତୃତୀୟ କଥା ହେଲା, ସବୁ ଦଶ ପୋଇରେ ଯୁବଭଞ୍ଜ ଭଣିତି ହିଁ ଅଛି, ଯୁଗଭଞ୍ଜ ଭଣିତି ନାହିଁ। ଯୁବ ଭଞ୍ଜ ଯେ ବଉଦର ରାଜା ଏହା ମଧ ଜଣାଯାଉନାହିଁ। ଯୁଗ ଭଞ୍ଜ ଓ ଯୁବ ଭଞ୍ଜ ଗୋଟିଏ ନାମ ନୁହେଁ। ଦୁଇଟି ନାମ। ଉପେନ୍ଦ୍ରଭଞ୍ଜ ଯୁବଭଞ୍ଜ ନାମରେ ଭଣିତି ଦେବା ସୂଚାଉଛି ବାରପୋଇର ଶିରୋନାମା। ରାଜଗୁରୁ ଯେଉଁ ଯୁଗଭଞ୍ଜଙ୍କ ନାମ ଲେଖିଛନ୍ତି ସେ ଯଦି ପ୍ରକୃତରେ ଥାଆନ୍ତି ଓ ତାଙ୍କର ଯଦି ଗୋଟିଏ 'ଦଶପୋଇ' ରଚନା ଥାଏ ତେବେ ତାହା ଯୁଗଭଞ୍ଜ ଭଣିତାଯୁକ୍ତ ହୋଇ ଭବିଷ୍ୟତ୍‌ରେ ଲୋକଲୋଚନକୁ ଆସିପାରେ। କିନ୍ତୁ, ତାହା ଯୁବଭଞ୍ଜ ଭଣିତି ଯୁକ୍ତ 'ଦଶପୋଇ' ହେବ କାହିଁକି? ଏକା ନାମରେ ବହୁ ସଂଖ୍ୟକ ପୋଇ ଥିବା କଥା ସୁବିଦିତ। ଓଡ଼ିଆରେ ପାଞ୍ଚଟି ଛପୋଇ, ଚାରିଟି ସାତ ପୋଇ ଥିବା ପରି ଚାରିଟି ଦଶ ପୋଇ ଥିବା କଥା ଜଣାପଡ଼ିଲାଣି (ପୋଇ: ଏକ ପର୍ଯ୍ୟାଲୋଚନା' ଅଧ୍ୟାୟ ଦ୍ରଷ୍ଟବ୍ୟ)। ଯୁଗଭଞ୍ଜ 'ଦଶପୋଇ' ଲେଖିଥିଲେ ଯୁଗଭଞ୍ଜ ଭଣିତି ଥାଇ ତାହା ମିଳିପାରେ ଓ ତାହା ଆଉ ଏକ ଦଶପୋଇ ହେବ। ଯୁବଭଞ୍ଜ ଭଣିତା ଯୁକ୍ତ 'ଦଶପୋଇ'କୁ ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥ ତାଲିକାରୁ ବାଦ୍ ଦେଇ ହେଉନାହିଁ।

ପ୍ରାୟ ୪୦ ବର୍ଷ ତଳେ ଓ.ସି. ଗାଙ୍ଗୁଲି ଦଶପୋଇକୁ ଇଂରାଜିରେ ଅନୁବାଦ କରି ସଚିତ୍ର ରାଜ ସଂସ୍କରଣ ରୂପେ ପ୍ରକାଶ କଲେ। ଏହାର ମୂଲ୍ୟ ରଖିଲେ ପଚାଶ ଟଙ୍କା, ଅଥଚ ସେତେବେଳେ ଏକଅଣା ମୂଲ୍ୟର 'ଦଶପୋଇ' ମଧ ବଜାରରେ ମିଳୁଥିଲା। ଏହାର ଦଶଟି ପୋଇ ଶେଷର ଭଣିତି ଅଛି ରାଜା ଯୁବଭଞ୍ଜ ନାମରେ।

ତନ୍ମଧ୍ୟରୁ ଚତୁର୍ଥ ପୋଈର ଶେଷପାଦ। (ଯୁବଭଞ୍ଜ ନରେଶ୍ୱର ବୋଲେ ଦାମୋଦର ଦେଖୁ ଦେଖୁ ତନୁ ଗଲା ସଢ଼ି) ମଧ୍ୟର ଦାମୋଦର ଶବ୍ଦର ଅର୍ଥ କୃଷ୍ଣ ହେଲେ ହେଁ ତାହା ଦାମୋଦର ଭଞ୍ଜ ଭଣିତି ଯୁକ୍ତ ବୋଲି ବୁଝି ଗାଙ୍ଗୁଲି ମହାଶୟ ମୟୂରଭଞ୍ଜର ରାଜା ଦାମୋଦର ଭଞ୍ଜ ଏହି ପୋଈର ଲେଖକ ବୋଲି ନିରୂପଣ କରିଛନ୍ତି। ଏହାର ଉଚିତ ପ୍ରତିବାଦ ଗୌରୀକୁମାର ବ୍ରହ୍ମା କରିସାରିଛନ୍ତି (ଭଞ୍ଜଭୂମିକା, ପୃ.୪୩-୪୪)।

ଭଞ୍ଜନଗର 'ଭଞ୍ଜସାହିତ୍ୟ ପରିଷଦ' ଉପେନ୍ଦ୍ରଭଞ୍ଜଙ୍କ ଲିଖିତ ଯେଉଁସବୁ ପ୍ରକାଶିତ ଓ ଅପ୍ରକାଶିତ "ଲେଖାମାନ ସଂଗ୍ରହ କରିଛନ୍ତି" ତାହାର ତାଲିକା ଓଡ଼ିଶା ଇତିହାସ (୧୯୪୮)ରେ ଡଃ ହରେକୃଷ୍ଣ ମହତାବ୍ ପ୍ରକାଶ କରିଛନ୍ତି (ପୃ.୪୧୭)। ଏହି ସଂଗୃହୀତ ଲେଖାଗୁଡ଼ିକ ମଧ୍ୟରେ 'ନଅପୋଈ' ନାମକ ଏକ ରଚନା ରହିଛି। ଏହି ତାଲିକାରେ 'କଳାକଉତୁକ' ଗ୍ରନ୍ଥଛଡ଼ା 'କଳାକଣ୍ଟକ' ନାମକ ଗ୍ରନ୍ଥ ମଧ୍ୟ ସ୍ଥାନ ପାଇଥିବାରୁ ଧରାପଡ଼ି ଯାଉଛି ଯେ ତାଲିକାଟି ପ୍ରକୃତରେ ସଂଗୃହୀତ ଗ୍ରନ୍ଥର ତାଲିକା ନୁହେଁ, ଏକ ମନଗଢ଼ା ତାଲିକା। ତେଣୁ 'ଭଞ୍ଜ ସାହିତ୍ୟ ପରିଷଦ୍'ର ବିବରଣକୁ ଭରସା କରି ଉପେନ୍ଦ୍ରଭଞ୍ଜ ନଅପୋଈ ଲେଖିଥିଲେ ବୋଲି କୁହାଯାଇ ପାରୁ ନାହିଁ।

ଉପେନ୍ଦ୍ର ଭଞ୍ଜଙ୍କର ପ୍ରକାଶିତ ରଚନାବଳୀ ମଧ୍ୟରେ ଗୌରୀକୁମାର ବ୍ରହ୍ମା 'ରସପୋଈ'କୁ ଗଣନା କରିଛନ୍ତି। ଉପେନ୍ଦ୍ରଭଞ୍ଜଙ୍କ କୃତ 'ରସପୋଈ' ନାମରେ ଏହା ବହୁକାଳରୁ ପ୍ରକାଶ ପାଇଆସୁଛି। ଏହାର ଭାଷାରେ ପ୍ରାଚୀନତା ସୂଚକ ଅନେକ ଲକ୍ଷଣ ଥିଲେହେଁ ଜଣେ ପୋଖତ କବି ଏହାକୁ ଲେଖିଥିଲେ ଯେଉଁ ସବୁତ୍ରୁଟି ରହି ନଥାନ୍ତା ସେପରି ଗୁଡ଼ିଏ ତ୍ରୁଟି ରହିଛି ଓ ଏହାର ସଂରଚନାରେ ଗୁରୁତର ପ୍ରମାଦ ରହିଛି। ପୋଈ; ଏକ ପର୍ଯ୍ୟାଲୋଚନା' ଅଧ୍ୟାୟରେ ଏ ବିଷୟରେ ବିଶଦ ଆଲୋଚନା କରାଯାଇ ନିଷ୍କର୍ଷ କରାଯାଇଛି ଯେ ମୁଦ୍ରିତ ରସପୋଈରେ ଦଶଟି ପୋଈଥିଲେ ହେଁ ଏହା ନଅପୋଈ ଭାବରେ ଲେଖାଯିବା ପାଇଁ ଉଦ୍ଦିଷ୍ଟ ଥିଲା। ରସର ସଂଖ୍ୟାବାଚକ ଅର୍ଥ 'ନଅ', ତେଣୁ ଏହା ରସପୋଈ। ଏହାର ପ୍ରତ୍ୟେକ ପୋଈ ଶେଷର ଭଣିତିରେ ଏକମାତ୍ର 'ଗୋବିନ୍ଦାଇ' ନାମ ରହିଛି। କେବଳ ଶେଷ ପୋଈର ଭଣିତିରେ ଅଛି: "ଭଜେ ଗୋବିନ୍ଦାଇ କୃଷ୍ଣ ପାଦ ଧ୍ୟାୟି ଉପଇନ୍ଦ୍ର ଭଞ୍ଜ ରସପୋଈ"। ଉପଇନ୍ଦ୍ର ଭଞ୍ଜ ନାମଟି ଅନୁଲେଖକ ବା ପ୍ରକାଶକଙ୍କ କାରସାଦିର ଫଳ। ପୋଈଟିର ପିତୃତ୍ୱ କବି ଗୋବିନ୍ଦଙ୍କର, ତାହାକୁ ଉପେନ୍ଦ୍ରଭଞ୍ଜଙ୍କ ଉପରେ ଲଦି ଦେବାର କୌଣସି କାରଣ ନାହିଁ। ମ୍ୟୁଜିଅମର ତାଳପତ୍ର ପୋଥିରେ 'ଉପଇନ୍ଦ୍ର ଭଞ୍ଜ ରସପୋଈ' ସ୍ଥାନରେ ଲେଖାଅଛି "ଶୁଣିବା ସଜନେ ରସପୋଈ" (ଓଡ଼ିଆ ପୋଈ ସାହିତ୍ୟ, ପୃ. ୧୩୯)। ଏହା ଉପେନ୍ଦ୍ରଭଞ୍ଜ ଲେଖିଥିଲେ ଏଥିରେ ଥିବା ସଂରଚନା-ପ୍ରମାଦ ରହିନଥାନ୍ତା ଏଠାରେ ଉଲ୍ଲେଖନୀୟ ଯେ ଅଦ୍ୟାବଧି ଆବିଷ୍କୃତ ୨୮ଟି ପୋଈ ମଧ୍ୟରୁ ଏକମାତ୍ର ରସପୋଈରେ ହିଁ ସଂରଚନା ପ୍ରମାଦ ରହିଛି।

ହେମମଞ୍ଜରୀ

ଉପେନ୍ଦ୍ରଭଞ୍ଜ ବନ୍ଧୋଦୟର ପୂର୍ବୋଦ୍ଧୃତ ୧ମ ଛାନ୍ଦର ପଦ ଗୁଡ଼ିକ ମଧ୍ୟରେ ପ୍ରଥମେ ଅଗଣିତ (ବା ସେ ଗଣନା କରୁନଥିବା) ବିଭିନ୍ନ ପ୍ରକାରର ରଚନା କଥା କହିସାରି ୧୨ଶ ପଦରେ "ରସ କୃଷ୍ଣ ବିଜୟ ଯେତେ ଗ୍ରନ୍ଥ, ଚିତ୍ତୋଇ ତହୁଁ କିଛି ଲେଖେ ଏଥି" ବୋଲି ଜଣାଇ ତାଙ୍କର କେତୋଟି କୃତିର ନାମ ଓ ପରିଚୟ ଦେଇଛନ୍ତି। ଏଥିରୁ ଜଣାଯାଏ ଯେ ସେ ନାମିତ କରିଥିବା ଗ୍ରନ୍ଥଗୁଡ଼ିକ ଦ୍ୱିବିଧ :- ୧. ରସଗ୍ରନ୍ଥ (କାଳ୍ପନିକ କାବ୍ୟ); ୨. କୃଷ୍ଣଗ୍ରନ୍ଥ (କୃଷ୍ଣର ଅର୍ଥ ବିଷ୍ଣୁ, ତେଣୁ ସବୁଗୁଡ଼ିକ ପୌରାଣିକ କାବ୍ୟ ଓ ପୁରୁଷୋତ୍ତମ ମାହାତ୍ମ୍ୟ) ଓ ୩. ବିଷୟ ଗ୍ରନ୍ଥ (ଗୀତାଭିଧାନ, ରସପଞ୍ଚକ)। କବି ୧୩ଶ ପଦରେ ସ୍ୱକାବ୍ୟଗୁଡ଼ିକର ସାଧାରଣ ଲକ୍ଷଣ ସୂଚାଇ କହିଛନ୍ତି ଯେ ଏଥିରେ ପୁରାଣର (ଅର୍ଥାତ୍ ପୌରାଣିକ ଆଖ୍ୟାନର) ଛାୟା ରହିଛି ଓ କଳ୍ପନାର ମାଧୁର୍ଯ୍ୟ ରହିଛି। ସାଧାରଣ ଲକ୍ଷଣ ଜଣାଇବା ପରେ କବି ୧୩ଶ ପଦର ୨ୟ ପାଦରୁ ଗୋଟିଏ ଗୋଟିଏ କାବ୍ୟର ନାମ ଲେଖିଛନ୍ତି। ସେ ପ୍ରଥମେ ଲେଖିଛନ୍ତି: "ଚାରୁ ଚିତ୍ରଲେଖା ହେମମଞ୍ଜରୀ"।

ଚିତ୍ରଲେଖାର ଅର୍ଥ ଚିତ୍ର କବିତ୍ୱ। ଭାବର ପୁଷ୍ଟିପାଇଁ ଅନାବଶ୍ୟକ ଶାବ୍ଦିକ ଖେଳ (ଯଥା :- ଏକାକ୍ଷରୀ, ଓଷ୍ଠ୍ୟ, ନିରୋଷ୍ଠ୍ୟ, ଅବନ୍ଦ, ଗତପ୍ରତ୍ୟାଗତ କାବ୍ୟ, ଦ୍ୱିସନ୍ଧାନ-ତ୍ରିସନ୍ଧାନ କାବ୍ୟ, ବନ୍ଧକାବ୍ୟ) ଚିତ୍ରକାବ୍ୟ ଭାବରେ ସୁପରିଚିତ। ଉପେନ୍ଦ୍ରଙ୍କର ରସତରଙ୍ଗ ଓ ବନ୍ଧୋଦୟ ନିରୋଳ ଚିତ୍ରକାବ୍ୟ। ତାଙ୍କ ରଚିତ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ବୈଦେହୀଶ ବିଳାସ, ପ୍ରେମ ସୁଧାନିଧି ଆଦି ପ୍ରାୟ ପ୍ରତ୍ୟେକ କାବ୍ୟରେ ଚିତ୍ରକାବ୍ୟ ଛତ୍ରେ ଛତ୍ରେ ରହିଛି। ଉପେନ୍ଦ୍ରଭଞ୍ଜ ଏଠାରେ ତାଙ୍କ ରଚିତ ହେମମଞ୍ଜରୀ ଏକ ଚିତ୍ରଲେଖା ବା ଚିତ୍ରକାବ୍ୟ ବୋଲି ଜଣାଇଛନ୍ତି : "ଚାରୁ ଚିତ୍ରଲେଖା ହେମମଞ୍ଜରୀ"।

ହଣ୍ଟରଙ୍କ ତାଲିକାରେ ଉପେନ୍ଦ୍ରଙ୍କ ରଚନା ଭାବରେ ଚିତ୍ରଲେଖା ଓ ହେମମଞ୍ଜରୀ ନାମ ଦୁଇଟି ସ୍ଥାନ ପାଇଛି। ଉଲ୍ଲିଖିତ ୧୩ଶ ପାଠର ଭୁଲ୍ ବ୍ୟାଖ୍ୟାରୁ ଏ ଦୁଇ ନାମ ଭଞ୍ଜଙ୍କ ଗ୍ରନ୍ଥ ତାଲିକାଭୁକ୍ତ ହୋଇଯାଇଛି। ହଣ୍ଟରଙ୍କ ତାଲିକାରେ ଚିତ୍ରଲେଖା ଏକ ପୃଥକ୍ ରଚନା ଭାବରେ ସ୍ଥାନ ପାଇଥିବା ସତ୍ତ୍ୱେ ତାରିଣୀଚରଣ ରଥ ଭଞ୍ଜଙ୍କ ଗ୍ରନ୍ଥତାଲିକାରେ ଚିତ୍ରଲେଖାକୁ ସ୍ଥାନ ନ ଦେଇ କେବଳ ହେମମଞ୍ଜରୀକୁ ରଖିଲେ। ଅନୁମେୟ ଯେ ଶ୍ରୀ ରଥ ହେମମଞ୍ଜରୀ ହିଁ ଚିତ୍ରକାବ୍ୟ ବୋଲି ଗ୍ରହଣ କଲେ (ହଣ୍ଟରଙ୍କ ତାଲିକାର ଚିତ୍ରଲେଖା ଛଡ଼ା ଅନ୍ୟ ୩୯ଟି ଯାକ ନାମକୁ ଶ୍ରୀ ରଥ ସ୍ୱୀକାର କରିଛନ୍ତି)। ପରବର୍ତ୍ତୀ ଗବେଷକମାନେ ହଣ୍ଟରଙ୍କୁ ମାନି ଚିତ୍ରଲେଖା ଓ ହେମମଞ୍ଜରୀ ନାମରେ ଉପେନ୍ଦ୍ରଙ୍କର ଦୁଇଟି କାଳ୍ପନିକ କାବ୍ୟ (romance) ଅଛି ବୋଲି କହି ଆସୁଛନ୍ତି। ଅଦ୍ୟାବଧି ଏହି ଦୁଇ ନାମର କାବ୍ୟ ଲୋକଲୋଚନକୁ ଆସିନାହିଁ। ହେଲେ ହେଁ, ଉଦ୍ଧୃତ ୧୩ ପଦର ଶେଷ ପାଦରେ ଗୋଟିଏ କାବ୍ୟର ନାମ ଥିବା ଅନୁମାନ କହି ହେମମଞ୍ଜରୀ ନାମଟିକୁ ଗ୍ରନ୍ଥ ବୋଲି ଅନୁମାନ କରିବାକୁ ହେଉଛି। ଏହାର ପରବର୍ତ୍ତୀ ପ୍ରତ୍ୟେକ ପାଦରେ ମଧ୍ୟ ଗୋଟିଏ ଗୋଟିଏ କାବ୍ୟର ନାମ ଲେଖାଅଛି।

## ରସଲେଖା/ପ୍ରେମଲତା

ବନ୍ଧୋଦୟର ପୂର୍ବୋଦ୍ଧୃତ ୧୪ ପଦରେ ଉପେନ୍ଦ୍ରଭଞ୍ଜ ପ୍ରଥମ ପାଦରେ ରସଲେଖା ଓ ଦ୍ୱିତୀୟ ପାଦରେ ପ୍ରେମଲତା ନାମକ ଦୁଇଗୋଟି କାବ୍ୟର ନାମ ଲେଖିଛନ୍ତି। ରସଲେଖା ଖ୍ରୀ. ୧୮୭୫ରୁ ପ୍ରକାଶ ପାଇଲାଣି କିନ୍ତୁ ପ୍ରେମଲତାର ତାଳପତ୍ର ପୋଥି ମଧ୍ୟ କୌଣସି ଠାରେ ଥିବା ଜଣାଯାଏ ନାହିଁ। ଭଞ୍ଜନଗରର ଭଞ୍ଜସାହିତ୍ୟ ପରିଷଦ ପ୍ରେମଲତା କାବ୍ୟ ସଂଗ୍ରହ କରିଥିବା କଥା ଡଃ ମହତାବ୍‌ଙ୍କ ଓଡ଼ିଶା ଇତିହାସ (ପୃ.୪୧୭)ରେ ଲେଖାଅଛି। କିନ୍ତୁ, ଉପେନ୍ଦ୍ରଭଞ୍ଜ ବା ଅନ୍ୟ କେହି କବି ଲେଖି ନଥିବା ଅନେକ ଗ୍ରନ୍ଥ (ଯଥା :- କଳାକଣ୍ଠକ) ସଂଗୃହୀତ ହୋଇଥିବା ଦାବି ସେହିଠାରେ ରହିଛି। ଏହା ସେହି ପରିଷଦର ଦାବିର ଅମୂଳକତା ସୂଚାଉଛି। ରସଲେଖା ଉପେନ୍ଦ୍ରଭଞ୍ଜଙ୍କର ଏକମାତ୍ର କାଳାଙ୍କିତ ରଚନା (ଖ୍ରୀ.୧୭୧୦ର ଅଗଷ୍ଟ ୨୩ ତାରିଖ ଦିନ ଏହାର ରଚନା ପୂର୍ଣ୍ଣ ହେଲା। ଏହାର ୨୨ଟି ଛାନ୍ଦ ମଧ୍ୟରେ ମିଳନ-ବିରହ ଉଭୟ ଅବସ୍ଥାର ଚିତ୍ରଣ ଅର୍ଥାତ୍ ସମ୍ଭୋଗ ଶୃଙ୍ଗାର ଓ ବିପ୍ରଲମ୍ଭ ଶୃଙ୍ଗାରର ବର୍ଣ୍ଣନା ରହିଛି। ଏଣୁ, ଏହାକୁ 'କାମକଳା ଚରିତ' ଅର୍ଥାତ୍ କାମକଳା ବିଷୟକ ରଚନା କହିବା ସମର୍ଥନ ଯୋଗ୍ୟ। କବି ପ୍ରେମଲତା ନାମକ କାବ୍ୟଟି ମନୋରମା ଓ ସୁଗୀତ ବୋଲି ଜଣାଇଥିବାରୁ ଲାଳିତ୍ୟପୂର୍ଣ୍ଣ ଆଦିରସ ତାହାର ମଧ୍ୟ ଆଧେୟ ହେବା ଅନୁମାନ କରାଯାଇପାରେ।

ହଣ୍ଟରଙ୍କ ତାଲିକାକୁ ଅନୁସରଣ କରି ଗବେଷକମାନେ ୧୪ ପଦର କାମକଳା ଓ ମନୋରମା ଶବ୍ଦଦ୍ୱୟକୁ ଉପେନ୍ଦ୍ରଭଞ୍ଜ ପ୍ରଣୀତ ସ୍ୱତନ୍ତ୍ର ସ୍ୱତନ୍ତ୍ର କାଳ୍ପନିକ କାବ୍ୟର ନାମ ବୋଲି ଗ୍ରହଣ କରୁଛନ୍ତି। କିନ୍ତୁ, ବନ୍ଧୋଦୟର ଏହି ପଦକୁ ଛାଡ଼ିଲେ ଅନ୍ୟତ୍ର ତନ୍ନାମକ କୌଣସି କାବ୍ୟର ଅସ୍ତିତ୍ୱର ପ୍ରମାଣ ମିଳୁନାହିଁ। ଯେକୌଣସି ଅଭିବ୍ୟକ୍ତିର ଏକାଧିକ ଅର୍ଥ ସମ୍ଭବ ହେଲେ ବାସ୍ତବତା ସହିତ ନିକଟସଂପର୍କ ରଖିଥିବା ଅର୍ଥଟିକୁ ହିଁ ଗ୍ରହଣ କରିବା ସମୀଚୀନ। ପୁଣି, ମୋର ବ୍ୟାଖ୍ୟା ଅନୁସାରେ କବି ସମାନ ଭାବରେ ପ୍ରତ୍ୟେକ ପାଦରେ ଗୋଟିଏ କୃତିର ନାମ ହିଁ ଦେଇଛନ୍ତି। ତେଣୁ କାମକଳା ଓ ମନୋରମାକୁ ଭଞ୍ଜଙ୍କ ଗ୍ରନ୍ଥତାଲିକା ଭୁକ୍ତ କରିବା ଅନୁଚିତ।

ହଣ୍ଟରଙ୍କ ତାଲିକାରେ ପ୍ରେମଲତା କାବ୍ୟର ନାମ ରହିଛି। ଖ୍ରୀ. ୧୯୦୩ରେ ମଧୁସୂଦନ ଦାଶ ଭଞ୍ଜଙ୍କ ଗ୍ରନ୍ଥତାଲିକା ପ୍ରସ୍ତୁତି ବେଳେ 'ପ୍ରେମଲତା'ର ପ୍ରେମକୁ ଛାଡ଼ି କେବଳ ଲତାକୁ ସ୍ଥାନ ଦେଲେ। ଖ୍ରୀ. ୧୯୧୪ରେ ତାରିଣୀଚରଣ ରଥ ଲତାକୁ ଗ୍ରନ୍ଥାତାଲିକା ଭୁକ୍ତ ନ କରି ହଣ୍ଟରଙ୍କ ପ୍ରେମଲତାକୁ ତାଲିକାଭୁକ୍ତ କଲେ। ଏଥିରୁ ମନେହୁଏ, ଶ୍ରୀ ରଥ ଲତାକୁ ପ୍ରେମଲତାର ମୁଦ୍ରଣ ପ୍ରମାଦ ବୋଲି ଧରି ପାରିଥିଲେ। କିନ୍ତୁ, ଖ୍ରୀ.୧୯୧୬ରେ ଜଗବନ୍ଧୁ ସିଂହ ଲତାକୁ ଗ୍ରନ୍ଥଭାବରେ ଗଣି ପ୍ରେମଲତାକୁ ତାଲିକାରୁ ଉଠାଇ ଦେଲେ। ସ୍ୱୟଂ ଉପେନ୍ଦ୍ର ପ୍ରେମଲତା ନାମ ଦେଇଥିବାରୁ

ତାହା ବଦଳେ 'ଲତା'ର ନାମୋଲ୍ଲେଖ ଆଲୋଚକମାନେ ଗ୍ରନ୍ଥତାଲିକାଟିକୁ ପ୍ରସ୍ତୁତ କଲାବେଳେ କିପରି ଉପରଠଉରା କାମ କରିଛନ୍ତି ତାହା ସୂଚାଉଛି। ଜଗବନ୍ଧୁ ସିଂହଙ୍କ ପରବର୍ତ୍ତୀ ସବୁ ଗବେଷକ ଲତା ଓ ପ୍ରେମଲତା ଉଭୟକୁ ଉପେନ୍ଦ୍ରଙ୍କ ଗ୍ରନ୍ଥ ବୋଲି ଚିହ୍ନାଇ ହଣ୍ଟର ଓ ମଧୁସୂଦନ ଦାଶଙ୍କ ମଧ୍ୟରେ ମତଭେଦକୁ ଅଦ୍ଭୁତ ଉପାୟରେ ସମାଧାନ କରିଦେଲେ। ଫଳତଃ, ଉପେନ୍ଦ୍ର ଭଞ୍ଜ ଆଉ ଗୋଟିଏ ଅସ୍ତିତ୍ୱହୀନ କାବ୍ୟର ପ୍ରଣେତା ହେବାର ଗୌରବ ବାଏଁ ବାଏଁ ପାଇଗଲେ ଓ ଭଞ୍ଜନଗରର ଭଞ୍ଜସାହିତ୍ୟ ପରିଷଦ୍ ପ୍ରେମଲତା ଓ ଲତା ଉଭୟଗ୍ରନ୍ଥକୁ ସଂଗ୍ରହ କରିଛନ୍ତି ବୋଲି ଗାଲୁ କଲେ। ଏଥିରୁ ଏ ଦେଶରେ ଭଞ୍ଜ-ଗବେଷଣାର ବାସ୍ତବ ଅବସ୍ଥା କଳ୍ପନୀୟ।

ଭାବବତୀ/ଛାନ୍ଦଭୂଷଣ

ବନ୍ଧୋଦୟର ଉଦ୍ଧୃତିର ୧୫ ପଦରେ ନାମିତ ଭାବବତୀ ଓ ଛାନ୍ଦଭୂଷଣ କାବ୍ୟଦ୍ୱୟ ମୁଦ୍ରିତ ହୋଇ ସାରିଛନ୍ତି। କବି ଭାବବତୀ କାବ୍ୟଟି 'ମୁକ୍ତାବତୀ ପ୍ରମାଣ' ବୋଲି କହିଥିବା କଥା ମୁଦ୍ରିତ ବନ୍ଧୋଦୟରୁ ଜଣାଯାଏ। କିନ୍ତୁ, ଭାବବତୀର ସଂପାଦକ ଦୁଃଖୀଶ୍ୟାମ ପଟ୍ଟନାୟକ ତାଳପତ୍ର ପୋଥିରୁ ଏହି ଅଂଶର ପାଠ ଦେଇଛନ୍ତି 'ଭାବବତୀ ମୁକ୍ତାବଳୀ ପ୍ରମାଣ'। ଗବେଷକମାନେ ହଣ୍ଟରଙ୍କୁ ଅନୁସରଣ କରି ୧୫ ପଦର ପ୍ରଥମ ପାଦରେ ଭାବବତୀ ଓ ମୁକ୍ତାବତୀ ନାମକ ଦୁଇଟି କୃତିର ନାମ ରହିଛି ଓ ଉଭୟ କାଳ୍ପନିକ କାବ୍ୟ ବୋଲି ମତଦେଇ ଆସୁଛନ୍ତି। କେବଳ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ମୁକ୍ତାବତୀ ସ୍ଥାନରେ ମୁକ୍ତାବଳୀ ନାମ ଲେଖିଛନ୍ତି। ଭାବବତୀ ସାତଛାନ୍ଦର ଏକ କାଳ୍ପନିକ କାବ୍ୟ। ଏହାକୁ ମୁକ୍ତାବଳୀ କହିବାର ଯଥାର୍ଥତା ଏହି ଯେ ମୁକ୍ତା ତାହାର ଉତ୍ପତ୍ତିସ୍ଥଳ ଭେଦରେ ସାତପ୍ରକାରର ଅଟେ: "ମତ୍ସ୍ୟାହିଶଙ୍ଖବାରାହ ବେଣୁ-ଜୀମୂତ ଶୁକ୍ତିତଃ ଜାୟତେ ମୌକ୍ତିକଂ ତେଷୁ ଭୂରି ଶୁକ୍ତ୍ୟୁଦ୍ଭବଂ ସ୍ମୃତମ୍ (ଶୁକ୍ରନୀତି ୪-୨-୫୯)। ପୁଣି, ସପ୍ତାବରଣ ମୁକ୍ତା ସର୍ବଶ୍ରେଷ୍ଠ ବୋଲି ମଧ୍ୟ କଥିତ ହୁଏ (ତତ୍ରତ୍ୟ ୪-୨-୬୦)। ଭାବବତୀର ଅଭିବ୍ୟକ୍ତି ମଧ୍ୟ ସରଳ; ତେଣୁ, ତାହା ଆବଦ୍ଧ ନୁହେ, ମୁକ୍ତ। ଏହି ମର୍ମରେ ଉପେନ୍ଦ୍ରଭଞ୍ଜ ସାତଛାନ୍ଦର ଭାବବତୀକୁ 'ମୁକ୍ତାବଳୀ ପ୍ରମାଣ' ବୋଲି କହିଥିବା ସ୍ଥିର କରାଯାଇପାରେ। ଗବେଷକମାନେ ଉପେନ୍ଦ୍ରଭଞ୍ଜ ଏଠାରେ ଭାବବତୀ ଓ ମୁକ୍ତାବତୀ ( ବା ମୁକ୍ତାବଳୀ) ନାମକ ଦୁଇଟି କାବ୍ୟର ନାମ ଲେଖିଥିବା ଭାବୁଛନ୍ତି।ଏହା ଲେଖିବା ଅନାବଶ୍ୟକ ଯେ ମୁକ୍ତାବତୀ ବା ମୁକ୍ତାବଳୀ ନାମଧେୟ କୌଣସି କାବ୍ୟର ସନ୍ଧାନ କୁତ୍ରାପି ମିଳିନାହିଁ (ଭଞ୍ଜ ସାହିତ୍ୟ ପରିଷଦର ମିଥ୍ୟା ଦାବି ଅବଶ୍ୟ ରହିଛି)।

ଛାନ୍ଦଭୂଷଣର ସଂରଚନା ଚଉପଦୀଭୂଷଣର ଅନୁରୂପ; ଏଥିରେ କ ଠାରୁ କ୍ଷ ଏହି ୩୪ଟି ବ୍ୟଞ୍ଜନ ବର୍ଣ୍ଣକୁ ପାଦାଦ୍ୟ ରୂପେ ବ୍ୟବହାର କରି ୩୪ଟି ଛାନ୍ଦ ରହିଛି। ଚଉପଦୀଭୂଷଣରେ କୌଣସି ନିର୍ଦ୍ଦିଷ୍ଟ କଥାବସ୍ତୁ ରହିନାହିଁ। କିନ୍ତୁ, ଛାନ୍ଦଭୂଷଣରେ ରହିଛି। ଆଉ ଗୋଟିଏ ସଂଖ୍ୟାନିୟମ ଏଥିରେ ରହିଛି ଯେ ଏହାର ପ୍ରତ୍ୟେକ

ଛାନ୍ଦର ପଦ ସଂଖ୍ୟା ୨୦। ମୁଦ୍ରିତ ପୁସ୍ତକରେ ମାତ୍ର ତିନୋଟି ଛାନ୍ଦରେ ଯାହା ପଦେ ଅଧେ ଊଣା ଅଛି ତାହା ନକଲକାର ବା ମୁଦ୍ରାକରର ଭ୍ରାନ୍ତିରୁ ଘଟିଛି। ଛାନ୍ଦଭୂଷଣରେ ବ୍ରଜଲୀଳା ବର୍ଣ୍ଣିତ ହୋଇଛି। ତେଣୁ କବି କହିଛନ୍ତି 'ବରଜଲୀଳା ଯେ ଛାନ୍ଦଭୂଷଣ'। ହଣ୍ଟରଙ୍କ ତାଲିକାରେ ଛନ୍ଦ ଭୂଷଣ ଓ ବ୍ରଜଲୀଳା ଦୁଇଟି ନାମ ପୃଥକ୍ ରଚନାର ନାମ ଭାବରେ ସ୍ଥାନ ପାଇଛି। ସେଥିରେ ବର୍ଣ୍ଣିତ ହୋଇଛି ଯେ ଛନ୍ଦଭୂଷଣ ଏକ ଛନ୍ଦଶାସ୍ତ୍ର (a treatise on versification) ଛାନ୍ଦଭୂଷଣକୁ ଛନ୍ଦଭୂଷଣ ବୋଲି ପଢ଼ି ଅନ୍ଦାଜରେ ବୀମ୍‌ସ ଏପରି ବର୍ଣ୍ଣନା କରିଗଲେ। ବନ୍ଧୋଦୟର ପ୍ରକୃତ ପାଠ ପ୍ରକାଶ ପାଇବା ପରେ, ଏପରିକି ଛାନ୍ଦଭୂଷଣ ପ୍ରକାଶ ପାଇବା ପରେ ମଧ, ଭଞ୍ଜସାହିତ୍ୟର ନାଆଁକରା ଗବେଷକମାନେ ଛାନ୍ଦଭୂଷଣ ଏକ ଅଳଂକାର ଶାସ୍ତ୍ର ବୋଲି ବର୍ଣ୍ଣନା କରି ଲାଗିଲେ (ଯଥା-କବିସମ୍ରାଟ ଉପେନ୍ଦ୍ରଭଞ୍ଜ'ର ପୃ.୪୪ରେ ଅନନ୍ତ ପଦ୍ମନାଭ ପଟ୍ଟନାୟକ)। ବ୍ରଜଲୀଳା ଏକ ପୃଥକ୍ ଗ୍ରନ୍ଥ ବୋଲି ହଣ୍ଟରଙ୍କ ତାଲିକାର ମତକୁ ଅନନ୍ତ ପଦ୍ମନାଭ ପଟ୍ଟନାୟକଙ୍କ ପର୍ଯ୍ୟନ୍ତ ସମସ୍ତେ ଗ୍ରହଣ କରି ଲାଗିଛନ୍ତି ଓ ଭଞ୍ଜ ସାହିତ୍ୟ ପରିଷଦ, ଛାନ୍ଦଭୂଷଣ ଓ ବ୍ରଜଲୀଳା ନାମରେ ଦୁଇଟି ଗ୍ରନ୍ଥକୁ ସଂଗ୍ରହ କରିଚି ବୋଲି ମିଥ୍ୟା ଦାବି ଉପସ୍ଥାପନ କରିଛି (ଡଃ ମହତାବ୍‌ଙ୍କ ଓଡ଼ିଶା ଇତିହାସ, ୧୯୪୮ ସଂସ୍କରଣ, ପୃ.୪୧୭)। ବୋଧହୁଏ ଦୋଘାଇରେ ପଡ଼ି ଗୌରୀକୁମାର ବ୍ରହ୍ମା ଏଣେ ଭଞ୍ଜଙ୍କର ଅପ୍ରକାଶିତ ଗ୍ରନ୍ଥମାନ ମଧରେ ବ୍ରଜଲୀଳାକୁ ଅନ୍ତର୍ଭୁକ୍ତ କରି ତେଣେ ଏପରି ଏକ ସ୍ୱତନ୍ତ୍ର ଗ୍ରନ୍ଥର ସ୍ଥିତିକୁ ସନ୍ଦେହ କରିଛନ୍ତି। ହଣ୍ଟରଙ୍କ ତାଲିକାର ଶତପ୍ରମାଦ ଶତଜୀବୀ ହେବାର ଏହା ଆଉ ଏକ ଦୃଷ୍ଟାନ୍ତ।

**କଳାକଉତୁକ/ସୁଭଦ୍ରା ପରିଣୟ**

ବନ୍ଧୋଦୟର ଉଦ୍ଧୃତିର ୧୬ ପଦରେ କଳାକଉତୁକ ଓ ସୁଭଦ୍ରା ପରିଣୟ କାବ୍ୟ ଦ୍ୱୟର ସୂଚନା ରହିଛି। କଳାକଉତୁକର ଉପଜୀବ୍ୟ ବିଷୟ କୃଷ୍ଣଲୀଳା ଓ ଏହାର ପ୍ରତ୍ୟେକ ପାଦର ଆରମ୍ଭ ଓ ଶେଷରେ ଆକାରାଦି ମାତ୍ରା (ବନା) ହୀନ କ ବର୍ଣ୍ଣ ରହିଛି। କଳାକଉତୁକର ଆରମ୍ଭର ଦଶୋଟି ମାତ୍ର ଛାନ୍ଦ ପ୍ରକାଶ ପାଇଛି; ଏତକ ମଧରେ ନାୟକ ନାୟିକାଙ୍କର ମିଳନ ସୁଦ୍ଧା ହୋଇ ନାହିଁ। ଅନୁମେୟ ଯେ ଏଥିରେ ବହୁତ ଗୁଡ଼ିଏ ଛାନ୍ଦ ରହିଥିବ। କଳା ନାମରୁ ସୂଚନା ମିଳୁଛି ଯେ ଏଥିରେ ମୋଟ ୬୪ଟି ଛାନ୍ଦ ଥିଲା, କାରଣ କଳା ସଂଖ୍ୟା ୬୪। କବିସମ୍ରାଟଙ୍କ ସାମ୍ରାଜ୍ୟର ଏକ ମୁଖ୍ୟ ଇଲାକା ଏହି କଳାକଉତୁକର ଅଧିକାଂଶ ଭାଗ ଯେ ଲୋପ ପାଇଗଲାଣି ଏ କଥା ସମ୍ରାଟଙ୍କ ସେନାପତିମାନଙ୍କୁ ମାଲୁମ୍ ନାହିଁ। ଏହା ପ୍ରମାଣିତ କରୁଛି ଯେ ଆଲୋଚକମାନେ ତାଙ୍କ କାବ୍ୟକୁ ପଢୁନାହାନ୍ତି ବା ଦୁର୍ବୋଧ୍ୟ ହେବା କାରଣରୁ ପଢ଼ି ମଧ ବୁଝି ପାରୁ ନାହାନ୍ତି। ବନ୍ଧୋଦୟରେ ସ୍ଥାନ ପାଇଥିବାରୁ ସନ୍ଦେହ ରୁହନାହିଁ ଯେ କାବ୍ୟଟିର ରଚନା କବି ପୂର୍ଣ୍ଣ କରିସାରିଥିଲେ।ସେଠାରେ କବି ଜଣାଇଛନ୍ତି ଯେ

କଳାକଉତୁକରେ। ଛଅ ଋତୁର ବର୍ଣ୍ଣନା ରହିଛି। କିନ୍ତୁ ପ୍ରକାଶିତ ଛାନ୍ଦଗୁଡ଼ିକରେ ଷଡ଼ଋତୁ ବର୍ଣ୍ଣନା ନାହିଁ। ଅନେକ ପ୍ରାଚୀନ କବି କାବ୍ୟ ମଧ୍ୟରେ ଷଡ଼ଋତୁରେ ପ୍ରକୃତିର ଅବସ୍ଥା ବର୍ଣ୍ଣନା କରିଥାନ୍ତି। ଏହା ନରସିଂହ ସେଣଙ୍କର ପରିମଳା କାବ୍ୟରୁ ଓଡ଼ିଆରେ ଚଳି ଆସୁଛି। କାଳିଦାସଙ୍କର ପ୍ରସିଦ୍ଧ ଋତୁସଂହାରର ପ୍ରଭାବରେ ଋତୁଭେଦରେ ବିରହୀ-ବିରହିଣୀଙ୍କ ଅବସ୍ଥା ବର୍ଣ୍ଣନା ସହ ଋତୁଚିତ୍ର କାବ୍ୟକୁ କମନୀୟ କରାଏ। ପ୍ରକାଶିତ କଳାକଉତୁକରେ ମିଳନ ପୂର୍ବ୍ବା ହୋଇ ନଥିବା ହେତୁରୁ ଷଡ଼ଋତୁର ବର୍ଣ୍ଣନା ଥିବା ଛାନ୍ଦଗୁଡ଼ିକ ମୁଦ୍ରିତ ୧୦ ଛାନ୍ଦର ବହୁ ପରବର୍ତ୍ତୀ ହେବା ନିଶ୍ଚିତ କଥା

ହଣ୍ଟରଙ୍କ ତାଲିକାରେ ପାଠୋଦ୍ଧାର ପ୍ରମାଦ ଯୋଗୁ କଳାକଉତୁକ (Kalakautuka) କଳାକଣ୍ଟକ (Kalakantaka) ହୋଇଯାଇଛି। କେତେକେ ଭଞ୍ଜଗବେଷକ ହଣ୍ଟରଙ୍କୁ 'ଶୁଦ୍ଧ ଅଶୁଦ୍ଧ ମିଶାଇ ଗାଇ' ନପାରି ଭଞ୍ଜଙ୍କର କାଳକଣ୍ଟକ (ବିଚ୍ଛନ୍ଦଚରଣ ପଟ୍ଟନାୟକ) ଓ କଳାକଣ୍ଟକ (ଅନନ୍ତ ପଦ୍ମନାଭ ପଟ୍ଟନାୟକ) ନାମରେ କାବ୍ୟ ରହିଛି ଓ ତାହାଛଡ଼ା କଳାକଉତୁକ କାବ୍ୟ ବି ଅଛି ବୋଲି ଭ୍ରାନ୍ତ ମତ ଦେଉଛନ୍ତି। ପୂର୍ବରୁ ସୂଚାଇଛି ଯେ ଭଞ୍ଜ ସାହିତ୍ୟ ପରିଷଦ୍ କଳାକଣ୍ଟକ କାବ୍ର ସଂଗ୍ରହ କରିଛି ବୋଲି କହି ମିଥ୍ୟା ଆସ୍ଫାଳନ କରିଛି ମଧ୍ୟ।

ହଣ୍ଟରଙ୍କ ତାଲିକାରେ ଉଲ୍ଲିଖିତ ହୋଇଛି ଯେ ଉପେନ୍ଦ୍ର ଷଡ଼ଋତୁ ନାମରେ କାଳିଦାସଙ୍କ ଋତୁସଂହାରର ଭାଷାନ୍ତର ( a version of Kalidas's Ritu Sanhar) କରିଥିଲେ। ମଧୁସୂଦନ ଦାଶ ଓ ଜଗବନ୍ଧୁ ସିଂହଙ୍କ ଛଡ଼ା ଅନ୍ୟ ସବୁ ଗବେଷକ ହଣ୍ଟରଙ୍କ ନିର୍ଦ୍ଧାରଣକୁ ଗ୍ରହଣ କରିଛନ୍ତି। କିନ୍ତୁ, ଏପରି ଅବଧାରଣା ଉପେନ୍ଦ୍ରଭଞ୍ଜଙ୍କ ପ୍ରଦତ୍ତ ବର୍ଣ୍ଣୋଦୟର ଗ୍ରନ୍ଥତାଲିକାର ନିବିଡ଼ ଅଧ୍ୟୟନରୁ ପ୍ରସୂତ ନୁହେଁ। ଲକ୍ଷ୍ୟ କରାଯାଇପାରେ ଯେ ଏହି ତାଲିକାର ଆରମ୍ଭରେ କେବଳ ମାତ୍ର କାଳ୍ପନିକ କାବ୍ୟ (ହେମମଞ୍ଜରୀ, ରସଲେଖା, ପ୍ରେମଲତା ଓ ଭାବବତୀ) ଚାରୋଟି ଉଲ୍ଲିଖିତ, ତାହା ପଛକୁ ସ୍ଥାନ ପାଇଛନ୍ତି। ଯେଉଁ ଛାନ୍ଦଭୂଷଣ ଓ କଳାକଉତୁକ ଉଭୟେ କୃଷ୍ଣଲୀଳାମୂଳକ କାବ୍ୟ। ଆହୁରି ପଛକୁ କ୍ରମାନ୍ୱୟରେ ସ୍ଥାନ ପାଇଛନ୍ତି ଉପେନ୍ଦ୍ରଭଞ୍ଜଙ୍କ ତିନୋଟିଯାକ ରାମଚରିତମୂଳକ କାବ୍ୟ :- ବୈଦେହୀଶ ବିଳାସ, ରସତରଙ୍ଗ ଓ ରାମଲୀଳାମୃତ। ଏଥିରୁ ସ୍ପଷ୍ଟ ହେଉଛି ଯେ କବି ତାଲିକାଭୁକ୍ତ ଗ୍ରନ୍ଥଗୁଡ଼ିକ ବିଷୟକ୍ରମ ଅନୁସାରେ ସଜାଡ଼ି ରଖିଛନ୍ତି। ଏହି କ୍ରମ ରକ୍ଷା କରିବା ସଙ୍ଗେ ସଙ୍ଗେ କବି ଆଉ ଏକ ନିୟମ ମଧ୍ୟ ପାଳନ କରିଛନ୍ତି ସ୍ୱରଚିତ ବର୍ଣ୍ଣ ନିୟମାଧୀନ ଗ୍ରନ୍ଥଗୁଡ଼ିକୁ ଏକତ୍ର ଉଲ୍ଲିଖିତ କରି। ଫଳରେ ତାଙ୍କର ତିନୋଟି ଯାକ ବର୍ଣ୍ଣାଦ୍ୟ ନିୟମରେ ରଚିତ ଗ୍ରନ୍ଥ କଳାକଉତୁକ, ସୁଭଦ୍ରାପରିଣୟ ଓ ବୈଦେହୀଶ ବିଳାସ ଏକାଠି ସ୍ଥାନିତ ହୋଇପାରିଛନ୍ତି। ଷଡ଼ଋତୁକୁ ଏକ ସ୍ୱତନ୍ତ୍ର ଗ୍ରନ୍ଥ ବୋଲି ଗ୍ରହଣ କଲେ ଦୁଇଟି କୃଷ୍ଣଚରିତମୂଳକ କାବ୍ୟ ଛାନ୍ଦଭୂଷଣ ଓ କଳା କଉତୁକ ମଧ୍ୟରେ ପଶିଯାଇ କ୍ରମଟିକୁ ବିପର୍ଯ୍ୟସ୍ତ କରି ପକାଇବ। ଏଣୁ, ଷଡ଼ଋତୁକୁ

ଏକ ଗ୍ରନ୍ଥ ବୋଲି କହିବା ଅଯୌକ୍ତିକ। କହିବା ବାହୁଲ୍ୟ, ଉପେନ୍ଦ୍ର-ପ୍ରଣୀତ କୌଣସି ଷଡ଼ଋତୁ ନାମକ ଗ୍ରନ୍ଥ ମିଳିନାହିଁ। ଯେଉଁ ଷଡ଼ଋତୁ ନାମଧେୟ ଗ୍ରନ୍ଥଟିଏ ମିଳୁଛି ତାହାର କବି ଊନବିଂଶ ଶତାବ୍ଦୀର ଟିକଟିର ରାଜା ବିଶ୍ୱମ୍ଭର ରାଜେନ୍ଦ୍ର। ଭଞ୍ଜ ସାହିତ୍ୟ ପରଷଦ-ସଂଗ୍ରହ କରିଛି ବୋଲି ଦାବି କରୁଥିବା ଷଡ଼ଋତୁ ବିଶ୍ୱମ୍ଭରଙ୍କର ଅଥବା ଶୁଦ୍ଧ ଧପା।

ଆଉ ମଧ ଲକ୍ଷ୍ୟ କରାଯାଇପାରେ ଯେ କବି ବନ୍ଧୋଦୟର ପୂର୍ବୋଦ୍ଧୃତ ଅଂଶରେ ୧୩ର ଶେଷାର୍ଦ୍ଧରୁ ଆରମ୍ଭ କରି ୨୧ ପଦ ପର୍ଯ୍ୟନ୍ତ ସବୁପଦର ପ୍ରତ୍ୟେକ ପାଦରେ ଗୋଟିଏ କରି କାବ୍ୟର ନାମ ଲେଖିଛନ୍ତି। ହଣ୍ଟର ଓ ତାଙ୍କ ଅନୁଗାମୀ ଗବେଷକମାନେ ୧୬ ପଦର ପ୍ରଥମପାଦ ପର୍ଯ୍ୟନ୍ତ ଛଅଟି ପାଦରେ ପାଦକେ ଦୁଇଟି କରି ନାମ ରହିଥିବା ପରି ବ୍ୟାଖ୍ୟା କରୁଛନ୍ତି। କବି ପ୍ରକୃତରେ ପାଦକେ ଦୁଇ ଦୁଇ ଗ୍ରନ୍ଥର ନାମ ଲେଖିଥିଲେ କୌଣସି ଗୋଟିଏ ସୁଦ୍ଧା ପାଦର ଉଭୟ ଗ୍ରନ୍ଥ ଆବିଷ୍କୃତ ହୋଇ ସାରନ୍ତାଣି। କିନ୍ତୁ, ପାଦକେ ଗୋଟିକରୁ ଅଧିକ ଗ୍ରନ୍ଥମିଳୁନାହିଁ। ଉପେନ୍ଦ୍ରଭଞ୍ଜଙ୍କର ଅନାବିଷ୍କୃତ ଗ୍ରନ୍ଥର ସଂଖ୍ୟା ଏତେ ବେଶି ନୁହେଁ ଯେ ଏଥିମଧ୍ୟରେ ଉଲ୍ଲିଖିତ ୧୨ଟି ଗ୍ରନ୍ଥରୁ ଅଦ୍ୟାବଧି ମାତ୍ର ଚାରିଟି (ରସଲେଖା, ଭାବବତୀ, ଛାନ୍ଦଭୂଷଣ ଓ କଳାକଉତୁକ) ପ୍ରକାଶ ପାଇ ଆଠୋଟି ଅନୁପଲବ୍ଧ ରହିବ। ତୁଳନାତ୍ମକ ଭାବରେ ଦେଖିଲେ ୧୬ ପଦର ଶେଷ ପାଦରୁ ୨୧ ପଦ ପର୍ଯ୍ୟନ୍ତ ୧୧ଟି ପାଦରେ ଉଲ୍ଲିଖିତ ଏଗାରଟି ଗ୍ରନ୍ଥ (ଏହା ସର୍ବମତ ସମ୍ମତ) ମଧ୍ୟରୁ ମାତ୍ର ଗୋଟିଏ ଗ୍ରନ୍ଥ (ପୁରୁଷୋତ୍ତମ ମାହାତ୍ମ୍ୟ) ଭିନ୍ନ ଅନ୍ୟ ସବୁଗୁଡ଼ିକ ପ୍ରକାଶ ପାଇସାରିଛି। ତେଣୁ ତାଲିକାଟିର ପ୍ରଥମ ଭାଗକୁ ମୁଁ ଯେପରି ଅର୍ଥ କରିଛି ତାହାହିଁ ପ୍ରକୃତ ଅର୍ଥ ହେବ। ତଦ୍ୱାରା ତାଲିକାରେ କଳାକଉତୁକ ପର୍ଯ୍ୟନ୍ତ ୧୨ଟି ଗ୍ରନ୍ଥ ବର୍ଣ୍ଣିତ ନ ହୋଇ ମାତ୍ର ୬ଟି ବର୍ଣ୍ଣିତ ହେବେ, ଯାହା ମଧ୍ୟରୁ ହେମମଞ୍ଜରୀ ଓ ପ୍ରେମଲତା ଦୁଇଟି ମାତ୍ର ଅନୁପଲବ୍ଧ।

ଉଦ୍ଧୃତିର ୧୬ ପଦର ଶେଷ ପାଦର ପାଠ "କନିୟକ ସାଦ୍ୟ ସୁଭଦ୍ରା ସାର" ନ ହୋଇ 'ସନିୟମ ସାଦ୍ୟ ସୁଭଦ୍ରା ସାର" ହେବା ଉଚିତ। କାରଣ, କବି ଗୋଟିଏ ପାଦରେ ଗୋଟିଏ କାବ୍ୟ କଥା ହିଁ କହୁଛନ୍ତି। ପୂର୍ବ ପାଦୋକ୍ତ 'କଳାକଉତୁକ' ପାଇଁ ଏହି ପାଦରେ 'କନିୟମ' ଲେଖାହେବା ସମୀଚୀନ ନୁହେଁ। ପଣ୍ଡିତ ମୃତ୍ୟୁଞ୍ଜୟ ରଥ ତାଳପତ୍ର ପୋଥିରୁ ଏହାର ପାଠ " ସନିୟମ ସାଦ୍ୟ ସୁଭଦ୍ରା ସାର' ଉଦ୍ଧାର କରିଥିଲେ (ଉତ୍କଳ ସାହିତ୍ୟ, ୮ ଭାଗ ୧୦ ସଂଖ୍ୟା)। ଏହାର ଅର୍ଥ ସୁଭଦ୍ରା ନାମକ କାବ୍ୟ ସ ଆଦ୍ୟ ନିୟମଯୁକ୍ତ ହୋଇ ଶ୍ରେଷ୍ଠ। ଆମୂଳାନ୍ତ ପାଦାଦ୍ୟ ବର୍ଣ୍ଣ ସ ଥାଇ ୩୪ ଛାନ୍ଦ ବିଶିଷ୍ଟ ସୁଭଦ୍ରା ପରିଣୟ ଖ୍ରୀ.୧୮୭୫ରୁ ପ୍ରକାଶିତ ହେଲାଣି। ଏହାକୁ ହିଁ କବି ସୁଭଦ୍ରା ବୋଲି ଉଲ୍ଲେଖ କରିଛନ୍ତି। ତାଳପତ୍ର ପୋଥିରେ ମଧ୍ୟ କାବ୍ୟଟି ସୁଭଦ୍ରା ପରିଣୟ ନାମରେ ଅଭିହିତ ହେଲେ ସୁଦ୍ଧା ତାହାର

କେବଳମାତ୍ର 'ସୁଭଦ୍ରା' ନାମ ଅଧିକ ଯୁକ୍ତିଯୁକ୍ତ। କାରଣ, ସ ଆଦ୍ୟ ହୋଇ ନଥିବା ପରିଣୟ ଶବ୍ଦକୁ ବୈଦେହୀଶ ବିଳାସ ଓ କଳାକଉତୁକର କବି ନାମର ଅଙ୍ଗୀଭୂତ କରିବାକୁ କୁଣ୍ଠିତ ହେବା ଅସ୍ୱାଭାବିକ ନୁହେଁ। ଅତଏବ ଉଷାଭିଳାଷ ସଂକ୍ଷେପରେ ଉଷା ବୋଲାଇବା ପରି କବି ସୁଭଦ୍ରା ପରିଣୟକୁ ସୁଭଦ୍ରା ନାମରେ ଅଭିହିତ କରିଛନ୍ତି।

## ବୈଦେହୀଶ ବିଳାସ; ରସତରଙ୍ଗ; ରାମଲୀଳାମୃତ

ବନ୍ଧୋଦୟର ଉଦ୍ଧୃତାଂଶର ୧୭ ପଦରେ ଓ ୧୮ ପଦର ପ୍ରଥମ ପାଦରେ ଉପେନ୍ଦ୍ରଭଞ୍ଜଙ୍କ ସ୍ୱରଚିତ ତିନୋଟି ରାମଚରିତ ମୂଳକ କାବ୍ୟର ସୂଚନା ଦେଇଛନ୍ତି ଓ ତିନୋଟିଯାକ ଗ୍ରନ୍ଥ ପ୍ରକାଶ ପାଇସାରିଛି। ବୈଦେହୀଶ ବିଳାସ (୫୨ ଛାନ୍ଦ) କବିଙ୍କର ପ୍ରକାଶିତ ରଚନାମାନଙ୍କ ମଧ୍ୟରେ ବୃହତ୍ତମ ଓ ସର୍ବାଧିକ ଖ୍ୟାତିଯୁକ୍ତ। ଏହାର ସବୁ ପାଦର ଆଦ୍ୟ ବର୍ଣ୍ଣ ବ ହେବାରୁ କବି ଏହାକୁ ବାଦ୍ୟ (ବ+ଆଦ୍ୟ) ବୋଲି ବର୍ଣ୍ଣନା କରିଛନ୍ତି।

ଉପେନ୍ଦ୍ର ଭଞ୍ଜ ରସତରଙ୍ଗ ଗ୍ରନ୍ଥର ନାମୋଲ୍ଲେଖ ନ କରି କହିଛନ୍ତି : "ପ୍ରସିଦ୍ଧ ଅବନା ଦ୍ୱାଦଶ ଛାନ୍ଦ"। ଦ୍ୱାଦଶ ଛାନ୍ଦ ବିଶିଷ୍ଟ ବନା (ଅର୍ଥାତ୍ ଆକାରାଦି ମାତ୍ରା) ନଥିବା ବର୍ଣ୍ଣରେ ରଚିତ ରସତରଙ୍ଗ "ଅବନା ରସରତଙ୍ଗ" ନାମରେ ପ୍ରକାଶ ପାଇଛି। ଅବନା ଶବ୍ଦର ଶେଷ ବର୍ଣ୍ଣରେ ବନା (ଆକାର ମାତ୍ରା) ରହିଥିବାରୁ ତାହା ନାମର ଅଂଶ ହୋଇ ନପାରେ, ନାମଟି କେବଳ 'ରସତରଙ୍ଗ'। ରସତରଙ୍ଗରେ ସୀତାହରଣ ଠାରୁ ସୀତାଙ୍କ ସନ୍ଧାନ ପାଇଁ ହନୁମାନ ଆଦିଙ୍କ ପ୍ରେରଣ ପର୍ଯ୍ୟନ୍ତ ରାମାୟଣ ଚରିତ ବର୍ଣ୍ଣିତ ହୋଇଛି। ରସତରଙ୍ଗ ପ୍ରସଙ୍ଗରେ ଉଲ୍ଲେଖନୀୟ ଯେ ରସଅର୍ଣ୍ଣବ ନାମରେ ଆଉ ଏକ 'ଅବନା' କାବ୍ୟର ଆରମ୍ଭର ଛଅଟି ଛାନ୍ଦ ମିଳୁଛି, ଯାହାର ପଦଗୁଡ଼ିକ ମୋଟାମୋଟି ଭାବରେ ରସତରଙ୍ଗର ପଦଗୁଡ଼ିକ ସହିତ ମିଶିଯାଉଛି। ଏହି ଅସମାପ୍ତ ଗ୍ରନ୍ଥ ରସ ଅର୍ଣ୍ଣବର ଭଣତି ମଧ୍ୟ ଉପେନ୍ଦ୍ରଭଞ୍ଜ ନାମ ବହନ କରେ। ରସ ଅର୍ଣ୍ଣବର ଗୋଟିଏ ଛାନ୍ଦ (ଏହାର ଛାନ୍ଦର ନାମ ତରଙ୍ଗ) କିନ୍ତୁ ରସତରଙ୍ଗରେ ସ୍ଥାନ ପାଇନାହିଁ। ମୋର ଅନୁମାନ, ନିଜେ କବି ହିଁ ରସତରଙ୍ଗକୁ ପୁନର୍ଲିଖନ କରି ପରିବର୍ତ୍ତନ କରୁଥିଲେ କିନ୍ତୁ ସେ କାର୍ଯ୍ୟ ସଂପୂର୍ଣ୍ଣ ହୋଇପାରି ନ ଥିଲା।

ରାମଲୀଳାମୃତ ୧୪ ଛାନ୍ଦର ଏକ କ୍ଷୁଦ୍ର ରଚନା। ଏଥିରେ ରାମଙ୍କ ଜନ୍ମ ଠାରୁ ବିବାହ ପରେ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ ବିଷୟ ବର୍ଣ୍ଣିତ ହୋଇଛି। ଏଥିରେ ଶ୍ଳେଷାଳଙ୍କାରର ପ୍ରାଧାନ୍ୟ ଥିବାରୁ କବି ଏହାକୁ 'ଶ୍ଳେଷ ଚରିତ' ବୋଲି କହିଛନ୍ତି। ଅନେକ ଆଲୋଚକ 'ଶ୍ଳେଷ' ସ୍ଥାନରେ 'ଶେଷ' ପାଠ ଗ୍ରହଣ କରିଛନ୍ତି, କିନ୍ତୁ ତାହା ମୁଦ୍ରଣପ୍ରମାଦରୁ ଘଟିଛି, ପ୍ରକୃତ ପାଠ ଶ୍ଳେଷ। 'ଶେଷ ଚରିତ' ପାଠ ସାର୍ଥକ ନୁହେଁ।

## ପ୍ରେମ ସୁଧାନିଧି; ରସିକ ହାରାବଳୀ; ସୁବର୍ଣ୍ଣରେଖା

ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀ ମଧ୍ୟରୁ ସର୍ବପ୍ରଥମେ (ଖ୍ରୀ. ୧୮୬୬ରେ) ପ୍ରକାଶ ପାଇଥିଲା ପ୍ରେମସୁଧାନିଧି (୧୮୬୭ର ଜାନୁଆରି ୧୨ ତାରିଖରେ ପ୍ରକାଶିତ ଉତ୍କଳ ଦୀପିକାର ବାର୍ଷିକ ବିବରଣୀରେ ଏହା ଲେଖାଅଛି)। ପରେ ପରେ ତାହାଙ୍କର ରସିକ ହାରାବଳୀ (୧୮୭୧) ଓ ସୁବର୍ଣ୍ଣରେଖା ମଧ୍ୟ ପ୍ରକାଶିତ ହେଲା। ଏହି ତିନୋଟିଯାକ କାବ୍ୟ ଅନୁଭବ-ସୂତ୍ରରେ ଗୁନ୍ଥା ହୋଇଥିବା କଥା କବି ସୁବର୍ଣ୍ଣରେଖାର ଶେଷକୁ ଜଣାଇଛନ୍ତି :-

ପାଞ୍ଚ ଛାନ୍ଦେ ଶେଷ ହୋଇଲା ଏ ରସ କରିବ ରସିକ ବଶ।
ହେ ଜନେ ପ୍ରେମସୁଧାନିଧି ରସିକ-ହାରବଳୀର ଯେ ଶେଷ ॥
ସୁବର୍ଣ୍ଣ ରେଖାରେ ବର୍ଣ୍ଣନା ଯେତେକ ରସ ଏହୁ ତିନି ଗୀତ।
କହେ ଉପଇନ୍ଦ୍ର ଭଞ୍ଜ ବୀରବର ଅନୁଭବୁ ଏ ବିଦିତ ॥

ଉପେନ୍ଦ୍ରଭଞ୍ଜ ରସିକହାରାବଳୀରେ ମଧ୍ୟ ଜଣାଇଛନ୍ତି ଯେ ସେହି କାବ୍ୟଟି 'ଅନୁଭବରୁ ପ୍ରଖ୍ୟାତ ମାନସ ରଚନା (ପ୍ରଥମ ଛାନ୍ଦ)। ଅନୁମିତ ହୁଏ, ଉପେନ୍ଦ୍ର ଅନୁଭବ କହିଲେ ନିଜ ଜୀବନରେ ଭେଟିଥିବା ସୁଖ-ଦୁଃଖ, ମିଳନ-ବିବାହ ଆଦି ଭାବକୁ ବୁଝୁଛନ୍ତି, ପ୍ରକୃତ ଘଟନାକୁ ନୁହେଁ।

ପ୍ରେମ ସୁଧାନିଧି କାବ୍ୟଟି ବିଭିନ୍ନ ପ୍ରକାରର ଯମକପୂର୍ଣ୍ଣ ୧୬ଟି ଛାନ୍ଦରେ ସଂପୂର୍ଣ୍ଣ ହୋଇଛି। ସୁଧାନିଧି ୧୬ କଳାଯୁକ୍ତ ହେବାରୁ ପ୍ରେମସୁଧାନିଧିକୁ କବି ୧୬ ଛାନ୍ଦ ବିଶିଷ୍ଟ କରିଛନ୍ତି। ବନ୍ଧୋଦୟରେ କବି ଲେଖିଛନ୍ତି, ପ୍ରେମସୁଧାନିଧି ଯମକେ ସ୍ଥିତ''। ପ୍ରେମ ସୁଧାନିଧିରେ ମଧ୍ୟ କବି ଏହି କାବ୍ୟ ସଂପର୍କରେ କହିଛନ୍ତି। ଯମକ ପ୍ରଧାନ କରି କଲି ଯେଣୁ ଗୀତ, ଶ୍ଳେଷଛନ୍ଦ ନ ବିରଚି କଲି ସମାପତ'' (ଶେଷ-ଛାନ୍ଦ)। ରସିକ-ହାରାବଳୀ କାବ୍ୟଟି, ସ୍ୱୟଂ କବିଙ୍କ ଭାଷାରେ : ''ରୂପକ, ଯମକ, ଆଶୟ, ବିରୋଧ, ଶ୍ଳେଷ, ଛନ୍ଦେ ଗୀତ ନିପୁଣ'' (୧୫/୨୦)। ଉପେନ୍ଦ୍ର ଯେ, କେତେକ ନିର୍ଦ୍ଦିଷ୍ଟ ଆଳଂକାରିକ ରୀତିକୁ ସୁପରିସ୍ଫୁଟ କରାଇବା ଲକ୍ଷ୍ୟ ରଖି ଗୋଟିଏ ଗୋଟିଏ ଗ୍ରନ୍ଥ ରଚନା କରୁଥିଲେ ଏହା ଏଥିରୁ ଜଣାପଡ଼େ। ବନ୍ଧୋଦୟରେ ପ୍ରେମ ସୁଧାନିଧି ଓ, ରସିକ ହାରାବଳୀ ଦୁଇ କାବ୍ୟର ନାମ ରହିଛି କିନ୍ତୁ ସୁବର୍ଣ୍ଣରେଖାର ନାମ ନାହିଁ। ସୁବର୍ଣ୍ଣରେଖାର ପ୍ରାଧାନ୍ୟର ଅଭାବ ଓ ତାହାର କ୍ଷୁଦ୍ର ଅବୟବ ଯୋଗୁଁ ତାହା ଉପେକ୍ଷିତ ହୋଇଥିବା ଅନୁମିତ ହୁଏ। ସେଥିରେ ଛୋଟ ଛୋଟ ପାଞ୍ଚୋଟି ଛାନ୍ଦ ମାତ୍ର ରହିଛି।

## କୁଞ୍ଜବିହାର

ବନ୍ଧୋଦୟର ଉଦ୍ଧୃତିର ୧୯ ପଦର ଶେଷ ପାଦରୁ ଜଣାଯାଏ ଯେ ଉପେନ୍ଦ୍ରଭଞ୍ଜ କୁଞ୍ଜବିହାରାଦି କୃଷ୍ଣଲୀଳାମୂଳକ କାବ୍ୟ ଲେଖିଥିଲେ। କିନ୍ତୁ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଦେଇଥିବା ପୋଥିପାଠରେ 'କୁଞ୍ଜବିହାରାଦି ଶ୍ୟାମଚରିତ' ବଦଳେ ଲେଖାରହିଛି : ''କୁଞ୍ଜବିହାର ଯେ ଶ୍ୟାମଚରିତ''। ଏପରି ଅବସ୍ଥାରେ କବି କୁଞ୍ଜବିହାର ଛଡ଼ା

ଆଉ କିଛି ତାଲିକାଭୁକ୍ତ ହୋଇ ନଥିବା କୃଷ୍ଣଲୀଳା ବିଷୟକ କାବ୍ୟ ଲେଖିଥିଲେ କି ନାହିଁ ନିର୍ଣ୍ଣୟ କରାଯାଇ ପାରୁନାହିଁ। ଡଃ ପୂର୍ଣ୍ଣଚନ୍ଦ୍ର ମିଶ୍ରଙ୍କ ଉଦ୍ୟମରେ କୁଞ୍ଜବିହାର ଖ୍ରୀ. ୧୯୯୦ ରେ ପ୍ରକାଶ ପାଇଲା। ମାତ୍ର ୭ଟି ଛାନ୍ଦ ବିଶିଷ୍ଟ ଏହି କାବ୍ୟଟିରେ ରାଧାକୃଷ୍ଣ କେଳି ବର୍ଣ୍ଣିତ। ଭଞ୍ଜସାହିତ୍ୟ ପରିଷଦର ଦାବି ଅନୁଯାୟୀ ପରିଷଦ କୁଞ୍ଜବିହାର ଛଡ଼ା ଶ୍ରୀକୃଷ୍ଣବିହାର ନାମକ ଅନ୍ୟ ଏକ ଗ୍ରନ୍ଥ ମଧ୍ୟ ସଂଗ୍ରହ କରିଛି (ଡଃ ମହତାବ୍‌ଙ୍କ ଓଡ଼ିଶା ଇତିହାସ, ପୃ.୪୧୭)। ପରିଷଦର ଦାବି ଅମୂଳକ ଓ ପ୍ରବଞ୍ଚନାମୂଳକ। ଉପେନ୍ଦ୍ରଙ୍କ ଗ୍ରନ୍ଥ ତାଲିକା ମଧ୍ୟକୁ ଶ୍ରୀକୃଷ୍ଣ ବିହାର ପଶି ଆସିବା ଏକ ଦୁର୍ଘଟଣା। ଜଗବନ୍ଧୁ ସିଂହଙ୍କ ତାଲିକାରେ ମୁଦ୍ରଣ ପ୍ରମାଦ ବଶତଃ କୁଞ୍ଜବିହାର ନାମଟି କୃଷ୍ଣବିହାର ହୋଇଗଲା (ପ୍ରାଚୀନ ଉତ୍କଳ ପୃ.୧୫୨)। ଜଗବନ୍ଧୁ ବନ୍ଧୋଦୟରେ ଦତ୍ତ ଓ ପୂର୍ବର ଆଲୋଚକଙ୍କ ଦ୍ୱାରା ସମର୍ଥିତ କୁଞ୍ଜବିହାର ନାମକୁ ନଦେଇ କୃଷ୍ଣବିହାର ନାମ ଦେଇଥିବାରୁ ଏହା ହିଁ ସିଦ୍ଧାନ୍ତ କରାଯାଇପାରେ। ପରେ ବିଚ୍ଛନ୍ଦଚରଣ ପଟ୍ଟନାୟକ କୁଞ୍ଜବିହାର ନାମ ତାଲିକାରେ ରଖି ଶ୍ରୀକୃଷ୍ଣବିହାର ନାମ ମଧ୍ୟ ରଖିଲେ ଓ ଭଞ୍ଜ ସାହିତ୍ୟ ପରିଷଦ ଦୁଇଟି ଯାକ କାବ୍ୟ ସଂଗୃହୀତ ହୋଇଛି ବୋଲି ମିଛରେ ଦାବିକଲେ! ଉପେନ୍ଦ୍ର କେହି କେବେ ଲେଖି ନଥିବା ଗ୍ରନ୍ଥର ପ୍ରଣେତା ହେବାର ଗୌରବ ପାଇଗଲେ।

ହଣ୍ଟରଙ୍କ ତାଲିକାରେ ଉପେନ୍ଦ୍ର 'ରାହାସଲୀଳା' ନାମକ ଏକ ଗ୍ରନ୍ଥଲେଖିଥିବା କଥା ରହିଛି, ଯଦିଚ ତାହା ବନ୍ଧୋଦୟରେ ସ୍ଥାନ ପାଇନାହିଁ। ପରବର୍ତ୍ତୀ ଗବେଷକମାନେ ହଣ୍ଟରଙ୍କୁ ମାନି ରାହାସଲୀଳା ଉପେନ୍ଦ୍ରଙ୍କ ଲେଖନୀ ପ୍ରସୂତ ବୋଲି ଲେଖିଛନ୍ତି ଓ ଭଞ୍ଜସାହିତ୍ୟ ପରିଷଦ ଏହାକୁ ସଂଗ୍ରହ କରିଥିବା କଥା ମଧ୍ୟ କୁହାଯାଇଛି। ରାସଲୀଳାକୁ ଉପେନ୍ଦ୍ର ଜାନପଦବୃତ୍ତି ରାହାସଲୀଳା କହିବା ଅସମୀଚୀନ ଭାବି ଅନନ୍ତ ପଦ୍ମନାଭ ପଟ୍ଟନାୟକ ରାହାସଲୀଳା ନାମକୁ ବଦଳାଇ ରାସଲୀଳା ଲେଖିଛନ୍ତି। ସମସ୍ତଙ୍କ ସହମତି ସତ୍ତ୍ୱେ ରାହାସଲୀଳା ବା ରାସଲୀଳା ଲୋକଲୋଚନକୁ ନ ଆସି ଗବେଷକବର୍ଗଙ୍କୁ ମିଥ୍ୟା ପ୍ରମାଣିତ କରୁଛି।

## ରସପଞ୍ଚକ/ରସମଞ୍ଜରୀ

ବନ୍ଧୋଦୟର ଉଦ୍ଧୃତାଂଶରେ ୨୦ ପଦର ପ୍ରଥମ ପାଦରେ "ଅଳଂକାର ରୀତି ରସପଞ୍ଚକ "ଉଲ୍ଲିଖିତ ହୋଇଛି। ରସପଞ୍ଚକ ଖ୍ରୀ. ୧୮୬୭ରୁ ପ୍ରକାଶ ପାଇଲାଣି। କିନ୍ତୁ, ସଂପାଦନା ଅଭାବରୁ ଏହାର ପାଠରେ ବହୁଭ୍ରମ ରହିଛି ଓ ଏହାର କିଛି ଅଂଶ ମୁଦ୍ରିତ ହୋଇନାହିଁ ମଧ୍ୟ। ର-ସ-ପ-ଚ-କ ଏହି ପାଞ୍ଚୋଟି ବର୍ଣ୍ଣକୁ ପାଦାଦ୍ୟ ରୂପେ ବ୍ୟବହାର କରି ଲେଖା ହୋଇଥିବା ବୋଲି, ଛାନ୍ଦ, ଚଉପଦୀ, ଚଉତିଶା ଓ ଢ଼ଗ ଏହି ପାଞ୍ଚ ପ୍ରକାରର ପଦ୍ୟ ମଧ୍ୟରେ ଅଳଂକାର ଶାସ୍ତ୍ର ରସତରଙ୍ଗିଣୀ ଓ ସାହିତ୍ୟଦର୍ପଣ ଅନୁଯାୟୀ ରସ ସଂପର୍କିତ ବିଷୟର ଆଲୋଚନା ଏହି ରସପଞ୍ଚକରେ ରହିଛି। ଓଡ଼ିଆ ଭାଷାର ଅନ୍ୟତମ ପ୍ରାଚୀନ ଅଳଂକାର ଶାସ୍ତ୍ରଭାବରେ ରସପଞ୍ଚକ ଏକ ମହାନ୍ କୃତି।

ରସପଞ୍ଚକ ଶେଷକୁ ଉପେନ୍ଦ୍ରଭଞ୍ଜ ଜଣାଇଛନ୍ତି ଯେ ରସ ଉଦ୍ଦେଶ୍ୟରେ ଅନ୍ୟ ଏକ ରଚନା (ଗୀତ)କରିବା ପରେ ଏହି ଅଳଂକାର ଶାସ୍ତ୍ରକୁ ଲେଖୁଛନ୍ତି : "କହିଲି ଖ୍ୟାତେ, ଅଳଂକାର ଗୀତେ, କରି ଆନ ଗୀତ ରସ ସହିତେ" (ରସପଞ୍ଚକ, କକାର ଢଗ)। ସେହି ରସ ବିଷୟକ ଗ୍ରନ୍ଥ ରସପଞ୍ଚକ ପୂର୍ବରୁ ରଚିତ ହୋଇସାରିଥିଲେ ହେଁ ବନ୍ଧୋଦୟର ତାଲିକାରେ ତାହା ଅନ୍ତର୍ଭୁକ୍ତ ହୋଇନାହିଁ, କେବଳ ରସପଞ୍ଚକ ହୋଇଛି। ବନ୍ଧୋଦୟର ଏହି ପାଦର ପାଠ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଦେଇଛନ୍ତି : ଅଳଂକାର ମଧ୍ୟେ ରସପଞ୍ଚକ। ଏଥିରୁ ମଧ୍ୟ ଉପେନ୍ଦ୍ର ଭଞ୍ଜ ଅନ୍ୟ କିଛି ଅଳଂକାର ଗ୍ରନ୍ଥ ଲେଖି ସାରିଥିବାର ସୂଚନା ମିଳୁଛି।

ଉପେନ୍ଦ୍ରଙ୍କର 'ରସମଞ୍ଜରୀ' ନାମଧେୟ ଏକ ଅଳଂକାର ଗ୍ରନ୍ଥର ସନ୍ଧାନ ମିଳୁଛି। ଏହାର ଆରମ୍ଭର କିୟଦଂଶକୁ ମୁଁ ଉଦ୍ଧାର କରି ଖ୍ରୀ.୧୯୭୬ ଜାନୁଆରିରେ ପ୍ରଥମେ ପ୍ରକାଶିତ କରାଇଲି। ଗୌରୀକୁମାର ବ୍ରହ୍ମା ତାଙ୍କ ଭଞ୍ଜଭୂମିକା (ପୃ. ୬୩୫)ରେ ଜଣାଇଛନ୍ତି ଯେ ସମଗ୍ର ରସମଞ୍ଜରୀ ଗ୍ରନ୍ଥଟିକୁ ଦୁଃଖୀଶ୍ୟାମ ପଟ୍ଟନାୟକ ପାଇଛନ୍ତି ଓ ତାହାକୁ ସଂପାଦନ କରି ପ୍ରକାଶ କରିବାକୁ ଉଦ୍ୟମ କରୁଛନ୍ତି। ଶ୍ରୀ ପଟ୍ଟନାୟକ ଏହାକୁ ପ୍ରକାଶିତ କରାଇ ନାହାନ୍ତି। ପରେ ଖ୍ରୀ. ୧୯୯୫ରେ ହରେକୃଷ୍ଣ ପାତ୍ର ଏହାକୁ ସଂପାଦନ କରି ଆଂଶିକ ପ୍ରକାଶ କରାଇଲେ। କାରଣ, ସେ ସଂଗ୍ରହ କରିଥିବା ଚାରିଟି ଯାକ ପୋଥି ଅସମାପ୍ତ ଥିଲା। ଶ୍ରୀପାତ୍ରଙ୍କ ପୃଷ୍ଠବନ୍ଧରୁ ଜଣାଯାଉଛି ଯେ ତାଙ୍କୁ ଦୁଃଖୀଶ୍ୟାମ ପଟ୍ଟନାୟକ ବିଭିନ୍ନ ତଥ୍ୟ ଯୋଗାଇ ସାହାଯ୍ୟ କରିଛନ୍ତି। କିନ୍ତୁ, ରସମଞ୍ଜରୀର ସମଗ୍ର ପାଠ କଣ ହେଲା ଜଣାପଡୁନାହିଁ।

ଓଡ଼ିଆ ଭାଷାରେ ରସମଞ୍ଜରୀ ଓ ରସପଞ୍ଚକ ନାମରେ ଦୁଇଟି ଗ୍ରନ୍ଥ ଥିବା ବିଷୟ ରେଭେରେଣ୍ଡ ଜେ.ଲଙ୍ଗ୍ ଖ୍ରୀ. ୧୮୫୯ରେ ଜଣାଇଥିଲେ ହେଁ ରସମଞ୍ଜରୀ ଏବେ ବି ପୂର୍ଣ୍ଣାଙ୍ଗ ଭାବରେ ଲୋକଲୋଚନକୁ ଆସିପାରି ନାହିଁ। ହଣ୍ଟରଙ୍କ ତାଲିକାରେ ରସମଞ୍ଜରୀ ଛନ୍ଦନିୟମ ବିଷୟକ ଏକ ଶାସ୍ତ୍ର ବୋଲି ବର୍ଣ୍ଣିତ ହୋଇଛି। ବିଜୟଚନ୍ଦ୍ର ମଜୁମ୍‌ଦାର ରସମଞ୍ଜରୀ ଉପେନ୍ଦ୍ରଙ୍କର ଏକ କାଳ୍ପନିକ କାବ୍ୟ ବୋଲି ମନରୁ କାଢ଼ି ଲେଖିଛନ୍ତି ଓ ବିନାୟକ ମିଶ୍ର, ବିଚ୍ଛନ୍ଦଚରଣ ପଟ୍ଟନାୟକ ପ୍ରମୁଖ ମଜୁମ୍‌ଦାରଙ୍କ ନିର୍ଣ୍ଣୟକୁ ଗ୍ରହଣ କରିଛନ୍ତି। ଅନନ୍ତ ପଦ୍ମନାଭ ପଟ୍ଟନାୟକ ତାହାଙ୍କର 'କବିସମ୍ରାଟ ଉପେନ୍ଦ୍ରଭଞ୍ଜ' ଗ୍ରନ୍ଥର ପୃ. ୪୩ରେ ହଣ୍ଟରଙ୍କୁ ସମର୍ଥନ କରି 'ରସମଞ୍ଜରୀ ଛନ୍ଦ ନିୟମାବଳୀ ବିଷୟକ ପଦ୍ୟ ଗ୍ରନ୍ଥ" ବୋଲି ଲେଖି ସେହି ଗ୍ରନ୍ଥର ପୃ, ୪୪ରେ ମଜୁମ୍‌ଦାରଙ୍କୁ ସମର୍ଥନ କରି ତାହା ଏକ କାଳ୍ପନିକ କାବ୍ୟ ବୋଲି ବର୍ଗୀକରଣ କରିଛନ୍ତି! ଗ୍ରନ୍ଥ ପରିଚୟ ବ୍ୟାପାରରେ ଉପେନ୍ଦ୍ରଭଞ୍ଜଙ୍କ ବିଖ୍ୟାତ ଆଲୋଚକମାନେ କିପରି ଜମାରୁ ବିଶ୍ୱାସଯୋଗ୍ୟ ନୁହନ୍ତି ରସମଞ୍ଜରୀ ତାହାର ଆମୋଦକର ଦୃଷ୍ଟାନ୍ତ। ରସମଞ୍ଜରୀ ନିରୋଳ ଅଳଂକାର ଶାସ୍ତ୍ର। ଏଥିରେ ନବରସ, ସାହିତ୍ୟରେ ଦୋଷ, ବିବିଧ ଅଳଂକାର,

ନାୟିକା ଜାତି ଆଦି ଅଳଂକାର ଶାସ୍ତ୍ରର ବିଷୟର ଚର୍ଚ୍ଚା ଅଛି। ରସମଞ୍ଜରୀର ସଂରଚନା ବଡ଼ ଚମତ୍କାର। ଏଥିରେ ମୋଟ ଚାରିଟି ଗୁଚ୍ଛ, ପ୍ରତ୍ୟେକ ଗୁଚ୍ଛରେ ଚାରିଟି କରି ପୁଷ୍ପ ଏହି ପ୍ରକାରେ ମୋଟ ଷୋଳଟି ପୁଷ୍ପ (ଛାନ୍ଦ)କୁ ନେଇ ମଞ୍ଜରୀଟି ହୋଇଛି। ପ୍ରକାଶିତ ରସମଞ୍ଜରୀରେ ତୃତୀୟ ଗୁଚ୍ଛର ପ୍ରଥମ ପୁଷ୍ପ ଯାଏଁ ଓ ତାହାର ଦ୍ୱିତୀୟ ପୁଷ୍ପ ଆଂଶିକ ରହିଛି।

**ଲାବଣ୍ୟବତୀ; ପୁରୁଷୋତ୍ତମ ମାହାତ୍ମ୍ୟ; ଗୀତାଭିଧାନ**

ଉଦ୍ଧୃତିର ୨୦ ପଦର ଦ୍ୱିତୀୟ ପାଦରେ ଉଲ୍ଲିଖିତ ଲାବଣ୍ୟବତୀ ଓ ୨୧ ପଦର ପ୍ରଥମ ପାଦରେ ଉଲ୍ଲିଖିତ ଗୀତାଭିଧାନ ଖ୍ରୀ. ୧୮୭୦ରୁ ମୁଦ୍ରିତ ହେଲେଣି। କିନ୍ତୁ, ୨୧ ପଦର ଦ୍ୱିତୀୟ ପାଦରେ ଉଲ୍ଲିଖିତ ପୁରୁଷୋତ୍ତମ ମାହାତ୍ମ୍ୟ ଗ୍ରନ୍ଥଟି ତାଳପତ୍ର ପୋଥି ରୂପରେ ସୁଦ୍ଧା କେଉଁଟି ଥିବା ଶୁଣା ନାହିଁ (ଅବଶ୍ୟ ଭଞ୍ଜସାହିତ୍ୟ ପରିଷଦ ଏପରି ପୋଥି ସଂଗ୍ରହ କରିଛି ବୋଲି ମିଥ୍ୟା ଦାବି କରିଛି)। ପୁରୁଷୋତ୍ତମ ମାହାତ୍ମ୍ୟ ଗ୍ରନ୍ଥଟି ସ୍କନ୍ଦପୁରାଣର ଉତ୍କଳ ଖଣ୍ଡର ଛାନ୍ଦକାବ୍ୟ ରୂପ ହୋଇପାରେ। କେହି କେହି ଏହାର ପଦ ବୋଲି କେତେକ ପଦ ବୋଲିଥାନ୍ତି। ତେଣୁ, ଏହା ଭବିଷ୍ୟତରେ ମିଳିପାରେ।

ଉପେନ୍ଦ୍ରଭଞ୍ଜଙ୍କର ଗୀତାଭିଧାନ ଏକ ଗୁରୁତ୍ୱପୂର୍ଣ୍ଣ ସୃଷ୍ଟି। ଏହା ଓଡ଼ିଆ ଭାଷାର ପ୍ରଥମ ଅଭିଧାନ। ମୋର ବିଚାରରେ ଏହି କ୍ଷୁଦ୍ରାବୟବ ପୁସ୍ତକଟି, ଆଜିର ମହାମହା ଅଭିଧାନ ଯୁଗରେ ମଧ, ପ୍ରାଚୀନ ସାହିତ୍ୟ ଚର୍ଚ୍ଚା ପାଇଁ ତାହାର ଉପଯୋଗିତା ହରାଇ ନାହିଁ। ଭଞ୍ଜନଗରର ଜଣେ ଭଞ୍ଜପ୍ରେମୀ ପଣ୍ଡିତ ଶ୍ରୀଧର ଶତପଥୀ ଆଉ ଏକ ଗୀତାଭିଧାନ ନିକଟରେ ମୁଦ୍ରିତ କରାଇଛନ୍ତି। ଶ୍ରୀ ଶତପଥୀ ମୁଦ୍ରିତ କରିଥିବା ଗୀତାଭିଧାନଟିର ପାଠ ପୂର୍ବ ମୁଦ୍ରିତ ପାଠ ଠାରୁ ବହୁତ ଭିନ୍ନ ଓ ଏହାର ଆକାର ମଧ କିଛି ଛୋଟ। ପଣ୍ଡିତ ଚନ୍ଦ୍ରଶେଖର ଆଚାର୍ଯ୍ୟ 'ଭଞ୍ଜଗୀତଭିଧାନ' ନାମ ଦେଇ ତାହାର ଅନ୍ୟ ଏକ ରୂପ ମୁଦ୍ରିତ କରାଇଛନ୍ତି। ମୋର ମନେ ହୁଏ ଶ୍ରୀ ଶତପଥୀ ଓ ଶ୍ରୀ ଆଚାର୍ଯ୍ୟଙ୍କ ଦ୍ୱାରା ପ୍ରକାଶିତ ଗୀତାଭିଧାନର ବିକଶିତ ରୂପ ହେଉଛି ଖ୍ରୀ. ୧୮୭୦ରୁ ମୁଦ୍ରିତ ଗୀତାଭିଧାନ। ନିଜେ ଉପେନ୍ଦ୍ର ଭଞ୍ଜ ସଂଶୋଧନ କରିଥିବା ସମ୍ଭବ। ଗୌରୀକୁମାର ବ୍ରହ୍ମା 'ଭଞ୍ଜଭୂମିକା'ର ପୃ. ୪୫୭ରେ ଲେଖିଛନ୍ତି: ''ଏବେ ମୁଁ ଖବର ପାଇଲି ଯେ ଭଞ୍ଜଙ୍କର 'ଶବ୍ଦମାଳା' ନାମକ ଅଭିଧାନ ମଧ ପ୍ରାପ୍ତ ହୋଇଅଛି। ଏହା ସଂସ୍କୃତ ଶବ୍ଦମାଳା ଅଭିଧାନର ଓଡ଼ିଆ ରୂପାନ୍ତର କି ନୁହେଁ ଜଣାଯାଇନାହିଁ। ଏହା କୁଆଡ଼େ ତିନି ଛାନ୍ଦରେ ବିଭକ୍ତ''। ଏହି ଖବର ଯୋଗାଇବା ବ୍ୟକ୍ତି ହେଉଛନ୍ତି ସେହି ଶ୍ରୀଧର ଶତପଥୀ। ଏହା ପୂର୍ବରୁ ଶ୍ରୀ ବ୍ରହ୍ମା 'ଭଞ୍ଜଭୂମିକା'ର ପୃ. ୩୮୬ରେ ଜଣାଇଥିଲେ ଯେ ପ୍ରକୃତରେ ଶବ୍ଦମାଳା ପ୍ରାପ୍ତ ହୋଇନାହିଁ, ତାହା ଶ୍ରୀଯୁକ୍ତ ଶତପଥୀ 'ଦେଖିବାକୁ ପାଇଛନ୍ତି' ମାତ୍ର। ଶ୍ରୀଯୁକ୍ତ ଶତପଥୀଙ୍କ ଦେହାନ୍ତ ହୋଇଯିବା ଯୋଗୁଁ

ଉପେନ୍ଦ୍ରଭଞ୍ଜଙ୍କ 'ଶବ୍ଦମାଳା'ର ସାକ୍ଷୀ ଆଉ କେହି ନାହାନ୍ତି। ଗତ ଶତାବ୍ଦୀରେ ଜନ୍‌ବୀମ୍‌ସ ତୁଳନାତ୍ମକ ବ୍ୟାକରଣ ଲେଖିବା ବେଳେ ଶବ୍ଦମାଳା ଉପେନ୍ଦ୍ରଭଞ୍ଜ ଲେଖିଥିବା କଥା ପ୍ରଥମେ ଜଣାଇଥିଲେ। ବ୍ୟାକରଣରେ ବୀମ୍‌ସ ଲେଖିଛନ୍ତି ଯେ କବି ଉପେନ୍ଦ୍ରଭଞ୍ଜ ଓଡ଼ିଆରେ ଗୀତାଭିଧାନ ଛଡ଼ା 'ଶବ୍ଦମାଳା' ନାମକ ଅନ୍ୟତର ଅଭିଧାନ ରଚନା କରିଥିଲେ। ବୀମ୍‌ସ ବ୍ୟାକରଣ ଲେଖିବା ପରେ ଉଇଲିଅମ୍ ହଣ୍ଟରଙ୍କ 'ଓଡ଼ିଶା'ର "ଓଡ଼ିଶାର ସାହିତ୍ୟ" ଶୀର୍ଷକ ପରିଶିଷ୍ଟଟିକୁ ପ୍ରସ୍ତୁତ କରିଥିଲେ। ଏହି ପରିଶିଷ୍ଟରେ ସେ ଶବ୍ଦମାଳାକୁ ଉପେନ୍ଦ୍ରଭଞ୍ଜଙ୍କ ଗ୍ରନ୍ଥ ତାଲିକାଭୁକ୍ତ କରି ନାହାନ୍ତି। ଏଥିରୁ ଅନୁମେୟ ଯେ ବୀମ୍‌ସ ପରେ ଜାଣି ପାରିଥିଲେ ଯେ ଶବ୍ଦମାଳାର ରଚୟିତା ଉପେନ୍ଦ୍ର ନୁହନ୍ତି। ଗୋବିନ୍ଦ ରଥଙ୍କ ଦ୍ୱାରା ସଂସ୍କୃତ ଶବ୍ଦମାଳା ଗତ ଶତାବ୍ଦୀରେ ହିଁ ଓଡ଼ିଆ ଲିପିରେ ପ୍ରକାଶ ପାଇଛି। ଉପେନ୍ଦ୍ରଭଞ୍ଜଙ୍କର ରଚନାବଳୀର ତାଲିକାକୁ କ୍ରମଶଃ ଦୀର୍ଘୀକୃତ କରାଇବା ଉପେନ୍ଦ୍ର-ପୂଜାର ଯେପରି ଉପଚାରରେ ପରିଣତ ହୋଇଛି ସେଥିରେ କୌଣସି ଉପେନ୍ଦ୍ର ଭକ୍ତ ପଣ୍ଡିତ ବୀମ୍‌ସଙ୍କ ସ୍ୱୀକୃତ ଭ୍ରମକୁ ଭ୍ରମ ନୁହେଁ ବୋଲି ପ୍ରତିପାଦିତ କରିବା ମତଲବ୍‌ରେ ସଂସ୍କୃତ ଶବ୍ଦମାଳାକୁ ତିନୋଟି ଓଡ଼ିଆ ଛନ୍ଦରେ ରୂପାନ୍ତରିତ କରିଥିବା ସମ୍ଭବପର। ତେଣୁ, ତାହାକୁ ଏକ ଜାଲିଆତି ବୋଲି ମୁଁ ବିଶ୍ୱାସ କରୁଛି।

**କୋଟିବ୍ରହ୍ମାଣ୍ଡ ସୁନ୍ଦରୀ**

ନାମଟିର ଜୁଗୁପ୍‌ସାଜନକ ରୂକ୍ଷତା ସତ୍ତ୍ୱେ ଉପେନ୍ଦ୍ର ଭଞ୍ଜ ଯେ ସ୍ୱପ୍ରଣୀତ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟକୁ ସର୍ବଶ୍ରେଷ୍ଠ ଛାନ୍ଦକାବ୍ୟ ବୋଲି ବିବେଚନା କରୁଥିଲେ ସେ କଥା ବନ୍ଧୋଦୟର ପୂର୍ବୋଦ୍ଧୃତ ୨୨ ପଦରୁ ସ୍ପଷ୍ଟ ଜଣାଯାଏ। ଏହାକୁ କବି ତାଲିକାରେ ଚୂଡ଼ାନ୍ତ ସ୍ଥାନ ଦେଇଛନ୍ତି ଓ ଅନ୍ୟାନ୍ୟ ପଦଗୁଡ଼ିକ ମଧ୍ୟରେ ପାଦକେ ଗୋଟିଏ କରି କାବ୍ୟର ପରିଚୟ ଦେଲାବେଳେ ଏହି ପଦରେ ଦୁଇଟିଯାକ ପାଦରେ ଗୋଟିଏ ମାତ୍ର କାବ୍ୟ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ପରିଚୟ ଦେଇଛନ୍ତି। କବିଙ୍କ ପ୍ରଶଂସାମୂଳକ ବକ୍ତବ୍ୟ ଅନୁସାରେ କୋଟି ସଂଖ୍ୟକ ଅନ୍ୟାନ୍ୟ ଛାନ୍ଦକାବ୍ୟ ତାରା ସଦୃଶ ହେବା ସ୍ଥଳେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଚନ୍ଦ୍ରମା ପରି ତେଜୋମୟ। ପ୍ରକୃତରେ କହିବାକୁ ଗଲେ ଗୌଡ଼ୀରୀତିର ସୁଦକ୍ଷ କବି ଭାବରେ ଉପେନ୍ଦ୍ରଙ୍କ ସାମର୍ଥ୍ୟ ଏହି କାବ୍ୟଟି ମଧ୍ୟରେ ତୁଙ୍ଗିମାକୁ ଚୁମ୍ବିଛି। ସେହି କଥା କୌଣସି ଅଜ୍ଞାତ ରଚୟିତାଙ୍କ ସଂସ୍କୃତ ଶ୍ଳୋକର ପାଦ ମଧ୍ୟରେ ବ୍ୟକ୍ତହୋଇଛି : ସର୍ବସ୍ୱଂ ଭଞ୍ଜବୀରସ୍ୟ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀଃ।

କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟଟି ୩୫ ଛାନ୍ଦ ବିଶିଷ୍ଟ ହୋଇ ପ୍ରକାଶ ପାଇଛି। ଅନନ୍ତ ପଦ୍ମନାଭ ପଟ୍ଟନାୟକ ତାଙ୍କର 'କବି ସମ୍ରାଟ ଉପେନ୍ଦ୍ରଭଞ୍ଜ'ର ପୃ. ୭ରେ ତାହାଙ୍କର ସିଦ୍ଧାନ୍ତ ଦେଇଛନ୍ତି : "କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କବିଙ୍କର ଅନ୍ତିମ ରଚନା। xx ତାହା ଅସମ୍ପୂର୍ଣ୍ଣ ଦେଖାଯାଏ। ସମ୍ଭବତଃ ଏହାର ସମାପ୍ତି ପୂର୍ବରୁ କବି ଇହଲୀଳା ସମ୍ବରଣ କରିଥିଲେ"। ବନ୍ଧୋଦୟରେ ଏହାର ପ୍ରଶଂସାମଣ୍ଡିତ ନାମୋଲ୍ଲେଖ ଥିବା

ହେତୁରୁ ସନ୍ଦେହ ରହୁନାହିଁ ଯେ କବି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ରଚନା ପୂର୍ଣ୍ଣ କରିଥିଲେ ଓ ତାହା ପରେ ବନ୍ଧୋଦୟ ରଚନା କରିଥିଲେ। ତେଣୁ, ଏହା ଅସମ୍ପୂର୍ଣ୍ଣ କାବ୍ୟ ନୁହେଁ କି ଅନ୍ତିମ ରଚନା ନୁହେ। କିନ୍ତୁ, ପ୍ରକାଶିତ ୩୪ ଛାନ୍ଦ ବିଶିଷ୍ଟ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ସଂପୂର୍ଣ୍ଣ କାବ୍ୟ ନୁହେଁ। ଏହାର ପରବର୍ତ୍ତୀ ଛାନ୍ଦ କେତୋଟି ହୁଏତ ହଜିଯାଇଛି। ଜଣେ ପ୍ରାଚୀନ ଭଞ୍ଜପ୍ରେମୀ ପଣ୍ଡିତଙ୍କ ମତରେ ଏହି କାବ୍ୟକୁ ୩୫ ଛାନ୍ଦରେ ସାରିବାର କାରଣ ତାହାର ନାମକରଣ। କୋଟିବ୍ରହ୍ମାଣ୍ଡ ୫ ଅକ୍ଷର ଓ ସୁନ୍ଦରୀ ୩ ଅକ୍ଷର। ଅଙ୍କାନାଂ ବାମତୋ ଗତିଃ ନିୟମ ଅନୁସାରେ ୫,୩ ହେଲା ୩୫। ତେଣୁ କାବ୍ୟଟି ୩୫ ଛାନ୍ଦରୁ ଅଧିକ ନୁହେଁ। ଉପେନ୍ଦ୍ରଭଞ୍ଜଙ୍କୁ ବୁଝିବା ପାଇଁ ଏ ବି ଗୋଟିଏ ମାର୍ଗ! ପଣ୍ଡିତେ ଅଧିକ ସୁବିଚାର କଲେ ଜାଣନ୍ତେ ଯେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ତିନୋଟି ଶବ୍ଦ ରହିଛି ତେଣୁ ଛାନ୍ଦ ସଂଖ୍ୟା ୩୩୨ ହେବା ପ୍ରସ୍ତାବ ସେ ଦେବା ଉଚିତ ଥିଲା।

### ବନ୍ଧୋଦୟ

ଉପେନ୍ଦ୍ରଭଞ୍ଜଙ୍କ ବନ୍ଧୋଦୟ ଗ୍ରନ୍ଥଟି ଖ୍ରୀ. ୧୯୦୬ରେ 'ଚିତ୍ରକାବ୍ୟ ବନ୍ଧୋଦୟ' ନାମରେ ପ୍ରଥମେ ପ୍ରକାଶ ପାଇଲା। ପରବର୍ତ୍ତୀ ସଂସ୍କରଣ ଗୁଡ଼ିକରେ ଏହି ନାମଟି ରହିଛି। ନାମଟିକୁ ହଣ୍ଟରଙ୍କ 'ଓଡ଼ିଶା'ର 'ଓଡ଼ିଶାର ସାହିତ୍ୟ' ପରିଶିଷ୍ଟରେ ପ୍ରଥମେ ଭର୍ତ୍ତି କଲେ ଜନ୍‌ବୀମ୍‌ସ। ଉପେନ୍ଦ୍ର ଗ୍ରନ୍ଥ ମଧ୍ୟରେ ତାହାର ନାମ ବନ୍ଧୋଦୟ ବୋଲି ସ୍ପଷ୍ଟଭାବରେ ଲେଖିଛନ୍ତି : "ବୁଧ ବୋଧକ ବନ୍ଧୋଦୟ ଗୀତ" (ପ୍ରଥମ ଛାନ୍ଦ)ଗ୍ରନ୍ଥଟିରେ ଚିତ୍ରକବିତ୍ୱ ରହିଛି। ତେଣୁ କୌଣସି ଅନୁଲେଖକ କାବ୍ୟର ପରିଚୟାତ୍ମକ ବିଶେଷଣ ଭାବରେ ବନ୍ଧୋଦୟ ପୂର୍ବରୁ ଚିତ୍ରକାବ୍ୟ ଶବ୍ଦ ଯୋଗ କରିଥିବା ସମ୍ଭବ। ବନ୍ଧୋଦୟ ଯେତିକି ପ୍ରକାଶ ପାଇଛି ତାହା ପୂର୍ଣ୍ଣାଙ୍ଗ ନୁହେଁ। ବନ୍ଧୋଦୟର ଆରମ୍ଭରେ ପ୍ରଦତ୍ତ ଅନୁକ୍ରମଣିକାରେ ଏକ ବିଷୟ ସୂଚୀ ଦିଆଯାଇଛି। ଏହା ସହିତ ମିଳାଇ ଦେଖିଲେ ଜଣାଯାଏ ଯେ ଏହାର ଶେଷର କେତେକାଂଶ ପ୍ରକାଶ ପାଇନାହିଁ। ପୂର୍ଣ୍ଣାଙ୍ଗ ବନ୍ଧୋଦୟ ଚିନାଇ (ମାନ୍ଦ୍ରାଜ)ର ପାଣ୍ଡୁଲେଖାଗାରରେ ରହିଛି ବୋଲି ଶୁଣିଥିଲି।

### ତ୍ରୈଲୋକ୍ୟ ମୋହିନୀ

ଉପେନ୍ଦ୍ରଭଞ୍ଜ ବଛାବଛା କେତୋଟି ସ୍ୱରଚିତ ଗ୍ରନ୍ଥର ନାମ ବନ୍ଧୋଦୟର ଆରମ୍ଭରେ ଦେବା ପରେ ପରେ ଜଣାଇଛନ୍ତି ଯେ ତ୍ରୈଲୋକ୍ୟମୋହିନୀ ଆଦି ପାଞ୍ଚସାତ ଖଣ୍ଡ ଛାନ୍ଦକାବ୍ୟକୁ ବିଭିନ୍ନ ରାଜାଙ୍କୁ ସମର୍ପିତ କରିସାରି ଥିବାରୁ ସେଗୁଡ଼ିକୁ ନିଜର ଲେଖା ଭାବରେ ଗଣନା କରୁନାହାନ୍ତି :-

ତ୍ରୈଲୋକ୍ୟମୋହିନୀ ଆଦି ଯେ ଗୀତ। ନିର୍ମିତ ଛାନ୍ଦପୋଥି ପାଞ୍ଚସାତ ॥୨୩॥
ସେ ଅର୍ଥ ପାର୍ଥିବ-ମାର୍ଗଣେ ପୁଣ। ହୋଇଛି ଯେଣୁ କରି ବିତରଣ ॥୨୪॥
ବାଲ୍ମୀକେ ମହାନାଟକ ପ୍ରକାରେ। ଦତ୍ତ ହେଲା ପ୍ରାୟ ହନୁମନ୍ତରେ ॥୨୫॥
ସେ ଏଣୁ ଲେଖା ନୋହିଲା ଲେଖାରେ। ନ ଗ୍ରହି ଦାନଧନ ଭୂଲେଖରେ ॥୨୬॥

ଏହାର ସରଳାର୍ଥ :- ମୁଁ ତ୍ରୈଲୋକ୍ୟ ମୋହିନୀ ଆଦି ପାଞ୍ଚସାତ ଖଣ୍ଡ ଗୀତରେ ତିଆରି ଛାନ୍ଦକାବ୍ୟ ଲେଖିଛି। ସେହି କାବ୍ୟରୂପକ ଅର୍ଥକୁ ଭିକ୍ଷୁକ (ମାର୍ଗଣ) ପାଳଟିଥିବା ରାଜା (ପାର୍ଥିବ)ମାନଙ୍କୁ ଦାନ କରି ସାରିଛି। ମହାକବି ବାଲ୍ମୀକି ଯେପରି ମହାନାଟକ ଲେଖି ତାହାକୁ ହନୁମାନ୍‌ଙ୍କୁ ଦାନ କଲେ (ହନୁମାନ୍‌ଙ୍କ ନାମରେ ଭଣିତ କରି) ଏହା ସେହିପରି ଗ୍ରନ୍ଥଦାନ। ସେ ସବୁ ଦତ୍ତ ହୋଇସାରି ଥିବାରୁ ରଚନାବଳୀ ମଧ୍ୟରେ ତାହା ଉଲ୍ଲିଖିତ (ଲେଖା) ହେଲାନାହିଁ। ଯେପରିକି ବ୍ରାହ୍ମଣମାନଙ୍କୁ (ଭୂଲେଖରେ) ଦତ୍ତ ଧନ ପୁଣି ଗ୍ରହଣ କରିବା (ଗ୍ରହି) ଅନୁଚିତ।

ଉଦ୍ଧୃତିର ୨୩ ପଦର 'ପାଞ୍ଚସାତ'ର ପୋଥି ପାଠ ପାଞ୍ଚଶତ ବୋଲି ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଲେଖିଛନ୍ତି (ଉତ୍କଳ ସାହିତ୍ୟ ୮/୧୦)। କିନ୍ତୁ, ତାହା ଅସମ୍ଭବ ଧରଣର ସଂଖ୍ୟାକୁ ସୂଚାଉଥିବାରୁ ଗ୍ରହଣଯୋଗ୍ୟ ନୁହେଁ। 'ପାଞ୍ଚସାତ'ର ଅର୍ଥ ଠିକ୍ କେତେ ସଂଖ୍ୟା ତାହା ନିର୍ଦ୍ଦିଷ୍ଟ କରାଯାଇ ନ ପାରେ। ଏହା ପାଞ୍ଚରୁ କମ୍ ନୁହେଁ। କାରଣ, ତାହା ହୋଇଥିଲେ ଦୁଇଚାରି ଶବ୍ଦ ବ୍ୟବହୃତ ହୋଇପାରିଥାନ୍ତା। ଏହା ମଧ୍ୟ ଦଶରୁ କମ୍। କାରଣ, ଉଚ୍ଚତର ସଂଖ୍ୟା ପାଇଁ ଦଶବାର ଶବ୍ଦ ବ୍ୟବହୃତ ହୋଇପାରିଥାନ୍ତା। ତେଣୁ, ଉପେନ୍ଦ୍ର ନିଜେ ରଚନା କରି ରାଜା ବିଶେଷ ବା ବିଭିନ୍ନ ରାଜାଙ୍କ ନାମରେ ଭଣିତ କରିଥିବା ଗ୍ରନ୍ଥର ସଂଖ୍ୟା ପ୍ରାୟ ସାତଖଣ୍ଡି ବୋଲି ଅନୁମାନ କରାଯାଇପାରେ। ତନ୍ମଧ୍ୟରୁ ଉପେନ୍ଦ୍ର ଭଞ୍ଜ କେବଳ ତ୍ରୈଲୋକ୍ୟ ମୋହିନୀର ନାମୋଲ୍ଲେଖ କରିଛନ୍ତି।

ଅଦ୍ୟାବଧି ଦୁଇଟି ତ୍ରୈଲୋକ ମୋହିନୀ ଛାନ୍ଦକାବ୍ୟ ଲୋକ ଲୋଚନକୁ ଆସିଲାଣି ଓ ଆଉ ଗୋଟିଏ ମଧ୍ୟ ଥିବା ଶୁଣିବାକୁ ମିଳୁଛି। ପ୍ରଥମଟିର ଭଣିତିରେ ଘନ ଭଞ୍ଜଙ୍କ ନାମ ଓ ଦ୍ୱିତୀୟଟିରେ ଯୁଗଭଞ୍ଜ ଓ ଯୁବଭଞ୍ଜ ଉଭୟଙ୍କ ନାମ (ଭିନ୍ନ ଭିନ୍ନ ଛାନ୍ଦରେ ଭିନ୍ନ ଭିନ୍ନ ନାମ) ରହିଛି। ପ୍ରଥମଟିର ଅସ୍ତିତ୍ୱ ବହୁକାଳରୁ ଜଣାଥିଲା। ଦ୍ୱିତୀୟଟିକୁ ଡଃ ଦୁର୍ଗାମାଧବ ନନ୍ଦ ନିକଟରେ ଲୋକଙ୍କ ଦୃଷ୍ଟିକୁ ଆଣିଲେ। ଡଃ ନନ୍ଦ ଦ୍ୱିତୀୟଟି ସଂପର୍କରେ ଆଲୋଚନା କରିଛନ୍ତି ଓ ତାହାର ଆରମ୍ଭର କେତେ ଛାନ୍ଦ ସାହିତ୍ୟ ପତ୍ରରେ କ୍ରମାନ୍ୱୟରେ ପ୍ରକାଶ କରିଛନ୍ତି। ଡଃ ନନ୍ଦଙ୍କ ବିବେଚନାରେ ଘନଭଞ୍ଜଙ୍କ ଭଣିତିଯୁକ୍ତ ତ୍ରୈଲୋକ୍ୟମୋହିନୀର ଶୈଳୀ ନିମ୍ନସ୍ତରର କିନ୍ତୁ ଯୁଗ/ଯୁବ ଭଞ୍ଜଙ୍କ ଭଣିତିଯୁକ୍ତ କାବ୍ୟର ଶୈଳୀ ଉପେନ୍ଦ୍ରଙ୍କ ସ୍ତରର। ତେଣୁ, ଯୁଗ/ଯୁବ ଭଞ୍ଜ ଭଣିତିଯୁକ୍ତ କାବ୍ୟଟି ଉପେନ୍ଦ୍ର ଭଞ୍ଜଙ୍କର ବୋଲି ସେ ମତ ଦେଇଛନ୍ତି। ତାଙ୍କର ଏ ମତ ସପକ୍ଷରେ ଅଧିକ ବଳବାନ୍ ପ୍ରମାଣ ଯୁଗ/ଯୁବ ଭଣିତି ଯୁକ୍ତ ତ୍ରୈଲୋକ୍ୟ ମୋହିନୀର ତାଳପତ୍ର ପାଣ୍ଡୁଲିପି, ଯାହାର ଆରମ୍ଭରେ ଲେଖନକାର "ଉପେନ୍ଦ୍ରଭଞ୍ଜ କୃତ୍ୟ ତ୍ରୈଲୋକ୍ୟ ମୋହିନୀ" ବୋଲି ଉଲ୍ଲେଖ କରିଛି।

ଏହି ଯୁଗ/ଯୁବ ଭଞ୍ଜ କିଏ ଓ ତାଙ୍କର ଦ୍ୱିବିଧ ନାମ କାହିଁକି ହେଲା, ଓ ଉପେନ୍ଦ୍ରଭଞ୍ଜ ତାଙ୍କର ଦୁଇଟି ଯାକ ନାମକୁ ଗୋଟିଏ ସ୍ଥାନରେ କିପରି ସ୍ୱୀକୃତି ଦେଲେ, ଏହା ରହସ୍ୟମୟ। ପୂର୍ବରୁ, କୌଣସି ପ୍ରମାଣ ନଥାଉଣୁ ବିଶ୍ୱାସ କରାଯାଉଥିଲା ଯେ ଯୁଗଭଞ୍ଜ ବଉଦର ରାଜା ଓ ସେ ହିଁ ଯୁବ ଭଞ୍ଜ ବୋଲାଉଥିଲେ। ବଉଦ ରାଜବଂଶରେ କେହି ଯୁବ ଭଞ୍ଜ ନାମଧେୟ ରାଜା ନଥିଲେ। ଖ୍ରୀ ୧୮୭୨ରେ ରଚିତ ବୌଦ ରାଜବଂଶାବଳୀରେ ବଉଦର ଅଷ୍ଟାଦଶ ଶତାବ୍ଦୀର ପୂର୍ବାର୍ଦ୍ଧର ରାଜା ଭାବରେ ଜଣେ ଯୁଗ (ବା ଯୋଗେଶ୍ୱର) ଭଞ୍ଜଙ୍କ ନାମ ରହିଛି କିନ୍ତୁ ବଂଶାବଳୀ ପ୍ରସଙ୍ଗରେ ଅଧିକ ନିର୍ଭରଯୋଗ୍ୟ ବଉଦ-ରାଜର ରେକର୍ଡ଼ ପତ୍ରରେ ଯୁଗ ବା ଯୋଗେଶ୍ୱର ନାମ ବଦଳେ ଭିନ୍ନ ଏକ ନାମ ରହିଛି। ଏହି ବିଷୟ ଦଶପୋଇ ବା ବାରପୋଇର ପିତୃତ୍ୱ ନିର୍ଣ୍ଣୟ କଲାବେଳେ ମୁଁ ଆଲୋଚନା କରିସାରିଛି।

ପ୍ରାୟ ୨୩ ବର୍ଷ ପୂର୍ବେ ଘନଭଞ୍ଜ ଭଣିତିଯୁକ୍ତ ତ୍ରୈଲୋକ୍ୟ ମୋହିନୀଟି ଉପେନ୍ଦ୍ରଙ୍କ ରଚନା ବୋଲି ମୁଁ ସ୍ଥିର କରିଥିଲି। ପରେ ଯୁଗ/ଯୁବ ଭଞ୍ଜ ଭଣିତିଯୁକ୍ତ ତ୍ରୈଲୋକ୍ୟମୋହିନୀଟି ଆବିଷ୍କୃତ ମୋ ପୂର୍ବମତକୁ ବଦଳାଇ ନବାବିଷ୍କୃତ ତ୍ରୈଲୋକ୍ୟମୋହିନୀଟି ଉପେନ୍ଦ୍ରଙ୍କର ହୋଇପାରେ ବୋଲି ମନେ କରୁଛି। ଦୁଃଖର ବିଷୟ ନବାବିଷ୍କୃତ ତ୍ରୈଲୋକ୍ୟମୋହିନୀଟି ପୂରା ପ୍ରକାଶ ପାଇନାହିଁ ଓ ତାଳପତ୍ର ପୋଥିର ଅବସ୍ଥା ଯାହା ହେଲାଣି ବୋଲି ଡଃ ନନ୍ଦଙ୍କ ଠାରୁ ଶୁଣୁଛି ସେଥିରେ ତାହା ଭବିଷ୍ୟତରେ ମଧ ପୂର୍ଣ୍ଣରୂପେ ପ୍ରକାଶିତ ହୋଇପାରିବ ନାହିଁ।

ତୃତୀୟ ତ୍ରୈଲୋକ୍ୟ ମୋହିନୀ ଶୁଣାକଥା ସ୍ତରରେ ରହିଛି। ଗୌରୀକୁମାର ବ୍ରହ୍ମା ଉପେନ୍ଦ୍ରଭଞ୍ଜଙ୍କର ଅପ୍ରକାଶିତ ତ୍ରୈଲୋକ୍ୟମୋହିନୀ ସଂପର୍କରେ ଆଲୋଚନା କଲାବେଳେ ଘନଭଞ୍ଜଙ୍କ ଭଣିତିଯୁକ୍ତ ତ୍ରୈଲୋକ୍ୟ ମୋହିନୀ ବିଷୟ ଉଲ୍ଲେଖ ନ କରି ଭିନ୍ନ ଏକ ଛାନ୍ଦକାବ୍ୟ କଥା କହିଛନ୍ତି :- "ପଣ୍ଡିତ ଶ୍ରୀଧର ଶତପଥୀଙ୍କ ଠାରୁ ଜାଣିବାକୁ ପାଇଲି ଯେ ଏହି କାବ୍ୟ ଆମୂଳଚୂଳ 'ତ' ନିୟମରେ ଲେଖା, ଯେପରିକି ବୈଦେହୀଶ ବିଳାସର 'ବ' ନିୟମ। ତହିଁର ଲାବଣ୍ୟବତୀ ଓ କୋଟି ବ୍ରହ୍ମାଣ୍ଡସୁନ୍ଦରୀଠାରୁ ଅଧିକ ଶବ୍ଦ ପାଣ୍ଡିତ୍ୟ ପ୍ରଦର୍ଶିତ ହୋଇଛି। ପଣ୍ଡିତ ଶତପଥୀ ଗୋଟିଏ ପଦର ଯେଉଁ ଅଂଶଟି ମୁହଁରେ ଆବୃତ୍ତି କରି ମୋତେ ଶୁଣାଇଥିଲେ, ତାହା ହେଉଛି :-

ତମାଳ ତମାଳ ତମାଳ ତମାଳ ତମାଳ ତମାଳ ବରନା।
ତଥି ପରେ ତଥି ତଥି ପରେ ତଥି ତଥି ପରେ ତଥି ପରେ ତଥି ଶୋଭନା।"

ଶ୍ରୀ ବ୍ରହ୍ମା ଜଣାଇଛନ୍ତି ଯେ ସେ ଏହି କାବ୍ୟ ବିଷୟ ୧୬-୬-୧୯୭୪ରେ ପାଇଲେ। ଏହି କାବ୍ୟ ପଣ୍ଡିତ ଶତପଥୀଙ୍କ ମୁଖରୁ ହିଁ ମିଳୁଥିଲା। ବିଂଶାଧିକ ବର୍ଷ ବିତି ଯାଇଥିଲେ ହେଁ ଏହାର ମୂର୍ତ୍ତ ରୂପ ଆତ୍ମପ୍ରକାଶ କଲା ନାହିଁ। ପଣ୍ଡିତ ଶତପଥୀଙ୍କର ନିକଟରେ ଦେହାନ୍ତ ହୋଇ ସାରିଥିବାରୁ ଏହି କାବ୍ୟ ବିଷୟ ଆଉ ଶୁଣିବାକୁ ବି ମିଳିବ ନାହିଁ।

ନିଜର ବା ଅନ୍ୟର କାବ୍ୟକୁ ଯୋଡ଼ାଯୋଡ଼ି କରି ଉପେନ୍ଦ୍ରଭଞ୍ଜ ନାମରେ ତାହା ଚଳାଇ ନେବାର ଦୃଷ୍ଟାନ୍ତ ଅପ୍ରଚୁର ନୁହେଁ। ମୋର ମତରେ, ଭଞ୍ଜଙ୍କ ସଂପର୍କରେ ଥରେ ବି ଯେଉଁ ସୂତ୍ରରୁ ଉଦ୍ଭୂତ ଦାବି ମିଥ୍ୟା ପ୍ରମାଣିତ ହୋଇଚି ସେହି ସୂତ୍ରର ଅନ୍ୟ ଦାବିକୁ ବିଶ୍ୱାସ କରାଯିବା ଅଯୁକ୍ତିକର।

ରାଜାମାନେ 'କୀର୍ତ୍ତିରକ୍ଷରସଂବଦ୍ଧା' ପ୍ରତିଷ୍ଠା ଲାଳସୀ ହୋଇ କବିମାନଙ୍କୁ କାବ୍ୟର ଭଣିତି ଭିକ୍ଷା କରୁଥିଲେ। ଏ ପ୍ରଥା ଭାରତରେ ବହୁକାଳରୁ ପ୍ରଚଳିତ। ପଡ଼ୋଶୀ ଆନ୍ଧ୍ର ସାହିତ୍ୟରେ ଏହି କାବ୍ୟ-ସମର୍ପଣ ପ୍ରଥାର ବହୁଳ ପ୍ରଚଳନ ଥିଲା। କବି ହେଲା ତାହାର କାବ୍ୟ-କନ୍ୟାର ଜନକ ('କବିତା ବନିତା କବି ତା ପିତା'- କୃଷ୍ଣଦାସ, ରସକଲ୍ଲୋଳ)। ଉପଯୁକ୍ତ ପାତ୍ରକୁ କନ୍ୟାଦାନ କରିବା ଯେପରି ପିତାର କର୍ତ୍ତବ୍ୟ ଯୋଗ୍ୟ ପାତ୍ରକୁ କାବ୍ୟଦାନ କରିବା ସେହିପରି କବିର। ରାଜାମାନେ ଉପେନ୍ଦ୍ରଙ୍କ କାବ୍ୟ-ପ୍ରାର୍ଥୀ (ପାର୍ଥିବ-ମାର୍ଗଣ) ହେବା ଘଟଣା ସହିତ 'ଦାର୍ଢ୍ୟତା ଭକ୍ତି'ର କୃଷ୍ଣଦାସଙ୍କ ଆଖ୍ୟାନ ବିଚାର କଲେ ଜଣାପଡ଼େ ଯେ ରାଜାମାନେ କବିଙ୍କୁ କାବ୍ୟ ମାଗୁଥିଲେ ଓ ନ ମିଳିଲେ ରାଗୁଥିଲେ। ଉପେନ୍ଦ୍ରଭଞ୍ଜ ଆଶ୍ରୟ ନେଇଥିବା ରାଜ୍ୟର ରାଜାଙ୍କୁ ସନ୍ତୁଷ୍ଟ ରଖିବାପାଇଁ ହେଉ, ବନ୍ଧୁତାର ଅନୁରୋଧରେ ହେଉ ବା ସମ୍ମାନାଦି ଲାଭ ପାଇଁ ହେଉ ରାଜାଙ୍କୁ ଭଣିତି ଉତ୍ସର୍ଗ କରିଛନ୍ତି। କିନ୍ତୁ, କେଉଁ କେଉଁ କାବ୍ୟକୁ ସେ ଏପରି ବିତରଣ କରିଛନ୍ତି ଓ କାହାକୁ କରିଛନ୍ତି ସେ ବିଷୟରେ ନିର୍ଦ୍ଦିଷ୍ଟ ଭାବରେ କିଛି କହିହେଉ ନାହିଁ।

ହଣ୍ଟରଙ୍କ ତାଲିକାରେ ଓ ଅନ୍ୟ ଗବେଷକଙ୍କ ତାଲିକାରେ 'ଶୋଭାବତୀ' ନାମକ ଏକ କାବ୍ୟ ଉପେନ୍ଦ୍ରଭଞ୍ଜ ରଚନା କରିଥିବା କଥା ଲେଖାଅଛି। ପୁରୁଷୋତ୍ତମ ମାନ୍ଧାତାଙ୍କ ଭଣିତି ବହନ କରୁଥିବା ଶୋଭାବତୀର ପ୍ରକୃତ ରଚୟିତା ଉପେନ୍ଦ୍ରଭଞ୍ଜ ବୋଲି କୁହାଯାଉଛି। ସଂପୂର୍ଣ୍ଣ କାବ୍ୟଟି ଖ୍ରୀ. ୧୮୮୭ରେ ପ୍ରକାଶ ପାଇଥିଲା। କିନ୍ତୁ, ଏହା ଏକ ଅପ୍ରକାଶିତ କାବ୍ୟ ବୋଲି ଜ୍ଞାନ କରି ପଣ୍ଡିତ ଶ୍ରୀଧର ଶତପଥୀ ଖ୍ରୀ. ୧୯୬୧ରେ ଭଞ୍ଜ ସାହିତ୍ୟ ପରିଷଦ ଆନୁକୂଲ୍ୟରେ ଏହାର ମାତ୍ର ଦୁଇଟି ଛାନ୍ଦକୁ ପ୍ରକାଶିତ କରାଇଲେ। ଶୋଭାବତୀର ଶୈଳୀ ଏପରି କିଛି ଉନ୍ନତ ନୁହେଁ ଯେ ତାହା ଉପେନ୍ଦ୍ରଙ୍କ ପୋଖତ ହାତର ସୃଷ୍ଟି ବୋଲି କୁହାଯାଇ ପାରିବ। ଉପେନ୍ଦ୍ର ଗୁମୁସରରୁ ବିତାଡ଼ିତ ହୋଇ ନୂଆଗଡ଼ରେ ଆଶ୍ରୟ ନେଇଥିଲେ। ଗୁମୁସର ଭଞ୍ଜବଂଶାବଳୀ ଅନୁସାରେ ନୂଆଗଡ଼ ରାଜା ପୁରୁଷୋତ୍ତମ ମାନ୍ଧାତାଙ୍କ ଝିଅକୁ ବିବାହ କରିଥିଲେ ଉପେନ୍ଦ୍ରଙ୍କୁ ରାଜ୍ୟରୁ ତଡ଼ିଥିବା ଘନଭଞ୍ଜଙ୍କ ପୁଅ କୃଷ୍ଣଭଞ୍ଜ (ରାଜତ୍ୱକାଳ ଖ୍ରୀ. ୧୭୪୪-୧୭୭୩)। ଏହି ପରିସ୍ଥିତିରେ ପୁରୁଷୋତ୍ତମ ମାନ୍ଧାତା ଉପେନ୍ଦ୍ରଙ୍କ ପାଖରେ କାବ୍ୟପ୍ରାର୍ଥୀ ହୋଇଥିବା ଅନୁମିତ ହେଉ ନାହିଁ।

ଗୌରୀକୁମାର ବ୍ରହ୍ମା ଭଞ୍ଜଭୂମିକା (ପୃ.୪୫୭)ରେ ଉପେନ୍ଦ୍ରଭଞ୍ଜଙ୍କର ଅପ୍ରକାଶିତ ଗ୍ରନ୍ଥତାଲିକାରେ ସତୀଶ ବିଳାସ' ଓ 'ଦମୟନ୍ତୀଶ ବିଳାସ'କୁ ଅନ୍ତର୍ଭୁକ୍ତ କରିଛନ୍ତି। ଶ୍ରୀ ବ୍ରହ୍ମା ଲେଖିଛନ୍ତି: "ଶୁଣାଯାଏ, ଭଞ୍ଜଙ୍କର 'ସତୀଶ ବିଳାସ' ନାମକ ଏକ କାବ୍ୟ ଅଛି। ଏହା ଶହେ ଛାନ୍ଦରେ ସଂପୂର୍ଣ୍ଣ' ଏବଂ ସୁଭଦ୍ରା ପରିଣୟ ପରି 'ସ' ଆଦ୍ୟ ନିୟମରେ ରଚିତ xxxx ତେବେ, ଗ୍ରନ୍ଥର ଅସ୍ତିତ୍ୱ ଏ ଯାଏଁ ଅନ୍ଧକାରମୟ"। ଯେଉଁ ପଣ୍ଡିତମାନଙ୍କୁ ବିଶ୍ୱାସ କରି ଶ୍ରୀ ବ୍ରହ୍ମା ଶୁଣାକଥା ଉପରେ ଭରସା ରଖି ଉପେନ୍ଦ୍ରଙ୍କ ଗ୍ରନ୍ଥ ତାଲିକାଟିକୁ ପ୍ରସ୍ତୁତ କଲେ ସେମାନେ କେଡ଼େ ଅବିଶ୍ୱାସ୍ୟ ତାହା ନିଜେ ବ୍ରହ୍ମା ଭଞ୍ଜ ଭୂମିକାର ଚତୁର୍ଥ ପରିଶିଷ୍ଟରେ ଗଭୀର ଦୁଃଖର ସହିତ ଜଣାଇଛନ୍ତି। ଉପେନ୍ଦ୍ର ଭଞ୍ଜ 'ବସନ୍ତରାସ' ନାମରେ ଏକ ସଂସ୍କୃତ ଗ୍ରନ୍ଥ ଲେଖିଛନ୍ତି ବୋଲି ଜଣେ ପଣ୍ଡିତ ମହୋଦୟ (ଶ୍ରୀ ବ୍ରହ୍ମା ଏ ମହୋଦୟଙ୍କ ନାମକୁ କାହିଁକି ପ୍ରକାଶ କରିନାହାନ୍ତି ବୁଝି ହେଉନାହିଁ) ତାଙ୍କୁ ଜଣାଇଲେ ଓ ଏଥିରେ 'ନୀଳକଣ୍ଠ ପୁତ୍ର' ଓ ଧନଞ୍ଜୟ ପୌତ୍ର' ଭଣିତି ଅଛି ବୋଲି ମଧ ଶୁଣାଇଲେ (ଭଞ୍ଜଭୂମିକା ପୃ. ୪୬୦-୪୬୧)। ଭଞ୍ଜ ଭୂମିକା ଛାପା ସରିବା ବେଳକୁ ସେହି ପଣ୍ଡିତ ମହୋଦୟ ବ୍ରହ୍ମାଙ୍କୁ ପୁଣି ଶୁଣାଇ ଦେଲେ ଯେ ଏହି ସଂବାଦ ସତ୍ୟ ନୁହେଁ। ଏହି ପରିସ୍ଥିତିରେ ଶ୍ରୀ ବ୍ରହ୍ମା ପ୍ରକୃତ କଥା ଜଣାଇ ଦେଇଛନ୍ତି ଯେ "ଭଞ୍ଜଙ୍କର ଯେଉଁ ଅପ୍ରକାଶିତ ପୁସ୍ତକ ତାଲିକା ଏ ଗ୍ରନ୍ଥରେ ସମାବେଶିତ ତନ୍ମଧ୍ୟରୁ କେତୋଟିର ଭାଗ୍ୟରେ ଏଭଳି ଘଟଣା ଯେ ନ ଘଟିବ, କହି ହେଉ ନାହିଁ"। ଶ୍ରୀ ବ୍ରହ୍ମା ପ୍ରସ୍ତୁତ କରିଥିବା ତାଲିକାରେ ସ୍ଥାନ ପାଇଥିବା 'ସତୀଶ ବିଳାସ' ସେହିପରି ଏକ ଅପ୍ରକାଶିତ କାବ୍ୟ ଯାହା କେବଳ ପଣ୍ଡିତ ମହୋଦୟଙ୍କ ମୁଖ କୁହରରୁ ଉଦୟ ହୁଏ। ବସନ୍ତରାସ କ୍ଷେତ୍ରରେ ତାହା ଲେଖାଥିବା ତାଳପତ୍ର ପୋଥିଟି ଅତ୍ୟନ୍ତ ଜୀର୍ଣ୍ଣଶୀର୍ଣ୍ଣ ହୋଇଯାଇଥିବାରୁ କାବ୍ୟର ପୁର୍ଣୋଦ୍ଧାର ସମ୍ଭବପର ନୁହେଁ ବୋଲି ଜଣାଇ ଦିଆଯାଇଥିଲା, କିନ୍ତୁ 'ସତୀଶବିଳାସ'ର ପୋଥି ମଧ ଥିବା ଜଣାନାହିଁ। ଏହି ପରିସ୍ଥିତିରେ 'ସତୀଶ ବିଳାସ' ନାମକ କୌଣସି କାବ୍ୟ ଉପେନ୍ଦ୍ର ଭଞ୍ଜ ଲେଖିଥିବା ବିଶ୍ୱାସ ଜନ୍ମୁନାହିଁ।

ଶ୍ରୀ ବ୍ରହ୍ମା ତାଙ୍କ ତାଲିକାରେ 'ଦମୟନ୍ତୀଶ ବିଳାସ' ନାମର ଦୁଇଟି କାବ୍ୟକୁ ସ୍ଥାନ ଦେଇ ଜଣାଇଛନ୍ତି ଯେ 'ଦ' ଆଦ୍ୟ ନିୟମରେ ରଚିତ ଏହି କାବ୍ୟ ଦ୍ୱୟର ପୋଥି ମିଳିଛି। ଗୋଟିଏ ଶ୍ରୀ ବ୍ରହ୍ମାଙ୍କ ପରାମର୍ଶ କ୍ରମେ ପ୍ରସନ୍ନ କୁମାର ପଟ୍ଟନାୟକ, ଆଇ. ଏ. ଏସ୍‌ଙ୍କ ଦ୍ୱାରା ବୌଦ ରାଜବାଟୀରୁ ସଂଗୃହୀତ ଓ ଅନ୍ୟଟି 'ନିକଟରେ' ବାଣପୁରରୁ ପ୍ରାପ୍ତ। ପ୍ରଥମୋକ୍ତଟିକୁ ଶ୍ରୀ ବ୍ରହ୍ମା ପରୀକ୍ଷା କରି ପାରିନାହାନ୍ତି, କିନ୍ତୁ ଶେଷୋକ୍ତଟି ଏକ କ୍ଷୁଦ୍ରକାବ୍ୟ ଓ ଏହାର କବି ଉପେନ୍ଦ୍ର ଭଞ୍ଜ ବୋଲି ସେ ଜଣାଇଛନ୍ତି (ଭଞ୍ଜଭୂମିକା, ପୃ.୪୫୬)। ଉଭୟ ଗୋଟିଏ କାବ୍ୟ ହୋଇପାରେ ବା ପୃଥକ୍ କାବ୍ୟ ହୋଇପାରେ ବୋଲି ସେ ଲେଖିଛନ୍ତି। ଉଭୟ ପୋଥି ସଂଗୃହୀତ ହେବାର ବହୁ

ପୂର୍ବରୁ ଉତ୍କଳ ସାହିତ୍ୟର ୧୩୬୨ ସାଲ କାର୍ତ୍ତିକ ସଂଖ୍ୟାରେ 'ରାଜକବି ଚନ୍ଦ୍ରଶେଖର' ଶୀର୍ଷକ ପ୍ରବନ୍ଧ ଲେଖି ଶ୍ରୀଧର ଦାସ ଲେଖିଥିଲେ: "କଥିତ ଅଛି, ଉପେନ୍ଦ୍ର ଯେପରି ବ ଆଦ୍ୟରେ ରଖି ବିରାଟ ବୈଦେହୀଶ ବିଳାସ ଲେଖିଥିଲେ ଚନ୍ଦ୍ରଶେଖର ସେହିପରି ଦ ଆଦ୍ୟରେ ରଖି ଦମୟନ୍ତୀଶ ବିଳାସ ବୋଲି କାବ୍ୟ ଲେଖିଥିଲେ। ଏହି ପୋଥିଟି ବଉଦ ରାଜବାଟୀରେ ଥିଲା ବୋଲି ଶୁଣାଯାଏ।" ଏହା ହିଁ ଶ୍ରୀ ପଟ୍ଟନାୟକଙ୍କ ହସ୍ତଗତ ହୋଇଥିବା ପୋଥି। ଏଠାରେ ବୈଦେହୀଶ ବିଳାସକୁ ବିରାଟ ବୋଲି ବର୍ଣ୍ଣନା କରାଯାଇ ଥିବାରୁ ଦମୟନ୍ତୀଶ ବିଳାସଟି ଛୋଟ କାବ୍ୟଟିଏ ବୋଲି ଜଣାପଡୁଛି ଓ ବାଣପୁରରୁ ପ୍ରାପ୍ତ ପୋଥିର ଆକାର ସହ ମିଶି ଯାଉଛି। ବୌଦ ରାଜବଂଶାବଳୀ (ପୃ. ୪୨୮)ରେ ବଉଦ ରାଜା ଚନ୍ଦ୍ରଶେଖର ଭଞ୍ଜ ଦମୟନ୍ତୀଶ ବିଳାସ ଲେଖିଥିବା କଥା ବିବୃତ ହୋଇଛି :-

"ନଳରାଜା ଚରିତ ଯହିଁରେ ବଖାଣିଲେ। ବିଳାସୋତ୍ତର ଦମୟନ୍ତୀଶ ନାମ ଦେଲେ।"

ଏଣୁ ସ୍ଥିର କରାଯାଇ ପାରେ ଯେ ବଉଦର ରାଜା ଚନ୍ଦ୍ରଶେଖର ଭଞ୍ଜ, ଯାହାଙ୍କର ରାଜତ୍ୱ ସମୟ ଖ୍ରୀ. ଊନବିଂଶ ଶତାବ୍ଦୀରୁ ଆରମ୍ଭ, ହେଉଛନ୍ତି ବଉଦ ରାଜବାଟୀରୁ ପ୍ରାପ୍ତ 'ଦମୟନ୍ତୀଶ ବିଳାସ' କାବ୍ୟର କବି। ଏହି ଚନ୍ଦ୍ରଶେଖର ଭଞ୍ଜଙ୍କର ପ୍ରେମମଞ୍ଜରୀ କାବ୍ୟ, ସଙ୍ଗୀତ ଶତକ, ବିଦେଶାନୁଚିନ୍ତା, ଅନୁଭାବୋକ୍ତି, ବିଦେଶାନୁଚିନ୍ତା ଚଉତିଶା ଆଦି ଅନେକ ଗ୍ରନ୍ଥ ପ୍ରକାଶିତ ହୋଇସାରିଛି। ବାଣପୁରରୁ ପ୍ରାପ୍ତ ଦମୟନ୍ତୀଶ ବିଳାସରେ କେବଳ 'ଭଞ୍ଜ' ଭଣିତି ଦେଖି ତାହା ଉପେନ୍ଦ୍ର ଭଞ୍ଜଙ୍କର ବୋଲି ନିରୂପିତ ହୋଇଛି ବୋଲି ଅନୁମିତ ହୁଏ।

ଧନଞ୍ଜୟ ଭଞ୍ଜଙ୍କ ଦ୍ୱାରା ରଚିତ ଅନେକ ଗ୍ରନ୍ଥ ଉପେନ୍ଦ୍ରଭଞ୍ଜଙ୍କ ଦ୍ୱାରା ରଚିତ ବୋଲି କୁହାଯାଉଛି। ହଣ୍ଟରଙ୍କ 'ଓଡ଼ିଶାର ସାହିତ୍ୟ' ଶୀର୍ଷକ ପରିଶିଷ୍ଟରେ ଧନଞ୍ଜୟ ଭଞ୍ଜ ମାତ୍ର ଦୁଇଟି କାବ୍ୟ ରଘୁନାଥ ବିଳାସ ଓ ରାମ ବିଳାସ ଲେଖିଥିବା କଥା ଲେଖାଅଛି। ଧନଞ୍ଜୟଙ୍କର 'ଇଚ୍ଛାବତୀ' କାବ୍ୟଟିକୁ ହଣ୍ଟର ଉପେନ୍ଦ୍ରଭଞ୍ଜଙ୍କ ଗ୍ରନ୍ଥ ତାଲିକାଭୁକ୍ତ କରିଛନ୍ତି ଓ ପରବର୍ତ୍ତୀ କେହି ହେଲେ ଆଲୋଚକ ଏ ବିଷୟରେ ସନ୍ଦେହ ପ୍ରକାଶ କରି ନାହାନ୍ତି। ଡଃ ମହତାବ୍‌ଙ୍କ ଓଡ଼ିଶା ଇତିହାସ ପାଇଁ ଉପେନ୍ଦ୍ରଭଞ୍ଜଙ୍କ ଲେଖାଗୁଡ଼ିକର ତାଲିକା ପ୍ରସ୍ତୁତ କରିବା ବେଳେ ଭଞ୍ଜସାହିତ୍ୟ ପରିଷଦ ଧନଞ୍ଜୟଭଞ୍ଜ ଓ ଘନଭଞ୍ଜଙ୍କ ଦ୍ୱାରା ରଚିତ ଲେଖାଗୁଡ଼ିକୁ ପୂର୍ବରୁ ପ୍ରଚାରିତ ଗ୍ରନ୍ଥ ତାଲିକାରେ ଯୋଡ଼ିଦେଇ ତାଲିକାଟିକୁ ଦୀର୍ଘୀକୃତ କରାଇଦେଲେ। ଫଳରେ, ଏହି ତାଲିକାରେ ଉପେନ୍ଦ୍ରଭଞ୍ଜଙ୍କ ଚୌପଦୀ ଭୂଷଣ (କ୍ର.ସଂ.୩) ସାଙ୍ଗକୁ ଧନଞ୍ଜୟଭଞ୍ଜଙ୍କ ଦ୍ୱାରା ବିରଚିତ ଚୌପଦୀ ଭୂଷଣ (କ୍ର.ସଂ.୬୫) ମଧ୍ୟ ସ୍ଥାନ ପାଇଲା। ଉପେନ୍ଦ୍ରଭଞ୍ଜଙ୍କ ଗ୍ରନ୍ଥ ତାଲିକାରେ ପୂର୍ବରୁ ରହିଥିଲା ତ୍ରୈଲୋକ୍ୟ ମୋହିନୀ (କ୍ର.ସଂ.୨୧), ପରେ ଘନ ଭଞ୍ଜଙ୍କ କୃତ ତ୍ରୈଲୋକ୍ୟମୋହିନୀ ଗ୍ରନ୍ଥଟି ପୁନର୍ବାର ଉପେନ୍ଦ୍ରଭଞ୍ଜଙ୍କର ଗ୍ରନ୍ଥ ତାଲିକାରେ ସ୍ଥାନପାଇଲା (କ୍ର.ସଂ.୬୭)। ପୂର୍ବରୁ ଇଚ୍ଛାବତୀ ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥତାଲିକାରେ ରହିଆସୁଥିଲେ।

ଧନଞ୍ଜୟଙ୍କ ନାମର ରଚନାଗୁଡ଼ିକୁ ମିଶାଇବାରୁ ଇଚ୍ଛାବତୀ ମଧ୍ୟ ଏହି ତାଲିକାରେ ଦୁଇବାର (କ୍ର.ସଂ.୩୪ ଓ ୬୪) ଉଲ୍ଲିଖିତ ହୋଇଗଲା। ଏହା ଛଡ଼ା ଧନଞ୍ଜୟ ଭଞ୍ଜଙ୍କର ରଘୁନାଥ ବିଳାସ, ମଦନମଞ୍ଜରୀ, ତ୍ରିପୁରସୁନ୍ଦରୀ ଓ ଅନଙ୍ଗରେଖା ଓ ଘନଭଞ୍ଜଙ୍କର ରସନିଧି ଏହି ତାଲିକାରେ ଉପେନ୍ଦ୍ରଭଞ୍ଜଙ୍କ ରଚନା ଭାବରେ ସ୍ଥାନପାଇଛି। ରଘୁନାଥ ବିଳାସଟି ଧନଞ୍ଜୟ ଭଞ୍ଜଙ୍କର ବୋଲି ଜଣାଶୁଣା ଥିବାରୁ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ଖ୍ରୀ. ୧୯୫୦ରେ କେବଳ ତାକୁ ବାଦଦେଇ ଅନ୍ୟଗୁଡ଼ିକୁ ଉପେନ୍ଦ୍ରଭଞ୍ଜଙ୍କ ଗ୍ରନ୍ଥ ତାଲିକାରେ ରଖିଲେ। କିନ୍ତୁ, ସମ୍ଭବତଃ, ମୁଦ୍ରଣ ପ୍ରମାଦ ବଶତଃ ମଦନ ମଞ୍ଜରୀ' ନାମଟି ମିଳନ ମଞ୍ଜରୀ ହୋଇଗଲା। ପରେ ପରେ ଶ୍ରୀ ପଟ୍ଟନାୟକ ଜାଣିଗଲେ ଯେ ଅନଙ୍ଗ ରେଖା ଓ (ତ୍ରିପୁରସୁନ୍ଦରୀ) ପ୍ରକୃତରେ ଧନଞ୍ଜୟ ଭଞ୍ଜଙ୍କର; ମଦନ ମଞ୍ଜରୀଟି ମିଳନ ମଞ୍ଜରୀ ହୋଇ ସାରିଥିବାରୁ ଭ୍ରମଟି ବାରି ହେଲା ନାହିଁ। ଶ୍ରୀ ପଟ୍ଟନାୟକ ଖ୍ରୀ.୧୯୬୧ରେ ଭଞ୍ଜଙ୍କ ରଚନାବଳୀର ନୂଆ ତାଲିକା ପ୍ରସ୍ତୁତ କରିବା ବେଳେ ଅନଙ୍ଗ ରେଖା ଓ ତ୍ରିପୁର ସୁନ୍ଦରୀକୁ ବାଦ୍ ଦେଇ ତାହା ସ୍ଥାନରେ ଲେଖିଲେ ଅନଙ୍ଗରଙ୍ଗିଣୀ ଓ ଷୋଳପୋଇ ନାମ। ଅନଙ୍ଗରଙ୍ଗିଣୀ ମଧ୍ୟ ଉପେନ୍ଦ୍ରଭଞ୍ଜଙ୍କର ନୁହେଁ। ଏହାର କବି କେଶବ ରଥ ଖେମୁଣ୍ଡିର ରାଜଧାନୀ ବିଜୟନଗରର ପୁରୁଷୋତ୍ତମ ଅନଙ୍ଗଭୀମ ଦେବଙ୍କ ସଭାମଣ୍ଡନ କରୁଥିଲେ ଓ କବିରାଜ ଉପାଧି ଲାଭ କରିଥିଲେ। ଧନଞ୍ଜୟ ଭଞ୍ଜ ଜଣେ ସିଦ୍ଧହସ୍ତ କବି ଥିବା କଥା ଉପେନ୍ଦ୍ରଭଞ୍ଜ ସ୍ୱୀକାର କରିଥିବା ହେତୁ ତାହାଙ୍କର ଇଚ୍ଛାବତୀ, ମଦନମଞ୍ଜରୀ (ଓ ତାହାର ପରିବର୍ତ୍ତିତ ନାମ ମିଳନମଞ୍ଜରୀ), ଅନଙ୍ଗରେଖା। (ଓ ତାହାର ପରିବର୍ତ୍ତିତ ନାମ ଅନଙ୍ଗରଙ୍ଗିଣୀ) ତ୍ରିପୁରସୁନ୍ଦରୀ ଓ ରଘୁନାଥ ବିଳାସକୁ ଉପେନ୍ଦ୍ରଭଞ୍ଜଙ୍କ ଗ୍ରନ୍ଥ ତାଲିକାରେ ପୂରାଇବା ଭ୍ରମାତ୍ମକ।

**ଚନ୍ଦ୍ରରେଖା**

ହଣ୍ଟରଙ୍କ ତାଲିକାରେ ଉପେନ୍ଦ୍ରଭଞ୍ଜଙ୍କ ରଚନା ଭାବରେ ଚନ୍ଦ୍ରରେଖା ଓ ଶଶୀରେଖା ସ୍ଥାନ ପାଇଥିଲା। ପରବର୍ତ୍ତୀ ଆଲୋଚକମାନେ ମଧ୍ୟ ଏ ଦୁଇଟିକୁ ଗ୍ରନ୍ଥ ତାଲିକାର ଅନ୍ତର୍ଭୁକ୍ତ କରିଆସିଛନ୍ତି (କେବଳ ତାରିଣୀଚରଣ ରଥ ଓ ବିଚ୍ଛନ୍ଦଚରଣ ପଟ୍ଟନାୟକ 'ଚନ୍ଦ୍ରରେଖା'ର ନାମୋଲ୍ଲେଖ କରିନାହାନ୍ତି)। ଭଞ୍ଜସାହିତ୍ୟ ପରିଷଦ୍ ଖ୍ରୀ. ୧୯୬୨ରେ ପଣ୍ଡିତ ଶ୍ରୀଧର ଶତପଥୀଙ୍କ ସଂପାଦନାରେ ଚନ୍ଦ୍ରରେଖାର ମାତ୍ର ଦୁଇଟି ଛାନ୍ଦ (ନବମ ଓ ଅଷ୍ଟାଦଶ) ପ୍ରକାଶିତ କରାଇଲା। ଏପରି ଖଣ୍ଡିତ ପ୍ରକାଶନରୁ ଗ୍ରନ୍ଥ ବିଷୟରେ ଆଲୋଚନା କରିବା ସମ୍ଭବପର ହେଉ ନ ଥିଲେ ହେଁ ଗ୍ରନ୍ଥର ଅସ୍ତିତ୍ୱ ବିଷୟରେ ସନ୍ଦେହ ରହୁ ନାହିଁ। ଓଡ଼ିଶାରେ ବିଭିନ୍ନ କବିଙ୍କର କିଛି କିଛି ଛାନ୍ଦକୁ ଏକତ୍ର କରି ତୋଳାଛାନ୍ଦ ପୋଥି ପ୍ରସ୍ତୁତ କରାଯାଇଥାଏ। ପଣ୍ଡିତ ଶତପଥୀ ସେପରି ପୋଥିରୁ ଏ ଦୁଇ ଛାନ୍ଦକୁ ପାଇଥିବା ଅନୁମିତ ହୁଏ। ସଂପୂର୍ଣ୍ଣ କାବ୍ୟଟି ବର୍ତ୍ତମାନ ମିଳୁ ନଥିଲେ ହେଁ ସନ୍ଦେହ ରହୁନାହିଁ ଯେ ଉପେନ୍ଦ୍ରଭଞ୍ଜ ଏହାକୁ ରଚନା କରିଥିଲେ। ବନ୍ଧୋଦୟର ଗ୍ରନ୍ଥତାଲିକାରେ କବି ଚନ୍ଦ୍ରରେଖାକୁ ସ୍ଥାନ ନ ଦେବାର କାରଣ ଏହା

ହୋଇପାରେ ଯେ ଏହାର ରଚନା ପ୍ରାଥମିକ ସମୟର ଓ ଏହାର ସାହିତ୍ୟିକ ଉତ୍କର୍ଷ ଅଛି ବୋଲି କବି ମନେ କରୁ ନଥିଲେ। ଛନ୍ଦ ଭୂଷଣରେ କବି 'କଳି କାମିନୀ ବର୍ଣ୍ଣନା କରି ବନ୍ଧୁଗୀତ' ବୋଲି ବର୍ଣ୍ଣନା କରିଥିବା ଗୀତ ମଧ୍ୟରୁ ଚନ୍ଦ୍ରରେଖା ଗୋଟିଏ ହୋଇପାରେ। ଦୁଇଟି ଯାକ ଛାନ୍ଦର ଭଣିତିରେ କବିଙ୍କର କୌଣସି ଉପାଧି ବ୍ୟବହୃତ ହୋଇନାହିଁ। ପ୍ରକାଶିତ ଦୁଇ ଛାନ୍ଦ ମଧ୍ୟରୁ ୧୮ଶ ଛାନ୍ଦଟି ଚନ୍ଦ୍ରରେଖାରେ ଶେଷଛାନ୍ଦ ଭଳି ମନେ ହେଉଛି।

ଚନ୍ଦ୍ରରେଖା ଓ ଶଶୀରେଖା ନାମ ଦୁଇଟିର ଅର୍ଥ ସମାନ। ଜଣେ କବି ନିଜର ଦୁଇଟି କାବ୍ୟର ନାମ ଏପରି ଦେବା ସମୀଚୀନ ବୋଧ ହେଉନାହିଁ। ଶଶୀରେଖା ନାମରେ ବାଙ୍କୀର ରାଜା ପଦ୍ମନାଭ ଶ୍ରୀଚନ୍ଦନଙ୍କର ଗୋଟିଏ କାବ୍ୟ ରହିଛି। ନୀଳକଣ୍ଠ ରଥଙ୍କ 'ବାଙ୍କୀ ଇତିହାସ' ଅନୁଯାୟୀ ପଦ୍ମନାଭ ଖ୍ରୀ ୧୭୩୫ରୁ ୧୭୫୭ ପର୍ଯ୍ୟନ୍ତ ରାଜତ୍ୱ କରୁଥିଲେ। ପଦ୍ମନାଭଙ୍କର ଅନ୍ୟ ଗ୍ରନ୍ଥର ନାମ ପ୍ରଭାବତୀ ଓ ଇଚ୍ଛାବତୀ। ହଣ୍ଟରଙ୍କ ତାଲିକାରେ ପଦ୍ମନାଭଙ୍କ ନାମ ଅଛି କିନ୍ତୁ ସେ ଥିଲେ କେବଳ ପ୍ରଭାବତୀ ରଚନା କରିଥିବା କଥା ଲେଖାଅଛି, ଶଶୀରେଖା କଥା ଲେଖା ହୋଇନାହିଁ। ସନ୍ଦେହ ହୁଏ ଯେ ପଦ୍ମନାଭଙ୍କ ଶଶୀରେଖା ଉପେନ୍ଦ୍ରଭଞ୍ଜଙ୍କ ଗ୍ରନ୍ଥ ତାଲିକାରେ ପଶିଯାଇଛି।

ହଣ୍ଟରଙ୍କୁ ମିଶାଇ ସବୁ ଆଲୋଚକ ଉପେନ୍ଦ୍ରଭଞ୍ଜଙ୍କର 'ଚନ୍ଦ୍ରକଳା' ନାମରେ ଏକ କାବ୍ୟ ରହିଛି ବୋଲି ତାଲିକା ଦିଅନ୍ତି। ଏହାର ବାସ୍ତବ ଠାବ କେହି ଦେଇ ନଥିଲେ। ଭଞ୍ଜଭୂମିକା (ପୃ.୪୪୮ ରୁ ୪୫୧) ମଧ୍ୟରେ ଗୌରୀକୁମାର ବ୍ରହ୍ମା ଏହା ସଂପର୍କରେ କିଛି ଆଲୋକପାତ କରି କେତେ ପଦ ଉଦ୍ଧୃତି ଯୋଗାଇଛନ୍ତି। ଏଥିଲାଗି ସେ ଧନ୍ୟବାଦର ପାତ୍ର। ଶ୍ରୀ ବ୍ରହ୍ମା ଲେଖିଛନ୍ତି ''ଭଞ୍ଜଙ୍କ ଚନ୍ଦ୍ରକଳା ଏ ପର୍ଯ୍ୟନ୍ତ ଲୋକଲୋଚନକୁ ଆସିପାରିନାହିଁ। ମୋର ଶ୍ରଦ୍ଧେୟ ଛାତ୍ର ଅଧ୍ୟାପକ ଶ୍ରୀ ପ୍ରଫୁଲ୍ଲ କୁମାର ଦାଶ(ଆସିକା) ଚନ୍ଦ୍ରକଳା ସମ୍ପର୍କରେ ଉଦ୍ଧୃତି ସହିତ ଯେତିକି ତଥ୍ୟ ଯୋଗାଇ ଦେଇଛନ୍ତି, ସେହିତକ ମୁଁ ଏଠାରେ ଉପସ୍ଥାପନ କରୁଅଛି। ସେ ମୋତେ ଜଣାଇଛନ୍ତି, ଗଞ୍ଜାମରୁ ପ୍ରକାଶ ପାଉଥିବା କୌଣସି ଏକ ପତ୍ରିକାରେ, ପ୍ରାୟ ୧୦/୧୫ ବର୍ଷ ତଳେ ଚନ୍ଦ୍ରକଳା ସମ୍ପର୍କରେ ଏକ ପ୍ରବନ୍ଧ ବାହାରି ଥିଲା। ପତ୍ରିକାର ନାମ ଜଣାନାହିଁ। ତହିଁରୁ ସେ ଏହା ପାଇଛନ୍ତି। ଏ କାବ୍ୟ ୧୬ ଛାନ୍ଦରେ ସଂପୂର୍ଣ୍ଣ''। ଯାହା ଜଣାପଡୁଛି, ପତ୍ରିକା ଖଣ୍ଡିକ ଶ୍ରୀ ଦାସଙ୍କ ନିକଟରେ ମଧ୍ୟ ନାହିଁ। ପ୍ରବନ୍ଧ ଲେଖକଙ୍କର ନାମ ବା ତାଳପତ୍ର ପୋଥି କେଉଁଠାରେ ରହିଛି ତାହାର କୌଣସି ସୂଚନା ଏଥିରୁ ମିଳୁନାହିଁ। ସମସ୍ତ ପରିସ୍ଥିତି କୁହେଳିକାମୟ। ଭଞ୍ଜ ଭୂମିକା ପ୍ରକାଶିତ ହେବାର ବିଂଶାଧିକ ବର୍ଷ ବିତିଯାଇଥିବା ସତ୍ତ୍ୱେ ଚନ୍ଦ୍ରକଳା ସମ୍ପର୍କରେ ଆଉ କିଛି ତଥ୍ୟ ମିଳୁନାହିଁ। ଯେଉଁ କେତୋଟି ପଦ ଏଥିରୁ ଉଦ୍ଧୃତ ହୋଇଛି ତହିଁ ମଧ୍ୟରେ ପୁନରୁକ୍ତି ଦୋଷ ରହିଛି, ଦେଶସେବା ଆଦି ଊନବିଂଶ ଶତାବ୍ଦୀରୁ ପ୍ରଚଳିତ ଧାରଣା ରହିଛି, ଗରିବେ ଦାନ ଦେବା କଥା ରହିଛି ଓ ଓଡ଼ିଆମାନେ ବାଣିଜ୍ୟ କରିବାକୁ ବିଦେଶକୁ ଯାଉଥିବା କଥା ରହିଛି।

ଏଥିରୁ ଗ୍ରନ୍ଥଟି ଉପେନ୍ଦ୍ରଭଞ୍ଜଙ୍କ ନାମରେ ଜାଲ୍ କରାଯାଇଥିବା କଥା ଜଣାଯାଉଛି। ହଣ୍ଟର ଉପେନ୍ଦ୍ରଭଞ୍ଜଙ୍କ ଗ୍ରନ୍ଥତାଲିକାରେ ଯେଉଁ ଚନ୍ଦ୍ରକଳାର ନାମୋଲ୍ଲେଖ କରିଛନ୍ତି ତାହା ହୁଏତ ବଳଦେବ ରଥ ପ୍ରଣୀତ ରାମଚନ୍ଦ୍ର-ଛୋଟରାୟଙ୍କ ନାମରେ ଭଣିତ ଗ୍ରନ୍ଥ। ହଣ୍ଟରଙ୍କ ତାଲିକାରେ ବଳଦେବ ରଥ (ଜଳନ୍ତର କବିସୂର୍ଯ୍ୟ ରାୟଗୁରୁ) ପ୍ରଣୀତ ଗ୍ରନ୍ଥତାଲିକା ମଧ୍ୟରେ ତାହାଙ୍କର 'ଚନ୍ଦ୍ରକଳା' ସ୍ଥାନ ପାଇନଥିବାରୁ ଏପରି ସନ୍ଦେହ ଜାତ ହେଉଛି।

**ବଜାର ବୋଲି**

ଉପେନ୍ଦ୍ର ଭଞ୍ଜଙ୍କ ପ୍ରଣୀତ ବଙ୍ଗଳାଶ୍ରୀ ରାଗର ମାତ୍ର ୩୦ଟି ପଦ ବିଶିଷ୍ଟ ଛଳୋକ୍ତିପୂର୍ଣ୍ଣ ଅଶ୍ଳୀଳ ରହସ୍ୟଯୁକ୍ତ 'ବଜାରବୋଲି' ଟୀକାଟିପ୍ପଣୀ ସହିତ ପ୍ରକାଶ ପାଇଛି। ଏହାର ପିତୃତ୍ୱ ସଂପର୍କରେ କେହି କେହି ସନ୍ଦେହ ପ୍ରକାଶ କରୁଥିଲେ। କାରଣ ହେଲା :- ୧. ଏଥିରେ ଯାବନିକ 'ବଜାର' ଶବ୍ଦ ରହିଛି ଯାହା ଉପେନ୍ଦ୍ରଭଞ୍ଜଙ୍କ ବେଳକୁ ଓଡ଼ିଆ ଭାଷାରେ ଚଳୁନଥିଲା ଓ ୨. ଏଥିରେ ଅଶ୍ଳୀଳତା ଦୋଷ ରହିଛି ଯାହା ଉପେନ୍ଦ୍ରଙ୍କ ପରି ସାହିତ୍ୟିକ ଦୋଷଗୁଣ ବିଷୟରେ ସଚେତନ କବି କଦାପି ପରିବେଷଣ କରିନଥିବେ। ବଜାର ଶବ୍ଦ 'ବଜାରବୋଲି'ର ପଦଗୁଡ଼ିକ ମଧ୍ୟରେ ନାହିଁ, ଅଛି କେବଳ 'ନାମକରଣ'ରେ ଯାହା ଆଧୁନିକ ମୁଦ୍ରାକର ଯୋଗାଇଥିବା ସମ୍ଭବ। ପୁଣି, ବଜାର ଶବ୍ଦ ଅଷ୍ଟାଦଶ ଶତାବ୍ଦୀରେ ଓଡ଼ିଆରେ ଚଳିଲାଣି (ଯଥା, ପୀତାମ୍ବର ଦାସଙ୍କ ନୃସିଂହ ପୁରାଣରେ) ଓ ତାହା ପୂର୍ବରୁ ମଧ୍ୟ ଚଳୁଥିଲା (ଯଥା :- ମାଦଳାପାଞ୍ଜିରେ)। ନିଜେ ଉପେନ୍ଦ୍ରଭଞ୍ଜ ଅନ୍ୟତ୍ର ବାକି, ସଜୋରେ, କାଗଜ, ଗୁଲଜାର, ଅଗ୍ର ଆଦି ଅନେକ ଯାବନିକ ଶବ୍ଦ ବ୍ୟବହାର କରିଛନ୍ତି। ଅଶ୍ଳୀଳତା ଅଭିଯୋଗଟି ସୁବିଚାରିତ ନୁହେଁ। କବି ଏହାକୁ ରହସ୍ୟବାଣୀ ବୋଲି ଅଭିହିତ କରିଛନ୍ତି (୨୮/୧)। ବାତ୍ସ୍ୟାୟନ କାମଶାସ୍ତ୍ରରେ ସୁରତ ଯୋଗାଡ଼ ପାଇଁ ଦ୍ୱୟର୍ଥୈଃ ପଦୈଃ ପିଶୁନୟେଚ୍ଚ ରହସ୍ୟବସ୍ତୁ' ବୋଲି ଲେଖିଛନ୍ତି, ଅର୍ଥାତ୍ ଦ୍ୱ୍ୟର୍ଥକ ପଦ ଦ୍ୱାରା ଗୋପ୍ୟବସ୍ତୁର ସୂଚନା ଦେବ। ରହସ୍ୟପାଇଁ ବାକ୍‌ଛନ୍ଦ ଦ୍ୱାରା ଅଶ୍ଳୀଳତା ପ୍ରକାଶ ହଲେ ତାହା ଶବ୍ଦ ପାଣ୍ଡିତ୍ୟ ବ୍ୟଞ୍ଜକ ହେଉଥିବାରୁ ଦୋଷ ନ ହୋଇ ଗୁଣ ହୁଏ। କାବ୍ୟ ପ୍ରକାଶରେ ମମ୍ମଟ ଲେଖିଛନ୍ତି : "ଅଶ୍ଳୀଳଂ କ୍ୱଚିତ୍ ଗୁଣଃ। ଯଥା ସୁରତାରମ୍ଭ ଗୋଷ୍ଠ୍ୟାଂ"। ବଜାର ବୋଲିରେ ଉପେନ୍ଦ୍ରଭଞ୍ଜଙ୍କ କହିବା ଭଙ୍ଗୀ ଏତେ ସ୍ୱଷ୍ଟ ଯେ ସନ୍ଦେହ ପୋଷଣ ପାଇଁ କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ।

ଜଗବନ୍ଧୁ ସିଂହ ଉପେନ୍ଦ୍ରଭଞ୍ଜଙ୍କର ହାସ୍ୟାର୍ଣ୍ଣବ ଓ କଟପାୟା ନାମରେ ଦୁଇଟି ରଚନା ରହିଛି ବୋଲି ଜଣାଇବା ପରଠାରୁ ଭଞ୍ଜ ସାହିତ୍ୟ ପରିଷଦ୍, ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ଅନନ୍ତ ପଦ୍ମନାଭ ପଟ୍ଟନାୟକ ଓ ଗୌରୀକୁମାର ବ୍ରହ୍ମା ଏହି ଉଭୟ ଗ୍ରନ୍ଥକୁ ତାଲିକାଭୁକ୍ତ କରିଛନ୍ତି। ବିଚ୍ଛନ୍ଦ ଚରଣ ପଟ୍ଟନାୟକ ହାସ୍ୟାର୍ଣ୍ଣବକୁ ମଉଜିଆ ଗୀତଟିଏ (a poem of humour) ବୋଲି ବର୍ଣ୍ଣନା କରିଥିବା ବେଳେ ଗୌରୀକୁମାର ବ୍ରହ୍ମା

ତାହା ବଳଦେବ ରଥଙ୍କ ହାସ୍ୟକଲ୍ଲୋଳ ପରି ଏକ ଗ୍ରନ୍ଥ ଅଥବା ହାସ୍ୟରସାତ୍ମକ ଢଗଗୁଡ଼ିକର ସଂଗ୍ରହ ହୋଇଥାଇପାରେ ବୋଲି ଅନୁମାନ କରିଛନ୍ତି। ସଂସ୍କୃତରେ ଜଗଦୀଶ୍ୱରଙ୍କ ଦ୍ୱାରା ପ୍ରଣୀତ 'ହାସ୍ୟାର୍ଣ୍ଣବଃ' ନାମକ ପ୍ରହସନଟିଏ ଅଛି। ଓଡ଼ିଆରେ ସେହି ନାମର କୌଣସି ଗ୍ରନ୍ଥଥିବା ଅନ୍ୟ କୌଣସି ସୂତ୍ରରୁ ସମର୍ଥିତ ହେଉନାହିଁ।

କଟପାୟା ନାମରେ ଓଡ଼ିଆରେ ୮/୧୦ ଖଣ୍ଡି ପୋଥି ଅଛି। ଏଥିରୁ ୪/୫ ଖଣ୍ଡି ମୁଦ୍ରିତ ଓ କୌଣସିଟି ଉପେନ୍ଦ୍ରଭଞ୍ଜଙ୍କର ନୁହେଁ। ମୂଳ ସଂସ୍କୃତ 'କଟପୟା' ଜନୈକ କାଳିଦାସପ୍ରଣୀତ ଜ୍ୟୋତିଗ୍ରନ୍ଥ 'ଉତ୍ତରକାଳାମୃତ'ର ଅଂଶବିଶେଷ। ଏଥିରେ ନକ୍ଷତ୍ର ଦେଖି ଲଗ୍ନ ନିରୂପଣ କରିବାର ସ୍ଥୂଳ ପ୍ରଣାଳୀ ସହିତ ନକ୍ଷତ୍ରଗୁଡ଼ିକର ପରିଚୟ ପ୍ରଦତ୍ତ ହୋଇଥାଏ। ସଂସ୍କୃତ କଟପୟାରେ ପ୍ରଦତ୍ତ ହିସାବ ଓଡ଼ିଶା ପାଇଁ ପ୍ରଯୋଜ୍ୟ ନୁହେଁ। ଓଡ଼ିଶା ପାଇଁ ପ୍ରଯୋଜ୍ୟ କଟପୟା ଲେଖିବାକୁ ଗଲେ ଗଣିତ ଜ୍ୟୋତିଷରେ ଉତ୍ତମ ଜ୍ଞାନ ଥିବା ଆବଶ୍ୟକ। 'ଭଞ୍ଜଙ୍କ ରଚନାରେ ଜ୍ୟୌତିଷିକ ତଥ୍ୟ' ଅଧ୍ୟାୟରେ ମୁଁ ଦର୍ଶାଇଛି ଯେ ଭଞ୍ଜଙ୍କର ପ୍ରାଥମିକ ସ୍ତରର ଗଣିତଜ୍ୟୋତିଷ ଜ୍ଞାନ ନଥିଲା। ଏଣୁ, ଉପେନ୍ଦ୍ର ଭଞ୍ଜ କଟପାୟା ରଚନା କରିବାର ସମ୍ଭାବନା ରହୁନାହିଁ। ଅନୁପଲବ୍ଧ ହାସ୍ୟାର୍ଣ୍ଣବ ଓ କଟପାୟାକୁ ଭଞ୍ଜଙ୍କ ଗ୍ରନ୍ଥତାଲିକାରୁ ବାଦ୍‌ଦେବା ସମୀଚୀନ ହେବ।

ବିଚ୍ଛେନ୍ଦ ଚରଣ ପଟ୍ଟନାୟକ ଓ ଭଞ୍ଜସାହିତ୍ୟ ପରିଷଦ ଉପେନ୍ଦ୍ରଙ୍କ ଗ୍ରନ୍ଥ ତାଲିକାରେ 'ପଞ୍ଚସାୟକ'କୁ ଅନ୍ତର୍ଭୁକ୍ତ କରିଛନ୍ତି। ଅନନ୍ତ ପଦ୍ମନାଭ ପଟ୍ଟନାୟକ ଓ ଦାମୋଦର ଦାସ ଏହାକୁ ସମର୍ଥନ ଜଣାଇଛନ୍ତି। ଏହି ରଚନାଟି ଉପେନ୍ଦ୍ରଙ୍କ ନାମରେ ଜାଲ୍ କରାହୋଇ ଛାପା ହୋଇସାରିଛି। ଗୌରୀ କୁମାର ବ୍ରହ୍ମା ଯଥାର୍ଥ କଥା ଜଣାଇଛନ୍ତି ଯେ ପଞ୍ଚସାୟକର "ତାଳପତ୍ର ପୋଥିମାନଙ୍କରେ ଗୋପାଳ ଭଞ୍ଜ ନାମ ଅଛି"। ଉପେନ୍ଦ୍ର ଭଞ୍ଜଙ୍କ ନାମରେ ମୁଦ୍ରିତ ହେଲେ ପ୍ରତିଭାପୂଜା ସହିତ ବହି ବିକ୍ରୟ ଭଲ ହେବ ବୋଲି ଏପରି କାରସାଦି କରାଯାଇଛି। ପୋଥିର 'ଗୋପାଳ' ଶବ୍ଦଟି ମୁଦ୍ରିତ ପୁସ୍ତକରେ 'ଉପେନ୍ଦ୍ର' ହୋଇଛି। ଉପେନ୍ଦ୍ର ଭଞ୍ଜ ନିଜ ନାମକୁ ପ୍ରାୟ ସର୍ବତ୍ର 'ଉପଇନ୍ଦ୍ର' ଭାବରେ ପ୍ରକାଶ କରୁଥିଲେ କିନ୍ତୁ ପଞ୍ଚସାୟକରେ ଗୋପାଳ ତିନି ଅକ୍ଷର ବଦଳରେ ରହୁଥିବାରୁ ସବୁଠାରେ ଭଣିତି 'ଉପେନ୍ଦ୍ର'ହିଁ ହୋଇଛି।

**ଦୂତୀ ପ୍ରେରଣ ଛାନ୍ଦ**

ଉପେନ୍ଦ୍ର ଭଞ୍ଜ ଅନେକ ଛାନ୍ଦର ରଚୟିତା। ତନ୍ମଧ୍ୟରୁ କୃଷ୍ଣଙ୍କର ରାଧାଙ୍କ ନିକଟକୁ ଦୂତୀ ପ୍ରେରଣ ବିଷୟକ ଛାନ୍ଦଟିଏ 'ଚିଟାଉଛାନ୍ଦ' ନାମରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ 'ଓଡ଼ିଆ ଗୀତିକାବ୍ୟ ସଂକଳନ'ରେ (ପୃ.୫୨୧ରୁ ୫୨୪ ମଧ୍ୟରେ) ପ୍ରକାଶିତ ହୋଇଛି। ଆଷାଢ଼ ଶୁକ୍ଳ ବାଣୀରେ ୫୧ ପଦରେ ସଂପୂର୍ଣ୍ଣ ଏହି ଛାନ୍ଦର ଆଦ୍ୟରୁ ପ୍ରାନ୍ତ ଯାଏଁ ପ୍ରତ୍ୟେକ ଚରଣର ଆଦ୍ୟ ବର୍ଣ୍ଣ 'ପା'। ଚିଟାଉ ଛାନ୍ଦ ନାମ କରଣଟି ଭୁଲ୍, କିନ୍ତୁ ଛାନ୍ଦଟିର କବି ଉପେନ୍ଦ୍ର ଭଞ୍ଜ।

ଉପେନ୍ଦ୍ରଭଞ୍ଜଙ୍କ ନାମରେ ଭଞ୍ଜସାହିତ୍ୟ ପରିଷଦର ପୂର୍ବତନ ସଂପାଦକ ମାଗୁଣି ଦାଶଙ୍କ ଉଦ୍ୟମରେ ଖ୍ରୀ ୧୯୫୪ରେ ପ୍ରକାଶିତ ରସିକାନୁଚିନ୍ତା (ଏହାର ମଲାଟରେ 'ରସିକାନୁଚିନ୍ତା ଓ ବିଦେଶାନୁଚିନ୍ତା' ନାମ ଛାପା ହୋଇଥିଲେ ହେଁ ଏଥିରେ କେବଳ ରସିକାନୁଚିନ୍ତା ନାମକ ଆଷାଢ଼ଶୁକ୍ଳ ବାଣୀର ୬୪ ପଦର ଗୀତ ରହିଛି) ଗୋଟିଏ ଜାଲ୍‌କରା ରଚନା। ଏହାର ୬୪ ପଦ ମଧ୍ୟରୁ ୩୯ ପଦ ଉପେନ୍ଦ୍ରଭଞ୍ଜଙ୍କ ଲାବଣ୍ୟବତୀ, ରସିକହାରାବଳୀ ଓ ସୁବର୍ଣ୍ଣରେଖାରୁ ପ୍ରାୟ ଉଧାର ନିଆଯାଇଛି ଓ ଅନ୍ୟାନ୍ୟ ପଦକୁ ଗୋଳିଆ ପୋଳିଆ କରାଯାଇଛି। ଗୌରୀକୁମାର ବ୍ରହ୍ମା ଏହାକୁ ଭଞ୍ଜଙ୍କ ଗ୍ରନ୍ଥ ତାଲିକାଭୁକ୍ତ କରିଥିଲେ (ଭଞ୍ଜଭୂମିକା.ପୃ.୪୮୭) କିନ୍ତୁ ପରେ ମତ ଦେଇଛନ୍ତି ଯେ ''ଏହାକୁ ଏକ ସ୍ୱତନ୍ତ୍ର ରଚନା କରିବା ଠିକ୍ ହେବ ନାହିଁ''। ତାହାଙ୍କର ଶେଷୋକ୍ତ ମତ ଯଥାର୍ଥ। ଅନ୍ୟତ୍ର ଶ୍ରୀ ବ୍ରହ୍ମା ''ବିରହାନୁଚିନ୍ତାର କବିତାଗୁଡ଼ିକ ଭଞ୍ଜଙ୍କର ବୋଲି ଅନୁଭୂତ ହୁଏ'' ବୋଲି ଲେଖିଛନ୍ତି। ଅନେକ କବିତାର ସମାହାର ହୋଇଥିବା ଉପେନ୍ଦ୍ରଭଞ୍ଜଙ୍କର ବିରହାନୁଚିନ୍ତାର ସ୍ଥିତି ଅନ୍ୟତ୍ର ନାହିଁ। ଉପେନ୍ଦ୍ରଭଞ୍ଜ ପ୍ରଣୀତ ବିଦେଶାନୁଚିନ୍ତା ନାମକ ୭/୮ ପଦର ଆଷାଢ଼ଶୁକ୍ଳ ବାଣୀର ଗୋଟିଏ ଛୋଟ କବିତା 'ଓଡ଼ିଆ ଗୀତିକାବ୍ୟ ସଂକଳନ' ମଧ୍ୟରେ 'ନାୟକର ବିଦେଶାନୁଚିନ୍ତା' ନାମରେ ପ୍ରକାଶ ପାଇଛି।

ପ୍ରକାଶିତ ରସିକାନୁଚିନ୍ତାର ଭଣିତି ପଦଟି ସିଦ୍ଧ କରୁଛି ଯେ ତାହା ଉପେନ୍ଦ୍ର ଭଞ୍ଜଙ୍କ ଦ୍ୱାରା ପ୍ରଣୀତ ହେବା ସମ୍ଭବପର ନୁହେଁ। ଭଣିତିରେ ରହିଛି:-

ଚିତ୍ତ ଉନ୍ମାଦ ସଂପଦ ବର୍ଦ୍ଧନ। କବି ଉପେନ୍ଦ୍ରଭଞ୍ଜ ବିରଚନ ॥
ବୀରବର ଉପାଧି ଅଟେ ମୋର। ଜିଲ୍ଲା ଗଞ୍ଜାମ ଖ୍ୟାତ ଘୁମୁସର ॥
ଅଧିପତି ସୁତ, ଭଞ୍ଜବଂଶେ ମୁଁ ଜାତ ରେ ପଣ୍ଡିତ ॥୬୩॥

ଏଥିରେ ଉଲ୍ଲେଖ ଥିବା ଗଞ୍ଜାମ ଜିଲ୍ଲାର ସ୍ଥିତି ଖ୍ରୀ. ୧୭୯୦ ପୂର୍ବରୁ ନଥିଲା। ଖ୍ରୀ. ୧୭୯୦ ବେଳକୁ ଉପେନ୍ଦ୍ର ଭଞ୍ଜ କବିତା ଲେଖୁଥିବା କଳ୍ପନା କରିହେଉନାହିଁ।

ଚଉପହରା

ପଣ୍ଡିତ ଗୋବିନ୍ଦ ରଥଙ୍କ ଦ୍ୱାରା ପ୍ରଥମେ ପ୍ରକାଶିତ 'ଚଉପହରା' ନାମକ ଉପେନ୍ଦ୍ର ଭଞ୍ଜଙ୍କ ଏକ କ୍ଷୁଦ୍ର ରଚନାରେ ଚାରିଟି ବୃତ୍ତରେ ରଚିତ ଚାରିଟି ଛାନ୍ଦରେ ରାତ୍ରିର ଚାରି ପ୍ରହର ମଧ୍ୟରେ ରସିକର ଅଭିଜ୍ଞତାର ସ୍ମୃତିଚାରଣ ରହିଛି। ଏହାର ପ୍ରତ୍ୟେକ ଛାନ୍ଦର ପଦ ସଂଖ୍ୟା ସମାନ ଭାବରେ ଥାଏ। ଏଣୁ ସନ୍ଦେହ କରାଯାଇପାରେ ଯେ ଦିବା ଚାରି ପ୍ରହର ପାଇଁ ଚାରିଛାନ୍ଦ ଓ ରାତ୍ରି ଚାରି ପ୍ରହର ପାଇଁ ଚାରି ଛାନ୍ଦ ଏ ରୂପେ ଆଠ ଛାନ୍ଦରେ ଏହା ରଚିତ ହୋଇଥିଲା। କିନ୍ତୁ, ପ୍ରକାଶିତ ଚଉପହରାଟି ତାହାର ଉତ୍ତରାର୍ଦ୍ଧ ମାତ୍ର।

ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଭାଷାକୋଷରେ ଉପେନ୍ଦ୍ରଭଞ୍ଜଙ୍କର ପ୍ରକାଶିତ ରଚନାବଳୀର ତାଲିକା ଦେବା ମଧ୍ୟରେ ତାରିଣୀ ଚରଣ ରଥଙ୍କ ତାଲିକାର ପ୍ରକାଶିତ ଗ୍ରନ୍ଥଗୁଡ଼ିକର ନାମ ଛନ୍ଦମଞ୍ଜରୀ ନାମ ସହିତ ଯୋଗ କରିଛନ୍ତି। ଏପରି ନାମର କୌଣସି

ରଚନା (ପ୍ରକାଶିତ ବା ଅପ୍ରକାଶିତ) ଉପେନ୍ଦ୍ର ଭଞ୍ଜଙ୍କର ଥିବା କଥା ଅନ୍ୟ କୌଣସି ସୂତ୍ରରୁ ସମର୍ଥିତ ହେଉନାହିଁ। ତେଣୁ, ଏହା ଶ୍ରୀ ପ୍ରହରାଜଙ୍କ ଭ୍ରମ ବୋଲି ସ୍ଥିର କରୁଛି।

ହଣ୍ଟର ଆଦିଙ୍କ ତାଲିକାରେ ଉପେନ୍ଦ୍ରଭଞ୍ଜଙ୍କ ରଚନାଭାବରେ 'କଳାବତୀ' ଉଲ୍ଲିଖିତ ହୋଇଛି। ହଣ୍ଟର ବର୍ଣ୍ଣନା କରିଛନ୍ତି ଯେ କଳାବତୀରେ ଭାରତ ଓ କଳାବତୀଙ୍କ ପ୍ରଣୟ ଆଖ୍ୟାନ (the love and adventures of Bha*rata and Kala*bati) ରହିଛି। ଭଞ୍ଜୀୟ କାବ୍ୟନାୟକ ପାଇଁ ଭାରତ ନାମଟି ସ୍ୱାଭାବିକ ନୁହେଁ। ଏହା ଭରତ ହୋଇପାରେ ବୋଲି ସନ୍ଦେହ କଲେ ନାମଗୁଡ଼ିକ ପୌରାଣିକ ହୋଇପାରେ ବୋଲି ମନେ ହେଉଛି। କିନ୍ତୁ, ବିଭିନ୍ନ ପୁରାଣରେ ବର୍ଣ୍ଣିତ ବହୁ କଳାବତୀଙ୍କ ମଧ୍ୟରୁ କେହି ଭରତ-ପ୍ରେମିକା ନୁହନ୍ତି। ବିଜୟଚନ୍ଦ୍ର ମଜୁମ୍‌ଦାର, ବୋଧହୁଏ ଅନ୍ଧାକିରେ, ଏହାକୁ ଏକ କାଳ୍ପନିକ କାବ୍ୟ ବୋଲି ନିର୍ଣ୍ଣୟ କରିଗଲେ ଓ ଅନ୍ୟମାନେ ସହି କରି ଲାଗିଲେ। କଳାବତୀ କାବ୍ୟରୁ କୌଣସି ଉଦ୍ଧୃତି ବା ତାହାର ତାଳପତ୍ର ପୋଥିର ସନ୍ଧାନ କେହି ଦେଇଥିବା ଜଣା ନାହିଁ। ହଠାତ୍ ଗୌରୀ କୁମାର ବ୍ରହ୍ମା ଭଞ୍ଜଭୂମିକାର ପୃ. ୪୫୨ରେ ଉପେନ୍ଦ୍ରଭଞ୍ଜଙ୍କର ଅପ୍ରକାଶିତ ଗ୍ରନ୍ଥର ତାଲିକା ମଧ୍ୟରେ ଦୁଇଟି କଳାବତୀ କାବ୍ୟ (କ୍ର. ସଂ. ୬ ଓ ୮) ଉଲ୍ଲେଖ କଲେ। ସେ ଜଣାଇଛନ୍ତି ଯେ ତନ୍ମଧ୍ୟରୁ ଗୋଟିଏ "କାବ୍ୟ ଗତ (୧୯୭୪) ଜୁନ୍ ମାସରେ ପଣ୍ଡିତ ଶ୍ରୀଧର ଶତପଥୀଙ୍କର ହସ୍ତଗତ ହୋଇଛି ବୋଲି ତାଙ୍କଠାରୁ ପ୍ରକାଶ। ଏହା ମଧ୍ୟ ବୈଦେହୀଶ ବିଳାସର ବ ନିୟମ ପରି କ ନିୟମରେ ରଚିତ। ଏହା ଲାବଣ୍ୟବତୀ ପରି ୪୮ ଛାନ୍ଦ ବିଶିଷ୍ଟ ଏକ ବିରାଟ କାବ୍ୟ" ଓ ଅନ୍ୟଟିର "ଛାନ୍ଦ ସଂଖ୍ୟା ତଥା ଆକାର ପ୍ରକାର ଜଣାଯାଉନାହିଁ"। ଦ୍ୱିତୀୟ କଳାବତୀର ଆକାର ପ୍ରକାର ବିଷୟ ନ ଜାଣି ତାହା ପ୍ରଥମଠାରୁ ଭିନ୍ନ ବୋଲି କିପରି ନିର୍ଣ୍ଣିତ ହେଲା ତାହା କେବଳ ଶ୍ରୀ ବ୍ରହ୍ମାଙ୍କୁ ଗୋଚର। ଅନୁଭୂତିରୁ ଜାଣୁଛି ପଣ୍ଡିତ ଶତପଥୀ ଉପେନ୍ଦ୍ରଭଞ୍ଜଙ୍କ ନାମରେ ନାନା ଅବିଶ୍ୱାସ୍ୟ ଦାବି ଅଭ୍ୟାସଗତ ଭାବରେ କରୁଥିଲେ। ଏହି ବିରାଟ 'କଳାବତୀ' କାବ୍ୟ ଆଧୁନିକ ଯୁଗର ସୃଷ୍ଟି ହେବା ସମ୍ଭାବନା ରହିଛି ଅଥବା ଏପରି କିଛି ପୋଥି ଜମାରୁ ନଥାଇ ପାରେ ମଧ୍ୟ।

ଉପେନ୍ଦ୍ରଭଞ୍ଜଙ୍କ ଅପେକ୍ଷା ଢ଼େର୍ ପ୍ରାଚୀନତର କବି ବିଷ୍ଣୁଦାସଙ୍କର ଏକ ଛୋଟିଆ କାଳ୍ପନିକ ଛାନ୍ଦକାବ୍ୟର ନାମ କଳାବତୀ। ବିଷ୍ଣୁ ଦାସ କବି ଭାବରେ ପ୍ରସିଦ୍ଧ ଥିଲେ ତେଣୁ ତାଙ୍କ ରଚନାବଳୀ ସହିତ ଉପେନ୍ଦ୍ରଭଞ୍ଜ ପରିଚିତ ଥିବା ସ୍ୱାଭାବିକ। ଏଣୁ ନିଜେ କାବ୍ୟଟିଏ ଲେଖିଲାବେଳେ ପୂର୍ବଜ କବିଙ୍କ ନାମକୁ ଗ୍ରହଣ ନ କରି ଅନ୍ୟ କୌଣସି ନାମ ଦେବା ହିଁ ସମୀଚୀନ ବୋଧହୁଏ। ବିଷ୍ଣୁ ଦାସ ତାଙ୍କ କାବ୍ୟର ନାୟକର ନାମ ଦେଇନାହାନ୍ତି। ହଣ୍ଟରଙ୍କ ତାଲିକାରେ କଳାବତୀର ନାୟକ 'ଭାରତ' ବୋଲି ଜଣାଇ ଦିଆଯାଇଛି। ଏହି ପରିସ୍ଥିତିରେ କଳାବତୀର ମୂର୍ତ୍ତରୂପ ଦୃଷ୍ଟିଗୋଚର ହେବା ପୂର୍ବରୁ କଳାବତୀକୁ ଉପେନ୍ଦ୍ରଭଞ୍ଜଙ୍କ ଗ୍ରନ୍ଥତାଲିକା ଭୁକ୍ତ କରାଯାଇନପାରେ।

## ନାରଦ ପୁରାଣ

ଉପେନ୍ଦ୍ରଭଞ୍ଜ କୌଣସି ପୁରାଣ ରଚନା କରିଥିବା କଥା ଅପ୍ରତ୍ୟାଶିତ ଥିଲା। କାରଣ, ଉପେନ୍ଦ୍ର ଭଞ୍ଜ ରାଜସଭାରେ ବିଦ୍ୱତ୍‌ସମାଜରେ ଲାଳିତ ଉଚ୍ଚାଙ୍ଗ ସାହିତ୍ୟର ସ୍ରଷ୍ଟା। ଅଥଚ ପୁରାଣ ଗ୍ରାମର ଅଶିକ୍ଷିତ ଅଳ୍ପ ଶିକ୍ଷିତମାନଙ୍କ ପାଇଁ ଉଦ୍ଦିଷ୍ଟ ସୃଷ୍ଟି। ପ୍ରାୟ ଖ୍ରୀ. ୧୯୭୨ରେ ଭଦ୍ରକ ଅଞ୍ଚଳରୁ 'ନାରଦ ପୁରାଣ' ନାମକ ଏକ ତାଳପତ୍ର ପୋଥି ସଂଗୃହୀତ ହୋଇ ରାଜ୍ୟ ସଂଗ୍ରହାଳୟର ତାଳପତ୍ର ପୋଥି ବିଭାଗକୁ ଆସିବା ପରେ ଜଣାଗଲା ଯେ ଏହା ଗ୍ରାମର ପୁରାଣ ପ୍ରେମକୁ ନଗରର ଛାନ୍ଦ ଶୈଳୀରେ ପରିବେଷଣ କରିବାର ଏକ ଉଦ୍ୟମ। ମହାଭାରତ ଓ ରାମାୟଣ ମହାକାବ୍ୟ ହେଲେ ହେଁ ଓଡ଼ିଶାରେ ପୁରାଣ ରୂପେ କି ନଗର କି ପଲ୍ଲୀ ସର୍ବତ୍ର ଗୃହୀତ ହୁଏ। ମହାଭାରତ ଓ ରାମାୟଣକୁ ଛାନ୍ଦ ରୂପେ ପରିବେଷଣ କରାଯିବା ପ୍ରକ୍ରିୟା ଉପେନ୍ଦ୍ରଭଞ୍ଜଙ୍କ ପୂର୍ବରୁ ମଧ୍ୟ ଆରମ୍ଭ ହେଲାଣି। ଗୋଟିଏ ପୁରାଣକୁ ଛାନ୍ଦରୂ ଦେବା ଉଦ୍ୟମ ଉପେନ୍ଦ୍ରଭଞ୍ଜ ପ୍ରଥମେ କଲେ ଓ ଅଦ୍ୟାବଧି ତାଙ୍କର ଅନୁଗାମୀ କେହି ନାହାନ୍ତି। ଦୀର୍ଘ ୨୩ ବର୍ଷ ତଳେ ମୁଁ ଏ ବିଷୟରେ ଲେଖିଥିଲି : "ଦୀର୍ଘ ଚାରିବର୍ଷ ବିତି ଯାଇଥିଲେ ସୁଦ୍ଧା ସଂଗ୍ରହାଳୟର କେହି ବ୍ୟକ୍ତି ଏହା ଉପରେ ସାଧାରଣ ଆଲୋଚନା ସୁଦ୍ଧା କରି ନଥିବା ଆଶ୍ଚର୍ଯ୍ୟକର ଘଟଣା। ପ୍ରାପ୍ତ ପୋଥିର ଇତିବୃତ୍ତ ଓ ବର୍ଣ୍ଣିତ ବିଷୟ ସଂପର୍କରେ ସବୁକିଛି ଜଣାଯିବା ପରେ 'ନାରଦ ପୁରାଣ'ର କର୍ତ୍ତୃତ୍ୱ ନିରୂପଣ କରିବା ଉଚିତ ହୁଅନ୍ତା। କିନ୍ତୁ ନୀଳମଣି ମିଶ୍ର ଓ ଗୌରୀକୁମାର ବ୍ରହ୍ମା ଉପେନ୍ଦ୍ରଭଞ୍ଜଙ୍କ ରଚିତ 'ନାରଦ ପୁରାଣ' ମିଳିଥିବା କଥା କହୁଥିବାରୁ ଓ ପୋଥିଟି ସେମାନଙ୍କ ନିକଟରେ ଥିବାରୁ ତାହାଙ୍କ ମତକୁ ଗ୍ରହଣ କରୁଛି" (ଝଙ୍କାର, ୧୯୭୬, ବିଷୁବ)।

## ପଦ୍ମାବତୀ ପରିଣୟ

ଖ୍ରୀ ୧୯୭୫ରେ ପ୍ରକାଶିତ ଭଞ୍ଜଭୂମିକାରେ ଉପେନ୍ଦ୍ରଭଞ୍ଜଙ୍କ ପ୍ରଣୀତ 'ପଦ୍ମାବତୀ ପରିଣୟ' ନାମକ ଛାନ୍ଦକାବ୍ୟର ପରିଚୟ ଦେଇ ଗୌରୀକୁମାର ବ୍ରହ୍ମା ଉପେନ୍ଦ୍ରଙ୍କର ଲୁପ୍ତ ପ୍ରାୟ ଏକ ଗ୍ରନ୍ଥକୁ ଲୋକଦୃଷ୍ଟିକୁ ଆଣିଛନ୍ତି। ସେ ଲେଖିଛନ୍ତି : "ଏହା ପନ୍ଦର ଛାନ୍ଦ ବିଶିଷ୍ଟ ପୁଣି ବୈଦେହୀଶ ବିଳାସର 'ବ' ନିୟମ ପରି ଏହା 'ପ' ନିୟମରେ ରଚିତ। ଏହି କାବ୍ୟର ତାଳପତ୍ର ପୋଥି ଦେଖିବାର ସୁଯୋଗ ମୁଁ ପାଇନାହିଁ। ଅନେକ ବର୍ଷ ତଳେ ମୋ ପିତାଙ୍କୁ କେହି ଜଣେ ଘୁମୁରବାସୀ ଏହାକୁ ସାଦା କାଗଜରେ ଉତାରି ଦେଇଥିଲେ, ଏହାର ଶେଷ ଦୁଇଟି ଛାନ୍ଦର ଅନେକ ଅଂଶ ନାହିଁ ଏବଂ ତ୍ରୟୋଦଶ ଛାନ୍ଦର କେତେକ ପଦ ମଧ୍ୟ ଅସ୍ପଷ୍ଟ। ଏହାର ମୂଳର କେତୋଟି ପଦ ମଧ୍ୟ ନାହିଁ। xxx ଅନ୍ୟ ତାଳପତ୍ର ପୋଥି ନ ମିଳିଲେ ଏହାର ସଂପାଦନା କଷ୍ଟସାଧ୍ୟ ହେବ। ଏହା ପ୍ରକାଶ ପାଇଲେ ଭଞ୍ଜଙ୍କ ପ୍ରତିଭାର ଏକ ନୂତନ କକ୍ଷ ଉଦ୍‌ଘାଟିତ ହେବ। ଅନ୍ୟ ତାଳପତ୍ର ପୋଥି ପାଇଁ ଆଉ ଅପେକ୍ଷା ନ କରି ଶ୍ରୀ ବ୍ରହ୍ମା ଏହାକୁ ସଂପାଦିତ କରିବା ଲାଗି କଷ୍ଟ ସ୍ୱୀକାର କଲେ ତାହା ଭଞ୍ଜ-ଅଧ୍ୟୟନ ପ୍ରତି ମହାର୍ଘ ଦାନ ହେବ, ଏହା ନିଃସନ୍ଦେହ।

ଡଃ ମହତାବଙ୍କ ଓଡ଼ିଆ ଇତିହାସ ପାଇଁ ଭଞ୍ଜନଗରର ଭଞ୍ଜସାହିତ୍ୟ ପରିଷଦ ଅନେକ କବିଙ୍କର କୃତିକୁ ଓ କଳ୍ପାକଣ୍ଟକ ପରି ଅଜ୍ଞାତାପ୍ରସୂତ ନାମକୁ ମିଶାଇ ଉପେନ୍ଦ୍ରଭଞ୍ଜଙ୍କର ଯେଉଁ ଦୀର୍ଘ ଗ୍ରନ୍ଥତାଲିକା ପ୍ରସ୍ତୁତ କଲେ ତହିଁରେ ବାରମାସୀ (୩୩), ଦୁର୍ଗାସ୍ତୁତି (୩୫), ଗଜ ନିସ୍ତାରଣ (୩୮), ଗରୁଡ଼ଗୀତା (୪୦), ଛତିଶରାଗ (୫୪), ବିଚିତ୍ର ତରଙ୍ଗିଣୀ (୫୯) ଓ କଳ୍ପିତ କଳ୍ପଲେଖା(୬୬) ସ୍ଥାନ ପାଇଛନ୍ତି। ବିଚ୍ଛନ୍ଦ ଚରଣ ପଟ୍ଟନାୟକ ଏଗୁଡ଼ିକ ଉପେନ୍ଦ୍ରଭଞ୍ଜଙ୍କ ପ୍ରଣୀତ ବୋଲି ସ୍ୱୀକାର କରିଛନ୍ତି ଓ ତନ୍ମଧ୍ୟରୁ ଗରୁଡ଼ଗୀତାଟି ଏକ ଭକ୍ତିଗ୍ରନ୍ଥ (adevotional treatise) ଓ ବିଚିତ୍ର ତରଙ୍ଗିଣୀ ଓ କଳ୍ପିତ କଳ୍ପଲେଖା ଦୁଇଟି କାଳ୍ପନିକ କାବ୍ୟ ବୋଲି କହିଛନ୍ତି। ଅନନ୍ତପଦ୍ମନାଭ ପଟ୍ଟନାୟକ ମଧ୍ୟ ଉପେନ୍ଦ୍ରଙ୍କ ଅପ୍ରକାଶିତ ଗ୍ରନ୍ଥର ତାଲିକାରେ ଏହିଗୁଡ଼ିକୁ ଉଲ୍ଲେଖ କରିଛନ୍ତି କିନ୍ତୁ ମୁଦ୍ରଣ ପ୍ରମାଦରୁ ଗରୁଡ଼ଗୀତା ହୋଇଛି ଗରୁଡ଼ଗୀତ, ଛତିଶରାଗ ହୋଇଛି ଛତିଶରାସ ଓ କଳ୍ପିତ କଳ୍ପଲେଖା ହୋଇଛି କଳ୍ପିତ କଳ୍ପରେଖା। ଗୌରୀକୁମାର ବ୍ରହ୍ମା ଏହି ସବୁ ଗ୍ରନ୍ଥକୁ ଉପେନ୍ଦ୍ରଭଞ୍ଜଙ୍କ ଅପ୍ରକାଶିତ ରଚନାବଳୀର ଅନ୍ତର୍ଭୁକ୍ତ କରିଛନ୍ତି କିନ୍ତୁ ମୂଳ ନାମଗୁଡ଼ିକୁ ନ ନେଇ ମୁଦ୍ରଣପ୍ରମାଦ ଯୁକ୍ତ ନାମଗୁଡ଼ିକୁ ଗ୍ରହଣ କରିଛନ୍ତି। ଶ୍ରୀ ବ୍ରହ୍ମା ଭଞ୍ଜଭୂମିକାର ପୃ.୩୮୫ରେ "ତଳଲିଖିତ ରଚନାମାନ ଭଞ୍ଜଙ୍କର କୃତ ବୋଲି ପଣ୍ଡିତମାନେ ଲିପିବଦ୍ଧ କରିଯାଇଛନ୍ତି" ବୋଲି ଲେଖି ଗ୍ରନ୍ଥଗୁଡ଼ିକ ମଧ୍ୟରେ 'କବି କଳ୍ପରେଖା' ନାମକୁ ସ୍ଥାନ ଦେଇଛନ୍ତି। କୌଣସି ପଣ୍ଡିତ ଏହି ନାମରେ ଗ୍ରନ୍ଥ ଉପେନ୍ଦ୍ର-ରଚିତ ବୋଲି କହିଥିବା ମୁଁ ଜାଣେ ନାହିଁ। ନିଜେ ବ୍ରହ୍ମା ପ୍ରକାଶିତ ଓ ଅପ୍ରକାଶିତ ଗ୍ରନ୍ଥଗୁଡ଼ିକର ପୃଥକ୍ ତାଲିକା ପ୍ରସ୍ତୁତ କଲାବେଳେ କବି କଳ୍ପରେଖାକୁ ଉଲ୍ଲେଖ କରି ନଥିବା ହେତୁ ଏହା ଭୁଲ୍‌ରେ ତାଲିକା ମଧ୍ୟକୁ ଆସିଯାଇଛି ବୋଲି ଅନୁମାନ କରାଯାଇପାରେ। ବାରମାସୀ ଆଦି ସାତ୍‌ଟି ଗ୍ରନ୍ଥ ପ୍ରକୃତରେ କେଉଁଠାରେ ରହିଛି ଜଣାନାହିଁ। ଏଗୁଡ଼ିକୁ କେହି ପାଠ କରିଥିବା କଥା କହି ନାହାନ୍ତି। ଭଞ୍ଜସାହିତ୍ୟ ପରିଷଦର ତାଲିକାରେ ଅନ୍ୟାନ୍ୟ କବିଙ୍କ ଗ୍ରନ୍ଥ ମିଶି ଥିବା ହେତୁ ଏଗୁଡ଼ିକ ଅନ୍ୟ କବିଙ୍କର ହେବା ସମ୍ଭାବନା ମଧ୍ୟ ରହିଛି। ଭଞ୍ଜନଗରର ଆଂଚଳିକ ଉତ୍ସାହ କବିଙ୍କ ସଂପର୍କରେ ନାନା ଅଜବ କିଂବଦନ୍ତୀ ଓ ଜାଲ୍‌ଗ୍ରନ୍ଥ ସୃଷ୍ଟି କରିବାରେ ସହାୟକ ହେଉଛି। ଅନ୍ୟାନ୍ୟ ସୂତ୍ରରୁ ସମର୍ଥିତ ନ ହେବା ଯାଏଁ ଏହି ସୂତ୍ରରୁ ମିଳିବା ତଥ୍ୟକୁ ବିଶ୍ୱାସ କରାଯାଇ ନ ପାରେ। ତେଣୁ ଏ ସବୁ ଗ୍ରନ୍ଥକୁ ଉପେନ୍ଦ୍ର ଭଞ୍ଜଙ୍କ ତାଲିକାର ଅନ୍ତର୍ଭୁକ୍ତ କରୁନାହିଁ। ଜଗବଂଧୁ ସିଂହ ଅନ୍ୟ ଏକ ଅନାମିତ ଗ୍ରନ୍ଥ କଥା ଲେଖିଛନ୍ତି : "ଶୁଣୁଛି ଉପେନ୍ଦ୍ରଭଞ୍ଜ ଅନ୍ୟାନ୍ୟ ଅନେକ କବିଙ୍କ ଜୀବନୀ ସମାଲୋଚନା କରି ଏକ ପୁସ୍ତକ ଲେଖିଛନ୍ତି (ପ୍ରାଚୀନ ଉତ୍କଳ ପୃ. ୧୫୨) ଉପେନ୍ଦ୍ରଙ୍କ ସମୟରେ ଏପରି ଏକ ସମାଲୋଚନା ଗ୍ରନ୍ଥ ରଚନାର ସାମାନ୍ୟତମ ସମ୍ଭାବନା ମଧ୍ୟ ନାହିଁ।

## କ୍ଷୁଦ୍ର ରଚନା

ଉପେନ୍ଦ୍ରଭଞ୍ଜ ଯେ ଅସଂଖ୍ୟ ଛୋଟ ଛୋଟ ଗୀତ ଲେଖିଥିଲେ, ଏହା ଅନୁମିତ ହେଉଛି। ଆଜିକାଲି ପଦ ସଂଖ୍ୟାନୁସାରେ ୫୦ ପଦିଆ, ୬୬ ପଦିଆ ଆଦି ନାମରେ ନାମିତ ହେଉଥିବା ଛାନ୍ଦ, ଦୀର୍ଘ ଗୀତ, ଢ଼ଗ, ଚଉପଦୀ, ଚଉତିଶା ଆଦି ସେ ବହୁତ ସୃଷ୍ଟି କରିଥିବେ ଯାହାର ଅଳ୍ପାଂଶ ବର୍ତ୍ତମାନ ରହିଛି। ଅନନ୍ତ ପଦ୍ମନାଭ ପଟ୍ଟନାୟକ 'କବିସମ୍ରାଟ ଉପେନ୍ଦ୍ରଭଞ୍ଜ'ର ପୃ. ୨୪ରେ ଲେଖିଛନ୍ତି : "ଏତଦ୍‌ବ୍ୟତୀତ କବିଙ୍କ ଢ଼ଗଢ଼ମାଳିକା ନାମରେ ଖଣ୍ଡିଏ ତାଳପତ୍ର ଗ୍ରନ୍ଥ ଅଛି। ବୁଗୁଡ଼ା ନିକଟବର୍ତ୍ତୀ ଏକ ଗାଁର ସାମନ୍ତଙ୍କ ଘରେ ତାହା ଜୀର୍ଣ୍ଣ ଅବସ୍ଥାରେ ପଡ଼ି ରହିଛି। ନିକଟ ଭବିଷ୍ୟତରେ ତାହା ପ୍ରକାଶ ପାଇବ"। ଏହା ଲେଖା ହେବାର ଚାଳିଶ ବର୍ଷ ଅତୀତ ହେଲାଣି କିନ୍ତୁ ତାହା ପ୍ରକାଶ ପାଇବା ଜଣାନାହିଁ। କିନ୍ତୁ, ନରସିଂହ ସେଣଙ୍କ ଦ୍ୱାରା ରଚିତ 'ଢ଼ଗମାଳିକା' ନାମକ ୭୩ ପଦରେ ଏକ ଦୀର୍ଘଗୀତ ରାଜ୍ୟ ସଂଗ୍ରହାଳୟର ପୋଥିରୁ ଉଦ୍ଧୃତ ହୋଇ ପ୍ରକାଶ ପାଇଲାଣି (ଓଡ଼ିଆ ଗୀତିକାବ୍ୟ ସଂକଳନ, ପୃ ୫୮୮ରୁ ୫୯୩)।

ହଣ୍ଟରଙ୍କ ତାଲିକାକୁ ଅନୁସରଣ କରି ଗବେଷକମାନେ ଚିତ୍ରଲେଖା, କାମକଳା, ମନୋରମା, ମୁକ୍ତାବତୀ, ଆଦିକୁ ଉପେନ୍ଦ୍ରଙ୍କ କୃତି ବୋଲି ଗଣନା କରି ଆସୁଛନ୍ତି। ଏ ସବୁ ନାମର ଅସ୍ତିତ୍ୱ ରହିଛି ବଇଦେହୀଶବିଳାସର ପୂର୍ବୋଦ୍ଧୃତ ଅଂଶରେ (୧୩ରୁ ୧୬ ପଦରେ)। ଏଗୁଡ଼ିକୁ ଜନ ବୀମ୍‌ସ ହଣ୍ଟରଙ୍କ ତାଲିକା ପ୍ରସ୍ତୁତ କଲାବେଳେ କାହିଁକି ଗ୍ରନ୍ଥ ବୋଲି ଗଣନା କରିଗଲେ ତାହାର କାରଣ ଅନୁମାନ କରାଯାଇପାରେ। ଉପେନ୍ଦ୍ରଭଞ୍ଜ 'ଲାବଣ୍ୟବତୀ'ର ତୃତୀୟ ଛାନ୍ଦରେ ନାୟିକାର ସଖୀମାନଙ୍କର ନାମ ନିମ୍ନ ପ୍ରକାରେ ଦେଇଛନ୍ତି :-

ଏ ପ୍ରକାରେ ସୁନ୍ଦରୀ କୃଶୋଦରୀ। ଅଛି ଦିନେ ସେ ଶୟନ ଆଦରି ॥
ନିଦ୍ରାନାଶ ଅବକାଶ ଆଶରେ। ଜଗିଛନ୍ତି ଏତେ ସଖୀ ପାଶରେ ॥
ନିଜ ଧାତ୍ରୀ ପୁତ୍ରୀ ହେମମଞ୍ଜରୀ। ଅକ୍ଷିପକ୍ଷୀ-ବନ୍ଦୀକି ସେ ପଞ୍ଜରି ॥
କାମକଳା ନାମେ ମନ୍ତ୍ରୀଦୁହିତ। ବିହି ବିଧାଣୀ ବୋଲାଇ ବିହି ତ ॥
ରସଲେଖା ସୁରେଖା ଚିତ୍ରଲେଖା। ହାରାବଳୀ ଚନ୍ଦ୍ରାବଳୀ ଏ ଲେଖା ॥
ରତ୍ନମାଳା ହେମମାଳା ବିମଳା। ପ୍ରେମଶୀଳା ସୁଶୀଳା ପରିମଳା ॥
କଳ୍ପଲତା ମଦାଳସା ବଞ୍ଜୁଳା। ପ୍ରେମସୁଧାନିଧି ପ୍ରଭାମଞ୍ଜୁଳା ॥

ଏଥିରେ ଉଲ୍ଲିଖିତ ଲାବଣ୍ୟବତୀର ୧୮ ଜଣ ସଖୀଙ୍କ ନାମ ମଧ୍ୟରେ ଉପେନ୍ଦ୍ରଙ୍କର କେତୋଟି କାବ୍ୟ ନାୟିକାଙ୍କର ନାମ ରହିଛି :- ୧. ହେମମଞ୍ଜରୀ; ୨. ରସଲେଖା; ୩. ହାରାବଳୀ (ରସିକ ହାରାବଳୀ); ୪. ଚନ୍ଦ୍ରାବଳୀ (କଳାକଉତୁକର ନାୟିକା) ୫. ପ୍ରେମସୁଧାନିଧି। ଲାବଣ୍ୟବତୀର ସଖୀଭାବରେ ଉଲ୍ଲିଖିତ କାମକଳା ଓ ଚିତ୍ରଲେଖା ଶବ୍ଦଗୁଡ଼ିକ ବଇଦେହୀଶର ଗ୍ରନ୍ଥତାଲିକା ମଧ୍ୟରେ ସ୍ଥାନ ପାଇଛି। ଜନ୍ ବୀମସ୍ ବଇଦେହୀଶର

ଉଦ୍ଧୃତାଂଶରୁ ଉପେନ୍ଦ୍ରଙ୍କ ଗ୍ରନ୍ଥତାଲିକା ପ୍ରସ୍ତୁତ କଲାବେଳେ ଲାବଣ୍ୟବତୀର ସଖୀତାଲିକା ଦ୍ୱାରା ପ୍ରଭାବିତ ହୋଇଥିବା ଅନୁମାନ କରୁଛି। ସଖୀ ତାଲିକା ମଧ୍ୟରେ କେତୋଟି କାବ୍ୟର ନାମ ରହିଥିବା ହେତୁରୁ ବନ୍ଧୋଦୟର ବିବରଣରେ ସଖୀତାଲିକା ଭୁକ୍ତ ଆଉ ଯେଉଁ କେତୋଟି ନାମ ଉଲ୍ଲିଖିତ ହୋଇଛି ତାହାକୁ ମଧ୍ୟ ଉପେନ୍ଦ୍ରଙ୍କ କାବ୍ୟର ନାମ ବୋଲି ଗଣିବା ସ୍ୱାଭାବିକ କଥା ହୋଇଗଲା। ଏହି ପ୍ରକାରେ କାମକଳା ଓ ଚିତ୍ରକଳା ଶବ୍ଦଗୁଡ଼ିକ କାବ୍ୟର ନାମ ବୋଲି ଗଣ୍ୟ ହେଲେ। ଏଗୁଡ଼ିକୁ କାବ୍ୟଭାବେ ଗଣିବାରୁ କେତୋଟି ପାଦରେ ଦୁଇ ଦୁଇଟା କାବ୍ୟ ସ୍ଥାନ ପାଇଗଲେ ଓ ଅନ୍ୱୟର ସମତା ରକ୍ଷା କରିବା ଲାଗି ପର ପାଦର ମନୋରମା, ମୁକ୍ତାବତୀ, ବ୍ରଜଲୀଳା ଓ ଷଡ଼ଋତୁକୁ ମଧ୍ୟ କାବ୍ୟ ଭାବରେ ଗଣିବାକୁ ହେଲା। ଲାବଣ୍ୟବତୀର ସଖୀମାନଙ୍କ ନାମ ମଧ୍ୟରେ ଅନ୍ୟାନ୍ୟ କବିମାନଙ୍କର କାବ୍ୟର ନାମ ମଧ୍ୟ ସ୍ଥାନ ପାଇଥିବା ଲକ୍ଷ୍ୟ କରାଯାଇପାରେ; ଯଥା :- ଅର୍ଜୁନ ଦାସଙ୍କ 'କଳ୍ପଲତା' ଓ ନରସିଂହ ସେଣଙ୍କ 'ପରିମଳା'। ତେଣୁ ସଖୀ ତାଲିକାର ନାମଗୁଡ଼ିକୁ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟର ନାମ ରୂପେ ଗ୍ରହଣ କରିବା ଉଚିତ ନୁହେଁ। ତେବେ, ଏହା ମଧ୍ୟ ଅନୁମାନ କରାଯାଇପାରେ ଯେ ଉପେନ୍ଦ୍ର ବନ୍ଧୋଦୟରେ ସ୍ୱକୃତ ଗ୍ରନ୍ଥଗୁଡ଼ିକର ନାମ ତାଲିକା କଲାବେଳେ ଲାବଣ୍ୟବତୀର ସଖୀତାଲିକା କଥା ସ୍ମରଣକୁ ଆସିଯାଇଛି। କାରଣ, ସେ ଏଥିରେ ଅନେକ କାବ୍ୟକୁ ସଖୀଭାବରେ ଉଲ୍ଲେଖ କରିଥିଲେ। ତେଣୁ ସଖୀତାଲିକାର କାବ୍ୟେତର ନାମ ମଧ୍ୟରୁ କେତୋଟିକୁ ଗ୍ରନ୍ଥ ତାଲିକାରେ ଗୁଣସୂଚକ ଶବ୍ଦରୂପେ ସ୍ଥାନ ଦେଲେ। ଲାବଣ୍ୟବତୀର ସଖୀ ତାଲିକାଟି ଯେଉଁ ବୃତ୍ତରେ ରଚିତ ବନ୍ଧୋଦୟର ଗ୍ରନ୍ଥ ତାଲିକାଟି ସେହି ବୃତ୍ତରେ ରଚିତ ହେବା ହେତୁ ସଖୀମାନଙ୍କ ନାମର ସ୍ମୃତି ଗ୍ରନ୍ଥ ତାଲିକାରେ ଅନୁରଣିତ ହୋଇଯିବା ସହଜ ହେଲା।

ଦୀର୍ଘ ... ବର୍ଷତଳେ ଉତ୍କଳଦୀପିକା (ତା ୨୦-୧୦-୧୮୬୬ ସଂଖ୍ୟାରେ) ମତ ଦେଇଥିଲା : "ଓଡ଼ିଷ୍ୟାର କବିକୁଳ କେଶରୀ ଉପେନ୍ଦ୍ରଭଞ୍ଜ ୫୨ ଖଣ୍ଡ ଗ୍ରନ୍ଥ ରଚନା କରନ୍ତି। ମାତ୍ର ଇଦାନିଂ ପ୍ରଶଂସିତ କବି ରଚିତ ୨୦/୨୫ ଖଣ୍ଡ ଗ୍ରନ୍ଥରୁ ଅଧିକ ମିଳୁନାହିଁ"। ଆଜି ଦୀର୍ଘକାଳ ବ୍ୟାପୀ ଗବେଷଣା ଫଳରେ ଏପରି ସୁନିର୍ଦ୍ଦିଷ୍ଟ ଭାବରେ କୌଣସି ସଂଖ୍ୟା କହିବାର ମୂଲ୍ୟ କିଛିନାହିଁ ବୋଲି ସ୍ପଷ୍ଟ ହୋଇପାରିଛି। ଉପେନ୍ଦ୍ରଙ୍କ ରଚନାବଳୀର ନାମର ଜଙ୍ଗଲ ସଫା କଲାବେଳେ ଗୋଥେଙ୍କ ବଚନର ସତ୍ୟତା ଅନୁଭବ କରିଛି ଯେ "We know accurately only when we know little; with knowledge doubt increases" (ଆମେ ଟିକେ ଟିକେ ଜାଣିଥିଲା ବେଳେ ଠିକେ ଠିକେ ଜାଣିଥାଉ, ଜ୍ଞାନ ବଢ଼ିବା ସଙ୍ଗେ ସଙ୍ଗେ ସନ୍ଦେହ ବଢ଼େ)।

*ଦଶମ ଅଧ୍ୟାୟ*

# ପୋଇ : ଏକ ପର୍ଯ୍ୟାଲୋଚନା

ମଧ୍ୟଯୁଗର ଓଡ଼ିଆ ସାହିତ୍ୟ 'ପୋଇ' ନାମକ ରଚନାମାନ ଦ୍ୱାରା ସମୃଦ୍ଧ। ଛାନ୍ଦ, ଚଉତିଶା, ଚଉପଦୀ, ବୋଲି ଆଦି ପରି ପୋଇ ମଧ ଓଡ଼ିଆରେ ପଦ୍ୟ ରଚନାର ଏକ ବିଶିଷ୍ଟ ଶୈଳୀ। ଏହା ଏକ ଆଞ୍ଚଳିକ ସାହିତ୍ୟିକ ଆଂଗିକ; ସଂସ୍କୃତରେ କି ଅନ୍ୟ କୌଣସି ପ୍ରାଦେଶିକ ଭାଷାରେ ପୋଇର ଅନୁରୂପ ବା ତୁଳନୀୟ ରଚନା ଶୈଳୀ ନାହିଁ। ଅଦ୍ୟାବଧି ପ୍ରକାଶିତ ପୋଇଗୁଡ଼ିକୁ ବିଚାର କଲେ ଜଣାଯାଏ ଯେ ପୋଇ ଖ୍ରୀ. ୧୭ଶ ଶତାବ୍ଦୀ ପୂର୍ବରୁ ନଥିଲା ଓ ତାହା ୧୯ ଶତାବ୍ଦୀ ପରେ ସୃଷ୍ଟି ହେଲା ନାହିଁ। ଛାନ୍ଦ, ଚଉତିଶା, ଚଉପଦୀ ଆଦି ରଚନା-ଶୈଳୀ ଏବେ ମଧ ପ୍ରାଚୀନ ପନ୍ଥୀ କବିମାନଙ୍କ ଦ୍ୱାରା ଆଦୃତ ହେଉଛି କିନ୍ତୁ ପୋଇର ତାଦୃଶ ଆଦର ନାହିଁ। ଆଉ ମଧ ସ୍ୱୀକାର୍ଯ୍ୟ ଯେ ପୋଇ ଶୈଳୀଟି ଅତୀତରେ ମଧ ଛାନ୍ଦ, ଚଉତିଶା, ଚଉପଦୀ ଭଳି ବ୍ୟାପକ ଲୋକପ୍ରିୟତା ଅର୍ଜନ କରି ନଥିଲା। ପୋଇ ଶୈଳୀର କଡ଼ାକଡ଼ି ନିୟମ ଓ ତାହାର ଗଠନ-କୃତ୍ରିମତା ତାହାର ଅଳ୍ପାୟୁଷର କାରଣ ହେଲା ବୋଲି ଅନୁମିତ ହୁଏ।

ଓଡ଼ିଆରେ ପୋଇ ଶବ୍ଦଟି ମୁଖ୍ୟତଃ ବିଶିଷ୍ଟ ଗଠନ ଶୈଳୀ ବା ଆଂଗିକ ଅର୍ଥରେ ଚଳେ ଓ ଗୌଣତଃ ଏକ ବିଶିଷ୍ଟ ବୃତ୍ତ (ବାଣୀ ବା ଦିଶ) ଚଳେ। ଗଠନ ଶୈଳୀରେ ପୋଇ ରଚନାଗୁଡ଼ିକ ଯେଉଁ ନିର୍ଦ୍ଦିଷ୍ଟ ବୃତ୍ତରେ ଲେଖା ହୁଏ ସେହି ବୃତ୍ତଟି ମଧ ପୋଇବୃତ୍ତ (ବାଣୀ ବା ଦିଶ) ବୋଲାଏ। ପୋଇର ଗଠନ ଶୈଳୀର ଆଲୋଚନା ପୂର୍ବରୁ ପୋଇବୃତ୍ତର ପରିଚୟ ଦେବା ଆବଶ୍ୟକ।

**ପୋଇବୃତ୍ତ**

ପୋଇ ବୃତ୍ତ ବା ବାଣୀରେ ସମପ୍ରସ୍ତାର ବିଶିଷ୍ଟ ଦୁଇ ଚରଣରେ ଏକ ପଦ ହୁଏ (ଚରଣର ଅନ୍ୟ ନାମ ପାଦ), ଚରଣ ଦ୍ୱୟର ପ୍ରାନ୍ତ ଅକ୍ଷର (ସସ୍ୱର ବ୍ୟଞ୍ଜନ ବା ନିରୋଳ ସ୍ୱରବର୍ଣ୍ଣ) ମଧ୍ୟରେ ମିତ୍ରତା ଅର୍ଥାତ୍ ମେଳ (ପ୍ରାଚୀନ ଓଡ଼ିଆ ପଦ୍ୟର ବର୍ଣ୍ଣମେଳ ନିୟମ ଅନୁସାରେ) ରହିଥାଏ। ପୋଇର ପ୍ରତ୍ୟେକ ଚରଣରେ ୨୪ଟି ଲେଖା ବର୍ଣ୍ଣ ରହେ ଓ ପ୍ରତ୍ୟେକ ଚରଣର ୨ୟ, ୮ମ, ୧୪ଶ, ୨୦ଶ ଓ ଶେଷ ବର୍ଣ୍ଣରେ ଯତିପାତ ହୁଏ। ପୋଇ ପଦ୍ୟ ରଚନାର ଏକ ବିଶେଷତ୍ୱ

ହେଉଛି ଏହାର ପ୍ରତ୍ୟେକ ଚରଣର ୮ମ ଓ ୧୪ଶ ବର୍ଣ୍ଣ ମଧ୍ୟରେ ମଧ୍ୟ ମେଳ ରହେ। ବୋଧହୁଏ, ଏହି କାରଣରୁ କେତେକଙ୍କ ମତରେ ଏହାର ଯତିପାତ ୮ମ, ୧୪ଶ, ଓ ଶେଷ ବର୍ଣ୍ଣ ପରେ ହିଁ ହୁଏ, କିନ୍ତୁ ୨ୟ ଓ ୨୦ଶ ବର୍ଣ୍ଣଠାରେ ସାମାନ୍ୟ ବିଶ୍ରାମ ନ ନେଇ କେହି ପୋଇ ଗାଇବା ମୁଁ ଶୁଣିନାହିଁ। ପୋଇର ପ୍ରତ୍ୟେକ ପାଦର ଯତିପାତ ଯୋଜନା ଏହିପରି :-

ପ୍ରଥମ ଚରଣ :- ୨+୬'+୬'+୬+୪*।

ଦ୍ୱିତୀୟ ଚରଣ :-୨+୬''+୬''+୬+୪* ।।

ଏଥିରେ ଦୁଇ ଚରଣର ଶେଷ ବର୍ଣ୍ଣ (ତାରକା * ଚିହ୍ନିତ) ସମାନ ଓ ପ୍ରତେକ ଚରଣର ୮ମ ବର୍ଣ୍ଣ ସହ ୧୪ଶ ବର୍ଣ୍ଣ ସମାନ। ଉଦାହରଣ ସ୍ୱରୂପ ମୁକୁନ୍ଦ ଦାସଙ୍କ ପାଞ୍ଚ ପୋଇର ପ୍ରଥମ ପଦଟିକୁ ଦିଆଯାଇପାରେ :-

''ଆହେ+ଜଗତ ବାନ୍ଧବ+ନୀଳ ଜଳଦାଭ+ମୂରତି ଶ୍ରୀମୁଖ+ଚନ୍ଦ୍ରଜିଣି।

ଚାରୁ+ବିଶଦ ନଳିନ+ବିଜିତ ନୟନ+କଳାଡ଼ୋଳା ଭୃଙ୍ଗ+ଖେଳା ଜାଣି ।।

ଏହାକୁ ପୋଇ ବୃତ୍ତ (ବା ବାଣୀ) ନାମରେ ଅଭିହିତ କରାଯାଏ। କିନ୍ତୁ, ଅଳ୍ପ କେତୋଟି ପୋଇରେ ଏହି ବୃତ୍ତର ବ୍ୟତିକ୍ରମ ଲକ୍ଷିତ ହୁଏ।

ସେଥିରେ ପୂର୍ବୋଦ୍ଧୃତ ମୁଖ୍ୟ ପୋଇ ବୃତ୍ତର ପ୍ରତ୍ୟେକ ଚରଣର ଆଦ୍ୟ ଦୁଇ ବର୍ଣ୍ଣକୁ ବାଦ୍ ଦିଆଯାଇଥାଏ। ଫଳତଃ ଗୌଣ ପୋଇବାଣୀର ଚରଣକେ ୨୨ ବର୍ଣ୍ଣ ରହେ ଓ ତାହାର ଯତିପାତ ଯୋଜନା ଏହିପରି :-

ପ୍ରଥମ ଚରଣ :- ୬'+୬'+୬+୪*

ଦ୍ୱିତୀୟ ଚରଣ :- ୬''+୬''+୬+୪* ।।

ଏଥିରେ ମଧ୍ୟ ପ୍ରତ୍ୟେକ ଚରଣ ମଧ୍ୟସ୍ଥ ୬ଷ୍ଠ ଓ ୧୨ଶ ବର୍ଣ୍ଣ ମଧ୍ୟରେ ତଥା ଦୁଇ ଚରଣର ଶେଷବର୍ଣ୍ଣ ମଧ୍ୟରେ ମେଳ ହୁଏ। ଉଦାହରଣ ସ୍ୱରୂପ କଣ୍ଠ ଦାସଙ୍କ ନଅପୋଇର ପ୍ରଥମ ପଦଟି ପ୍ରଦତ୍ତ ହେଲା:-

ଏହୁବନେ ହରି+ଚରାନ୍ତି ବାଛୁରୀ+ସଙ୍ଗେ ଘେନି ସର୍ବ+ଗୋପବାଳ।

ଯୂଥ ଯୂଥ ହୋଇ+ବନେ ବନେ ଯାଇ+ବୃନ୍ଦାବନେ ଏକା+ନନ୍ଦଲାଲ ।।

'ଓଡ଼ିଆ ଛନ୍ଦ' ଆଲୋଚନା ପ୍ରସଙ୍ଗରେ (ଉତ୍କଳ ସାହିତ୍ୟ, ଅକ୍ଟୋବର ୧୯୦୩) ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ଓଡ଼ିଆ ଦ୍ୱାଦଶାକ୍ଷର ଛନ୍ଦର ନାମାନ୍ତର ପୋଇ ବାଣୀ ବୋଲି ଜଣାଇ ''ଭୂପାଳ ବା ପୋଇବାଣୀର ଯତି ପ୍ରତ୍ୟେକ ଅଷ୍ଟମ ଓ ଶେଷାକ୍ଷର ଉପରେ ପଡ଼େ'' ବୋଲି ଲେଖିଛନ୍ତି। ସେ ଆଉ ମଧ୍ୟ ଲେଖିଛନ୍ତି ଯେ ''ଭୂପାଳ ବା ପୋଇବାଣୀ ପ୍ରାକୃତ ଭୂଜଙ୍ଗ ପ୍ରୟାତର ସଦୃଶ''। କିନ୍ତୁ, ଦ୍ୱାଦଶାକ୍ଷର ଭୂପାଳ ଛନ୍ଦର ନାମାନ୍ତର କୌଣସି ପୋଥିରେ ପୋଇବାଣୀ ବା ବୃତ୍ତ ବୋଲି ଉଲ୍ଲିଖିତ ହେବା ମୁଁ ଜାଣେ ନାହିଁ। ମୁଖ୍ୟ ପୋଇବୃତ୍ତର ନାମାନ୍ତର ବଡ଼ ଭୂପାଳ; ଏହା ଭୂପାଳ ନାମରେ ମଧ୍ୟ କଥିତ ହୁଏ (ବିଦଗ୍ଧ ଚିନ୍ତାମଣି ଦ୍ରଷ୍ଟବ୍ୟ)। ବୋଧହୁଏ, ଚତୁର୍ବିଂଶାକ୍ଷର

ପୋଇବୃତ୍ତର ନାମାନ୍ତର ଭୂପାଳ ହୋଇଥିବାରୁ ଦ୍ୱାଦଶାକ୍ଷର ଭୂପାଳର ନାମାନ୍ତର ଭୂପାଳ ବୋଲି ଭୁଲ୍‌ରେ ନିର୍ଣ୍ଣୟ କରାଯାଇଛି। ଉଲ୍ଲେଖ କରିବା ଅନାବଶ୍ୟକ ଯେ କୌଣସି ଗୋଟିଏ ସୁଦ୍ଧା ପୋଇ ଦ୍ୱାଦଶାକ୍ଷର ପ୍ରସ୍ତାର ବିଶିଷ୍ଟ ନୁହେଁ।.

**ପୋଇର ଗଠନ**

ସାଧାରଣତଃ ପୋଇ ରଚନାଗୁଡ଼ିକର ପୃଥକ୍ ନାମ ନଥାଏ। ପ୍ରତ୍ୟେକ ରଚନା ଅନେକ ଭାଗ ବିଶିଷ୍ଟ ହୁଏ ଓ ଭାଗଗୁଡ଼ିକ କ୍ରମାନ୍ୱୟରେ ପ୍ରଥମ ପୋଇ, ଦ୍ୱିତୀୟ ପୋଇ, ତୃତୀୟ ପୋଇ ଏହି ଧାରାରେ ନାମିତ ହୁଏ। ତୁଳନୀୟ ଭାବରେ ଉଲ୍ଲେଖ କରାଯାଇପାରେ ଯେ 'ଛାନ୍ଦ' ନାମରେ ପରିଚିତ ରଚନାରେ ମଧ୍ୟ ଅନେକ ଭାଗ ଥାଏ ଓ ସେହି ଭାଗ ଗୁଡ଼ିକ ମଧ୍ୟ ଏକ ଏକ ଛାନ୍ଦ। ପୋଇର ବିଶେଷତ୍ୱ ହେଉଛି ସମଗ୍ର ରଚନାରେ ଯେତେଟି ଭାଗ (ବା ପୋଇ) ଥାଏ ପ୍ରତ୍ୟେକ ଭାଗରେ ଠିକ୍ ସେତିକି ସଂଖ୍ୟକ ପଦ ଥାଏ। ପୋଇର ଦ୍ୱିତୀୟ ବିଶେଷତ୍ୱ ହେଉଛି ତାହା ମୁଖ୍ୟ ବା ଗୌଣ ପୋଇ ବୃତ୍ତରେ ହିଁ ରଚିତ ହୁଏ। ଏ ନିୟମ ଛାନ୍ଦରେ ନାହିଁ। ଛାନ୍ଦ ଆମୂଳାନ୍ତ ଗୋଟିଏ ବୃତ୍ତରେ ରଚିତ ନ ହୋଇ ସାଧାରଣତଃ ବିଭିନ୍ନ ବୃତ୍ତରେ ରଚିତ ହୁଏ। ପୋଇ ରଚନାରେ ମୋଟ ଯେତେଟି ଭାଗ (ବା ପୋଇ) ଥାଏ ରଚନାଟି ସେହି ସଂଖ୍ୟକ ପୋଇ ବୋଲାଏ; ଯଥା :- ଛଅ ପୋଇ, ଦଶ ପୋଇ, ଷୋଳ ପୋଇ। ଅର୍ଥାତ୍, ପୋଇ ବୃତ୍ତରେ ରଚିତ ଛଅ ଛଅ ପଦ ବିଶିଷ୍ଟ ଛଅ ଗୋଟି ପୋଇ (ଭାଗ) ଥିବା ଏକକ ରଚନା ବିଶେଷ 'ଛଅପୋଇ' ନାମରେ ଅଭିହିତ ହୁଏ ଓ ପୋଇ ବୃତ୍ତରେ ରଚିତ ୨୫ଟି ପଚିଶ ପଦିଆ ପୋଇ ଥିବା କାବ୍ୟ ପଚିଶ ପୋଇ ବୋଲାଏ। ପୋଇର ପୃଥକ୍ ନାମକରଣ ନ ରହିବା ନିୟମର ଦୁଇଟି ମାତ୍ର ବ୍ୟତିକ୍ରମ ରହିଛି :- ''ରାଧାକୃଷ୍ଣ ପୋଇ'' ଓ 'ରସପୋଇ'। ସଂସ୍କୃତ ପଦ୍ଧତିରେ 'ରସ'ର ସଂଖ୍ୟାବାଚକ ଅର୍ଥ ହେଉଛି 'ନଅ'। ପ୍ରକୃତରେ ରସ ପୋଇଟି ଏକ ନଅ ପୋଇ। ତେଣୁ ତାହା ବ୍ୟତିକ୍ରମ ଭାବରେ ଗଣ୍ୟ ନ ହୋଇ ପାରେ।

ପୋଇର ପ୍ରତ୍ୟେକ ଭାଗର ଆରମ୍ଭରେ ଅଥବା ଶେଷରେ ପୋଇ ବୃତ୍ତ ଭିନ୍ନ ଅନ୍ୟ କୌଣସି ବୃତ୍ତରେ (ସାଧାରଣତଃ ଏକ ବିଷମ ପ୍ରସ୍ତାର ବୃତ୍ତରେ) ଦୁଇ, ଚାରି ବା ପାଞ୍ଚ ପଦ ଗୀତ ଅଧିକ ଥାଏ। ସେହି ଗୀତକୁ ସାଧାରଣତଃ ଦଣ୍ଡକ କୁହାଯାଏ। ସଂସ୍କୃତରେ ଦଣ୍ଡକର ଅର୍ଥ ସମାସବହୁଳ ରଚନା କିନ୍ତୁ ପୋଇର ଦଣ୍ଡକରେ ସମାସବହୁଳତା ପରିଦୃଷ୍ଟ ହୁଏ ନାହିଁ। ଦଣ୍ଡକ ଗୀତ ନ ଥିବା ପୋଇ ମିଳେ କିନ୍ତୁ ଅଳ୍ପ ସଂଖ୍ୟାରେ। କ୍ୱଚିତ୍ ଯେଉଁ ପୋଇର ଦଣ୍ଡକ ଯୁକ୍ତ ପାଠ ମିଳେ ତାହାର ଦଣ୍ଡକ ବର୍ଜିତ ପାଠ ମଧ୍ୟ ମିଳେ। ତେଣୁ ମନେହୁଏ ଦଣ୍ଡକ ପୋଇର ଅପରିହାର୍ଯ୍ୟ ଅଙ୍ଗ ନୁହେଁ। ପୋଇ ନାମକରଣ ସହିତ ଦଣ୍ଡକର ସଂପର୍କ ରହୁନାହିଁ। ସମ୍ଭବତଃ, ମୂଳ ପୋଇ ପରିକଳ୍ପନାରେ ଦଣ୍ଡକର ସ୍ଥାନ ନଥିଲା। ପୋଇର ଉଦ୍‌ଗମ ଆଲୋଚନା ବେଳେ ଏହା ସ୍ପଷ୍ଟ ହୋଇଯିବ। ଗାୟନ ବେଳେ ଗୋଟିଏ ମାତ୍ର

ବୃତ୍ତର ଆବୃତ୍ତିର ବିରକ୍ତିକୁ ଏଡ଼ିବା ଲାଗି ମଧ୍ୟେ ମଧ୍ୟେ ଭିନ୍ନ ଏକ ବୃତ୍ତର ତଣ୍ଡକ ଖଞ୍ଜା ହେଲା ଓ ଦୁଇଟି ବୃତ୍ତ ବେଣୀବନ୍ଧନ ନ୍ୟାୟରେ ଥିବାରୁ ତଣ୍ଡକ ହୀନ ପୋଇ ଅପେକ୍ଷା ତଣ୍ଡକ ଯୁକ୍ତ ପୋଇ ଅଧିକ ଆଦୃତ ହେଲା ବୋଲି ମନେ ହୁଏ ।

**ପୋଇର ଉଦ୍‌ଗମ**

ଯେ କୌଣସି ସାହିତ୍ୟିକ ଶୈଳୀର ମୂଳ ଅନୁସନ୍ଧାନ ସହଜ ବ୍ୟାପାର ନୁହେଁ। ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର କେତେକ ଛାନ୍ଦ ନାମକ ସ୍ୱୟଂସଂପୂର୍ଣ୍ଣ ଅବିଭକ୍ତ ରଚନା ମିଳେ, ଯାହାକୁ ଆଜିକାଲି 'ପଦିଆ' ନାମରେ ଅଭିହିତ କରାଯାଉଛି, ଯଥା :- ଛପନ ପଦିଆ, ଷହେ ନଦିଆ। ପଦିଆ ବିଶେଷରେ ମୋଟ ଯେତେଟି ପଦ ଥାଏ ତାହା ସେହି ସଂଖ୍ୟକ ପଦିଆ ବୋଲାଏ। ଅର୍ଥାତ୍ 'ଛପନ ପଦିଆ' ରଚନାର ପଦ ସଂଖ୍ୟା ଛପନ। ଶ୍ରୀ ନୀଳମଣି ମିଶ୍ର "ସଂସ୍କୃତର ପଦୀ ଶବ୍ଦରୁ 'ପୋଇ'ର ଅପଭ୍ରଂଶ ପରି ଉକ୍ତ ଶବ୍ଦରୁ 'ପଦିଆ' ହୋଇଥିବା ଅସମୀଚୀନ ନୁହେଁ" ବୋଲି ମତଦେଇ ପୋଇର ପୃଷ୍ଠଭୂମି ପ୍ରସଙ୍ଗରେ ପଦିଆଗୁଡ଼ିକ ସଂପର୍କରେ ଆଲୋଚନା ସମୀଚୀନ ବୋଲି କହିଛନ୍ତି। ପୋଇ ଓ ପଦିଆ ମଧ୍ୟରେ ଦୂର ସଂପର୍କ ମଧ୍ୟ ଥିବ ବୋଲି ମନେ ହୁଏ ନାହିଁ। ପୋଇର ଗଠନରେ ଏକ ବର୍ଗ ନିୟମ ରହିଛି, ଫଳତଃ ପଚିଶ ପୋଇର ଅର୍ଥ ପଚିଶଟି ପଚିଶ ପଦିଆ ପୋଇ 'କିନ୍ତୁ' ପଚିଶ ପଦିଆର ଅର୍ଥ ମାତ୍ର ପଚିଶଟି ପଦ ବିଶିଷ୍ଟ ଏକ ପୂର୍ଣ୍ଣାଙ୍ଗ ରଚନା। ପୁଣି, ପୋଇର ନିର୍ଦ୍ଦିଷ୍ଟ ବୃତ୍ତ ରହିଛି; କିନ୍ତୁ ପଦିଆ ଯେକୌଣସି ବୃତ୍ତରେ ରଚିତ ହୋଇପାରେ। ଅଧିକନ୍ତୁ, କାବ୍ୟିକ ଆଂଗିକ ଭାବରେ 'ପଦିଆ' ଆଖ୍ୟାର ପ୍ରଚଳନ ଆଧୁନିକ। ଯେଉଁ ରଚନାକୁ ଆଧୁନିକ ଆଲୋଚକମାନେ ଛପନ ପଦିଆ ଆଦି ନାମ ଦେଉଛନ୍ତି ତାହାର ପ୍ରକୃତ ନାମ ଛପନ ପଦିଆ ଛାନ୍ଦ"। ପଦିଆ ଏକ ବିଶେଷ୍ୟ ପଦ ନୁହେଁ, ଏହା ବିଶେଷଣ ପଦ ମାତ୍ର। ତେଣୁ ପୋଇ ଓ ପଦିଆ ମଧ୍ୟରେ ସଜାତୀୟତା ଅନୁମାନ କରିବାପାଇଁ ଯଥାର୍ଥତା ନାହିଁ।

ପୋଇର ଉଦ୍‌ଗମ ସଂପର୍କରେ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ମତ ହେଲା :- "ସଂସ୍କୃତ ପଦୀ ଶବ୍ଦ ପ୍ରାକୃତରେ ପଈ ହୋଇ ଓଡ଼ିଆରେ ପୋଇ ଆକାର ଧାରଣ କରିଅଛି। ଓଡ଼ିଆରେ ଛପୋଇ, ନପୋଇ ଥିଲା ପରି ପ୍ରାକୃତରେ ମଧ 'ଛପ୍ପଆ', 'ଣଉପଆ' ଦେଖାଯାଏ" (ଉତ୍କଳ ସାହିତ୍ୟ, ଅକ୍ଟୋବର ୧୯୦୩)। ଶ୍ରୀ ନୀଳମଣି ମିଶ୍ର ରାଜଗୁରୁଙ୍କ ନାମୋଲ୍ଲେଖ ନ କରି ସେହି କଥାହିଁ କହିଛନ୍ତି (ଓଡ଼ିଆ ପୋଇ ସାହିତ୍ୟ, ପୃ.୪)। ଓଡ଼ିଆ ପୋଇ ଶବ୍ଦ ସଂସ୍କୃତ ପଦୀ ଓ ପ୍ରାକୃତ ପଈ ଶବ୍ଦଜ ହେବା ଅନୁମାନ ଯୁକ୍ତିଯୁକ୍ତ। କିନ୍ତୁ, ପ୍ରାକୃତ ଛପ୍ପଆ (ଛପ୍ପଉ) ଓ ଣଉପଆର ଉପମା ଏ ପ୍ରସଙ୍ଗରେ ତାତ୍ପର୍ଯ୍ୟହୀନ। ଛପ୍ପଉ ପ୍ରାକୃତର ଏକ ବିଷମମାତ୍ରା ଛନ୍ଦ, ଏଥିରେ ଏକ ପଦରେ ଛଅଟି ପାଦ (ଅର୍ଥାତ୍ ଚରଣ) ଥିବାରୁ ଏହା ଛପ୍ପଉ' ବୋଲାଏ। ଣଉପଆ ଅନ୍ୟ ଏକ ବିଷମମାତ୍ରା ଛନ୍ଦ, ଏଥିରେ ଗୋଟିଏ ପଦରେ

ନଅଟି ପାଦ ଥିବାରୁ ଏହା ଣଉପଆ ବୋଲାଏ। ସଂସ୍କୃତ ପଦୀ କି ପ୍ରାକୃତ ପଈ ସହିତ ଏହାର ସଂପର୍କ ନାହିଁ; କାରଣ ପଦ ଓ ପାଦ ଏକ କଥା ନୁହେଁ। ପଦ ସର୍ବଦା ଏକାଧିକ ପାଦବିଶିଷ୍ଟ ହୁଏ। ଆଉ ମଧ୍ୟ ଉଲ୍ଲେଖନୀୟ ଯେ ଓଡ଼ିଆ ପୋଈ ଏକ ନିର୍ଦ୍ଦିଷ୍ଟ ଛନ୍ଦ; ରଚନାଟି ଛପୋଈ, ନପୋଈ ଆଦି ଯାହା କିଛି ହେଲେ ହେଁ ଛନ୍ଦଟି ଅଭିନ୍ନ ରହେ। ଛ ପୋଈରେ ଛଅଟି ଅଂଶ ଥାଏ, ଓ ପୋଈ ନାମରେ କଥିତ ପ୍ରତ୍ୟେକ ଅଂଶରେ ଛଅଟି ଲେଖା ପଦ (ଅର୍ଥାତ୍ ବାରଟି ପାଦ) ଥାଏ। ସେହିପରି ସବୁ ପୋଈରେ ବର୍ଗ ନିୟମରେ ପଦ ଥାଏ। ତେଣୁ, ପୋଈ ପଦୀ ଓ ପଈ ଶବ୍ଦଜ ହେବା ସମ୍ଭବ ହେଲେ ହେଁ ପ୍ରାକୃତ ଛପ୍ପଉ, ଣଉପଆ ଛନ୍ଦମାନଙ୍କ ସହିତ ତାହାର ତୁଳନା ପ୍ରାସଙ୍ଗିକ ନୁହେଁ।

ରାଜଗୁରୁ ମହାଶୟ ପାଦକେ ୨୨ ଅକ୍ଷର ପ୍ରସ୍ତାର-ବିଶିଷ୍ଟ ଗୌଣ ପୋଈ ବୃତ୍ତର ଉଦ୍‌ଗମ ସଂପର୍କରେ ଲେଖିଛନ୍ତି :- "ଓଡ଼ିଆ ପୋଈ ବୃତ୍ତ ବିଂଶତ୍ୟକ୍ଷର ଛନ୍ଦ ବଙ୍ଗଳାଶ୍ରୀରୁ ଆସିଥିଲା ପରି ବୋଧହୁଏ। ଉଭୟ ଛନ୍ଦର ଯତିପାତ ସମାନ - ପ୍ରତ୍ୟେକ ଷଷ୍ଠ, ଦ୍ୱାଦଶ ଓ ଶେଷାକ୍ଷର ଉପରେ। ପ୍ରଭେଦ ଏତିକି, ବଙ୍ଗଳାଶ୍ରୀର ଶେଷ ଆଠ ଅକ୍ଷର ବଦଳରେ ପୋଈରେ ଦଶ ଅକ୍ଷର ଦେଖାଯାଏ। ସୁତରାଂ ପୋଈ ବୃତ୍ତକୁ ବଙ୍ଗଳାଶ୍ରୀର ରୂପାନ୍ତର ବର୍ଦ୍ଧ୍ୱାକ୍ଷର ଛନ୍ଦ କହିଲେ ଅସଙ୍ଗତ ହେବ ନାହିଁ"। ପ୍ରାକୃତ ପଈ ଶବ୍ଦରୁ ଓଡ଼ିଆ ପୋଈ ଶବ୍ଦ ଜାତ ବୋଲି ନିର୍ଦ୍ଧାରଣ କରିବା ସଙ୍ଗେ ସଙ୍ଗେ ପୋଈ ବୃତ୍ତ ବଙ୍ଗଳାଶ୍ରୀରୁ ଜାତ ବୋଲି ମତ ଦେଲେ ପ୍ରାକୃତର ପୂର୍ବ ସ୍ତରରେ ବଙ୍ଗଳାଶ୍ରୀର ପ୍ରଚଳନକୁ ମାନିବାକୁ ପଡ଼ିବ। କିନ୍ତୁ, ପ୍ରାକୃତ ଛନ୍ଦ ମଧ୍ୟରେ ବଙ୍ଗଳାଶ୍ରୀ ଗଣ୍ୟ ନୁହେଁ, ଏହା ଏକ ଓଡ଼ିଆ ବୃତ୍ତ, ଯାହାକୁ ମୂଳରେ ବଙ୍ଗଳା ନାମକ ରାଗିଣୀ ଓ ଶ୍ରୀରାଗର ସଂଯୋଗରେ ଗାନ କରାଯାଉଥିବା ଅନୁମେୟ। ତେଣୁ ରାଜଗୁରୁ ମହାଶୟଙ୍କର ଏହି ସଂପୃକ୍ତ ଅନୁମାନ ଯୁକ୍ତିଯୁକ୍ତ ମନେହୁଏ ନାହିଁ।

ରାଜଗୁରୁ ମହାଶୟ ଚତୁର୍ବିଂଶତ୍ୟକ୍ଷର ମୁଖ୍ୟ ପୋଈବୃତ୍ତ ସଂପର୍କରେ ଅଲଗା ମତ ପୋଷଣ କରି ଲେଖିଛନ୍ତି :- "ଓଡ଼ିଆ ଚତୁର୍ବିଂଶତ୍ୟକ୍ଷର ପୋଈ ବା ଭୂପାଳ ଛନ୍ଦ ଓ ପ୍ରାକୃତ ଦୁର୍ମିଳା ଛନ୍ଦ ପ୍ରାୟ ସମାନ। ଉଭୟ ଛନ୍ଦରେ ଅଷ୍ଟମ, ଚତୁର୍ଦ୍ଦଶ ଓ ଶେଷାକ୍ଷର ଉପରେ ଯତି ପତିତ ହୁଏ"। ଅଥଚ ଓଡ଼ିଆ ତ୍ରୟୋବିଂଶତ୍ୟକ୍ଷର ଛନ୍ଦ ଖେମଟା ମତୁଆଳୀ ମଧ୍ୟ ସେହି ଦୁର୍ମିଳା ଛନ୍ଦରୁ ଆସିଥିବା ଅନୁମାନ ସେ ମହାଶୟ କରିଛନ୍ତି। ଯଦିଚ ଖେମଟା ମତୁଆଳୀର ଯତିପାତ ଷଷ୍ଠ, ଦ୍ୱାଦଶ, ଅଷ୍ଟାଦଶ ଓ ଶେଷାକ୍ଷର ଉପରେ ହୁଏ। ଓଡ଼ିଆ ଷଡ୍‌ବିଂଶତ୍ୟକ୍ଷର 'ବିଭାଷ ଗୁର୍ଜ୍ଜରୀ" ବୃତ୍ତ (ଯେଉଁଥିରେ ୮ମ, ୧୬ଶ ଓ ଶେଷାକ୍ଷର ଉପରେ ଯତିପାତ ହୁଏ ଓ ପ୍ରତ୍ୟେକ ପାଦ ଶେଷକୁ ଅଧିକ 'ହେ', 'ଯେ' ଆଦି ଅକ୍ଷର ଯୁକ୍ତ ଥାଏ) ମଧ୍ୟ ପୋଈ ସହିତ ସଂପୃକ୍ତ ବୋଲି ସେ ମତ ଦେଇଛନ୍ତି :- "ଉତ୍ତମରୂପେ ପରିଶୀଳନ କରି ଦେଖିଲେ ଓଡ଼ିଆ ବିଭାଷଗୁର୍ଜ୍ଜରୀ ଚତୁର୍ବିଂଶତ୍ୟକ୍ଷର ପୋଈ ବୃତ୍ତରୁ ଆସିଥିଲା ପରି ଅନୁମାନ ହୁଏ।

ପୋଇ ବୃତ୍ତରେ ଅଷ୍ଟମ, ଚତୁର୍ଦ୍ଦଶ ଓ ଶେଷାକ୍ଷର ଉପରେ ଯତି ପଡ଼େ; ବିପକ୍ଷ ଗୁର୍ଜ୍ଜରୀରେ ପ୍ରତ୍ୟେକ ଅଷ୍ଟମ, ଷୋଡ଼ଶ ଓ ଶେଷାକ୍ଷର ଉପରେ ଯତିପାତ ହୁଏ। ଅର୍ଥାତ୍ ପୋଇର ପ୍ରତ୍ୟେକ ଚରଣର ଦ୍ୱିତୀୟ ଦଳରେ ଦୁଇଗୋଟି ଅକ୍ଷର ମିଶା ହୋଇ ବିଭାଷଗୁର୍ଜ୍ଜରୀ ରାଗ ସୃଷ୍ଟ ହୋଇଅଛି'' (ରାଜଗୁରୁ ମହାଶୟ ଛନ୍ଦର ଉଦ୍‌ଗମ ପ୍ରସଂଗରେ ରାଗ କଥା କହିବାର ତାତ୍ପର୍ଯ୍ୟ ନାହିଁ)।

ରାଜଗୁରୁଙ୍କର ଏହି ସମସ୍ତ ପ୍ରକାର ଅନୁମାନରୁ ପୋଇବୃତ୍ତର ଉଦ୍‌ଗମ ସଂପର୍କରେ ତାଙ୍କର କୌଣସି ନିର୍ଦ୍ଦିଷ୍ଟ ମତ ଥିବା ସୂଚନା ମିଳୁ ନାହିଁ। ପୋଇ ରଚନାର ପୋଇ ବୃତ୍ତ ସହିତ ନିତ୍ୟ ସଂପର୍କ ବିଷୟ ସେ ମହାଶୟ ବିଚାରକୁ ନେଇ ନାହାନ୍ତି। କେବଳ ପ୍ରାକୃତର ବର୍ଣ୍ଣବୃତ୍ତ ଗୁଡ଼ିକ ସଙ୍ଗେ ଓଡ଼ିଆ ବୃତ୍ତଗୁଡ଼ିକର ପ୍ରସ୍ତାରଗତ ସମାନତା (ବା ନୈକଟ୍ୟ) ଦେଖି ପୋଇ ସହ ଦୁର୍ମିଳାର ସାମ୍ୟ ଉଲ୍ଲେଖ୍ୟ କରିଛନ୍ତି। ପୋଇ ପରି ଦୁର୍ମିଳା ମଧ୍ୟ ୨୪ ଅକ୍ଷର ପ୍ରସ୍ତାର ବିଶିଷ୍ଟ ଅଟେ ଓ ଉଭୟର ଯତିସ୍ଥାନ ପ୍ରତ୍ୟେକ ଚରଣର ୮ମ, ୧୪ଶ ଓ ୨୪ଶ ଅକ୍ଷର (ମୁଁ ପୂର୍ବରୁ ବର୍ଣ୍ଣାଇଛି ଯେ ମୁଖ୍ୟ ପୋଇରେ ୨ୟ ଓ ୨୦ଶ ଅକ୍ଷର ଠାରେ ମଧ୍ୟ ଯତି ପଡ଼େ, କିନ୍ତୁ ତାହା ସେ ସ୍ୱୀକାର କରିନାହାନ୍ତି)। ଦୁର୍ମିଳାରେ ଚରଣକେ ୨୪ ଅକ୍ଷର ଥାଇ ମୋଟ ୩୨ ମାତ୍ରା ରହେ (ଏଥିରେ ଦୁଇଟି ଏକ ମାତ୍ରିକ ଲଘୁ ଅକ୍ଷର ପରେ ଗୋଟିଏ କରି ଦ୍ୱିମାତ୍ରିକ ଗୁରୁ ଅକ୍ଷର ଥାଏ)। ଓଡ଼ିଆରେ ମାତ୍ରା ନିୟମ ଚଳୁ ନଥିବାରୁ ବର୍ଣ୍ଣଗଣନା ବିଚାରରୁ ପୋଇର ପ୍ରତ୍ୟେକ ପାଦ ଦୁର୍ମିଳାର ପ୍ରତ୍ୟେକ ପାଦ ସହ ସମାନ। କିନ୍ତୁ ପୋଇର ବିଶେଷତ୍ୱ ଦୁର୍ମିଳାରେ ଦୁର୍ମିଳ। ପ୍ରଥମତଃ, ପୋଇ ରଚନାର ବର୍ଗନିୟମ ଦୁର୍ମିଳାରେ ନାହିଁ। ଦୁର୍ମିଳା ଛନ୍ଦ ସର୍ବଦା ଚାରି ପାଦ ବିଶିଷ୍ଟ। ଦ୍ୱିତୀୟତଃ ପୋଇ ନାମକରଣ ସହିତ ଦୁର୍ମିଳାର ମେଳ ନାହିଁ। ତୃତୀୟତଃ ଗୌଣ ପୋଇ ଓ ମୁଖ୍ୟ ପୋଇ ମଧ୍ୟରେ ଯେଉଁ ସାମ୍ୟ ରହିଛି ତାହା ଅକ୍ଷର ପ୍ରସ୍ତାରକୁ ଧରି ବିଚାର କରାଯିବାରୁ ଧରି ହେଉନାହିଁ।

### ପ୍ରାକୃତ ଚଉପଇୟାରୁ ପୋଇ

ମୋର ବିବେଚନା ଅନୁସାରେ ପ୍ରାକୃତ ଚଉପଇ (ଚଉପଇଆ) ଛନ୍ଦର ଗଠନ ଓ ଲକ୍ଷଣଗତ ସାମଞ୍ଜସ୍ୟ ଓଡ଼ିଆ ପୋଇରେ ସର୍ବାଧିକ ମାତ୍ରାରେ ରହିଛି। ଏହି ପ୍ରାକୃତ ମାତ୍ରାଛନ୍ଦ ରଚନାର ନିୟମମାନ ପ୍ରାକୃତ ଓ ଅପଭ୍ରଂଶ ଛନ୍ଦ ଗ୍ରନ୍ଥ 'ପ୍ରାକୃତ ପୈଙ୍ଗଳମ' (ବାରାଣସୀର ପ୍ରାକୃତ ଟେକ୍‌ଷ୍ଟ ସୋସାଇଟି ଦ୍ୱାରା ପ୍ରକାଶିତ) ପୃ.୮୮ରେ ଦିଆଯାଇଛି।

ଚଉପଇଆ ଛଂଦା ଭଣଇ ଫଣିନ୍ଦା ଚଉମତ୍ତା ଗଣସତ୍ତା।<br>
ପାଏ ହି ସଗୁରୁ କରି ତୀସ ମତ୍ତ ଧରି ଚଉସଅ ଅସି ଅଣିରୁତ୍ତା।।<br>
ଚଉ ଛଂଦ ଲଝିଜ୍ଜଇ ଏକ୍କୁ ଣ କିଜ୍ଜଇ, କୋ ଜାଣଇ ଏହୁ ଭେଉ।<br>
କଇ ପିଂଗଲ ଭାସଇ ଛଂଦ ପଆସଇ ମିଅଣଅଣି ଅମିଅ ଏହୁ।।

ଚଉପଇୟାର ନିୟମ ବ୍ୟକ୍ତ କରୁଥିବା ଉଦ୍ଧୃତ ପଦଟି ମଧ୍ୟ ଚଉତାଇୟା ବୃତ୍ତରେ ରଚିତ। ଏହା ଚାରି ପଦ ବିଶିଷ୍ଟ ଚଉପଇଆର ଗୋଟିଏ ପଦ, ଏପରି ଚାରିଟି ପଦରେ ଚଉପଇୟା ହେବ। ଏଥିରେ କବି ଫଣୀନ୍ଦ୍ର ପିଙ୍ଗଳ କହିଛନ୍ତି : ଚଉପଇୟା ଛନ୍ଦର ପ୍ରତ୍ୟେକ ପାଦରେ ସାତୋଟି ଲେଖା ଚତୁର୍ମାତ୍ରିକ ଗଣ ଓ ପ୍ରାନ୍ତକୁ ଗୋଟିଏ ଦ୍ୱିମାତ୍ରିକ ଗୁରୁ ବର୍ଣ୍ଣ (ଏହି ପ୍ରକାରେ ମୋଟ ୭x୪+୨=୩୦ ମାତ୍ରା)। ଚଉପଇୟା ଚାରିପଦ ବିଶିଷ୍ଟ ଓ ପ୍ରତ୍ୟେକ ପଦରେ ୪ ପାଦ ଥିବା ହେତୁ ଚଉପଇୟାର ମୋଟ ମାତ୍ରା (୩୦x୪x୪=୪୮୦) ଚାରିଶହ ଅଶି ମାତ୍ରା। ଚଉପଇୟା ଏକକାଳୀନ ଚାରିଟି ପଦ ନେବ (ଚଉଛଂଦ ଲବିଜ୍ଜଇ)। ଗୋଟିଏ ଗୋଟିଏ ପଦ କରିବା ମନା (ଏକ୍କୁ ଣ କିଜ୍ଜଇ)। ଏହି ଭେଦ କିଏ ଜାଣେ। କବି ପିଙ୍ଗଳ କହନ୍ତି, ରେ ମୃଗନୟନି, ଏ ଛନ୍ଦ ଅମୃତତୁଲ୍ୟ ପ୍ରକାଶିତ ହୁଏ।

ଚଉପଇୟାକୁ ପ୍ରାକୃତ ପୈଙ୍ଗଳମ୍‌ର ବ୍ୟାଖ୍ୟାକାର ଲକ୍ଷ୍ମୀନାଥ ଭଟ୍ଟ 'ଚତୁଷ୍ପଦୀ', ଟୀକାକାର ଶ୍ରୀପତି 'ଚତୁଃପଦୀ' ଓ ଟୀକାକାର ବଂଶୀଧର 'ଚତୁଃପାଦିକା' ଭାବରେ ନାମିତ କରିଛନ୍ତି। ବାଣୀଭୂପତି ଚଉପଇୟାର ଯତିସ୍ଥାନ ପ୍ରତ୍ୟେକ ପାଦର ୧୦ମ, ୧୮ଶ ଓ ଶେଷ ମାତ୍ରା ଠାରେ ନିର୍ଦ୍ଦିଷ୍ଟ କରି ଲେଖିଛନ୍ତି :-

ଚୌପଇ ବୃତ୍ତଂ ତ୍ରିଶନ୍ମାତ୍ରଂ ଫଣିପତି ପିଙ୍ଗଳ ଗୀତଂ।<br>
କୁରୁ ସପ୍ତତୁରଙ୍ଗମପତି ହୃଦୟଙ୍ଗମମନ୍ତେ ଗୁରୁମୁପତୀତମ୍॥<br>
ଯଦି ଦଶ ବସୁରବିଭି ଶ୍ଛନ୍ଦୋବିଭିଃ କ୍ରିୟତେ ଯତିରଭିରାମଂ।<br>
ସପଦି ଶ୍ରବ ସମୟେ ନୃପତିଃ ଜିବୟେ ବିତରତି ସଂସଦିକାମମ॥

['ଦଶବସୁରବି'ର ଅର୍ଥ ୧୦,୮,୧୨ ତେଣୁ ଯତିସ୍ଥାନ ୧୦, ୧୮ ଓ ୩୦ ମାତ୍ରାଠାରେ]

ଓଡ଼ିଆ ପୋଇ ସହିତ ଚଉପଇୟାର ସାମଞ୍ଜସ୍ୟ ବହୁବିଧ :-

୧. ନାମ କରଣ- ଚଉପଇୟା ନାମର 'ପଇୟା' ପୋଇରେ ଲଭ୍ୟ। ଓଡ଼ିଆରେ ଏଯାବତ୍ ଚାରିପୋଇ ରଚିତ ହେବା କଥା ଜଣାନାହିଁ କିନ୍ତୁ ନିୟମାନୁସାରେ ଚାରିପୋଇ ଲେଖାହୋଇ ପାରିବ।

୨. ଗଠନ - ଚଉପଇୟାରେ ଚାରିଟି ଚରଣ ବା ପାଦରେ ଗୋଟିଏ ପଦ ଓ ଚାରିଟି ପଦରେ ଗୋଟିଏ ଚଉପଇୟା। ପୋଇର ପ୍ରତ୍ୟେକ ପୋଇ ବା ଛାନ୍ଦରେ ଯେତେଟି ପଦ (ପାଦନୁହେଁ), ତେତେଗୋଟି ପୋଇ ବା ଛାନ୍ଦରେ ସମଗ୍ର ପୋଇଟି ଗଢ଼ା ହୁଏ। ଚଉପଇୟାର ଅଂଶକୁ ଛନ୍ଦ କୁହାଗଲା ପରି ପୋଇର ଅଂଶକୁ ଛାନ୍ଦ କୁହାଯାଏ। ଉଭୟରେ ବର୍ଗ ନିୟମଟି ମୁଖ୍ୟ। ଶହ ଶହ ପ୍ରାକୃତ ଛନ୍ଦ ମଧ୍ୟରେ କେବଳ ଚଉପଇୟାରେ ଏହି ବର୍ଗ ନିୟମ ରହିଛି। ପୋଇର ବର୍ଗ ନିୟମଟି କେବଳ ଚାରି ସଂଖ୍ୟାରେ ନିର୍ଦ୍ଦିଷ୍ଟ ନ ରହି ଅନ୍ୟାନ୍ୟ ସଂଖ୍ୟାକୁ ମଧ୍ୟ ପ୍ରସାର ଲାଭ କରିଛି।

୩. ଯତିସ୍ଥାନ - ଚଉପଇୟା ଏକ ମାତ୍ରାବୃତ୍ତ। ଓଡ଼ିଆରେ ମାତ୍ରା ନିୟମ ଚଳେ ନାହିଁ। ଗାୟନ ବେଳେ ଯେକୌଣସି ଓଡ଼ିଆ ବର୍ଣ୍ଣ ଗୁରୁ (ଦ୍ୱିମାତ୍ରିକ) ବା

ଲଘୁ (ଏକମାତ୍ରିକ) ହୋଇପାରେ। ତେଣୁ, ପୋଇ ଓ ଚଉପଇୟା ମଧ୍ୟରେ ସାମଞ୍ଜସ୍ୟ ମାତ୍ରା ନିୟମରେ ରହି ନପାରେ। ହେଲେହେଁ ଯତିପାତ ନିୟମରେ ତାହା ଲକ୍ଷ୍ୟ କରାଯାଇପାରେ। ଆଲୋଚନାର ସୁବିଧା ପାଇଁ ଚଉପଇୟାର ଗୋଟିଏ ପଦ ଓ ପୋଇର ଗୋଟିଏ ପଦକୁ ଉଦ୍ଧାର କରାଯାଇପାରେ :-

ଢସୁ+ସୀସ୍ହିଗଂଗା+ଗୋରି ଅଧଂଗା+ଗିବ ପହିରିଅ+ପଣିହାରା।
କଣ୍+ଠଟ୍ଅବୀସା+ଫିଂଧଣ ଦୀସା+ସଂତାରିଅସଂ+ସାରା।।
କିରିଶାବଲି ଢଂଦା+ବଂଦିଅ ଚଂଦା+ଣଅଣହି ଅଣଲ ପୁ+ରଂତା।
ସୋ+ସଂପଅଦିଜ୍ଜଉ+ବହୁସୁହ କିଜ୍ଜଉ+ତୁମ୍ହଭବାଣୀ+କଂତା।।

ଚଉପଇୟାର ଯତିସ୍ଥାନ ପ୍ରତ୍ୟେକ ପାଦର ୧୦ମ, ୧୮ଶ ଓ ୩୦ଶ ମାତ୍ରା ବୋଲି ବାଣୀଭୂପତିଙ୍କ-ନିର୍ଣ୍ଣୟ ପୂର୍ବରୁ ଦିଆଯାଇଛି। ଗାୟନ ଦ୍ୱାରା ଲକ୍ଷ୍ୟ କରାଯାଇପାରେ ଯେ ଏହାର ପ୍ରତ୍ୟେକ ପାଦରେ ପ୍ରକୃତରେ ପାଞ୍ଚୋଟି ଦଳ (ତିନୋଟି ନୁହେଁ)। ପ୍ରଥମ ଦଳଟି ଦ୍ୱିମାତ୍ରିକ, ମଧ୍ୟର ତିନୋଟି ଦଳ ଅଷ୍ଟମାତ୍ରିକ ଓ ଶେଷ ଦଳଟି ଚତୁର୍ମାତ୍ରିକ। ଉଦ୍ଧୃତିରେ ଯୁକ୍ତ (+) ଚିହ୍ନ ଦେଇ ଦଳର ସନ୍ଧି ସ୍ଥାନକୁ ସୂଚାଇ ଦିଆଯାଇଛି। ଏଥିରେ ଦ୍ୱିତୀୟ ଦଳର ଶେଷ ବର୍ଣ୍ଣ ସହିତ ତୃତୀୟ ଦଳର ଶେଷ ବର୍ଣ୍ଣ ମଧ୍ୟରେ ମିତ୍ରତା ରହିଛି। ପିଙ୍ଗଳ ପ୍ରଣୀତ ପୂର୍ବୋଦ୍ଧୃତ 'ଚଉପଇଆ ଛଂଦା' ପଦରେ ମଧ୍ୟ ଏହି ମିତ୍ରତା ଲକ୍ଷ୍ୟ କରାଯାଇପାରେ (ତଥା ବାଣୀଭୂପତିଙ୍କର ପୂର୍ବୋଦ୍ଧୃତ 'ଚୌପଇୟା ବୃତ୍ତଂ' ପଦରେ)। ଏହାକୁ ମୁଖ୍ୟ ପୋଇ ବୃତ୍ତର ଏକ ପଦ ସହ ତୁଳନା କରାଯାଇପାରେ :-

ମୁଂଯେ+କରିଛି ଭରସା+ହେବ ମୋକ୍ଷବଶା+ବିପୁଳ ତ ମହା+ବାହୁବାହୁ।
ଦ୍ୱିଜ+ମୁକୁନ୍ଦର ମନେ+ଭୟ କି ଶମନେ+ସେ ବାହୁ ଆଶ୍ରିତେ+ଥାଉଥାଉ।।

ଏଥିରେ ମଧ୍ୟ ପ୍ରତ୍ୟେକ ପାଦରେ ପାଞ୍ଚୋଟି ଦଳ। ପ୍ରଥମ ଦଳ ଦୁଇ ବର୍ଣ୍ଣ ବିଶିଷ୍ଟ, ମଧ୍ୟର ତିନୋଟି ଦଳ ଛଅବର୍ଣ୍ଣ ବିଶିଷ୍ଟ ଓ ଶେଷ ଦଳଟି ଚାରିବର୍ଣ୍ଣ ବିଶିଷ୍ଟ। ଚଉପଇୟାର ପ୍ରଥମ ଓ ଶେଷ ଦଳର ମାତ୍ରା ସଂଖ୍ୟା ସହିତ ପୋଇର ପ୍ରଥମ ଓ ଶେଷ ଦଳର ବର୍ଣ୍ଣ ସଂଖ୍ୟା ସମାନ। ତାହାର ମଧ୍ୟର ତିନି ଦଳର ପ୍ରସାର ଚଉପଇୟାରେ ଆଠ ମାତ୍ରା ହେବା ସ୍ଥଳେ ପୋଇରେ ଛଅ ବର୍ଣ୍ଣ ବିଶିଷ୍ଟ। ପ୍ରାକୃତ ନିୟମରେ ଗୋଟିଏ ଚତୁର୍ମାତ୍ରିକ ଗଣ ସର୍ବଗୁରୁ ହେଲେ ଦୁଇ ବର୍ଣ୍ଣକୁ ନେଇ ଗଠିତ ହେବ (ନାମ କର୍ଣ୍ଣ) ଓ ସର୍ବ ଲଘୁ ହେଲେ ଚାରିବର୍ଣ୍ଣ ବିଶିଷ୍ଟ ହେବ (ନାମ ବିପ୍ର)। ଅନ୍ୟଥା ତାହା ସର୍ବଥା ତିନି ବର୍ଣ୍ଣ ବିଶିଷ୍ଟ ହେବ (ପ୍ରାନ୍ତଗୁରୁ ହେଲେ କରତଳ, ମଧ୍ୟଗୁରୁ ହେଲେ ପୟୋଧର ଓ ଆଦିଗୁରୁ ହେଲେ ବସୁଚରଣ)। ତେଣୁ ଗୋଟିଏ ଚତୁର୍ମାତ୍ରିକ ଗଣ ତ୍ରୈବର୍ଣ୍ଣିକ ହେବା ସଂଭାବନା ଅଧିକ। ଫଳତଃ, ମଧ୍ୟର ଦଳତ୍ରୟର ଆଠ ମାତ୍ରାର ପରିଣତି ଛଅ ବର୍ଣ୍ଣ ବିଶିଷ୍ଟ ହେବା ସ୍ୱାଭାବିକ। ଆଉ ମଧ୍ୟ ଲକ୍ଷ୍ୟ କରାଯାଇ ପାରେ ଯେ ଚଉପଇୟା ପରି ପୋଇର ଦ୍ୱିତୀୟ ଓ ତୃତୀୟ ଦଳର ଶେଷ ବର୍ଣ୍ଣ ମଧ୍ୟରେ ମିତ୍ରତା ରକ୍ଷା କରାଯାଇ ଥାଏ।

ଏହି ତ୍ରିବିଧ ସାମଞ୍ଜସ୍ୟ ଦୃଷ୍ଟେ ସ୍ଥିର କରାଯାଇପାରେ ଯେ ପ୍ରାକୃତର ଚଉପଇୟା ନିୟମର ଅନୁସରଣ ଦ୍ୱାରା ପୋଇ ରଚନାର ପ୍ରବର୍ତ୍ତନ କରାଯାଇଛି। କିନ୍ତୁ, ପୋଇ ଚଉପଇୟାର ପରିଣତି ବା ତହିଁରୁ ଉଦ୍ଭୂତ ବୋଲି କୁହାଯାଇ ନ ପାରେ। ପ୍ରାକୃତରେ ଚଉପଇୟାର ପ୍ରଚଳନ ଓଡ଼ିଆ ଆଦି ଦେଶଭାଷାରେ ସାହିତ୍ୟ ସୃଷ୍ଟିର ଖୁବ୍ ପୂର୍ବବର୍ତ୍ତୀ ଓ ପୋଇର ପ୍ରବର୍ତ୍ତନ କାଳ ଓଡ଼ିଆରେ ସାହିତ୍ୟ ସୃଷ୍ଟିର ଆଦ୍ୟକାଳୀନ ନୁହେଁ। ଏଣୁ ଅନୁମିତ ହେଉଛି ପ୍ରାକୃତ ଛନ୍ଦନିୟମ ଜାଣିଥିବା କୌଣସି ଓଡ଼ିଆ କବି ପ୍ରାକୃତର ଚଉପଇୟାର ଅନୁକରଣରେ, ହୁଏତ ଅଦ୍ୟାବଧି ଅନାବିଷ୍କୃତ ଚାରି ପୋଇ ଲେଖି, ଓଡ଼ିଆରେ ପୋଇ ରଚନାର ପ୍ରବର୍ତ୍ତନ କରିଥିଲେ।

ପୋଇର ସଂଖ୍ୟା

'ଓଡ଼ିଆ ପୋଇ ସାହିତ୍ୟ' (ପୃ.୧୪୭) ପୁସ୍ତକରେ ଶ୍ରୀ ନୀଳମଣି ମିଶ୍ର ଜଣାଇଛନ୍ତି : " ଏକୋଇଶଟି ପୋଇ କାବ୍ୟ ଓଡ଼ିଆରେ ରଚିତ ହୋଇଛି ବୋଲି ଗୋଟିଏ କିଂବଦନ୍ତୀ ଶୁଣିବାକୁ ମିଳେ"। ଆଶଙ୍କା ଜନ୍ମୁଛି ଯେ ଓଡ଼ିଆ ସାହିତ୍ୟରେ କେତୋଟି କାବ୍ୟ, ଚଉତିଶା, ମାହାତ୍ମ୍ୟ ବା ମାଳିକା ରଚିତ ହୋଇଛି ସେହି ବିଷୟରେ କିଂବଦନ୍ତୀ ଏଣିକି ଠିକଣା ଲୋକେ ଶୁଣିବାକୁ ପାଇବେ। ଗବେଷକ କିଂବଦନ୍ତୀକୁ ଆଶ୍ରୟ କଲେ ତଥ୍ୟକୁ ଅନାଦର କରିବ। ନିଜେ ଶ୍ରୀ ମିଶ୍ର ଉକ୍ତ ପୁସ୍ତକରେ ତେରଟି ପୋଇ ସମ୍ପର୍କରେ ଆଲୋଚନା କରିଛନ୍ତି ଓ ଜଣାଇଛନ୍ତି ଯେ ଡଃ ଜାନକୀବଲ୍ଲଭ ମହାନ୍ତି 'ଓଡ଼ିଆ ଗୀତିକାବ୍ୟ' ପୁସ୍ତକକରେ ଅଧିକ ସାତଗୋଟି ପୋଇର ସନ୍ଧାନ ଦେଇଛନ୍ତି। ଓଡ଼ିଆ ପୋଇ ସାହିତ୍ୟରେ ଆଲୋଚିତ ପୋଇ ଗୁଡ଼ିକ ହେଲେ :-

୧. ରାମଚନ୍ଦ୍ର ଭ୍ରମରବରଙ୍କ 'ଛଅପୋଇ'
୨. କାର୍ତ୍ତିକ ଦାସଙ୍କ 'ଛଅ ପୋଇ'
୩. ସତ୍ୟବାଦୀ ଦାସଙ୍କ 'ସାତ ପୋଇ'
୪. କଣ୍ଠ ଦାସଙ୍କ 'ନଅପୋଇ'
୫. ଯୁଗଭଞ୍ଜଙ୍କ 'ଦଶ ପୋଇ'
୬. ବ୍ରଜନାଥ ବଡ଼ଜେନାଙ୍କ 'ଦଶପୋଇ'
୭. ଯୁବଭଞ୍ଜଙ୍କ 'ବାରପୋଇ'
୮. ଗିରିଧର ଦାସଙ୍କ 'ବାରପୋଇ'
୯. ପ୍ରତାପରୁଦ୍ର (ସୋନପୁର ରାଜା)ଙ୍କ 'ଚଉଦପୋଇ'
୧୦. କୃଷ୍ଣକରଙ୍କ 'ପନ୍ଦରପୋଇ'
୧୧. ଉପେନ୍ଦ୍ର ଭଞ୍ଜଙ୍କ 'ଷୋଳ ପୋଇ'
୧୨. ଗୋବର୍ଦ୍ଧନ ଦାସଙ୍କ 'ପଚିଶ ପୋଇ' ଓ
୧୩. ଗୋବିନ୍ଦଙ୍କ 'ରସ ପୋଇ'।

'ରସପୋଇ'ର ନାମ ନାମକରଣ ଏକ ବ୍ୟତିକ୍ରମ ବୋଲି ଆପାତତଃ ମନେ ହୁଏ, କିନ୍ତୁ ପ୍ରକୃତରେ ନୁହେଁ। ରସ ସଂସ୍କୃତର ପରଂପରା ଅନୁସାରେ ଏକ ସଂଖ୍ୟାବାଚକ ଶବ୍ଦ। ଏହାର ଅର୍ଥ ନଅ (ପ୍ରସିଦ୍ଧ ଶୃଙ୍ଗାରାଦି ନବରସ ଯୋଗୁଁ)। ମୁଦ୍ରିତ ରସ ପୋଇରେ ଦଶଟି ପୋଇ (ଭାଗ) ରହିଛି, ତନ୍ମଧ୍ୟରୁ ୪ର୍ଥ ପୋଇରେ ୮ ପଦ, ୬ଷଷ ଓ ୧୦ମ ପୋଇରେ ୧୦ ପଦ ଲେଖାଏ ଓ ଅବଶିଷ୍ଟ ୭ଟି ପୋଇରେ ୯ପଦ ଲେଖାଏ ରହିଛି। କିନ୍ତୁ, ମ୍ୟୁଜିଅମ୍‌ର ପୋଥି ଭଣ୍ଡାରରେ ଥିବା ରସପୋଇଟି "ନଅ ଗୋଟି ପୋଇରେ ବିଭକ୍ତ ଓ ପ୍ରତ୍ୟେକ ପୋଇରେ ନଅଗୋଟି ଲେଖାଏଁ ପଦ ଥିବା ସ୍ଥଳେ କେବଳ ନବମ ପୋଇରେ ଦଶଗୋଟି ପଦ ରହିଛି" (ଓଡ଼ିଆ ପୋଇ ସାହିତ୍ୟ ପୃ. ୧୩୮)। ଅନୁମାନ କରାଯାଇପାରେ ଯେ କବି ଏହାକୁ ନଅପୋଇ ଭାବରେ ଲେଖିଥିଲେହେଁ ଅନୁଲେଖକମାନେ ଯୋଗବିଯୋଗ କରିବାରୁ ପୋଇ ଓ ପଦସଂଖ୍ୟା ମଧ୍ୟରେ ସମାନତା ନଷ୍ଟ ହୋଇଯାଇଛି। ମୁଦ୍ରିତ ରସପୋଇ ପୁସ୍ତକରେ ଏହା ଉପେନ୍ଦ୍ର ଭଞ୍ଜ କୃତ ବୋଲି ଭୁଲ୍‌ରେ ଲେଖାଅଛି କିନ୍ତୁ ତାହାର ପ୍ରତ୍ୟେକ ପୋଇର ଭଣିତି 'ଗୋବିନ୍ଦାଇ' ନାମରେ ହୋଇଥିବାରୁ ପୋଇଟିର ପିତୃତ୍ୱ ସଂପର୍କରେ ସନ୍ଦେହ ପାଇଁ ଅବକାଶ ନାହିଁ।

ଉପରେ ଦ୍ୱିତୀୟ ସ୍ଥାନରେ ଉଲ୍ଲିଖିତ କାର୍ତ୍ତିକ ଦାସଙ୍କ ଛଅପୋଇଟିକୁ ଶ୍ରୀ ନୀଳମଣି ମିଶ୍ର 'ଅଚ୍ୟୁତ ଗୋକୁଳନାୟକଙ୍କ ଛଅପୋଇ' ଆଖ୍ୟା ଦେଇ ଆଲୋଚନା କରିଛନ୍ତି। ଏହାର ପ୍ରଥମ ଓ ଦ୍ୱିତୀୟ ପୋଇରେ 'ଅଚ୍ୟୁତ ଦାସ' ନାମ ଓ ଅନ୍ୟ ଚାରିଟି ପୋଇ ତଥା ଅନ୍ତର୍ବର୍ତ୍ତୀ କେତେକ ଗୀତରେ 'କାର୍ତ୍ତିକ ଗୋକୁଳ ନାୟକ' ନାମ ଭଣିତ ହୋଇଛି। ଅଚ୍ୟୁତ ଗୋକୁଳ ନାୟକ ନାମ କୁତ୍ରାପି ନାହିଁ। ଏଥିରୁ ଅନୁମାନ ହେଉଛି ଯେ କବିଙ୍କ ନାମ କାର୍ତ୍ତିକ ଓ ସେ ଅଚ୍ୟୁତାନନ୍ଦ ଦାସଙ୍କ ଶିଷ୍ୟ ଥିଲେ। ଅଚ୍ୟୁତାନନ୍ଦ ଓ ତାଙ୍କ ଶିଷ୍ୟବର୍ଗ ଗୋପାଳମାନଙ୍କ ନେତା ଥିଲେ। ତେଣୁ କବି 'ଅଚ୍ୟୁତଦାସ' ତଥା 'ଗୋକୁଳ ନାୟକ'।

ଡଃ ଜାନକୀ ବଲ୍ଲଭ ମହାନ୍ତି ଓଡ଼ିଆ ଗୀତିକାବ୍ୟ ପୁସ୍ତକରେ ନିମ୍ନଲିଖିତ ଅଧିକ ସାତଗୋଟି ପୋଇର ସନ୍ଧାନ ଦେଇଛନ୍ତି :-

୧୪. ଅରକ୍ଷିତ କେଶାଙ୍କ ଛଅପୋଇ।
୧୫. ଦ୍ୱାରିକା ଦାସଙ୍କ ସାତପୋଇ।
୧୬. ସୁଦର୍ଶନ ଗୁରୁଙ୍କ ସାତପୋଇ।
୧୭. ବୈରାଗୀ ନନ୍ଦଙ୍କ ଆଠ ପୋଇ।
୧୮. ଭୁବନେଶ୍ୱର କବିଚନ୍ଦ୍ରଙ୍କ ଦଶ ପୋଇ।
୧୯. ସୁଦର୍ଶନ ଗୁରୁଙ୍କ ବାର ପୋଇ, ଓ
୨୦. ଦ୍ୱାରିକା ଦାସଙ୍କ ତେର ପୋଇ।

ଏତଦ୍‌ବ୍ୟତୀତ ଶ୍ରୀ ନୀଳମଣି ମିଶ୍ର ଶ୍ୟାମସୁନ୍ଦର ଦେବଙ୍କ ରଚିତ ଅନୁରାଗ କଳ୍ପଲତା ନାମକ କାବ୍ୟର ଆଠୋଟି ସ୍ତବକ (ବିଭାଗ)ରେ ଆଠଗୋଟି ଆଠପୋଇ (ପ୍ରତ୍ୟେକ ସ୍ତବକରେ ଗୋଟିଏ ଲେଖାରେ ଆଠପୋଇ)ଥିବା ସନ୍ଧାନ ଦେଇ ତତ୍ ସଂପର୍କରେ ଆଲୋଚନା ମଧ୍ୟ କରିଛନ୍ତି। କିନ୍ତୁ, ଏଗୁଡ଼ିକ ସ୍ୱୟଂ ସଂପୂର୍ଣ୍ଣ ରଚନା ନ ହୋଇ ଏକ କାବ୍ୟର ଅଂଶ ହୋଇଥିବାରୁ ପୋଇ ତାଲିକାରେ ଅନ୍ତର୍ଭୁକ୍ତ ହେବା କଥା ନୁହେଁ। କିନ୍ତୁ, ପୋଇ ସଂଖ୍ୟା ଏତିକିରେ ସୀମିତ ନୁହେଁ। ଓଡ଼ିଆରେ ଆହୁରି ଅନେକ ପୋଇ ଥିବା ନିଶ୍ଚିତ। ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସଂକଳିତ ଓଡ଼ିଆ ଲେଖକ ପରିଚୟ ପୁସ୍ତକରୁ ଜଣାଯାଏ ଯେ କବି ଦ୍ୱାରିକା ଦାସ ପୂର୍ବୋଲ୍ଲିଖିତ ସାତପୋଇ (ସଂ.୧୫) ଓ ତେର ପୋଇ (ସଂ.୨୦) ଛଡ଼ା ଆଉ ଦୁଇଟି ପୋଇ ଲେଖିଛନ୍ତି :-

୨୧. ଦ୍ୱାରିକା ଦାସଙ୍କ ଛଅପୋଇ,

୨୨. ଦ୍ୱାରିକା ଦାସଙ୍କ ନଅ ପୋଇ

ଉକ୍ତ ପୁସ୍ତକରୁ ଆଉ ମଧ୍ୟ ଜଣାଯାଏ ଯେ ଭ୍ରମରବର ଭଣିତ ସାତପୋଇ ଓ ଦଶ ପୋଇ ରହିଛି ଓ କବି ହାଡ଼ିବନ୍ଧୁ ଦାସ 'ତ୍ରିପୋଇ' ଲେଖିଛନ୍ତି। ତ୍ରିପୋଇ ନାମଟି କୌଣସି ପୋଇର ହୋଇଥିଲେ ତାହା ତିନିପୋଇ ହୁଅନ୍ତା। ତିନି ପୋଇ ହେଲେ ମାତ୍ର ନଅଟି ପଦ ବିଶିଷ୍ଟ ପୋଇ, ଏହା ସମୀଚୀନ ବୋଧ ହୁଏ ନାହିଁ। ତେଣୁ ତ୍ରିପୋଇର ଅସ୍ତିତ୍ୱକୁ ସ୍ୱୀକାର କରାଯାଉନାହିଁ। ଅନେକ ଆଲୋଚକ 'ନଅପୋଇ'ର କବି କଣ୍ଠଦାସ ଏକ 'ଛଅପୋଇ' ଲେଖିଥିବା ସନ୍ଧାନ ଦେଇଛନ୍ତି। ପ୍ରକାଶିତ ପୋଇ ଗୁଡ଼ିକ ମଧ୍ୟରେ ବୃହତ୍ତମ ହେଉଛି ଗୋବର୍ଦ୍ଧନ ପ୍ରଣୀତ ପଚିଶ ପୋଇ (ସଂ.୧୨)। ଅଙ୍ଗଦପଡ଼ିର କବି ଲକ୍ଷ୍ମୀଧର ଦାସଙ୍କର ଆଉ ଏକ ପଚିଶ ପୋଇ ଅପ୍ରକାଶିତ ଥିବା କେତେକ ଆଲୋଚକ କହନ୍ତି। କବି ଅଭିମନ୍ୟୁ ପଟ୍ଟନାୟକ 'ରାଧାକୃଷ୍ଣ ପୋଇ' ଲେଖିଥିବା କଥା ଜଣାଯାଏ। ଏହି ଗୋଟିଏ ପୋଇ ଯାହାର ନାମକରଣ ପୋଇର ସଂଖ୍ୟାକୁ ଧରି ନ ହୋଇ ବିଷୟବସ୍ତୁକୁ ଧରି ହୋଇଛି। ମୁଁ ଓଡ଼ିଆ ସାହିତ୍ୟର ଅଦ୍ୟାବଧି ଉପଲବ୍ଧ କ୍ଷୁଦ୍ରତମ ପୋଇ (ମୁକୁନ୍ଦ ଦାସଙ୍କ ପାଞ୍ଚପୋଇ)କୁ ସଂପାଦିତ କରି ବଂଶଧାରା ପତ୍ରିକାରେ (୧୯୭୭ର ସେପ୍ଟେମ୍ବର ସଂଖ୍ୟାରେ ପ୍ରକାଶିତ କରାଇଛି) ଏହି ପ୍ରକାରେ ପୋଇ ତାଲିକାରେ ଅନ୍ତର୍ଭୁକ୍ତ ହେବ :-

୨୩. ମୁକୁନ୍ଦ ଦାସଙ୍କ ପାଞ୍ଚପୋଇ,

୨୪. ଭ୍ରମରବରଙ୍କ ସାତପୋଇ,

୨୫. ଭ୍ରମରବରଙ୍କ ଦଶପୋଇ,

୨୬. କଣ୍ଠଦାସଙ୍କ ଛଅପୋଇ,

୨୭. ଲକ୍ଷ୍ମୀଧର ଦାସଙ୍କ ପଚିଶପୋଇ, ଓ

୨୮. ଅଭିମନ୍ୟୁ ପଟ୍ଟନାୟକଙ୍କ ରାଧାକୃଷ୍ଣ ପୋଇ।

ମୋର ବିଶ୍ୱାସ ଆହୁରି ଅନେକ ପୋଇ ରଚିତ ହୋଇଥିବ କିନ୍ତୁ ସେଗୁଡ଼ିକ ଲୋକଲୋଚନକୁ ଆସିପାରିନାହିଁ। ପୋଇର ମୋଟ ସଂଖ୍ୟାକୁ ୨୧ରେ ବା ଅନ୍ୟକୌଣସି ସଂଖ୍ୟାରେ ନିର୍ଦ୍ଦିଷ୍ଟ କରାଯାଇ ପାରିବ ନାହିଁ।

ଉପେନ୍ଦ୍ରଭଞ୍ଜ ତାଙ୍କ 'ବନ୍ଧୋଦୟ'ରେ ଦେଇଥିବା ସ୍ୱକୃତିଗୁଡ଼ିକର ବିବରଣ ମଧ୍ୟରେ 'ଛପୋଇ' ଶବ୍ଦ ରହିଛି। ଉପେନ୍ଦ୍ରଭଞ୍ଜଙ୍କ ଷୋଳପୋଇ (ସଂ.୧୧) ପ୍ରକାଶିତ। ଯୁବ (ଯୁଗ)ଭଞ୍ଜ ଭଣିତି ବହନ କରି ବାରପୋଇ (ସଂ.୭) ଓ ଦଶପୋଇ (ସଂ.୫) ମିଳୁଥିଲେ ହେଁ ଏ ଦୁଇର ପ୍ରକୃତ ରଚୟିତା ଉପେନ୍ଦ୍ରଭଞ୍ଜ ବୋଲି ଅନେକ ଅନୁମାନ କରନ୍ତି। ଏ ବିଷୟର ବିଶଦ ଆଲୋଚନା ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀ ଆଲୋଚନା ବେଳେ କରାଯାଇଛି। ଏହାବାଦ୍ ସେ 'ଛଅପୋଇ', 'ନ ପୋଇ' ଓ 'ରସପୋଇ' ଲେଖିଥିବା ସମ୍ଭବ ବୋଲି ଶ୍ରୀ ଗୌରୀକୁମାର ବ୍ରହ୍ମା ଲେଖିଛନ୍ତି (ଭଞ୍ଜ ଭୂମିକା)। ଉପେନ୍ଦ୍ରଭଞ୍ଜଙ୍କ ରଚନାବଳୀ ନିର୍ଣ୍ଣୟ ପ୍ରସଙ୍ଗରେ ଦେଖାଇ ଦିଆଯାଇଛି ଯେ ବନ୍ଧୋଦୟର 'ଛପୋଇ' ଏକ ଅପପାଠ ତେଣୁ ତାଙ୍କର ଛଅଗୋଟି ପୋଇ ରଚନା ଥିବାର ସମ୍ଭାବନା ନାହିଁ। ରସପୋଇ କବି ଗୋବିନ୍ଦଙ୍କ ରଚନା ଓ ଉପେନ୍ଦ୍ରଭଞ୍ଜଙ୍କ ପ୍ରଣୀତ 'ଛଅପୋଇ' ଓ 'ନ ପୋଇ'ର ଅସ୍ତିତ୍ୱ ପ୍ରମାଣିତ ହୋଇନାହିଁ।

**ପୋଇର ବିଷୟବସ୍ତୁ**

ଗୋଟିଏ ରଚନା 'ପୋଇ' ପଦବାଚ୍ୟ ହେବାପାଇଁ ତାହାର ତିନୋଟି ଲକ୍ଷଣ ଥିବା ଆବଶ୍ୟକ :- ୧. ତାହା (ପୂର୍ବାଲୋଚିତ ଡଣ୍ଡକ ଛଡ଼ା) ପୋଇ ବୃତ୍ତରେ ରଚିତ ହୋଇଥିବ ; ୨. ତାହା ପୋଇର ଗଠନ ନିୟମ ଅନୁଯାୟୀ ଲେଖା ହୋଇଥିବ ଓ ୩. ତାହା ଏକ ସ୍ୱୟଂସଂପୂର୍ଣ୍ଣ ରଚନା ହୋଇଥିବ।

ଓଡ଼ିଆ ପୋଇ ସାହିତ୍ୟରେ ଶ୍ରୀ ନୀଳମଣି ମିଶ୍ର କହିଛନ୍ତି ଯେ ସେଥିରେ ଅଧିକନ୍ତୁ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ବା ଚରିତ ରହିବା କଥା। ଓଡ଼ିଆର ଅନ୍ୟାନ୍ୟ ସାହିତ୍ୟିକ ଶୈଳୀ (ଯଥା:- ଚଉତିଶା, ଚଉପଦୀ, ଛାନ୍ଦ) କୌଣସି ନିର୍ଦ୍ଦିଷ୍ଟ ଚରିତ ଗର୍ଭକ ନ ହେଲେ ବି ଚଳେ, କିନ୍ତୁ ପୋଇ ପାଇଁ ଚରିତଟି କାହିଁକି ଆବଶ୍ୟକ ତାହାର କୌଣସି କାରଣ ଶ୍ରୀ ମିଶ୍ର ଦର୍ଶାଇ ନାହାନ୍ତି। ରାମଚନ୍ଦ୍ର ଭ୍ରମରବରଙ୍କ 'ଛଅପୋଇ' ପ୍ରସଙ୍ଗରେ ସେ ଲେଖିଛନ୍ତି :- କବି " ପୋଇ ଛନ୍ଦରେ ଲିଖିତ ଜଣାଣଟିକୁ 'ଜଣାଣ ଚଉତିଶା' ବା କୃଷ୍ଣଦାସଙ୍କ ଆର୍ତ୍ତତ୍ରାଣ ଚଉତିଶା ପରି କୌଣସି ନାମରେ ନାମିତ କରିଥିଲେ ଅଧିକ ଯୁକ୍ତିଯୁକ୍ତ ହୋଇଥାନ୍ତା। କାରଣ ଜଣେ ଦୀନ ଆର୍ତ୍ତଭକ୍ତ ନିଜର ଗୁହାରି ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ନିବେଦନ କରୁଥିବା ବିଷୟ ଏଥିରେ ବର୍ଣ୍ଣିତ ହୋଇଛି। କେବଳ ପ୍ରତି ଛଅଟି ପଦକୁ ଗୋଟିଏ ଗୋଟିଏ ପୋଇରେ ବିଭକ୍ତ କରିବା ବ୍ୟତୀତ ଏଥିରେ ଅନ୍ୟାନ୍ୟ ପୋଇରେ ବର୍ଣ୍ଣିତ କୌଣସି ବିଷୟର କିମ୍ବା କୌଣସି ବିଷୟବସ୍ତୁର ଏକାଂଶର ବର୍ଣ୍ଣନା ସୁଦ୍ଧା ନାହିଁ। କେବଳ ଚତୁର୍ବିଂଶାକ୍ଷର ବିଶିଷ୍ଟ ପଦସଂଯୋଜନା ବ୍ୟତୀତ ଭ୍ରମରବରଙ୍କ ଛପୋଇରେ ପୋଇ ନାମରେ ନାମିତ ଅନ୍ୟାନ୍ୟ ଖଣ୍ଡକାବ୍ୟର କୌଣସି

ଲକ୍ଷଣ ନାହିଁ। ପୁନଶ୍ଚ କବି ପୋଈଟିକୁ 'କ' ଆଦି ଚଉତିରିଶଟି ଅକ୍ଷରର ଆଦ୍ୟାନୁପ୍ରାସରେ ରଚନା କରିଥିବାରୁ ଏହା ଚଉତିଶା ନିୟମରେ ପଡ଼ିବା ଅଧିକ ସମୀଚୀନ''।

ଶ୍ରୀ ମିଶ୍ରଙ୍କ ଏପରି ମତ ''ପୋଈ''ର ତଥା ଚଉତିଶା ଆଦି ଅନ୍ୟାନ୍ୟ ସାହିତ୍ୟିକ ଆଂଗିକର ସ୍ୱରୂପ ଓ ଲକ୍ଷଣ ବୋଧ ପାଇଁ ସହାୟକ ନୁହେଁ। ଆଂଗିକ ଏକ ଆଧାର ମାତ୍ର, ଯାହାର ଆଧେୟ ଚରିତ ହୋଇପାରେ। ଆଧାର ବଦଳିଲେ ଆଧାରର ଚରିତ୍ର ବଦଳେ ନାହିଁ। ଚଷକରେ ମଦ୍ୟପାନ କରାଯାଏ କିନ୍ତୁ ସେଥିରେ ଫଳରସ କି ଜଳ ରହିଲେ ବା ତାହା ଶୂନ୍ୟ ରହିଲେ ତାହା ଚଷକ ହିଁ ହେବ। ରାମଚନ୍ଦ୍ରଙ୍କ ଛଅପୋଈ ପୋଈ ବୃତ୍ତରେ ରଚିତ ପୋଈର ଗଠନନିୟମାବଦ୍ଧ ସ୍ୱୟଂସଂପୂର୍ଣ୍ଣ ରଚନା। ଚରିତ ବର୍ଜିତ ବୋଲି ତାହା ପୋଈ ନ ହେବ କାହିଁକି ? ଶ୍ରୀ ମିଶ୍ର ଆଲୋଚନା କରିଥିବା ସତ୍ୟବାଦୀ ଦାସଙ୍କ 'ସାତ ପୋଈ' (ସଂ.୩)ରେ ମଧ୍ୟ କୌଣସି ଚରିତ ନାହିଁ। ରାମଚନ୍ଦ୍ରଙ୍କ ଛଅପୋଈ ପରି ବିଷ୍ଣୁଙ୍କ ମହିମା କୀର୍ତ୍ତନ ଏହି ସାତପୋଈର ଉପଜୀବ୍ୟ। ରାମଚନ୍ଦ୍ରଙ୍କ ଛଅ ପୋଈରେ ଚଉତିଶା ନିୟମରେ କ ଠାରୁ କ୍ଷ ବର୍ଣ୍ଣକୁ ପଦର ଆଦ୍ୟରେ ବ୍ୟବହାର କରାଯାଇଥିବା ସ୍ଥଳେ ସାତ ପୋଈରେ ଅ ଠାରୁ ଆରମ୍ଭ କରି ବର୍ଣ୍ଣମାଳାନୁକ୍ରମେ ଗୋଟିଏ ଗୋଟିଏ ବର୍ଣ୍ଣକୁ ପଦର ଆଦ୍ୟରେ ରଖି ୪୯ଟି ପଦ ମଧ୍ୟରେ ବିଷ୍ଣୁଙ୍କ ସ୍ତବ ଗାନ କରାଯାଇଛି। ଦ୍ୱାରିକା ଦାସଙ୍କ ଛଅପୋଈ (ସଂ.୨୧) ଓ ମୁକୁନ୍ଦ ଦାସଙ୍କ ପାଞ୍ଚପୋଈ (ସଂ.୨୩) ମଧ୍ୟ ସ୍ତୁତିସର୍ବସ୍ୱ ରଚନା। ଚଉପଦୀ, ଛାନ୍ଦ, ଚଉତିଶା ଆଦିରେ ସ୍ତୁତି ବା କୀର୍ତ୍ତନ ଲେଖା ହେବା ପରି ପୋଈରେ ମଧ୍ୟ ଲେଖା ହୋଇପାରେ। ପୋଈର କିଂବା ଚଉପଦୀ, ଚଉତିଶା ଆଦିର ଲକ୍ଷଣ ସହିତ ଚରିତର କୌଣସି ସଂପର୍କ ନାହିଁ।

ଅଧିକାଂଶ ପୋଈ (ଯଥା :- କାର୍ତ୍ତିକଙ୍କ ଛଅପୋଈ, କଣଦାସଙ୍କ ନଅପୋଈ, ଯୁଗଭଞ୍ଜଙ୍କ ଦଶ ପୋଈ, ଗୋବିନ୍ଦଙ୍କ ରସପୋଈ, ବ୍ରଜନାଥଙ୍କ ଦଶପୋଈ, ଯୁବଭଞ୍ଜଙ୍କ ବାରପୋଈ, ପ୍ରତାପରୁଦ୍ରଙ୍କ ଚଉଦପୋଈ, କୃଷ୍ଣକରଙ୍କ ପନ୍ଦରପୋଈ ଓ ଅଭିମନ୍ୟୁ ପଟ୍ଟନାୟକଙ୍କ ରାଧାକୃଷ୍ଣ ପୋଈ) କୃଷ୍ଣଲୀଳାକୁ ଉପଜୀବ୍ୟ କରି ରଚିତ, ବିଶେଷତଃ ରାଧାକୃଷ୍ଣ ପ୍ରେମ ଏଥିରେ ବର୍ଣ୍ଣିତ। କିନ୍ତୁ, ପୋଈ ହେବାପାଇଁ ଯେ ତହିଁରେ କୃଷ୍ଣଲୀଳା ଅବଶ୍ୟ ବର୍ଣ୍ଣିତ ହେବ; ଏପରି କିଛି କଥା ନାହିଁ। ଉପେନ୍ଦ୍ର ଭଞ୍ଜଙ୍କ ଷୋଳପୋଈ ଓ ଗୋବର୍ଦ୍ଧନଙ୍କ ପଚିଶ ପୋଈ ରାମଚରିତ ବିଷୟକ ହୋଇ ଯେପରି ପୋଈ ସ୍ତୁତିକୀର୍ତ୍ତନ ବିଶିଷ୍ଟ ପୋଈଗୁଡ଼ିକ ମଧ୍ୟ ସେହିପରି ପୋଈ।

**ରଚନା ବୈଚିତ୍ର୍ୟ**

ଶ୍ରୀ ନୀଳମଣି ମିଶ୍ରଙ୍କ ପୂର୍ବୋଦ୍ଧୃତ ଅଭିମତରେ ଆଉ ମଧ୍ୟ କୁହାଯାଇଛି ଯେ ଚଉତିଶା ନିୟମକୁ ପାଳିଲେ ପୋଈ ଚଉତିଶା ହୋଇଯାଏ, ତାହା ଆଉ ପୋଈ ପଦବାଚ୍ୟ ହୁଏ ନାହିଁ। ଏହାଏକ ମାମୁଲି କଥା ଯେ ଅନେକ ରଚନାରେ ଏକାଧିକ ଆଂଗିକ ଯୁଗପତ୍ ରହିଥାଏ। ପୋଈ ଏକ ଗଠନ ନିୟମାଧୀନ ଶୈଳୀ,

ଚଉତିଶା ଏକ ବର୍ଣ୍ଣନିୟମାଧୀନ ଶୈଳୀ। ଗୋଟିଏ ନିୟମ ପାଳନ କଲେ ଅନ୍ୟ ନିୟମକୁ ମଧ୍ୟ ପାଳି ହେବ। ଧରାଯାଉ ଚଉପଦୀ କଥା। ଚଉପଦୀ ମଧ୍ୟ ଏକ ଗଠନ ନିୟମାଶ୍ରିତ ଆଂଗିକ। ବହୁ କବି ଚଉପଦୀ ରଚନା କରିବା ବେଳେ ଚଉତିଶା ନିୟମକୁ ମଧ୍ୟ ଅନୁସରଣ କରିଛନ୍ତି। ଧନଞ୍ଜୟ ଭଞ୍ଜଙ୍କ ଚଉପଦୀ ଭୂଷଣ, ବଳଦେବ ରଥଙ୍କ ଚଉପଦୀ ରତ୍ନାକର ଓ ଚଉପଦୀ ଚନ୍ଦ୍ରୋଦୟ ଆଦି ବହୁ ରଚନାରେ ଚଉପଦୀ ନିୟମ ସାଙ୍ଗକୁ ଚଉତିଶା ନିୟମର ପାଳନ ରହିଛି। ତେବେ ବି ସେ ସବୁ ଚଉପଦୀ, ସବୁ କବି ନାମକରଣ ବେଳେ ସେଗୁଡ଼ିକୁ ଚଉତିଶା ବୋଲି ଅଭିହିତ କରିନାହାନ୍ତି। ଉପେନ୍ଦ୍ର ଭଞ୍ଜଙ୍କ 'ଛାନ୍ଦ ଭୂଷଣ'ରେ ଚଉତିଶା ନିୟମାଶ୍ରିତ ୩୪ଗୋଟି ଛାନ୍ଦ ରହିଛି। ଚଉତିଶା ନିୟମାଶ୍ରିତ ହେଲେ ହେଁ ଛାନ୍ଦ ଛାନ୍ଦ, ତେଣୁ ରଚନାଟି ଚଉତିଶା ଭୂଷଣ ନ ହୋଇ 'ଛାନ୍ଦଭୂଷଣ'। ଅତଏବ ରାମଚନ୍ଦ୍ର ଭ୍ରମରବର ପୋଇ ଭିତରେ ଚଉତିଶା ନିୟମକୁ ଭରି ଅଧିକ ବୈଚିତ୍ର୍ୟ ସଂପାଦନ କରିଛନ୍ତି। ବିଚାର୍ଯ୍ୟ ଯେ ଛଅ ପୋଇରେ ମୋଟ ୬+୬=୩୬ ପଦ। ଚଉତିଶା ପାଇଁ ୩୪ ପଦ ହିଁ ଆବଶ୍ୟକ। ଦୁଇ ନିୟମକୁ ଯୁଗପତ୍ ପାଳିଲେ ଏକେତ ପୋଇ ନିୟମକୁ ପୂରା ପାଳି ଚଉତିଶା ବାହାରେ ଅଧିକ ଦୁଇପଦକୁ ଖଞ୍ଜିବାକୁ ହେବ ନତୁବା ଚଉତିଶା ନିୟମକୁ ପୂରାପାଳି ଛଅଟି ଯାକ ପୋଇ (ଭାଗ)ରେ ଛଅ ଛଅ ପଦ ନ ରଖି ଦୁଇ ପଦ କମାଇବାକୁ ପଡ଼ିବ। ରାମଚନ୍ଦ୍ର ରଚନାଟିକୁ 'ଛଅ ପୋଇ ଚଉତିଶା' ବୋଲି ଅଭିହିତ କରିଥିଲେ ହେଁ ତାହା ପ୍ରକୃତ ଚଉତିଶା ନୁହେଁ, ଶୁଦ୍ଧ ପୋଇ। କାରଣ, କବି ପୋଇ ନିୟମ ଅକ୍ଷୁର୍ଣ୍ଣ ରଖି ଚଉତିଶା ବାହାରେ ଅଧିକ ଦୁଇପଦ ଯୋଡ଼ିଛନ୍ତି, ଯାହା ଫଳରେ ଚଉତିଶା ଛତିଶା ହୋଇପଡ଼ିଛି।

ରାମଚନ୍ଦ୍ରଙ୍କ ଛଅ ପୋଇ ବିବିଧ ଆଳଂକାରିକ ଛଟାରେ ରଚିତ। ଏହାର ପ୍ରଥମ ପୋଇରେ ଆଦ୍ୟ ଯମକ, ପ୍ରାନ୍ତ ଯମକ ଓ ମଧ୍ୟାନୁପ୍ରାସ ରହିଛି। ଦ୍ୱିତୀୟ ପୋଇରେ ମଧ୍ୟାନୁପ୍ରାସ ସହିତ ପ୍ରାନ୍ତ ଯମକ ରହିଛି। ତୃତୀୟ ପୋଇଟି ଅବନା (ଆକାରାଦି ବନାନ ହୀନ) ନିୟମାନୁସାରୀ ଓ ଏଥିରେ ମଧ୍ୟ ମଧ୍ୟାନୁପ୍ରାସ ରହିଛି। କବି ଚତୁର୍ଥ ଓ ପଞ୍ଚମ ପୋଇକୁ ଅନୁପ୍ରାସ ଓ ଶୃଙ୍ଖଳାଳଙ୍କାର ଯୁକ୍ତ କରି ରଚନା କରିଛନ୍ତି। ଷଷ୍ଠ ପୋଇରେ ମଧ୍ୟ ଯମକ, ପ୍ରାନ୍ତ ଯମକ ଓ ଛେକାନୁପ୍ରାସ ରହିଛି।

ସତ୍ୟବାଦୀଙ୍କ ସାତ ପୋଇ ମଧ୍ୟ ବର୍ଣ୍ଣମାଳାର କ୍ରମାନୁସାରୀ ବିଷ୍ଣୁଙ୍କ ସ୍ତୁତି। ସାତ ପୋଇରେ ମୋଟ ୭+୭=୪୯ ପଦ। ଓଡ଼ିଆରେ ମୋଟ ୫୦ ବର୍ଣ୍ଣ (ସ୍ୱର ୧୬, ବ୍ୟଞ୍ଜନ ୩୪)। କବି ଗୋଟିଏ ଗୋଟିଏ ପଦର ଉଭୟ ଚରଣ ଆରମ୍ଭରେ ଗୋଟିଏ ଗୋଟିଏ ବର୍ଣ୍ଣକୁ ବର୍ଣ୍ଣମାଳା କ୍ରମରେ ରଖି ସାତ ପୋଇ ରଚନା କରିଛନ୍ତି। କେବଳ ଗୋଟିଏ ପଦରେ ଦୁଇ ଚରଣର ଆରମ୍ଭରେ ଦୁଇଟି ବର୍ଣ୍ଣ ରଖି ୪୯ ପଦରେ ୫୦ ବର୍ଣ୍ଣକୁ ଖଞ୍ଜିଛନ୍ତି। କବି ପ୍ରଥମ ପୋଇରେ ଆଦ୍ୟ ଓ ପ୍ରାନ୍ତାନୁପ୍ରାସ, ଦ୍ୱିତୀୟ ପୋଇରେ ପ୍ରାନ୍ତଯମକ, ତୃତୀୟ ପୋଇରେ କେବଳ ଅବନା, ଚତୁର୍ଥ ପୋଇରେ

କେବଳ ବନା (ପ୍ରତ୍ୟେକ ଅକ୍ଷର ଆକାରାଦି ବନାନ ଯୁକ୍ତ), ପଞ୍ଚମ ପୋଇରେ ଆଦ୍ୟ ଯମକ, ଷଷ୍ଠ ପୋଇରେ ମଧ୍ୟ ଯମକ, ସପ୍ତମ ପୋଇରେ ଶୃଙ୍ଖଳା ଓ ଦଣ୍ଡକରେ ମାଳଯମକ ରଖିଛନ୍ତି।

ରାମଚନ୍ଦ୍ର ଓ ସତ୍ୟବାଦୀ ପୋଇ ପାଇଁ ଅକ୍ଷର ନିୟମକୁ ଅଧିକନ୍ତୁ ପାଳିବା ପରି ସୁଦର୍ଶନ ଗୁରୁ ଭିନ୍ନ ପ୍ରକାରର ଅକ୍ଷର ନିୟମ ଧରିଛନ୍ତି। ଗୋଟିଏ ନିର୍ଦ୍ଦିଷ୍ଟ ବର୍ଣ୍ଣକୁ ପ୍ରତ୍ୟେକ ଚରଣର ଆଦ୍ୟରେ ରଖି କାବ୍ୟକବିତା ଲେଖିବା ଏକ ସୁପ୍ରଚଳିତ ରୀତି (ବୈଦେହୀଶ ବିଳାସ, ସୁଭଦ୍ରା ପରିଣୟ, ରସକଲ୍ଲୋଳ ଆଦିରେ ଏହି ରୀତି ଅନୁସୃତ ହୋଇଛି)। ସୁଦର୍ଶନ ତାଙ୍କ ପୋଇଟିକୁ ସକାରାଦ୍ୟ ନିୟମରେ ବାନ୍ଧିଛନ୍ତି। ଉଲ୍ଲେଖନୀୟ ଯେ ସୁଦର୍ଶନ ନିଜର ନାମର ଆଦ୍ୟାକ୍ଷର ଓ ପୋଇର ନାମର ଆଦ୍ୟାକ୍ଷରକୁ ସାତ ପୋଇର ପ୍ରତ୍ୟେକ ଆଦ୍ୟାକ୍ଷର କରାଇଛନ୍ତି।

ଉପରେ ଆଲୋଚିତ ପୋଇ ଗୁଡ଼ିକରେ ଅନୁସୃତ ବର୍ଣ୍ଣନିୟମ ଚରଣର ଆରମ୍ଭରେ ରହିଛି। କିନ୍ତୁ, ଅରକ୍ଷିତ କେଶାଙ୍କ ଛଅପୋଇର ବର୍ଣ୍ଣନିୟମ ରହିଛି ଚରଣର ଶେଷରେ। ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି ଏହି ପୋଇଟି ବିଷୟରେ ଲେଖିଛନ୍ତି:- "ଅରକ୍ଷିତ କେଶାଙ୍କ ଛପୋଇରେ ଛ ଗୋଟି ଗୀତ ବିଚିତ୍ର ଶବ୍ଦାଳଙ୍କାର ଚାତୁରୀ ବିଳସିତ। ପ୍ରଥମ ଗୀତରେ ପ୍ରତ୍ୟେକ ଚରଣର ଶେଷରେ କ ବର୍ଣ୍ଣ, ଦ୍ୱିତୀୟ ଗୀତର ପ୍ରତ୍ୟେକ ଚରଣର ଶେଷରେ କା, ତୃତୀୟ ଗୀତର ପ୍ରତ୍ୟେକ ଚରଣର ଶେଷରେ କି, ଚତୁର୍ଥ ଗୀତର ପ୍ରତ୍ୟେକ ଚରଣର ଶେଷରେ କୁ, ପଞ୍ଚମ ଗୀତର ପ୍ରତ୍ୟେକ ଚରଣର ଶେଷରେ କେ ଓ ଷଷ୍ଠ ଗୀତର ପ୍ରତ୍ୟେକ ଚରଣର ଶେଷରେ କୈ ବର୍ଣ୍ଣ ପରିଲକ୍ଷିତ ହୁଏ" (ଓଡ଼ିଆ ଗୀତିକାବ୍ୟ, ପୃ.୨୧୦)। ମୁଁ ଏହି ପୋଇଟିକୁ ଦେଖି ନାହିଁ, ଡଃ ମହାନ୍ତି ସର୍ବତ୍ର ଗୀତ ଶବ୍ଦ ବ୍ୟବହାର କରୁଥିବାରୁ ତାହା କେବଳ ମାତ୍ର ଦୁଇ ପୋଇ ମଧ୍ୟଗତ ଦଣ୍ଡକକୁ ବୁଝାଉଛି କି ପୋଇକୁ ବୁଝାଉଛି ସ୍ପଷ୍ଟ ହେଉନାହିଁ।

ଅଧିକାଂଶ ପୋଇ ମୁଖ୍ୟ ପୋଇ ବୃତ୍ତରେ ରଚିତ। କଣ୍ଠ ଦାସଙ୍କ ନଅ ପୋଇ ଓ ଗୋବିନ୍ଦଙ୍କ ରସ ପୋଇ ଗୌଣ ପୋଇ ବୃତ୍ତରେ ରଚିତ। ଜାର୍ଜିକ ତାହାଙ୍କର ଛଅ ପୋଇକୁ ଆଂଶିକ ମୁଖ୍ୟ ପୋଇ ବୃତ୍ତରେ ଓ ଆଂଶିକ ଗୌଣ ପୋଇ ବୃତ୍ତରେ ରଚନା କରି ଏକ ବୈଚିତ୍ର୍ୟ ସମ୍ପାଦନ କରିଛନ୍ତି।

ଦେଖାଯାଉଛି ମଧ୍ୟଯୁଗର ଓଡ଼ିଆ ସାହିତ୍ୟର ସର୍ବବିଧ ଲକ୍ଷଣ ପୋଇ ରଚନା ଗୁଡ଼ିକରେ ଫୁଟି ଉଠୁଛି। ଏଥିରେ ରହିଛି ଚଉତିଶା ନିୟମ ସମେତ ବିବିଧ ବର୍ଣ୍ଣନିୟମ, ଅନୁପ୍ରାସ-ଯମକ-ଶୃଙ୍ଖଳାଦି ଶବ୍ଦାଳଂକାର, କୃଷ୍ଣ ଓ ରାମଙ୍କ ଚରିତ, ଭଜନ ଇତ୍ୟାଦି। ଏହି ଦୃଷ୍ଟିରୁ ଦେଖିଲେ ଏକ ସାହିତ୍ୟିକ ଆଂଗିକ ଭାବରେ ପୋଇ ସୁପ୍ରଚଳିତ ନ ହେଲେ ହେଁ ଗୁରୁତ୍ୱପୂର୍ଣ୍ଣ।



*ଏକାଦଶ ଅଧ୍ୟାୟ*

# ପ୍ରାଚୀନ ଓଡ଼ିଆ ସାହିତ୍ୟରେ ହାସ୍ୟ

ହାସ୍ୟ ପ୍ରସଙ୍ଗର ଆଲୋଚନା ପୂର୍ବରୁ ଦୁଇଟି କଥା ଚିନ୍ତନୀୟ। ପ୍ରଥମ କଥା ହେଲା ହାସ୍ୟ ସାମାଜିକ; ମଣିଷଙ୍କ ଗୋଷ୍ଠୀ ବିଶେଷ ମଧ୍ୟରେ ପ୍ରଚଳିତ ରୀତିନୀତି ଓ ବିଶ୍ୱାସର ଭୂମିରେ ତାହା ଉପୁଜେ। ସାହିତ୍ୟ ଦର୍ପଣର ବିଚାର ଅନୁସାରେ:- "ବିକୃତାକାର ବାଗ୍‌ବେଶାଚେଷ୍ଟାଦେି କୁତୁକାଦ୍ ଭବେତ ହାସ୍ୟୋ" (କୌତୁକ ଜନ୍ମାଇ ଆକାର, ବଚନ, ବେଶ, ଚେଷ୍ଟା ଆଦିକୁ ବିକୃତ କଲେ ହାସ୍ୟ ହୁଏ)। ଆକାର, ବଚନ, ବେଶ ଚେଷ୍ଟା ଆଦିର ଆଦର୍ଶ ରୂପ ମଣିଷଙ୍କ ଗୋଷ୍ଠୀବିଶେଷ ଦ୍ୱାରା ସ୍ୱୀକୃତି ପାଇଥାଏ। ଏହି ଆଦର୍ଶ ସେହି ଗୋଷ୍ଠୀର ସଂସ୍କୃତିର ଏକ ପ୍ରକାଶ, ଯାହା ସାଧାରଣ ଭାବରେ, ହେଉ ପଛେ ଧୀର ମନ୍ଥର ଗତିରେ, ବଦଳୁଥାଏ। ଏହି କାରଣରୁ ଅତୀତର ସାହିତ୍ୟକାର ତାହାର ପ୍ରତ୍ୟାଶିତ ସମକାଳୀନ ଶ୍ରୋତା/ପାଠକଙ୍କ ପାଇଁ ପରଷି ଥିବା ହାସ୍ୟ ଆଜିର ଶ୍ରୋତା/ପାଠକଙ୍କୁ ହସାଇପାରେ, ହସାଇ ନ ପାରେ ମଧ୍ୟ। ସେ ଯୁଗରେ ଯାହା ବିକୃତ ପଦବାଚ୍ୟ ଥିଲା ଆଜି ଆଦର୍ଶ ବଦଳି ଯାଇଥିବା ଯୋଗେ ବିକୃତ ହୋଇ ନପାରେ। ସାଂପ୍ରତିକ ପରିବର୍ତ୍ତିତ ସଂସ୍କୃତିର ପାଠକ ସମୟ-ଯାନରେ ଅତୀତକୁ ଯିବା ଭଳି ଅସାଧ ସାଧନ କରି ନ ପାରିଲେ ପ୍ରାଚୀନ ହାସ୍ୟର ସଂଦେହାତୀତ ମୂଲ୍ୟ ନିର୍ଦ୍ଧାରଣ କରି ପାରିବ ନାହିଁ। ପକ୍ଷାନ୍ତରେ, ଅତୀତର ସାହିତ୍ୟକାର ସ୍ଥଳବିଶେଷରେ ଯାହାକୁ ହାସ୍ୟର ନିଦର୍ଶନ ବୋଲି ଚିହ୍ନାଇଛି ତାହାକୁ ସାଂପ୍ରତିକ ଶ୍ରୋତା/ପାଠକ ହାସ୍ୟ ବୋଲି ମାନିବାକୁ କୁଣ୍ଠିତ ହୋଇପାରେ। ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇପାରେ:- ରସପଞ୍ଚକରେ ଉପେନ୍ଦ୍ରଭଞ୍ଜ ହାସ୍ୟର ନମୁନା ଦେବାକୁ ଯାଇ ଲେଖିଛନ୍ତି -

ରୋଷେ ନାସିକା ଶ୍ରବଣ ଛେଦନ୍ତେ ଲକ୍ଷ୍ମଣ ସୂର୍ପଣଖାର ମୁଖକୁ ଚାହିଁ।
ରସାନନ୍ଦିନୀ ସ୍ୱକରେ କର ମାରି ଖରେ ଉଚ୍ଚହାସେ ମଗ୍ନ ହେଲେ ତହିଁ।।

(ରକାର ବୋଲି ୨୨)।

*ଅର୍ଥାତ୍*, ଲକ୍ଷ୍ମଣ ରାଗି ଯାଇ ସୂର୍ପଣଖାର ନାକକାନ କାଟି ଦେବାରୁ ତାହାର କ୍ଷତବିକ୍ଷତ ମୁହଁକୁ ଦେଖି ସୀତା ଅବିଳମ୍ୱେ ତାଳି ମାରି ଖୁବ୍ ହସିଲେ। ଖଳନାୟକମାନେ ବିପକ୍ଷର ପୀଡ଼ା ଦେଖିଲେ ଅଟ୍ଟହାସ କରନ୍ତି। ଉପେନ୍ଦ୍ରଭଞ୍ଜ ଯଦି ସାଂପ୍ରତିକ ମୂଲ୍ୟବୋଧର

ପ୍ରତ୍ୟାଶା ରଖିଥାନ୍ତେ ତେବେ ସେ ସୀତାଙ୍କୁ ଉଚ୍ଚ ହାସରେ ମଗ୍ନ ନ କରି କ୍ରୁଗୁପ୍ସାରେ ବୁଡ଼ାଇଥାନ୍ତେ। ତେଣୁ ନିଃସନ୍ଦେହତଃ ହାସ୍ୟରସର ପହଞ୍ଚ ସାମାଜିକ ଚହଳି ଭିତରେ ଆବଦ୍ଧ, କାଳୋତ୍ତର ନୁହେଁ।

ଦ୍ୱିତୀୟ କଥା ହେଲା, ହାସ୍ୟର ସାମାଜିକତା ନିର୍ବିଶେଷରେ ତାହା ଶ୍ରୋତା/ପାଠକର ଚିତ୍ତମଣ୍ଡପରେ ହିଁ ଉଭା ହୁଏ। ଲେଖକ ହାସ୍ୟ ସୃଷ୍ଟି କରିବା ଉଦ୍ଦେଶ୍ୟରେ ବିଷୟ ବିଶେଷର ଅବତାରଣା କରି ନଥିଲେ ସୁଦ୍ଧା ତାହାର ଲେଖାରେ ଅସଂଗତି କି ମୂର୍ଖତା ଉଦ୍‌ଘାଟନ କରିବାରେ ଶ୍ରୋତା/ପାଠକ ଆମୋଦିତ ହୋଇପାରେ। ଏହି ପ୍ରକାରେ ହାସ୍ୟ ଶ୍ରୋତା/ପାଠକ ନିର୍ଭର ହେବା ଯୋଗୁଁ ବ୍ୟକ୍ତିଗତ ମଧ୍ୟ। ଅଶ୍ଳୀଳ ଭଣ୍ଡ ବକର କଥା ରିରଂସାର ଅନୁଭବ ଥିବା ଅଶିକ୍ଷିତ ଲୋକଙ୍କୁ କଳ୍ପନାରେ ସଂଭୋଗର ସଂତୋଷ ଦେଇ ହସାଏ କିନ୍ତୁ ଆଧୁନିକ ଶିଷ୍ଟଙ୍କୁ ହସାଇପାରେ ନାହିଁ। କୌଣସି ଜଉତିଷକୁ ଉପହାସ୍ୟ କରାଇଲେ ଅନ୍ୟମାନେ ହସି ପାରନ୍ତି କିନ୍ତୁ ଅନ୍ୟ ଜଣେ ଜଉତିଷ ହସିବ ନାହିଁ। ବାର୍ଦ୍ଧକ୍ୟକୁ ଉପହାସ୍ୟ କଲେ ବୁଢ଼ା ଶ୍ରୋତା/ପାଠକ ହସିବ ନାହିଁ, ଦୁଃଖିତ ହିଁ ହେବ। ଏହିପରି ସବୁ କଥା। ସାର୍ବଜନୀନ ହାସ୍ୟ ବୋଲି କିଛି ରହିନପାରେ, କାହାକୁ ଓଷ ତ କାହାକୁ ବିଷ। ସବୁ ହାସ୍ୟ ବ୍ୟକ୍ତି-ନିର୍ଭର ହେବା ସଙ୍ଗେ ସଙ୍ଗେ ପରିବର୍ତ୍ତନଶୀଳ ସାମାଜିକ କୃଷ୍ଟି ଭିତରେ ଆବଦ୍ଧ। ଅତୀତର ଅପରିଚିତ ସମାଜର ହାସ୍ୟର ଚର୍ଚ୍ଚା ପ୍ରସଙ୍ଗରେ ଦୁଇଟି ଯାକ କଥା ମନରେ ରଖିବା ଉଚିତ।

**ହାସ୍ୟରସର ଦୁଇ ଧାରା**

ଓଡ଼ିଆ ସାହିତ୍ୟର ମୂଳ ଉତ୍ସ ପଲ୍ଲୀରେ ଉଦ୍ଭୂତ, ପଲ୍ଲୀସମାଜ ପାଇଁ ଅଭିପ୍ରେତ ଓ ପଲ୍ଲୀରେ ଲାଳିତ। ଓଡ଼ିଆ ସାହିତ୍ୟର ଆଦର ପଲ୍ଲୀରେ ଓ ପଲ୍ଲୀସମାଜ ସହିତ ଘନିଷ୍ଠ ସଂପର୍କରେ ଆବଦ୍ଧ ନଗରର ପ୍ରାକୃତ ସମାଜରେ ପ୍ରସାରିତ ହେବାର ଅର୍ଦ୍ଧଶତାବ୍ଦୀ ପରେ ହିଁ ପରଂପରାକ୍ରମେ ସମୃଦ୍ଧ ସଂସ୍କୃତ ସାହିତ୍ୟର ଗ୍ରାହକତା କରୁଥିବା ମୁଖ୍ୟତଃ ନଗରବାସୀ ବିଦଗ୍ଧ ସମାଜ ସେଥିପ୍ରତି ଆଗ୍ରହାନ୍ୱିତ ହେଲା। ଫଳରେ ସୃଷ୍ଟି ହେଲା ଓଡ଼ିଆ ସାହିତ୍ୟର ଦ୍ୱିତୀୟ ଉତ୍ସ, ଯାହା ସଂସ୍କୃତ ପ୍ରେମୀ ଲୋକଙ୍କୁ ଆଶ୍ରୟ କରିଥିଲା ଓ ରାଜକୀୟ ପୃଷ୍ଠପୋଷକତା ପାଇ ପାରୁଥିଲା। ସାହିତ୍ୟର ସ୍ୱଭାବ, ମଣିଷର ସ୍ୱଭାବ ପରି, ତାହାର ସୃଷ୍ଟି ଓ ପରିବେଶ ଦ୍ୱାରା ପ୍ରଭାବିତ ହୁଏ। ପଲ୍ଲୀର ପୁରାଣସଭାରେ ପ୍ରଚାରିତ ଓଡ଼ିଆ ରାମାୟଣ, ମହାଭାରତ ସମେତ ପୁରାଣଗୁଡ଼ିକରେ ପରିବେଷିତ ହାସ୍ୟ ଓ ନଗରର ରାଜସଭାଦି ବିଦ୍ୱତ୍ ଗୋଷ୍ଠୀରେ ପ୍ରଚାରିତ କାବ୍ୟ, କବିତା ଆଦିରେ ସ୍ଥାନିତ ହାସ୍ୟ ମଧ୍ୟରେ ବେଶ୍ କିଛି ତାରତମ୍ୟ ରହିଛି। କାବ୍ୟଧାରାର ହାସ୍ୟ ମୋଟାମୋଟି ଭାବରେ ସଂସ୍କୃତ ସାହିତ୍ୟର ଛାଞ୍ଚରେ ଢଳା କିନ୍ତୁ ପୁରାଣ ଧାରାର ହାସ୍ୟରେ ଅଳଂକାର ଶାସ୍ତ୍ରର ଫରମାସ ବିଷୟରେ ସଚେତନତା ନ ଥାଏ। ଏହି କଥାଟି ପ୍ରତି ପ୍ରାଚୀନ ସାହିତ୍ୟର ଆଲୋଚକମାନେ ଦୃଷ୍ଟି ଦେଇନାହାନ୍ତି।

## ହାସ୍ୟରସର ପରଂପରା

ଏହି ପରିପ୍ରେକ୍ଷଣରେ ସାରଳାଦାସଙ୍କ ମହାଭାରତ ଅପେକ୍ଷା ପ୍ରାଚୀନତର ସିଦ୍ଧେଶ୍ୱର ଦାସ ଭଣିତି ଯୁକ୍ତ ବିଚିତ୍ର ରାମାୟଣର ହାସ୍ୟ ପରିବେଷଣ କୌଶଳ ବିଚାର୍ଯ୍ୟ। ଋଷି ବିଭାଣ୍ଡକଙ୍କ ଯୁବକ ପୁତ୍ର ଋଷ୍ୟଶୃଙ୍ଗ ବେଶ୍ୟାଙ୍କ ସଂସର୍ଗରେ ଆସି ଉଚ୍ଚାଟ ହୋଇ ପିତାଙ୍କୁ ନ ଜଣାଇ ଲୋମପାଦଙ୍କ ରାଜ୍ୟକୁ ଯାଇଥିବା ଆଖ୍ୟାନ ବାଲ୍ମୀକି ରାମାୟଣରେ ରହିଛି। ସିଦ୍ଧେଶ୍ୱର ଦାସ ଆଖ୍ୟାନଟିକୁ ଅଧିକ ପରିପୁଷ୍ଟ କରିଛନ୍ତି। ଋଷ୍ୟଶୃଙ୍ଗ ଜନ୍ମାବଧି କୌଣସି ନାରୀକୁ ଦେଖି ବି ନଥିଲେ। ଲୋମପାଦଙ୍କ ଦ୍ୱାରା ନିଯୁକ୍ତ ଜଣେ ଯୁବତୀ ବେଶ୍ୟା ଏହି ସରଳ ଋଷିପୁତ୍ରକୁ ଭଣ୍ଡାଇ, ତାହାର ଅଙ୍ଗରାଗ ଓ ସୁମିଷ୍ଟ ଖାଦ୍ୟକୁ ଶ୍ରେଷ୍ଠ ଯୋଗସାଧନାର ବିଭୂତି ଓ ନୈବେଦ୍ୟ ବୋଲି ବିଶ୍ୱାସ ଜନ୍ମାଇ, କାମକ୍ରୀଡ଼ାକୁ ସେହି ଯୋଗସାଧନା ବୋଲି ବୁଝାଇ ଆକୃଷ୍ଟ କରିଦେବାର ଚିତ୍ରଣ ବିଚିତ୍ର ରାମାୟଣରେ ବେଶ୍ ଆମୋଦକର। ବେଶ୍ୟାଟିଏ ଗୋଟିଏ ଅନଭିଜ୍ଞ ସରଳ ବିଶ୍ୱାସୀ ଯୁବକକୁ ଯୋଗମାର୍ଗ ବୋଲି କହି କାମାସକ୍ତ କରାଇବା ଓ ସାଧନା ବୋଲି ଜଣାଇ ସଂଗମ କରାଇବା ବର୍ଣ୍ଣନା ହାସ୍ୟକର। ଅନ୍ୟକୁ ବୋକା ବନାଇବାର ପରିଣାମ ଯଦି ଶ୍ରୋତା/ପାଠକର ସନ୍ତୋଷ ବିଧାନ କରିଥାଏ ତେବେ ପ୍ରତାରଣା ହାସ୍ୟୋଦ୍ରେକୀ ହୁଏ। ଅଲଂକାର ଶାସ୍ତ୍ରରେ ପ୍ରତାରଣା ହାସ୍ୟର କାରଣ ରୂପେ ପରିଗଣିତ ହୋଇନାହିଁ। କିନ୍ତୁ ପୁରାଣରେ ଓ ଲୋକକାହାଣୀରେ ହାସ୍ୟ ଜନ୍ମାଇବା ପାଇଁ ପ୍ରତାରଣାର ବ୍ୟବହାର ସୁପ୍ରଚୁର। ସମୁଦ୍ର ମନ୍ଥନ ପରେ ଅସୁରମାନେ ଠକି ହୋଇଯିବା, ଭସ୍ମାସୁରକୁ ନୃତ୍ୟ ଶିଖାଇବା ଆଳରେ ଭସ୍ମ କରିଦେବା, ହନୁମାନ 'ମଲାବେଳକୁ ସତ କହିବା' ଆଳରେ ଲଙ୍କାକୁ ପୋଡ଼ିଦେବା, ଭୀମ ନାରୀ ବେଶରେ କୀଚକ ପାଖକୁ ଯାଇ ତାହାକୁ ପ୍ରେମ କରିବା ଛଳରେ ବଧ କରିବା ଆଦି ଅନେକାନେକ ହାସ୍ୟକର ଆଖ୍ୟାନ ପୁରାଣରେ ରହିଛି। "ମିଁ ମିଁକା ମାଣିକରଜା" କାହାଣୀରେ ଛେଳିଟିଏ ବାଘକୁ ଠକିବା, ଠେକୁଆଟିଏ ସିଂହକୁ ଠକି କୂଅକୁ ଡିଆଁଇବା ଆଦି ବର୍ଣ୍ଣନା ଲୋକକାହାଣୀରେ ମିଳେ। ଏ ସବୁରେ ଦୁଷ୍ଟ ଚରିତ୍ରକୁ ବୋକା ବନାଇ ଶ୍ରୋତାଙ୍କୁ ହସାଇବା କୌଶଳର ପ୍ରୟୋଗ ରହିଛି। ଅନ୍ୟର ବୋକାମିର ବର୍ଣ୍ଣନା ଶୁଣିଲେ ଶ୍ରୋତା ନିଜକୁ ଚାଲାକ୍ ଚତୁର ସ୍ତରରେ ଥୋଇ ଆତ୍ମପ୍ରସାଦ ପାଏ, ଯାହାର ପରିଣାମ ହୁଏ ହାସ୍ୟ। ଶୁଦ୍ଧ ଓଲା, ପଣ୍ଡିତଂମନ୍ୟ, ଅର୍ଦ୍ଧପଣ୍ଡିତ ଆଦିଙ୍କ କାର୍ଯ୍ୟକଳାପ ଲୋକକାହାଣୀରେ ହାସ୍ୟ ଜନ୍ମାଏ। ସାହିତ୍ୟରେ ଅର୍ବାଚୀନ 'ଠକପୁରାଣ' ପର୍ଯ୍ୟନ୍ତ ଅନ୍ୟକୁ ଭଣ୍ଡିବା ଦ୍ୱାରା ସୃଷ୍ଟି କରାଯାଇଛି। କିନ୍ତୁ କାବ୍ୟ ସାହିତ୍ୟରେ ଏହି ବିଶିଷ୍ଟ କୌଶଳରେ ପ୍ରୟୋଗ ହୋଇନାହିଁ।

କେହି କେହି ଆଲୋଚକ ବ୍ରଜନାଥ ବଡ଼ଜେନାଙ୍କ 'ଚତୁର ବିନୋଦ' ପୂର୍ବରୁ ଓଡ଼ିଆ ସାହିତ୍ୟରେ ହାସ୍ୟରସର ପରଂପରା ନଥିଲା ବୋଲି କହିଛନ୍ତି

(ଦ୍ରଷ୍ଟବ୍ୟ :- ଡଃ ଦାସରଥି ଦାସଙ୍କ 'ସାହିତ୍ୟ ସନ୍ଧାନ' ପୃ. ୧୬୮)। ନିରୋଳ ଭାବରେ ହାସ୍ୟଗର୍ଭକ ରଚନା ଚତୁର ବିନୋଦର ହାସ ବିନୋଦ ଭାଗ ପୂର୍ବରୁ ନଥିଲେ ହେଁ ଅନ୍ୟାନ୍ୟ ରସ ସହିତ ମିଳାମିଶା ହୋଇଥିବା ହାସ୍ୟର ପ୍ରକାଶ ଅନେକତ୍ର ରହିଛି। ମୁଁ ସଂକଳନ କରିଥିବା 'ପ୍ରାଚୀନ ହାସ୍ୟ ସମୁଚ୍ଚୟ' ଗ୍ରନ୍ଥରେ ଖ୍ରୀ. ୧୫ଶରୁ ଆରମ୍ଭ କରି ୧୯ଶ ଶତାବ୍ଦୀ ମଧ୍ୟରେ ରଚିତ ଅନେକ ହାସ୍ୟକର ରଚନାକୁ ସ୍ଥାନିତ କରିଛି। ତନ୍ମଧ୍ୟରୁ ଅଧିକାଂଶ 'ଚତୁରବିନୋଦ' ଅପେକ୍ଷା ପ୍ରାଚୀନତର ରଚନା।

**ସାରଳାଦାସଙ୍କ ହାସ୍ୟ**

ଓଡ଼ିଆରେ ହାସ୍ୟରସର ପରଂପରାକୁ ସାରଳାଦାସଙ୍କ ଦାନର ବିଶେଷତା ଅନେକ। ତାଙ୍କର ଏକ ବିରଳ ବିଶେଷତା ହେଲା ସେ ହାସ୍ୟକୁ ମହାଭାରତର ଚରିତ୍ର ବିଶେଷଙ୍କର ଆଚରଣରେ ପରିଣତ କରିଛନ୍ତି। ତାଙ୍କର କଳହଖୋର, ଲଗାଲୁଟା ଧୁରନ୍ଧର, ଭଣ୍ଡନ ପାରଙ୍ଗମ ନାରଦ ଚରିତ୍ରଟି ଏହାର ଉଦାହରଣ। ନାରଦଙ୍କ ଭଣ୍ଡାମିର ପରିଣାମ ସର୍ବଦା ଶ୍ରୋତା/ପାଠକଙ୍କ ସନ୍ତୋଷ ପ୍ରଦ ହେଉଥିବାରୁ ନାରଦ ଏକ ହାସ୍ୟକାରୀ ଚରିତ୍ର। ନାରଦଙ୍କ ହାସ୍ୟର ମୂଲ୍ୟକୁ ତୁଙ୍ଗିମାକୁ ଉଠାଇ ସାରଳାଦାସ କହିଛନ୍ତି ଯେ ଅନନ୍ୟ ଭାବରେ ଭଣ୍ଡପଣ କରି ହିଁ ନାରଦ ଭଗବତ୍ ସିଦ୍ଧି ପାଇଛନ୍ତି। ସାରଳାଦାସଙ୍କୁ ମାନିଲେ ଭକ୍ତି ଆଦି ବିବିଧ ଯୋଗମାର୍ଗ ପରି ଭଣ୍ଡାମି ମଧ୍ୟ ଏକ ସିଦ୍ଧିର ମାର୍ଗ ଓ ନାରଦ ଭଣ୍ଡାମିର ସାଧକ ଓ ସିଦ୍ଧ। ହାସ୍ୟ ବିଷୟରେ ସାରଳାଦାସଙ୍କର ଏପରି ବିଲକ୍ଷଣ ବିଚାର ଏକାନ୍ତ ନିଜସ୍ୱ ଓ ବିସ୍ମୟକର। ସେ ମଧ୍ୟପର୍ବ (ଆର୍ତ୍ତବଲ୍ଲଭ ମହାନ୍ତି ସଂପାଦିତ, ପୃ. ୩୪୮-୪୯) ରେ ନାରଦଙ୍କ ବର୍ଣ୍ଣନା ଏହିପରି ଦେଇଛନ୍ତି :-

କେଶବାସ ମୁକୁଳା କରିଣ ଉଲଗ୍ନ ଯେ ଶାୟୀ।
ଭ୍ରୂକୁଟୀ ନୃତ୍ୟକୁ ବକ୍ର ନୟନରେ ଚାହିଁ॥
ଭଣ୍ଡଗୀତ ଗାଇଣ ତୁ ଖତାଇଣ ନାଚି।
ଜିଭ୍ୟା ହଲାଇଣ ତୁ ଉପର ହାଥ କରି ଯାଚି॥
ଡକା ହକା କରିଣ ପୁଣ କ୍ଷଣକେ ପାରୁ ବୋବି।
ଭଣ୍ଡତାଣ୍ଡବ କରି ତୁ ଅଣାକାର ପୁରୁଷ ସେବି॥

x x x

ଭଣ୍ଡପଣ ଦେଖିଣ ସେ କୁତୂହୋଳ ପୁରୁଷ।
କୁତୂହୋଳେ ମହାତମା ହୋଇଲାକ ବଶ॥
ଅତିଅନ୍ତ ତପୀ ତୁ ଅଣାକାର ସାଧି।
ମହାଭଣ୍ଡ ପଣେ ତୁ କାର୍ଯ୍ୟ କଲୁ ସିଦ୍ଧି॥.

x x x

ଯଦ୍ୟପି ଅମୃତ ଯୋଗାଡ଼ ତୋତେ ହୋଇବ ପ୍ରାପତି।
କଳି ନ ପାଇଲେ ତୁହି ଯେ ନୋହିବୁ ତ୍ରିପୁତି।।
ଭଣ୍ଡପଣେ ତୋଷ କଲୁ ସବୁଙ୍କରି ଚିତ୍ତ।
ନନ୍ଦନଙ୍କ ଉପୁଜାଇଲୁ ତୁ ତାଣ୍ଡବ ନୃତ୍ୟଗୀତ।।
ଅମାର୍ଗ-ତପେ ନାଥ ସୁଦ୍ଧା କଲା ତୋତେ।
କଳିଦ୍ୱନ୍ଦେ ବ୍ରତିଅଛୁ ତିନିଯୁଗ ପରିଯନ୍ତେ।।

ନାରଦଙ୍କ ଅଣାକାର ସାଧନା ହେଉଛି ତାଙ୍କର ଭଣ୍ଡପଣ। ଏହି ଭଣ୍ଡପଣ ଦ୍ୱାରା ସମସ୍ତଙ୍କୁ ସନ୍ତୁଷ୍ଟ କରାଇଥିବା ଓ କୌତୁକଜାତ କରାଉଥିବା ଦାବିରୁ ସନ୍ଦେହ ରହୁନାହିଁ ଯେ ସାରଳାଦାସ ହାସ୍ୟସୃଷ୍ଟି ପାଇଁ ନାରଦ ଚରିତ୍ରକୁ ରୂପାନ୍ତରିତ କରିଛନ୍ତି। କଳହ ସହିତ ସଂପୃକ୍ତ ନ ହେବା ଲୋକଙ୍କୁ କଳହର ପରିଣାମ ପ୍ରତିକୂଳ ନ ହେଲେ କଳହଅ କୁଅ୍ଯ/ଦର୍ଶନ ସୁଖ ଦିଏ।

ହାସ୍ୟ ଜନ୍ମାଇବା ପାଇଁ କଳହର ଉପସ୍ଥାପନ ନାଟକାଦିରେ ବିଶେଷ ଭାବରେ ହୁଏ। ନାରଦ କଳହ ବୀଜ ବୁଣି କିପରି ହାସ୍ୟ ସୃଷ୍ଟି କରନ୍ତି ତାହା ଦାଣ୍ଡନାଟିଆ ନାଟରେ ବିଭିନ୍ନ 'ହରଣ' (ଏଗୁଡ଼ିକର ଆଦି ସ୍ରଷ୍ଟା ସାରଳାଦାସ) ପରିବେଷଣ ଦର୍ଶକଙ୍କ ଉପରେ ପଡ଼ିବା ପ୍ରଭାବରୁ ଜାଣି ହୁଏ। କଳହ ବର୍ଣ୍ଣନା ମଧ୍ୟରେ ହାସ୍ୟସୃଷ୍ଟିର ଦୃଷ୍ଟାନ୍ତରୂପେ ସାରଳାଦାସଙ୍କ ମହାଭାରତର ମଧ୍ୟପର୍ବର ଲକ୍ଷ୍ମୀ-ପାର୍ବତୀ ବୋଲାବୋଲି ଓ ସଭାପର୍ବର ହିଡ଼ିମ୍ବିକୀ ଓ ଦ୍ରୌପଦୀ ମଧ୍ୟର ଧୁଇ ଯୋଉତୁଣୀ କଳି ଉଲ୍ଲେଖନୀୟ।

ସାରଳାଦାସ ଭୀମ ଚରିତ୍ରଟିକୁ ମଧ୍ୟ ସମସ୍ତଙ୍କ ହାସ୍ୟୋଦ୍ଦୀପକ କରଛନ୍ତି। ଭୀମଙ୍କ ବପୁ ମୋଟାସୋଟା। (ମୋଟା ଲୋକମାନେ ସାଧାରଣତଃ ହାସ୍ୟରସିକ ଓ ହାସ୍ୟଜନକ)। ସେ ଉଦରମ୍ଭରି, ହୁଣ୍ଡା, ଅଶାଳୀନ, ଅପରିଣାମଦର୍ଶୀ ଓ ବିବାଦ କରିବାକୁ ସବୁବେଳେ ହମହମ ଯଦିଚ ସେ ଯୁଦ୍ଧରେ ପଶିଲେ କେବେହେଲେ ଜିଣିପାରନ୍ତି ନାହିଁ। ମହାଭାରତର ବହୁ ହାସ୍ୟକର ଘଟନାରେ ଭୀମଙ୍କର ପ୍ରମୁଖ ଭୂମିକା ଥାଏ। ବକାସୁର ବଧ ଆଖ୍ୟାନରେ ଭୀମଙ୍କର ପେଟୁ ସ୍ୱଭାବ, ଗଣ୍ଡକୀ ନଦୀର ଶାଳଗ୍ରାମ ଶିଳାଗୁଡ଼ିକୁ ନିଜ ଗୋଡ଼ରେ ଲାତମାରି କ୍ରୀଡ଼ା କରିବା ଆଖ୍ୟାନରେ ତାଙ୍କର ହୁଣ୍ଡାପଣ, ଯଜ୍ଞ ପାଇଁ ବ୍ରାହ୍ମଣ ଖୋଜା ଆଖ୍ୟାନରେ ତାଙ୍କର କିଂକର୍ତ୍ତବ୍ୟବିମୂଢ଼ତା ଓ ଅପ୍ରତିଷ୍ଠା ଭୂମିକୁ ଯାଇ ଔଦ୍ଧତ୍ୟ ପ୍ରକାଶ କରିବା ଆଖ୍ୟାନରେ ତାଙ୍କର ଦୁଷ୍ଟ ଅବୋଲକରାପଣ ଶ୍ରୋତା/ ପାଠକଙ୍କୁ ଆହ୍ଲାଦିତ କରାଇବା ଉଦ୍ଦେଶ୍ୟରେ ହିଁ ପରିକଳ୍ପିତ। ଭୀମ ଚରିତ୍ରର ଏତାଦୃଶ ବୈଚିତ୍ର୍ୟକୁ ହାସ୍ୟ ଦୃଷ୍ଟିରୁ ଦେଖି ପାରିନଥିବା ଯୋଗୁଁ ହିଁ ଗୋପୀନାଥ ନନ୍ଦ ଶର୍ମା ତାଙ୍କର ଶ୍ରୀଭାରତ ଦର୍ପଣ (ପୃ.୩୩)ରେ ସାରଳାଦାସଙ୍କ ଉପରେ କଷାଘାତ କରି ଲେଖିଛନ୍ତି :-

"ସାରଳାଦାସ ଅନେକ ସ୍ଥଳରେ ବହୁ ବିଷୟରେ ଭୀମସେନଙ୍କୁ
ମନ୍ଦବୁଦ୍ଧି ଦୁର୍ମତିପରାୟଣ କରି ଦୁର୍ଭାବନାରେ କଦର୍ଯ୍ୟ କରି
ଅଛନ୍ତି। ଭୀମଙ୍କ ପ୍ରତି ଏପରି ଦୁର୍ଭାବନାର ଆଭାସ ସୁଦ୍ଧା ମୂଳ
ଗ୍ରନ୍ଥରେ ନାହିଁ। କି ପ୍ରମାଣ ପାଇ ଅବା ଭୀମଙ୍କ ପ୍ରକୃତି ଚିତ୍ରଣ
ଅନେକ ସ୍ଥଳରେ ଦୁର୍ମତିବିଲକ୍ଷଣ ଓ ବାଳସ୍ୱଭାବସମ୍ପନ୍ନ
କରିଦେଇ ଅଛନ୍ତି, ବୁଝାଯାଉ ନାହିଁ।"

ପୁରାଣ ସଭାରେ ସାରଳାଦାସଙ୍କ ମହାଭାରତ ବୋଲା ହେବା ବେଳେ ଭୀମଙ୍କ ଆଚରଣର ଏତାଦୃଶ ବର୍ଣ୍ଣନା ଯେ ସାଧାରଣ ଜନତାଙ୍କୁ ଖୁବ୍ ହସାଏ ତାହା ମୁଁ ପ୍ରତ୍ୟକ୍ଷ କରିଛି। ଅନୁମାନ କରୁଛି, ମାଲ ଆଦି ଭୁଶୁଣ୍ଡା ବଳୁଆ ଲୋକଙ୍କ ପ୍ରତି କବିଙ୍କର ଅବଜ୍ଞାମୂଳକ ଦୃଷ୍ଟି ଯୋଗୁଁ ଭୀମ ହାସ୍ୟୋଦ୍ଦୀପକ ହୋଇ ପଡ଼ିଛନ୍ତି।

ସାରଳାଦାସ ମୂର୍ଖତାକୁ ମଧ୍ୟ ହାସ୍ୟର ଉପାଦାନ କରିଛନ୍ତି। ତାଙ୍କ ବର୍ଣ୍ଣନାରେ ଶ୍ରୀରାମଙ୍କୁ ବଧ କରି ଅଙ୍ଗମୁଦ ପାଇଥିବା ଗଉଡ଼େ ମୁଦିର ମୂଲ୍ୟ ନିର୍ଣ୍ଣୟ ଏହି ପରି କରିଛନ୍ତି :-

ନାସିକାୟେ ଶୁଂଘନ୍ତି ନୁହଇ ତ ଗନ୍ଧ।
ଚୋବାଇଣ ବୋଇନ୍ତି ନାହିଁ ତ ଏଥେ ସ୍ୱାଦ॥
କର୍ଣ୍ଣର କତିରେ ଯେ ବାବନ୍ତି ତାହା ନେଇ।
ଶବଦ ନାହିଁ ବୋଲି ତାହା ହାଦେ ଦିଲେ ଫୋପଡ଼ାଇ॥ (୨ ବନ ୩୩୪)

ଉପେନ୍ଦ୍ର ଭଞ୍ଜ ଲାବଣ୍ୟବତୀରେ ପ୍ରାୟ ଅନୁରୂପ ମୂର୍ଖତା ବର୍ଣ୍ଣିଛନ୍ତି କିନ୍ତୁ ସାରଳାଦାସ ହାସ୍ୟ ସୃଷ୍ଟି ପାଇଁ ବାଛିଥିବା ତ୍ରିବିଧ ଜ୍ଞାନେନ୍ଦ୍ରିୟ ଦ୍ୱାରା ନିର୍ଣ୍ଣୟାତ୍ମକ ପରୀକ୍ଷା ଅଭାବରେ ଉପେନ୍ଦ୍ରଭଞ୍ଜଙ୍କ ହାସ୍ୟର ଚିତ୍ରଣ ଫିକା ପଡ଼ିଛି। ବରଂ ତାହା ବିସ୍ମୟକର ଅଦ୍ଭୁତରସ ଆଡ଼କୁ ଢଳିଛି :-

ଶବରୀ ଶର୍ବରୀ ଶେଷେ ଅରଣ୍ୟକୁ ଯାଇ,
ହରି-ବିଦାରିତ କରି-ମୋତି ପଡ଼ିଥାଇ॥
ବଦରି ଆଦରେ ନେଇ ସରୋବରେ ଧୋଇ,
ବିକ୍କା ତ ନ ଯିବ ବୋଲି ଆସନ୍ତି ପକାଇ॥ (ଲାବଣ୍ୟବତୀ ୨/୯-୧୦)

ବୋଧହୁଏ ଚାଣକ୍ୟ ନୀତିର ନିମ୍ନଲିଖିତ ଶ୍ଳୋକଟିର ଭାବ ଏଥିରେ ପ୍ରତିଫଳିତ ହୋଇଛି :-

ନ ବେତ୍ତି ଯୋ ଯସ୍ୟ ଗୁଣ ପ୍ରକର୍ଷଂ ସ ତଂ ସଦା ନିନ୍ଦତି ନାତ୍ର ଚିତ୍ରମ୍।
ଯଥା କିରାତୀ କରିକୁମ୍ଭ ଲବ୍ଧାଂ ମୁକ୍ତାଂ ପରିତ୍ୟଜ୍ୟ ବିଭର୍ତ୍ତି ଗୁଞ୍ଜାମ୍॥

ଅର୍ଥାତ୍, କୌଣସି ବିଷୟର ଗୁଣର ଉତ୍କର୍ଷ ନ ଜାଣିବା ଲୋକ ଯେ ତାହାର ନିନ୍ଦା କରେ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ଯଥା, କିରାତରମଣୀ ହାତୀର କୁମ୍ଭଜାତ ମୁକ୍ତାକୁ ଛାଡ଼ି ତୁଚ୍ଛ ଗୁଞ୍ଜଫଳ ଗୋଟାଇ ମାଳା ଗୁନ୍ଥି ପିନ୍ଧେ। ଗୋଟିଏ ଅସ୍ୱାଭାବିକ ଆଚରଣରୁ ଚାଣକ୍ୟ ନୀତି ନିର୍ଦ୍ଧାରଣ କରିଛନ୍ତି କିନ୍ତୁ ସାରଳାଦାସ ହାସ୍ୟ ଫୁଟାଇଛନ୍ତି।

## ସାରଳାଦାସଙ୍କ ବାବରପୁରୀ

ଲୋକ ପ୍ରଚଳିତ ଅଗାଣିଆ ରଜା କଥାଟି ଜଣାଶୁଣା, ସେହିପରି କୋଦିଣ୍ଡା ନିଶାପ କଥା। ଏଥିରେ ଅସ୍ୱାଭାବିକକୁ ସ୍ୱାଭାବିକ କରାଇ ହାସ୍ୟଜାତ କରାଯାଏ। ସାରଳାଦାସ ବାବରପୁରୀର ବର୍ଣ୍ଣନାରେ ତାହା କରିଛନ୍ତି। ସେ କୃଷ୍ଣଙ୍କ ମୁଖରେ କୌରବ ସଭା ବାବରପୁରୀ ତୁଲ୍ୟବୋଲି କୁହାଇଛନ୍ତି। ବର୍ବର ଶବ୍ଦଜ ବାବରର ଅର୍ଥ ଅସଭ୍ୟ। ବାବରପୁରୀ କଳ୍ପନା ସାରଳାଦାସଙ୍କର ନିଜସ୍ୱ। ତାଙ୍କ ବର୍ଣ୍ଣନାରେ ବାବରପୁରୀ ପଶ୍ଚିମ ସୌରାଷ୍ଟ୍ରର କୁରଳ ନାମକ ଦେଶର ରାଜଧାନୀ।

ଭଣ୍ଡେଶ୍ୱର ବୋଲିଣ୍ ଅଟେ ତହିଁର ରାଜା।
ବାଇଭଣ୍ଡ ବୋଲି ମନ୍ତ୍ରୀ ରାଜାକୁ କରେ ପୂଜା।।
ଦେବତା ଅଛଇ ତହିଁ ଅଣ୍ଡିଆ କ୍ଷେତ୍ରପାଳ।
ଲଙ୍ଗଳା ଦେବତା ସେ କେଶ ତା ମୁକୁଳ।।
ସେ ନଗ୍ର ଆୟେତନ ତିନିଶ ଯୋଜନ ଖଳା।
ତିରୀ ପୁରୁଷ ସମସ୍ତେ ଅଟନ୍ତି ସେ ଦେଶେ ଲଙ୍ଗଳା।।
ଭଣ୍ଡ ଶାସ୍ତ୍ରମାନ ସର୍ବେ କରନ୍ତି ଅଭ୍ୟାସ।
ମିଥ୍ୟା ବିନା ସତ୍ୟ କଥା ନାହିଁ ପରକାଶ।।
ମିଥ୍ୟା କଥା ଯେ କହଇ ତାକୁ ଦ୍ୟନ୍ତି ଶାଢ଼ୀ।
ସତ୍ୟ କହେ ଯେଉଁ ପ୍ରାଣୀ ତାହାକୁ ପ୍ରାଣେ ମାରି।।
ଭଣ୍ଡ ଭାଷା ଉକଡେ ଯେ ମିଛ କହି ଯତ।
ଭଣ୍ଡାରୁ ଧନ ତାକୁ ଦିଅନ୍ତି ବହୁତ।।
ଦେବତା ବ୍ରାହ୍ମଣ ଯେବେ ସେ ଜନମାନ ଦେଖନ୍ତି।
ଭୂମିରେ ପାଡ଼ି ତାହାର ଉପରେ ବସନ୍ତି।।
ଶିରେ ବସନ ବାନ୍ଧନ୍ତି କଟିରେ କିଛି ନାହିଁ।
ତିରୀ ପୁରୁଷେ ଚାଲନ୍ତି ଉପସ୍ଥ ଯୋନି ଦେଖାଇ।। (ଉଦ୍‌ଯୋଗ ୧୩୮)

ସାରଳାଦାସ ହାସ୍ୟ ସୃଷ୍ଟି ପାଇଁ ଅନ୍ୟାନ୍ୟ କୌଶଳର ଅବଲମ୍ବନ ସହିତ ସ୍ତ୍ରୀପୁରୁଷଙ୍କୁ ଲଙ୍ଗଳା କରାଇଛନ୍ତି। କାବ୍ୟ ସାହିତ୍ୟରେ ଶୃଙ୍ଗାର ରସ ପାଇଁ ବିବସନ ଚିତ୍ରଣ କମ୍ ନାହିଁ, କିନ୍ତୁ ତାହା ରମଣୀୟ, ହାସ୍ୟକର ନୁହେଁ। ସାରଳାଦାସ ହାସ୍ୟ ପାଇଁ

ବିପରୀତ ଆଚରଣର ବର୍ଣ୍ଣନା କରିଛନ୍ତି, ଯାହା ଅଲୌକିକ ଓ ଅପ୍ରତ୍ୟାଶିତ। ତାଙ୍କ ପରିକଳ୍ପିତ ମୌଳିକ ସୃଷ୍ଟି ଖଲ୍ୟକାର ଜନ୍ମ ଆଖ୍ୟାନକୁ ବିଚାର କରାଯାଇପାରେ।

**ଖଲ୍ୟକାର ଜନ୍ମ ଆଖ୍ୟାନ**

ଏହି ଆଖ୍ୟାନରେ କୃଷ୍ଣ ଠକି ହୋଇଯାଇଛନ୍ତି ଓ ଗୋଟିଏ କୁରୂପା ବୁଢ଼ୀ ଦୂତୀକୁ ରାଧା ବୋଲି ଅନ୍ଧାରରେ ଭାବି ରମଣ କରିଛନ୍ତି। ଏହି ରମଣ ଫଳରେ ସେହି ଦୂତୀ ଗର୍ଭବତୀ ହୋଇ ଜନ୍ମ ଦେଇଛି ପୃଥିବୀର ପ୍ରଥମ ସିନ୍ଧିକଟା ଚୋର ଖଲ୍ୟକାରକୁ। କୃଷ୍ଣଙ୍କ ପ୍ରତି ଭକ୍ତିଭାବ ପୋଷଣ କରୁଥିବା ଲୋକଙ୍କ ପକ୍ଷେ କୃଷ୍ଣଙ୍କର ବୋକା ବନିବା ବର୍ଣ୍ଣନା ସୁଖଦ ହେବ ନାହିଁ। କିନ୍ତୁ, କୃଷ୍ଣଙ୍କ ସ୍ଥାନରେ ଅନ୍ୟ କାହାକୁ ରଖିଲେ ରସବୋଧ ସୁଗମ ହେବ। କୃଷ୍ଣ ଠକି ହେବାର ପରିଣାମକୁ ସାରଳାଦାସ ସନ୍ତୋଷପ୍ରଦ କରାଇଛନ୍ତି। ଖଲ୍ୟକାର ପାଣ୍ଡବମାନଙ୍କୁ ରକ୍ଷାକରିଛି, ରାଧାକୃଷ୍ଣ ମିଳନ ଘଟାଇଛି।

ଅଶିକ୍ଷିତ ସମାଜରେ ସବୁ ଦେଶରେ ଲଙ୍ଗଳାମୁକୁଳା ହାସ୍ୟ ପ୍ରଚୁର ଥିଲା। ଏସବୁ ଆଧୁନିକ ସଭ୍ୟତାର ଆବରଣ ତଳେ ଘୋଡ଼ାଇ ହୋଇ ରହିଛି ସିନା ଏବେ ବି ଗୋପନରେ ବହୁ ଅଶ୍ଳୀଳ ଗୀତ ଓ ଅଶ୍ଳୀଳ କାହାଣୀ ଶୁଣିବାକୁ ମିଳୁଛି। ଆଇନର କୋପଦୃଷ୍ଟି ଭୟରେ ତାହା ପ୍ରକାଶ ପାଉନାହିଁ। ରଥର ଡାହୁକ ଗୀତ ଅଶ୍ଳୀଳ ହେବାରୁ ହିଁ ହାସ୍ୟ। ସାରଳାଦାସଙ୍କ ଲଙ୍ଗଳା ହାସ୍ୟ ଗାଉଁଲି ଅଶିକ୍ଷିତ ଲୋକଙ୍କ ମନୋରଞ୍ଜନ ପାଇଁ ଉଦ୍ଦିଷ୍ଟ; ମନେରଖିବାକୁ ହେବ ତାଙ୍କ ମହାଭାରତ ବିଦଗ୍ଧ ସମାଜ ପାଇଁ ଲେଖାହୋଇ ନାହିଁ।

ସାରଳାଦାସ ମହାଭାରତ ମଧ୍ୟରେ ହାସ୍ୟ ସଂଯୋଗ ପାଇଁ ପ୍ରସଙ୍ଗ ସୃଷ୍ଟି କରି ଅନେକଗୁଡ଼ିଏ ହାସ୍ୟକର କାହାଣୀ ଭର୍ତ୍ତି କରିଛନ୍ତି। କାହାଣୀ ଗୁଡ଼ିକ ଲୋକକଥାଧର୍ମୀ, ତନ୍ମଧ୍ୟରୁ ଅଧିକାଂଶ କବିଙ୍କର କଳ୍ପନାପ୍ରସୂତ ହୋଇଥାଇପାରେ। ତାଙ୍କର ହାସ୍ୟକର କାହାଣୀ ଭାବରେ ଉଦ୍‌ଯୋଗ ପର୍ବର ବାବନାଭୂତ କଥା ଓ ମେଳକା ଅଳସୁଆ କଥା ଓ ସ୍ୱର୍ଗାରୋହଣ ପର୍ବର ଭୂସ୍ୱାମୀ-କୃଷକ ବିବାଦ କଥା ଉଲ୍ଲେଖନୀୟ।

**ସାରଳାଦାସଙ୍କ ଅନୁଗାମୀ**

ପୁରାଣ ସାହିତ୍ୟରେ ହାସ୍ୟକୁ ସ୍ଥାନ ଦେବା ବିଷୟରେ ସାରଳାଦାସଙ୍କ ଅନୁଗାମୀ ବିଶେଷ କେହି ରହିଲେ ନାହିଁ। ଏହାର ଦ୍ୱିବିଧ କାରଣ ଅନୁମାନ କରାଯାଇପାରେ। ପ୍ରଥମ କାରଣ ହେଲା, ସାରଳାଦାସଙ୍କ ପରେ ଓଡ଼ିଶାରେ ବୈଷ୍ଣବ ଭକ୍ତି ଧର୍ମ ଦୃଢ଼ୀଭୂତ ହେଲା ଯାହା ଫଳରେ ପୌରାଣିକ ଇତିହ(ମିଥ୍)କୁ ବଦଳାଇ ନୂଆ ଇତିହ ଚଳାଇବା ସହଜ ସାଧ ହେଲା ନାହିଁ ଓ ପୌରାଣିକ ଚରିତ୍ରଗୁଡ଼ିକ ପ୍ରତି ବ୍ୟଙ୍ଗାତ୍ମକ ଦୃଷ୍ଟି ଗର୍ହିତ ବିବେଚିତ ହେଲା। ମୌଳିକ ଓଡ଼ିଆ ପୁରାଣ ସୃଷ୍ଟି ହେଲା ନାହିଁ, ସଂସ୍କୃତ ପୁରାଣର ଅନୁବାଦ ହିଁ ପ୍ରାଧାନ୍ୟ ପାଇଲା। ସାରଳାଦାସଙ୍କ ସମୟର ଦୀର୍ଘ

ତିନିଶହ ବର୍ଷ ପରେ ସାରଳାଦାସଙ୍କ ଚେତନାର ଏକାନ୍ତ ଅନୁଗତ ପୀତାମ୍ବର ଦାସ ତାଙ୍କ ନୃସିଂହ ପୁରାଣରେ ନୂଆ ଇତିହ ସୃଷ୍ଟି କଲେ। ଅଳ୍ପମାତ୍ରାରେ ହେଲେ ସୁଦ୍ଧା ନୃସିଂହ ପୁରାଣରେ ହାସ୍ୟ ସ୍ଥାନ ପାଇଛି। ମୁର ଦୈତ୍ୟର ପୁଅମାନଙ୍କୁ ଗରୁଡ଼ ନିହତ କରିବା ପରେ ମୁର ପୁତ୍ର ଶୋକରେ ମ୍ରିୟମାଣ ହୋଇ ବାହୁନି ବସିଛି :-

ସଂସାରେ ହେବାରୁ ତୁମ୍ଭେ ଧର୍ମବନ୍ତ ପରା।
ଅଖଡ଼େ ଗଲ ମରି ନ କରି ପରଦାରା।।
ଋଷିମାନଙ୍କର ଘର ପୋଡ଼ିଥାନ୍ତ ଯେବେ।
ତେବେ ସେ ବର୍ଦ୍ଧିତେ ସର୍ବେ ରହିଥାନ୍ତ ଶୁଭେ।।
ଭୋଜନେ ବିପ୍ରଙ୍କୁ ବିଷ ଭରି ଯେବେ ଦ୍ୟନ୍ତ।
ସେ ମଲେ ତୁମ୍ଭେ ବର୍ଦ୍ଧିତେ ଜାଣ ରହିଥାନ୍ତ।।

x x x

ଗୋହତ୍ୟା ବ୍ରହ୍ମହତ୍ୟା ଯେ ସ୍ତିରୀହତ୍ୟା ତିନି।
ଏହୀ ନ କରି ରହିଲ କିମ୍ପା ହୋଇ ତୃନି।।
ତେଣୁ କରି ଅପମୃତ୍ୟୁ ଲଭିଲ ରେ ବାପ।
କି ରୂପେ ରହିବି ମୁଁ ନ ଦେଖି ତୁମ୍ଭ ରୂପ।।(ନୃସିଂହ ପୁରାଣ, ଚତୁର୍ଥସାଗର)

ଅସଙ୍ଗତ କଳ୍ପନାର ପ୍ରକାଶ ହାସ୍ୟ ଉଦ୍ରେକ କରେ। ପୀତାମ୍ବର ଅସଙ୍ଗତ କଳ୍ପନା ଗର୍ଭକ ଏକ ୧୦ ପଦର ଢ଼ମାଳିକୁ ନୃସିଂହ ପୁରାଣରେ ସ୍ଥାନ ଦେଇଛନ୍ତି। ତାହାର ତିନୋଟି ପଦକୁ ଉଦାହରଣ ରୂପେ ନିମ୍ନରେ ଉଦ୍ଧାର କରାଯାଇଛି :-

ପିମ୍ପୁଡ଼ି ବାପୁଡ଼ା ବିଭା ହୋଇ ଗଲା ଗଗନେ ଉଡ଼ଇ ଧୂଳି।
ବିଲର କଙ୍କଡ଼ା ମୃଦଙ୍ଗ ବଜାଏ ବେଙ୍ଗ ଦିଏ ହୁଳହୁଳି।।
ଢ଼ିଙ୍କିକି କରିଛି ପିତ୍ତ ଶେଳଷମା କୁଲାକୁ ଙ୍କିରିଛି ଜର।
ଚାଲୁଣି ବାପୁଡ଼ୀ ମାଆଘର ଗଲା ଛାଞ୍ଚୁଣି ଜଗିଛି ଘର।।
ପଥରକୁ କଲା ସନ୍ନିପାତ ଜର ପାଣିକି କଲା ପିଆସ।
ଅଗ୍ନି ବାପୁଡ଼ାକୁ ଶୀତ କରୁଅଛି ଶୁଣ ଆହେ ପଣ୍ଡୁଶିଷ।।
(ନୃସିଂହପୁରାଣ, ସପ୍ତମ ସାଗର)

ପୁରାଣ ସାହିତ୍ୟରେ ହାସ୍ୟ ହ୍ରାସ ପାଇବାର ଅନ୍ୟତମ କାରଣ ଛନ୍ଦ ହୋଇପାରେ। ହାସ୍ୟ ପରିବେଷଣ ପାଇଁ ଛନ୍ଦୋବଦ୍ଧ ପଦ୍ୟ ଅପେକ୍ଷା ନିରଙ୍କୁଶ ଗଦ୍ୟ ଅଧିକତର ଉପଯୁକ୍ତ ମାଧ୍ୟମ। ଅନୁମାନ କରୁଛି, ଖାସ ଏହି କାରଣରୁ ବ୍ରଜନାଥ ବଡ଼ଜେନା ଓ ବଳଦେବ ରଥଙ୍କ କାଟର ଛନ୍ଦୋବଦ୍ଧ ପଦ୍ୟ-ରଚନା-କୁଶଳ କବିମାନେ ହାସ୍ୟ ରଚନା ପାଇଁ ଗଦ୍ୟର ଆଶ୍ରୟ ଲୋଡ଼ିଛନ୍ତି। ଅବଶ୍ୟ ପ୍ୟାରୋଡ଼ି ପାଇଁ ପଦ୍ୟ ଶ୍ରେୟ, କିନ୍ତୁ ପ୍ୟାରୋଡ଼ି ଶୈଳୀ ଖ୍ରୀ. ୧୮ଶ ଶତାବ୍ଦୀ ପୂର୍ବରୁ ଓଡ଼ିଆ ସାହିତ୍ୟରେ

ପ୍ରବେଶ କରି ନଥିଲା । ମନେ ରଖିବାକୁ ହେବ, ସାରଳା ଦାସ 'ଦାଣ୍ଡି' ପଦ୍ୟରେ ହାସ୍ୟ ଫୁଟାଇଛନ୍ତି ଓ ଦାଣ୍ଡି ଛନ୍ଦୋବଦ୍ଧ ରଚନା ନୁହେଁ।

**କ୍ଷୁଦ୍ର ରଚନାରେ ହାସ୍ୟ**

ସାରଳାଦାସଙ୍କ ପରେ ପୁରାଣାଦି ବୃହଦାକାର ରଚନାରେ ହାସ୍ୟର ମାତ୍ରା କମି ଥିଲେ ହେଁ କଳସା, ଢ଼ମାଳି ଆଦି କ୍ଷୁଦ୍ର କବିତାରେ ହାସ୍ୟର ପ୍ରକାଶ ଘଟିଥିଲା । ଉପଲବ୍ଧ ଏ ପ୍ରକାରର ରଚନା ମଧ୍ୟରେ ପ୍ରାଚୀନତମ ହେଉଛି ଗଉରା କଳସା ବା କଳସା ଚଉତିଶା । ବରପାତ୍ର ଯୁବକ ହେବା ସ୍ୱାଭାବିକ କଥା, ବୃଦ୍ଧ ହେବା ଅସ୍ୱାଭାବିକ । ଗଉରା କଳସାରେ ଶିବ ଜଣେ କୁତ୍ସିତ ଅତିବୃଦ୍ଧ ରୂପରେ ଅସନା ବେଶରେ ଧଇଁସଇଁ ହୋଇ ବିବାହ ବେଦୀକି ଉଠିବା ଚିତ୍ରଣ ବେଶ୍ ହାସ୍ୟୋଦ୍ଦୀପକ । ପୂର୍ବକାଳରେ ବିବାହ ପୂର୍ବରୁ ବର କନ୍ୟାକୁ ଓ କନ୍ୟା ବରକୁ ଦେଖିବା ପ୍ରଥା ନଥିଲା । ବିବାହବେଳେ ଝିଅମାନେ କନ୍ୟାଟି ଅସୁନ୍ଦରୀ ବୁଢ଼ୀ ବୋଲି ବର ଆଗରେ ବର୍ଣ୍ଣନା କରି ଓ ତେଣେ ବରଟି କଦାକାର ବୁଢ଼ା ବୋଲି କନ୍ୟା ଆଗରେ ଚିତ୍ରଣ କରି ପରିହାସ କରିବା ରୀତି ଯୁବତୀ ବିବାହ ଚଳୁଥିବା କ୍ଷତ୍ରିୟ ପରିବାରରେ ବିବାହ ପୂର୍ବର କୋଇଲି ବୁଡ଼ର ଉପଚାର ରୂପେ ଚଳୁଥିବା ମୁଁ ବାଲ୍ୟ କାଳରେ ଦେଖିଛି । ରାଜକୁଳରେ ବାଲ୍ୟବିବାହ ନ ଥିବାରୁ ଏପରି ପରିହାସ ପାଇଁ କ୍ଷେତ୍ର ରହିଥିଲା । ମୁଁ ସଂକଳନ କରିଥିବା 'ପ୍ରାଚୀନ ହାସ୍ୟ ସବୁଜୟ' ରେ ପୂର୍ବେ ପରିହାସରେ ବୋଲାଯାଉଥିବା ବୁଢ଼ୀକଳସା ଓ ବୁଢ଼ାକଳସାକୁ ସ୍ଥାନିତ କରିଛି ।

କେବଳ ବିବାହବେଦୀରେ ବର ସାଜିବା ନେଇ ନୁହେଁ, ଅନ୍ୟଥା ମଧ୍ୟ ବାର୍ଦ୍ଧକ୍ୟ ପରିହାସ୍ୟ ଅବସ୍ଥା ରୂପେ, ହାସ୍ୟରସର ଏକ ବିଭାବ ରୂପେ ରସଶାସ୍ତ୍ରରେ ସ୍ୱୀକୃତି ପାଇଛି । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଅନେକତ୍ର ହାସ୍ୟ ଉଦ୍ରେକ କରିବା ପାଇଁ ବୁଢ଼ାବୁଢ଼ୀଙ୍କ ବର୍ଣ୍ଣନା ଦିଆଯାଇଥାଏ । (ନାଟକ, ସୁଆଙ୍ଗ ଆଦିରେ ମଧ୍ୟ ଅବସ୍ଥା ତଦ୍ରୂପ) । ଗଉରା କଳସାରେ ଶିବଙ୍କର ବୁଢ଼ାବର ରୂପ ପରି, 'ନାବକେଳି'ରେ କୃଷ୍ଣଙ୍କର ବୁଢ଼ା ନାଉରୀ ରୂପ ଓ 'ଦେଉଳତୋଳା'ରେ ଜଗନ୍ନାଥଙ୍କର ବୁଢ଼ା ବଢ଼େଇ ରୂପ ବର୍ଣ୍ଣିତ ହୋଇଛି । ଅଥଚ, ଧର୍ମଶାସ୍ତ୍ରର ବ୍ୟବସ୍ଥା ଅନୁସାରେ ବାର୍ଦ୍ଧକ୍ୟ ଆକ୍ଷେପଣୀୟ ନୁହେଁ।

ହୀନାଙ୍ଗାନତିରିକ୍ତାଙ୍ଗାନ୍ ବିଦ୍ୟାହୀନାନ୍ ବୟୋଽଧିକାନ୍ ।
ରୂପ ଦ୍ରବ୍ୟ ବିହୀନାଂଶ୍ଚ ଜାତିହୀନାଂଶ୍ଚ ନାକ୍ଷିପେତ୍ ॥ (ମନୁସ୍ମୃତି ୪/୧୪୧)

ଅର୍ଥାତ୍ ହୀନାଙ୍ଗ, ଅଧିକାଂଗ, ବିଦ୍ୟାହୀନ, ବୟୋବୃଦ୍ଧ, କୁରୂପ, ଦରିଦ୍ର ଓ ଜାତିହୀନ ଲୋକଙ୍କୁ ଆକ୍ଷେପ କରିବା ଅନୁଚିତ । ଅଶିକ୍ଷିତ ଲୋକେ ମନୁସ୍ମୃତିର ନିଷେଧକୁ ଲଂଘନ କରିଥାନ୍ତି । ଲକ୍ଷ୍ୟକରିବାର କଥା, ଓଡ଼ିଆ କବିମାନେ ରସଶାସ୍ତ୍ର ଅନୁସାରେ ବାର୍ଦ୍ଧକ୍ୟକୁ ଆକ୍ଷେପ କରିଥିଲେହେଁ ଆକ୍ଷିପ୍ତ ବୃଦ୍ଧମାନେ ସାଧାରଣତଃ ଛଦ୍ମରୂପ, ପ୍ରକୃତ ବୃଦ୍ଧ ନୁହଁନ୍ତି । ତେଣୁ ରସଶାସ୍ତ୍ରକୁ ଧରି ହାସ୍ୟ ପାଇଁ ବୃଦ୍ଧର ବର୍ଣ୍ଣନା କରି ବି ଧର୍ମ ଶାସ୍ତ୍ରର ବିଷେଧକୁ ଲଂଘନ କରି ନାହାନ୍ତି ।

### କାବ୍ୟରେ ହାସ୍ୟ

ରାଜାନୁଗ୍ରହପ୍ରାପ୍ତ କାବ୍ୟଧାରାର ଭଗୀରଥ ନରସିଂହ ସେଣ ତାଙ୍କର ପ୍ରଥମ ରଚନା 'ଗୋପକେଳି'ରେ ହାସ୍ୟକୁ ସ୍ଥାନ ଦେଇଛନ୍ତି। ଆଦିରସରେ ବୁଡ଼ିରହୁ ଗୋପୀମାନେ ମଦିରା ପିଇ ମତ୍ତ ହେବାର ବର୍ଣ୍ଣନା ସେ ଦେଇଛନ୍ତି। ନିଶାଗ୍ରସ୍ତର ଅସଙ୍ଗତ ଆଚରଣ ଓ ପ୍ରଳାପ ହାସ୍ୟର ଚିରନ୍ତନ ଉତ୍ସ। ମଦ ନିଶା ଘାରିଥିବା ଜଣେ ଗୋପୀ ମଦନର ବିବାହ ଆଖ୍ୟାନ ଏହିପରି ବର୍ଣ୍ଣନା କରିଛି :-

 କ୍ଷେତ୍ରପାଳଙ୍କର ନନ୍ଦନ ମଦନ ଜୁଅରେ ସେ ଅତିଜିତା।
ଈଶ୍ୱରଙ୍କ ସଙ୍ଗେ ପଶା ଖେଳିଲା ସହିଆର ତହିଁ ଧାତା॥
ସକଳ ଧନ ହାରିଲା ତହିଁ ବାତୁଳ ପଣେ ଶଙ୍କର।
ପରିଧାନ ବାସ ବନ୍ଧା ସେ ଦେଲା ତେଣୁ ହୋଏ ଦିଗମ୍ବର॥
ଛିଟି କଉଡ଼ି କାମ ମାଗିଲା ଶଙ୍କର କଲା କଳି।
ରୋଷେଣ କରି କାମ ଚାହିଁଲା ଶଙ୍କର ଗଲା ଜଳି॥
ଶଙ୍କର ନାରୀ ଦ୍ରୋପଦବାଳୀ ଉଚ୍ଚେ କରଇ ରୋଦନ।
ତାହା ଶୁଣି କରି ଅପସରାମାନେ ମିଳିଲେ ଆସି ବହନ॥
ଅଧର ଅମୃତ ଦେଇ ଜୀଆଇଲେ ଉଠିଣ ବସିଲା ଶିବ।
କାମର ଭୟେ କମ୍ପୁଅଛି ସେ କେବଳ ପାଇଛି ଜୀବ॥
କଉଡ଼ି ନାହିଁ ଶିବର ତହିଁ ତାହା ଝିଅ ମନ୍ଦୋଦରୀ।
କାମକୁ ତାହା ଠାଏ ସେ ଦେଲା ଭଁୟେଣ ବିଚାର କରି॥
ଗଞ୍ଜାଇମାନ ଲଡୁକରିଣ ତାହା ଦେଲେ ଯଉତୁକ।
ତେଣୁ ସେ ମଦନ-ମୋଦକ ବୋଲାଇ ଜାଣନ୍ତି ସକଳ ଲୋକ॥
କାମର ଶଳା ଶିବ ହୋଇଲା ଯହୁଁ ଦେଲା ଝିଅଦାନ।
ସେହି ଦିନରୁ ପୀରତି ହୋଇ ଥାଆନ୍ତି ହର ମଦନ॥

ଆନୁମାନିକ ଖ୍ରୀ. ୧୫୧୫ ବେଳର ଏହି ରଚନା ପରେ ଓଡ଼ିଆ କାବ୍ୟ ସାହିତ୍ୟରେ ହାସ୍ୟର ମାତ୍ରା ବିଶେଷ ନ ହେଲେ ହେଁ ନିତାନ୍ତ ନଗଣ୍ୟ ନୁହେଁ। ମୁଖ୍ୟତଃ କୃଷ୍ଣଙ୍କୁ ଆଶ୍ରୟ କରି କାବ୍ୟରେ ହାସ୍ୟ ସ୍ଥାନ ପାଇଲା। କୃଷ୍ଣ ବାଲ୍ୟକାଳରେ ପରିହାସପ୍ରିୟ ଥିବା ଚରିତ ବହୁ କବି ବର୍ଣ୍ଣିଛନ୍ତି। ଗୋପୀମାନଙ୍କ ସହିତ ବିଶେଷତଃ ରାଧାଙ୍କ ସହିତ କୃଷ୍ଣ ଅନେକ ହାସ୍ୟମୟ ଲୀଳା କରିଛନ୍ତି। ତେଣୁ ବଳଦେବ ରଥ ହାସ୍ୟ କଲ୍ଲୋଳର ଆରମ୍ଭରେ କୃଷ୍ଣଙ୍କୁ 'କୌତୁକ-ଲମ୍ପଟ' ବୋଲି ଆଖ୍ୟା ଦେଇ ସ୍ତୁତି କରିଛନ୍ତି। ବଳରାମ ଦାସ ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କ ବାଘ ବୋଲି, କୃଷ୍ଣଦାସଙ୍କ ନଟୁଚୋରୀ, ଭୂତକେଳି ଆଦି ବହୁ କୃଷ୍ଣଲୀଳା ବିଷୟକ ଲେଖାରେ

ହାସ୍ୟ ପ୍ରାଧାନ୍ୟ ପାଇଛି। ଆଉ ମଧ୍ୟ ମାମୁଲି ମଣିଷଙ୍କ ଚରିତ୍ରକୁ ଉପଜୀବ୍ୟ କରି ଅନେକ ଗୁଡ଼ିଏ ଢ଼ମାଳି ବା ହାସ୍ୟରସାତ୍ମକ ଗୀତ ମଧ୍ୟଯୁଗରେ ରଚିତ ହୋଇଥିବା କଥା ଜଣାଅଛି। ତନ୍ମଧ୍ୟରୁ ଅନେକ ଢ଼ମାଳି ଜାତିଜାତି ଖାଦ୍ୟ ବିଷୟକ (ଯଥା:- କବିକର୍ଣ୍ଣଙ୍କ ସୁଆଦଖିଆ ଢ଼ମାଳି, ପରଶୁରାମ ବିହାରୀଙ୍କ ସ୍ୱାଦଗୀତ, ଅଜ୍ଞାତ କବିଙ୍କ ସୁଆଦ ଖିଆ, ବଳରାମଦାସଙ୍କ 'ଅଖେଇଜାନୀ ଚରିତ)।

## ରାଜକୀୟ ଅନୁଗ୍ରହ

ମଧ୍ୟଯୁଗର, ବିଶେଷତଃ ଦକ୍ଷିଣ ଓଡ଼ିଶାର, କେତେକ ରାଜା କବି ପଣ୍ଡିତଙ୍କ ପରି ହାସ୍ୟକାରିଆଙ୍କୁ ମଧ୍ୟ ଅନୁଗୃହୀତ କରୁଥିଲେ। ଆକବରଙ୍କ ରାଜସଭାର ବୀରବଲ ଓ ଆନ୍ଧ୍ରର ତେନାଲି ରାମକୃଷ୍ଣ ଭଳି ବହୁ ହାସ୍ୟକାରିଆ ରାଜ ପୃଷ୍ଠପୋଷକତା ପାଉଥିଲେ। ବ୍ରଜନାଥଙ୍କ 'ଚତୁର ବିନୋଦ'ରୁ ଜଣାଯାଏ ଯେ ଏମାନେ ଭାଣ୍ଡ (ସଂସ୍କୃତ ଭଣ୍ଡ ଶବ୍ଦଜ) ବୋଲାଉ ଥିଲେ। ପ୍ରସିଦ୍ଧ ଗୋପାଳ ଭାଣ୍ଡ ଏପରି ଜଣେ ହାସ୍ୟକାରିଆ ଥିଲେ। ବେଳେବେଳେ ରାଜାମାନେ ପଣ୍ଡିତଙ୍କ ତୁଳନାରେ ଭାଣ୍ଡଙ୍କ ପ୍ରତି ଅଧିକ ଅନୁଗ୍ରହ ପ୍ରକାଶ କରୁଥିବା ଦେଖି କୌଣସି ପଣ୍ଡିତ କ୍ଷୋଭ ପ୍ରକାଶ କରି କହିଥିଲେ : "ଭଣ୍ଡପଣ୍ଡିତୟୋର୍ମଧ୍ୟେ ବରଂ ଭଣ୍ଡଃ ନ ପଣ୍ଡିତ"। ଦକ୍ଷିଣ ଓଡ଼ିଶାର ହାସ୍ୟକାରିଆମାନେ ଭାଣ୍ଡ ନ ବୋଲାଇ ଗଳ୍ପସାଗର, କଥାସମୁଦ୍ର ବୋଲାଉଥିଲେ। ଏମାନେ କ୍ଷିପ୍ରଗତିରେ ଯମକାନୁପ୍ରାସ ରଖି କଥା ମାଲେଇବା ଶୈଳୀ ଅଭ୍ୟାସ କରୁଥିଲେ। ହାସ୍ୟୋଦ୍ଦୀପକ ଅସଂଗତ ଗାଲୁଗଳ୍ପର ଓ ରୋଚକ କାହାଣୀର କଥକ ଥିଲେ। ଚଳିତ ଶତାବ୍ଦୀ ପର୍ଯ୍ୟନ୍ତ କଥାସମୁଦ୍ର ଶୈଳୀର ମନୋରଞ୍ଜନ ଚଳୁଥିଲା। ବିତଣ୍ଡା ରାମକୃଷ୍ଣ ଦାଶ, ହରିହର ପଟ୍ଟନାୟକ, ବାଞ୍ଛାନିଧି ଶତପଥୀ ପ୍ରମୁଖ ଏହି ଶୈଳୀକୁ ଆୟତ୍ତ କରିଥିଲେ। ଏମାନେ କୌତୁକିଆ ଗଦ୍ୟ ମଧ୍ୟରେ କିଛି କିଛି ମନଛୁଆଁ ଗୀତ, ତାହା ଭିତରେ ଅନେକ ପ୍ରାଚୀନ ରଚନାରୁ ଉଧାର ଆଣି, ପରିବେଷଣ କରୁଥିଲେ। କଥାସମୁଦ୍ରଙ୍କ ଦ୍ୱାରା ପରିବେଷିତ ଶୈଳୀରେ ରଚିତ ଅଳ୍ପକେତୋଟି ରଚନା ପ୍ରକାଶ ପାଇଲାଣି; ଯଥା :- ବ୍ରଜନାଥ ବଡ଼ଜେନାଙ୍କ ଚତୁର ବିନୋଦ, ବଳଦେବ ରଥଙ୍କ ହାସ୍ୟକଲ୍ଲୋଳ ଓ ନୀଳାମ୍ବର ବିଦ୍ୟାଧରଙ୍କ କୌତୁକ ଚିନ୍ତାମଣି ବା ପ୍ରସ୍ତାବଚିନ୍ତାମଣି। ତନ୍ମଧ୍ୟରୁ ପ୍ରଥମୋକ୍ତ ରଚନା ଦ୍ୱୟ ହାସ୍ୟଗର୍ଭକ ସୃଷ୍ଟି ଭାବରେ ସୁବିଦିତ ଓ ଆଲୋଚିତ।

## ଚତୁର ବିନୋଦ

ଛନ୍ଦୋବଦ୍ଧ ପଦ୍ୟ ରଚନା ଦକ୍ଷ ବ୍ରଜନାଥ ଓ ବଳଦେବ ସମଧିକତଃ ଗଦ୍ୟକୁ ଆଶ୍ରୟ କରି ହାସ୍ୟରଚନା କରିଛନ୍ତି। ଚତୁର ବିନୋଦର ପ୍ରଥମ ଶାଖା ହାସବିନୋଦରେ ରସଶାସ୍ତ୍ରକୁ ଧରି 'ବିକୃତାକାର ବାଗ୍ ବେଶଚେଷ୍ଟା' ବର୍ଣ୍ଣନା କରି ହାସ୍ୟ ସୃଷ୍ଟି କରିବାର ଉଦ୍ୟମ ଅଛି ଓ ଧର୍ମଶାସ୍ତ୍ରର ପୂର୍ବକଥିତ ନିଷେଧର ଲଂଘନ ଅଛି। କଥାବସ୍ତୁର ଛାଞ୍ଚ ଓ ତାହାର ପ୍ରକାଶ ଶୈଳୀ ପାଇଁ ବଡ଼ଜେନାଏ ଜଗଦୀଶ୍ୱରଙ୍କ ସଂସ୍କୃତ ହାସ୍ୟାର୍ଣ୍ଣବ

ପାଖରେ ଆଂଶିକ ଋଣୀ ଓ ତାହା ଅପ୍ରତ୍ୟାଶିତ ନୁହେଁ। ରାଜସଭା ସଂସ୍କୃତ ସାହିତ୍ୟକୁ ଆଦର୍ଶ ରୂପେ ମାନ୍ୟତା ଦେଉଥିଲା, ତେଣୁ ମୌଳିକତା ଅପେକ୍ଷା ଅନୁକରଣ ସେଠାରେ ଅଧିକତର ପ୍ରଶଂସାଭାଜନ ହେଉଥିଲା। ଅନୁମିତ ହୋଇପାରେ ଯେ ହାସ୍ୟକାରିଆ କଥାସମୁଦ୍ରମାନେ ଓଡ଼ିଆରେ ଥିବା ହାସ୍ୟର ଅଭାବକୁ ସଂସ୍କୃତରୁ ଆହରଣ ଦ୍ୱାରା ଭରଣା କରୁଥିଲେ। ଉପେନ୍ଦ୍ରଭଞ୍ଜ ହାସ୍ୟରସର ନମୁନା ସ୍ୱରୂପ ବାଡ଼ିଥିବା ବୀଭତ୍ସତାର ସଜାତୀୟ ବର୍ଣ୍ଣନା ହାସବିନୋଦରେ ମଧ୍ୟ ରହିଛି। ପ୍ରାବନ୍ଧିକ ଡଃ ଦାଶରଥି ଦାସ ହାସବିନୋଦର ବିଶ୍ଳେଷଣାତ୍ମକ ମୂଲ୍ୟାଙ୍କନ କରି "ଶ୍ଳୀଳତା ଓ ସଂଯମର ସୀମା ଅତିକ୍ରମ କରି ନଥିଲେ ଚତୁରବିନୋଦ ଯେ କୌଣସି ଭାଷା ଓ ସାହିତ୍ୟର ଗର୍ବ ଓ ଗୌରବର ସାମଗ୍ରୀ ହୋଇ ପଡ଼ିଥାନ୍ତା, କିନ୍ତୁ କେଜାଣି କାହିଁକି ବଡ଼ଜେନା କିଛିଟା ଅଶ୍ଳୀଳ, ଅସଂଯତ" ବୋଲି ଯାହା କହିଛନ୍ତି ତାହା ଆଧୁନିକ ସମାଲୋଚକଙ୍କର ସାଂପ୍ରତିକ ଚେତନାର ନିର୍ଦ୍ଧାରଣ। ପ୍ରାଚୀନ କବି ଲେଖକଙ୍କୁ ମାପିବା ପାଇଁ ଆଜିର ମାନଦଣ୍ଡର ଉପଯୋଗିତା କମ୍।

କଳା, ସାହିତ୍ୟ ଆଦିକୁ ତଉଲିବା ବେଳେ ଅଶ୍ଳୀଳତା ପଦବାଚ୍ୟ ଆଧୁନିକ ତରାଜୁର ବ୍ୟବହାର ଏକ ବ୍ୟାପକ ପ୍ରଶ୍ନ। ପ୍ରାଚୀନ ମନ୍ଦିର ଗାତ୍ରରେ 'ଅଶ୍ଳୀଳ' ମୂର୍ତ୍ତି ରହିଛି, ପ୍ରାଚୀନ ସାହିତ୍ୟରେ 'ଅଶ୍ଳୀଳ' ବର୍ଣ୍ଣନା ରହିଛି, ପ୍ରାଚୀନ ଧର୍ମାଚାରରେ 'ଅଶ୍ଳୀଳତା' ରହିଛି। ହାସ୍ୟ ସୃଷ୍ଟି ପାଇଁ ମଧ୍ୟ ଅଶ୍ଳୀଳତାର ଭୂମିକା ଥିଲା। ପ୍ରାଚୀନ ସାହିତ୍ୟରେ ଅନେକ ଗୁଡ଼ିଏ ଦ୍ୱ୍ୟର୍ଥ ରଚନା ରହିଛି, ଯାହାର ଗୋଟିଏ ପ୍ରାଞ୍ଜଳ ଅର୍ଥ ଶୁଦ୍ଧ 'ଅଶ୍ଳୀଳତା' କିନ୍ତୁ ଅନ୍ୟତର ଅର୍ଥରେ ଜମାରୁ ଅଶ୍ଳୀଳତା ନଥାଏ। ଉପେନ୍ଦ୍ରଭଞ୍ଜଙ୍କ 'ବଜାରବୋଲି' ନାମାଙ୍କିତ ରଚନାରୁ ଭୁବନେଶ୍ୱର କବିଚନ୍ଦ୍ରଙ୍କ 'ବୃହତ୍ ଢେଗରତ୍ନ' ପର୍ଯ୍ୟନ୍ତ ବହୁ ରଚନାରେ ଶ୍ଳୀଳ ଅର୍ଥ ସହିତ ଅଶ୍ଳୀଳ ଅର୍ଥ ଏକତ୍ର ରହି ଥିବାରୁ ହିଁ ସେଥିରୁ ଶ୍ରୋତା/ପାଠକ ହାସ୍ୟରସ ଆସ୍ୱାଦନ କରିପାରେ। ଇଂରାଜି ସାହିତ୍ୟର ଏହି ଜାତୀୟ ରଚନା double entendre (ଫରାସୀ ସାହିତ୍ୟର a double entente) ନାମରେ ଅଭିହିତ। ପ୍ରାଚୀନ ରସିକତା ଭିତରେ ପାଣ୍ଡିତ୍ୟ ସହିତ ଅଶ୍ଳୀଳତା ଗୋଳେଇପୋଳେଇ ହୋଇ ରହୁଥିଲା। ତହିଁରୁ ଅଶ୍ଳୀଳତାକୁ ଆଡ଼େଇ ଦେଲେ ଶ୍ଳୀଳତାର ତାତ୍ପର୍ଯ୍ୟ ରହିବ ନାହିଁ।

**ହାସ୍ୟକଲ୍ଲୋଳ**

ବଳଦେବ ରଥଙ୍କ 'ହାସ୍ୟକଲ୍ଲୋଳ' ମଧ୍ୟ କଥାସମୁଦ୍ରଙ୍କ ଦ୍ୱାରା ପ୍ରଚାରିତ ହେବା ଲକ୍ଷ୍ୟରେ ରଚିତ। ଏହାର ଭାଷାରେ କିଛି ଅଭିନବତା ଅଛି। ଆରମ୍ଭର ବାକ୍ୟାବଳୀ ଛନ୍ଦହୀନ ଗଦ୍ୟଧର୍ମୀ ହେଲେହେଁ ମିତ୍ରାକ୍ଷର ନିୟମାଶ୍ରିତ, ଶେଷାଂଶ ଗଦ୍ୟ। ମଧ୍ୟରେ ହନୁକରଣ ବା ପ୍ୟାରୋଡ଼ି ଧର୍ମୀ ଅନେକ ସଂସ୍କୃତ ଶ୍ଳୋକରେ ଆଶୀର୍ବାଦ, ପୁରାଣ ଓ ସ୍ମୃତିବଚନ ଛଳରେ ନିନ୍ଦନୀୟ ଆଚାରକୁ ବ୍ୟାଜସ୍ତୁତି କରାଯାଇଛି।

ହାସ୍ୟକଲ୍ଲୋଳରେ ଗୋଟିଏ ଅଚ୍ଚବ ରାଜ୍ୟର ରାଜାଙ୍କର ଗୋଟିଏ ଦିନର ରାଜକାର୍ଯ୍ୟର ବିବରଣ ରହିଛି। ଏହି ରାଜ୍ୟର ରୀତିନୀତି, ଆଚାର-ବ୍ୟବହାର ସବୁ ଓଲଟପାଲଟ। ଏହାର ରାଜା ଓ ରାଜକର୍ମଚାରୀ ବର୍ଗ ସମସ୍ତେ କାଲ ହୋଇଥିବାରୁ ଫେରାଦ ଜଣାଇବାକୁ ଆସିଥିବା ଲୋକର ଗୁହାରିକୁ କେହି ତ ବୁଝନ୍ତି ନାହିଁ, ଅଧିକନ୍ତୁ ନ ବୁଝିବା କଥା ଲୁଚାଇ ସତେ କି ସବୁ ବୁଝିଥିବା ପରି ଛଳନା କରି ଅପ୍ରାସଙ୍ଗିକ ବିଷୟମାନ ପ୍ରକାଶ କରି ପରସ୍ପର ବାଦାନୁବାଦ କରନ୍ତି। ରାଜୁଡ଼ା ବ୍ୟବସ୍ଥାରେ ରାଜା ଓ ରାଜକର୍ମଚାରୀମାନେ ପ୍ରଜାଙ୍କ ଗୁହାରି ଶୁଣୁ ନଥିବା ପ୍ରତି ବ୍ୟଙ୍ଗ୍ୟବିଦ୍ରୂପ (Satire) ଏଥିରେ ରହିଛି। କିନ୍ତୁ, ତାହାକୁ ସାହାଯ୍ୟ କରିବା ଭଳି କଥାବସ୍ତୁ ନ ଥିବାରୁ ବିଦ୍ରୂପ ଶାଣିତ ହୋଇପାରି ନାହିଁ। କେତେକ ଲୋକ କାହାଣୀରେ ମଧ କାଲମାନେ ଆପଣା ବଧିରତାକୁ ପ୍ରକଟ ନ କରି ସବୁ କଥା ଶୁଣି ପାରୁଥିବା ଭଳି ଛଳନା କରି କଥୋପକଥନ କରୁଥିବା ଚିତ୍ରଣ ମିଳେ।

ବଳଦେବ ରଥଙ୍କ ହାସ୍ୟକଲ୍ଲୋଳର ହାସ୍ୟ ମୋଟାମୋଟି ଭାବରେ ମୋଟାବୁଦ୍ଧିଆଙ୍କ ପାଇଁ ଉପଯୁକ୍ତ, କିନ୍ତୁ ତାଙ୍କର 'ଜଗତେ କେବଳ ଜନେ ହସିବେ ଏହିତହୁଁ ଫଳ' ଓ 'କାହାକୁ ଅଡ଼ିବା, କପାଳରେ ସିନା କର ତାଡ଼ିବା' ଆଦି ଗୀତରେ ଯେଉଁ ହାସ୍ୟୋଦ୍ଦୀପକ ପରିସ୍ଥିତି ଗୁଡ଼ିକର ବର୍ଣ୍ଣନା ରହିଛି ତାହା ବିଦଗ୍ଧ ରସିକ ସମାଜ ପାଇଁ ଉପଯୁକ୍ତ।

ହାସ୍ୟକାରିଆ ଭାବରେ ଓଡ଼ିଶାରେ ସବୁଠାରୁ ଅଧିକ ଖ୍ୟାତିବାନ୍ ହୋଇଛନ୍ତି ଯେଉଁ ଯଦୁମଣି ମହାପାତ୍ର ସେ ବ୍ୟଙ୍ଗ୍ୟବିଦ୍ରୂପ, ଥଟ୍ଟାକରି କୌତୁକ ଓ ବାକ୍‌ଚାତୁରି କରିବାରେ ସୁନିପୁଣ ଥିବା ନେଇ ଅନେକଗୁଡ଼ିଏ କାହାଣୀ ଲୋକମୁଖରେ ରହିଛି। ତାଙ୍କୁ ଲଗାଇ ପ୍ରଚାରିତ ସବୁଗୁଡ଼ିକ କାହାଣୀ ଯେ ଐତିହାସିକ ସତ୍ୟତା ଗର୍ଭକ ତାହା କହି ହେଉନାହିଁ। କାରଣ ଅନୁରୂପ କେତେ କାହାଣୀ ବୀରବଲ, ତେନାଲିରାମକୃଷ୍ଣ ପ୍ରମୁଖଙ୍କ ଜୀବନରେ ଘଟିଥିବା କଥା ଶୁଣିବାକୁ ମିଳୁଛି। ଯଦୁମଣି ଆଶୁକବିତ୍ୱ କରି ବହୁ କୁନି କୁନି କୌତୁକିଆ କବିତା ସୃଷ୍ଟି କରିଥିଲେ ଓ ତନ୍ମଧ୍ୟରୁ ଅଳ୍ପକେତୋଟି କାଳକବଳିତ ହୋଇନାହିଁ। ସେ କେତୋଟି ପୌରାଣିକ କାବ୍ୟ ଲେଖିଛନ୍ତି କିନ୍ତୁ ସେଥିରେ ହାସ୍ୟରସର ଛିଟା ପଡ଼ିନାହିଁ କହିଲେ ଚଳେ।

ସେହି ଗୋଟିଏ ମୁହଁ ଟିକିଏ ହସ ଧରିଥିଲେ କେଡ଼େ ମୋନରମ କେଡ଼େ ଆକର୍ଷଣୀୟ ନ ଲାଗେ। ଅଥଚ ହସ ନଥିଲେ ତାହାଠାରୁ ଦୂରେଇ ଯିବାକୁ ଇଚ୍ଛାହୁଏ। ସେହିପରି ଏ ସାହିତ୍ୟ, ଟିକେ ନାଁକୁ ହାସ୍ୟର ସଂଯୋଗ ତାହାକୁ ଆହ୍ଲାଦକର ଓ ପ୍ରେମଣୀୟ କରାଏ।

ଦ୍ୱାଦଶ ଅଧ୍ୟାୟ

# ତେଲୁଗୁ ସାହିତ୍ୟକୁ ଓଡ଼ିଆଙ୍କ ଦାନ

ନବ-ଭାରତୀୟ ଭାଷାଗୁଡ଼ିକ ମଧ୍ୟରେ ଓଡ଼ିଆର ପ୍ରତିବେଶୀ ତେଲୁଗୁ ଏକ ସୁପ୍ରାଚୀନ ସମୃଦ୍ଧ ଭାଷା । ତେଲୁଗୁର ପ୍ରାଚୀନତମ ଅଭିଲେଖ (ଧନଞ୍ଜୟ ରାଜାଙ୍କ କଲମଲ୍ଲ ଦାନଶାସନ) ଖ୍ରୀ. ୬ଷ୍ଠ ଶତାବ୍ଦୀରେ ରଚିତ ହୋଇଛି । ଅଦ୍ୟାବଧି ମିଳିଥିବା ତେଲୁଗୁ ଗ୍ରନ୍ଥରାଜି ମଧ୍ୟରେ ପ୍ରାଚୀନତମ ନନ୍ନୟାଙ୍କ 'ମହାଭାରତ ଖ୍ରୀ. ୧୧ଶ ଶତାବ୍ଦୀର ରଚନା । ଦୀର୍ଘ ଏକ ହଜାର ବର୍ଷ ଧରି ଶତଶତ କବି ତେଲୁଗୁ ସାହିତ୍ୟ ଭଣ୍ଡାରକୁ ସହସ୍ର ସହସ୍ର ଗ୍ରନ୍ଥରତ୍ନ ଦାନ କରି ଯାଇଛନ୍ତି । ଗୋଟିଏ ଗଣନାରୁ ପ୍ରକାଶ ଯେ ବିଂଶ ଶତାବ୍ଦୀର ଆରମ୍ଭ କାଳ ସୁଦ୍ଧା ତେଲୁଗୁରେ ମୋଟ ୧୪, ୨୯୭ ଗୋଟି ଗ୍ରନ୍ଥ ରଚିତ ହୋଇ ସାରିଥିଲା । ତନ୍ମଧ୍ୟରୁ ୧୨. ୫୩୬ଟି ଗ୍ରନ୍ଥ ମୁଦ୍ରିତ ହୋଇ ସାରିଥିଲା । ଅତେ [illegible] କହିଥିଲେ ଯେ ପ୍ରତି ଦୁଇ ଜଣ ତେଲୁଗୁ [illegible]ରୁ ଜଣେ ନିଶ୍ଚୟ କବି । [illegible] କବିମାନଙ୍କର ସଂଖ୍ୟା କଳନୀୟ ।

ଯେକୌଣସି ଭାଷାର ସାହିତ୍ୟକୁ ସମୃଦ୍ଧ କରିବାରେ ସେହି ଭାଷାଭାଷୀମାନେ ହିଁ ମୁଖ୍ୟ ଭାଗ ନେବା ସ୍ୱାଭାବିକ । ସାହିତ୍ୟକୁ ଅନ୍ୟ ଭାଷାଭାଷୀମାନେ ଯେଉଁ ଦାନ ଦେଇଥାନ୍ତି ତାହାର ପରିଣାମ ଓ ମୂଲ୍ୟ ବିଶେଷ ନ ହେଲେ ମଧ୍ୟ ଭାଷା ଭାଷା ମଧ୍ୟରେ ସଦ୍‌ଭାବ ଓ ସୌହାର୍ଦ୍ଦ୍ୟ ବିଚାରରୁ ତାହା ସ୍ୱତନ୍ତ୍ର ଚର୍ଚ୍ଚା ଦାବି କରେ । ସବୁ ନବ-ଭାରତୀୟ ଭାଷା ଅନ୍ୟାନ୍ୟ ଭାଷା (ବିଶେଷତଃ ପ୍ରତିବେଶୀ ଭାଷା) ଗୁଡ଼ିକ ନିକଟରେ ଅଳ୍ପବହୁତ ଋଣୀ ହୋଇଥାନ୍ତି । ଓଡ଼ିଆ ସାହିତ୍ୟକୁ ବଙ୍ଗଳା, ହିନ୍ଦୀ ଓ ତେଲୁଗୁ ଭାଷୀମାନେ ଅନେକ ଭାବରେ ପୁଷ୍ଟ କରିଥିବା ପରି ତେଲୁଗୁର ପ୍ରତିବେଶୀ ଓଡ଼ିଆ, ମରାଠୀ, କନ୍ନଡ଼ ଓ ତାମିଲ ଭାଷୀମାନେ ମଧ୍ୟ ଅନେକ ଶତାବ୍ଦୀ ଧରି ତେଲୁଗୁ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ତେଲୁଗୁ ସାହିତ୍ୟର ସ୍ରଷ୍ଟା ଭାବରେ ଅନେକ ଓଡ଼ିଆ ଭାଷୀ ଅକ୍ଷୟ କୀର୍ତ୍ତି ରଖି ଯାଇଛନ୍ତି । ଆଉ ବି ଅନେକ ଓଡ଼ିଆ ଭାଷୀ ତେଲୁଗୁ କବି ଓ ସାହିତ୍ୟିକଙ୍କର ପୃଷ୍ଠପୋଷକତା କରି ସୁନାମ ଅର୍ଜନ କରିଯାଇଛନ୍ତି । ଏହି ଆଲୋଚନାରେ ପ୍ରଥମେ ପୃଷ୍ଠପୋଷକମାନଙ୍କର ଓ ପରେ କବିମାନଙ୍କର ଏକ ସଂକ୍ଷିପ୍ତ ବିବରଣ ଦିଆଯାଉଛି ।

ପ୍ରାଚୀନ କାଳରୁ ତେଲୁଗୁ ଦେଶର ରାଜାମାନେ ନିଜ ନିଜ ରାଜ ସଭାରେ ବିଖ୍ୟାତ କବି ଓ ପଣ୍ଡିତମାନଙ୍କୁ ସମ୍ମାନର ସହିତ ସ୍ଥାନ ଦେଇ ଅନ୍ୟାନ୍ୟ ରାଜସଭା ତୁଳନାରେ ନିଜ ରାଜସଭାର ଗୌରବକୁ ବଢ଼ାଇବା ଲାଗି ପରସ୍ପର ମଧ୍ୟରେ ଏକ ପ୍ରକାର ପ୍ରତିଯୋଗିତା କରୁଥିଲେ। ଦକ୍ଷିଣ ଓଡ଼ିଶା ତଥା ଉତ୍ତର ଆନ୍ଧ୍ରର ଓଡ଼ିଆ ରାଜାମାନେ ମଧ୍ୟ ସେମାନଙ୍କ ରାଜସଭାରେ ତେଲୁଗୁ କବି ଓ ପଣ୍ଡିତମାନଙ୍କୁ ସମ୍ମାନ ଦେଉଥିବା ଜଣାଯାଏ।

ଉତ୍କଳର ଗଜପତି ପୁରୁଷୋତ୍ତମ ଦେବ (ଖ୍ରୀ. ୧୪୬୭-୧୪୯୭)ଙ୍କର ସାମନ୍ତରାଜା ଉଦୟଗିରିର ବାସବ ଭୂପାଳ ତେଲୁଗୁ ସାହିତ୍ୟର ସର୍ବାପେକ୍ଷା ପ୍ରାଚୀନ ପଞ୍ଚତନ୍ତ୍ର ଗ୍ରନ୍ଥର ପ୍ରଣେତା ଦୂବଗୁଣ୍ଟ ନାରାୟଣଙ୍କର ପୃଷ୍ଠପୋଷକ ଥିଲେ। ବାସବ ଭୂପାଳ ଗଜପତିଙ୍କଠାରୁ ଯାନବାହନ ଆଦି ବହୁମାନ-ଦ୍ରବ୍ୟ ଲାଭ କରିଥିବା ତଥା ଗଜପତିଙ୍କର ସାମ୍ରାଜ୍ୟର ଦକ୍ଷିଣାଞ୍ଚଳର ଦୁର୍ଗଗୁଡ଼ିକର ଅପରାଜେୟ ରକ୍ଷକ ଥିବା କଥା କବି ନାରାୟଣ ଲେଖିଛନ୍ତି। ବାସବଙ୍କ ମନ୍ତ୍ରୀ ଗଙ୍ଗନା ପୁରୁଷୋତ୍ତମ ଦେବଙ୍କ ସହିତ ଚନ୍ଦ୍ରଗିରି (ଓଡ଼ିଶାର କିଂବଦନ୍ତୀର କାଞ୍ଚୀ) ରାଜା ସାଲୁବ ନରସିଂହଙ୍କ ସଙ୍ଗେ ଯୁଦ୍ଧ କରି ବୀରତ୍ୱ ପ୍ରଦର୍ଶନ ପାଇଁ ପୁରୁଷୋତ୍ତମଙ୍କ ପ୍ରଶଂସାଭାଜନ ହୋଇଥିଲେ। ଗଙ୍ଗନା ମଧ୍ୟ ଜଣେ ସାହିତ୍ୟ ରସିକ ଥିଲେ। ତାହାଙ୍କ ପୃଷ୍ଠପୋଷକତା ଲାଭ କରି ତେଲୁଗୁ ସାହିତ୍ୟର ପ୍ରାଚୀନତମ ଯୁଗ୍ମକବି ନନ୍ଦୀ ମଲ୍ଲନା ଓ ଘଣ୍ଟ ସିଙ୍ଗନା 'ପ୍ରବୋଧ ଚନ୍ଦ୍ରୋଦୟ' ରଚନା କରିଥିଲେ। ଦୁଇ ଜଣ କବି ମିଳି ଗୋଟିଏ କାବ୍ୟ ରଚନା କରିବା ରୀତି ତେଲୁଗୁରେ ତଦବଧି ଚଳି ଆସୁଛି।

ବିଶାଖା ପାଟଣା ଜିଲାର ବିଜୟନଗରର ରାଜା ରାଚିରାଜୁ ନିଜେ ଜଣେ କବି, ସେ ମଧ୍ୟ କବିମାନଙ୍କର ପୃଷ୍ଠପୋଷକ ଥିଲେ। ଏହି ରାଚିରାଜୁ ଗଜପତି ପୁରୁଷୋତ୍ତମ ଦେବଙ୍କ ଠାରୁ କେତବରମ୍ ନାମକ ନଗରପାଇ ସେଠାରେ ତାଙ୍କର ସାମନ୍ତରାଜ୍ୟର ରାଜଧାନୀ ପ୍ରତିଷ୍ଠା କରିଥିଲେ। ରାଚିରାଜୁ ତେଲୁଗୁରେ 'ବଶିଷ୍ଠ ଗୋତ୍ର କ୍ଷତ୍ରିୟୁଲ ଚରିତ୍ରମୁ' ରଚନା କରିଛନ୍ତି। ତାଙ୍କର ବଂଶଧରମାନେ ମଧ୍ୟ ତେଲୁଗୁ କବି ଭାବରେ ତଥା କବିମାନଙ୍କର ଆଶ୍ରୟଦାତା ଭାବରେ କୀର୍ତ୍ତିମାନ୍ ହୋଇଛନ୍ତି।

ତେଲୁଗୁ 'ମୈରାବଣ ଚରିତ୍ରମୁ', 'ଦେବେନ୍ଦ୍ରବିଜୟମୁ' ଆଦିର କବି ମାଡ଼୍ୟା ଉତ୍କଳର ଗଜପତି ପ୍ରତାପରୁଦ୍ର ଦେବ (ଖ୍ରୀ.୧୪୯୭-୧୫୩୪) ସମୟର ବ୍ୟକ୍ତି। ସେ ଉତ୍କଳର ନନ୍ଦପୁର (ଆଧୁନିକ ଅବିଭକ୍ତ କୋରାପୁଟ ଜିଲ୍ଲା ଯୁଗର) ଓ ଖେମୁଣ୍ଡିର ଓଡ଼ିଆ ସାମନ୍ତ ରାଜାମାନଙ୍କ ଦ୍ୱାରା ସମ୍ମାନିତ ହୋଇଥିବା ବିଷୟ ତାଙ୍କର 'ମୈରାବଣ ଚରିତ୍ରମୁ' (ମହୀରାବଣ ଚରିତ) ମଧ୍ୟରେ ଲେଖିଛନ୍ତି :-

"କନକାଞ୍ଚନାଭରଣମୁ ଲେପାରା ନନ୍ଦପୁରୀଶୁ ଚେତା
ଅଦି ନାଡ଼ବୁ ଉତ୍ତମାଷ୍ଟଦ୍ୱୟମୁନୁ କିମିଡ଼ି ଭୂମଣ୍ଡଳରମଣ ଚେତା"।

ଅର୍ଥାତ୍, (କବିଙ୍କୁ ସଂବୋଧନ କରି କୁହାଯାଇଛି) ତୁମ୍ଭେ ନନ୍ଦପୁରୀଶଙ୍କ ଠାରୁ ସୁବର୍ଣ୍ଣଭୂଷଣ ଓ ଖେମୁଣ୍ଡି ରାଜାଙ୍କ ଠାରୁ ଦୁଇଟି ଉତ୍ତମ ଅଶ୍ୱ ଉପହାର ପାଇଛ। (ଭଳ୍ହରର ନନ୍ଦପୁର ରାଜ୍ୟ ପରେ ଜୟପୁର ନାମ ଗ୍ରହଣ କଲା। ଗଞ୍ଜାମର ପ୍ରାଚୀନ ଖେମୁଣ୍ଡି ରାଜ୍ୟ ଖ୍ରୀ. ୧୬ଶ ଶତାବ୍ଦୀରେ ବିଭକ୍ତ ହୋଇ ପାରଳାଖେମୁଣ୍ଡି ଓ ବିଜୟନଗର ବୋଲାଇଲା। ଖ୍ରୀ. ୧୮ଶ ଶତାବ୍ଦୀରେ ବିଜୟନଗର ରାଜ୍ୟ ପୁଣି ଦୁଇଭାଗ ହୋଇ ବଡ଼ଖେମୁଣ୍ଡି ଓ ସାନଖେମୁଣ୍ଡି ଜମିଦାରୀର ସୃଷ୍ଟି ହେଲା)।

ଗଜପତି ପ୍ରତାପରୁଦ୍ର ତାଙ୍କ କନ୍ୟା ଭଦ୍ରାଙ୍କୁ କର୍ଣ୍ଣାଟର ବିଜୟନଗରର ରାଜା କୃଷ୍ଣଦେବ ରାୟ (ଖ୍ରୀ.୧୫୦୯-୧୫୨୯)ଙ୍କୁ ପ୍ରଦାନ କରିବା ସମୟରେ ଯୌତୁକ ସହ ତେଲୁଗୁ କବି ନନ୍ଦୀ ତିମ୍ମନାଙ୍କୁ କୃଷ୍ଣଦେବ ରାୟଙ୍କ ସଭାକୁ ପ୍ରେରଣ କରିଥିବା କିଂବଦନ୍ତୀ ରହିଛି। ଏହି ରାଜକନ୍ୟାଙ୍କ ନାମ ତୁକ୍କା, ଜଗମୋହିନୀ ଓ ଲକ୍ଷ୍ମୀ ବୋଲି ଭିନ୍ନ ଭିନ୍ନ ସୂତ୍ରରୁ ମିଳେ। କୃଷ୍ଣଦେବଙ୍କ ରାଜସଭା 'ଭୁବନବିଜୟ'ରେ ଆସନ ଗ୍ରହଣ କରିବା ଲାଗି ଯେଉଁ ଆଠ ଜଣ ବିଖ୍ୟାତ ତେଲୁଗୁ କବି ଯୋଗ୍ୟ ବିବେଚିତ ହୋଇଥିଲେ ସେମାନଙ୍କ ମଧ୍ୟରେ ନନ୍ଦୀ ତିମ୍ମନା ଏକତମ। ଜନଶ୍ରୁତି ଅନୁସାରେ, ଦିନେ ଶଯ୍ୟାରେ ଭଦ୍ରାଙ୍କ ବାମପାଦ କୃଷ୍ଣଦେବଙ୍କ ମସ୍ତକରେ ବାଜିଲା। [illegible] ଭଦ୍ରା ତାଙ୍କୁ ପଦାଘାତ କଲେ ବୋଲି ଭାବି କୃଷ୍ଣଦେବ ଭଦ୍ରାଙ୍କ ଅନ୍ତଃପୁରରେ ଆଉ ପ୍ରବେଶ କଲେ ନାହିଁ। ପରିଜନମାନଙ୍କ ମୁଖରୁ କବି ତିମ୍ମନା ଏ ବିଷୟ ଶୁଣିବା ପରେ ''ପାରିଜାତାପହରଣମ୍' କାବ୍ୟ ରଚନା କରି [illegible] ଗ୍ରହଣ କରିବା ରସିକତାର ପରିଚାୟକ ବୋଲି ପ୍ରତିପାଦନ କରିଥିଲେ। କାବ୍ୟଟିରେ ସତ୍ୟଭାମା ବାମପାଦରେ କୃଷ୍ଣଙ୍କ ମସ୍ତକରେ ଆଘାତ କରିବାର ଓ କୃଷ୍ଣ ତାହାକୁ ରସିକତାରେ ଗ୍ରହଣ କରିବାର ବର୍ଣ୍ଣନା ଦିଆଯାଇଛି। କୃଷ୍ଣଦେବ ରାୟ କାବ୍ୟ ଶ୍ରବଣ କରି, କାବ୍ୟରେ କୃଷ୍ଣଙ୍କ ଆଚରଣ ସଙ୍ଗେ ସେହି ନାମଧାରୀ ନିଜର ଆଚରଣକୁ ତୁଳନା କରି, ସେହିଦିନଠୁଁ ଭଦ୍ରାଙ୍କର ପ୍ରଣୟ ଭିକ୍ଷା କରିଥିଲେ ବୋଲି କିଂବଦନ୍ତୀ ରହିଛି।

ପାରଳାଖେମୁଣ୍ଡିର ଗଙ୍ଗରାଜାମାନେ ଓଡ଼ିଆ ଓ ତେଲୁଗୁ ସାହିତ୍ୟ ଓ ସଙ୍ଗୀତ ପ୍ରତି ପ୍ରଗାଢ଼ ଅନୁରାଗ ଦେଖାଉଥିଲେ। ପାରଳା ରାଜା ଗଜପତି ଜଗନ୍ନାଥ ନାରାୟଣ ଦେବ (ଖ୍ରୀ. ୧୭୪୫-୧୭୬୮) ଯେପରି ପରାକ୍ରମୀ ଥିଲେ ସେହିପରି ସାହିତ୍ୟକାର ଓ ସାହିତ୍ୟିକ ପୋଷକ ଥିଲେ। ସେ ଖ୍ରୀ. ୧୭୬୦ରେ ଖୋରଧା ପର୍ଯ୍ୟନ୍ତ ଅଧିକାର କରି ନେଇଥିଲେ ଓ ଜଣେ ସ୍ୱାଧୀନ ରାଜା ଥିଲେ। ତାହାଙ୍କର ଲେଖନୀ ନିଃସୃତ 'ପ୍ରଭାବତୀ ପରିଣୟ' ଓ 'ନବ ବୃନ୍ଦାବନଚନ୍ଦ୍ର ବିହାର' ଗ୍ରନ୍ଥ ଦ୍ୱୟ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି। ତାହାଙ୍କର ରାଜସଭାକୁ ସଂସ୍କୃତ, ଓଡ଼ିଆ ଓ ତେଲୁଗୁ କବି ଓ ପଣ୍ଡିତମାନେ ଅଳଂକୃତ କରୁଥିଲେ। ତେଲୁଗୁ ସାହିତ୍ୟର ଜଣେ ଖ୍ୟାତନାମା

କବି ଆଡ଼ିଦାମୁ ସୂରକବି ତାହାଙ୍କ ରାଜସଭାରେ ସମ୍ମାନ ଲାଭ କରିଥିବା ଜଣାଯାଏ। ସୂରକବି (ଏହାର ଅର୍ଥ କବିସୂର୍ଯ୍ୟ) 'କବିଜନ ରଞ୍ଜନମୁ', 'କବିସଂଶୟ ବିଚ୍ଛେଦମୁ', 'ଆନ୍ଧ୍ରଚନ୍ଦ୍ରା-ଲୋକମୁ', 'ଆନ୍ଧ୍ରନାମଶେଷମୁ', 'ରାମଲିଙ୍ଗେଶ୍ୱରଶତକମୁ', 'ଶ୍ରୀରାମଦଣ୍ଡକମୁ' ଆଦି ବହୁଗ୍ରନ୍ଥର ପ୍ରଣେତା। ସେ ଗୋଟିଏ କବିତାରେ ଗଜପତି ଜଗନ୍ନାଥଙ୍କର ଭୂରି ଭୂରି ପ୍ରଶଂସା ଗାନ କରିଛନ୍ତି :-

"ନୀବିଚ୍ଚୁ ଭତ୍ୟ ଖର୍ଚ୍ଚା,
ଭୂବଲ୍ଲଭୁଡ଼ିଚ୍ଚୁ ତ୍ୟାଗମୁନ କେନବଚ୍ଚୁନ୍,
ପାବ ନ ଗୁଣ ନାରାୟଣ ଦେବ
ମହାରାଜା ସାହିତ୍ୟ ନବ ଭୋଜ।"

ଅର୍ଥାତ୍, ହେ ନାରାୟଣ ଦେବ ମହାରାଜା, ହେ ସାହିତ୍ୟ ରାଜ୍ୟର ନବ ଭୋଜରାଜା, ଆପଣ ପବିତ୍ରଗୁଣ ସମ୍ପନ୍ନ, ଆପଣ ଯେତିକି ସଞ୍ଚା (ଭାତିଆ ଖର୍ଚ୍ଚ) ଦିଅନ୍ତି ତାହା ଜଣେ ଜଣେ ରାଜାଙ୍କ ତ୍ୟାଗ ଧନ ସହିତ ସମାନ। ପୁଣି,

"ବାରିଧି କିନି ବାରିଧିୟେ
ମେରୁ ନଗମୁନକୁ ମାଟି ମେରୁ ନଗମ୍ୱେ.
ନାରାୟଣ ଦେଓକୁ ସରି
ନାରାୟଣ ଦେଓ ନାରା ନ
ତୁଳନା କେବଳ ବାରିଧି, ମେରୁ ପର୍ବତ

ପର୍ବତ ହିଁ ସମାନ, ସେହିପରି ନାରାୟଣ ଦେବଙ୍କ ସହିତ ନାରାୟଣ ଦେବ ଭିନ୍ନ ଅନ୍ୟ କେହି ନରପତି ସମାନ ନୁହନ୍ତି।

ଊନବିଂଶ ଶତାବ୍ଦୀର ଶେଷଭାଗରେ ଦୁଇଜଣ ପ୍ରସିଦ୍ଧ ତେଲୁଗୁ ସାହିତ୍ୟିକ ପାରଳାଖେମଣ୍ଡି ରାଜାଙ୍କ ପୃଷ୍ଠପୋଷକତା ପାଉଥିବା ଜଣାଯାଏ। ମୁଖଲିଂଗେଶ୍ୱର ଶାସ୍ତ୍ରୀ ନାମକ ଜଣେ ସଂସ୍କୃତ ପଣ୍ଡିତ ପାରଳା ରାଜାଙ୍କ ସଭାପଣ୍ଡିତ ଥିଲେ। ତାହାଙ୍କର ପୁତ୍ର ପାରନନ୍ଦୀ ରାମଶାସ୍ତ୍ରୀ (ଖ୍ରୀ. ୧୮୫୩-୧୯୩୦) ତେଲୁଗୁ ଓ ସଂସ୍କୃତରେ ଅଗାଧ ପାଣ୍ଡିତ୍ୟ ଓ କବିତ୍ୱ ଶକ୍ତି ଅର୍ଜନ କରିଥିଲେ। ରାମଶାସ୍ତ୍ରୀ ତେଲୁଗୁରେ ମଧୁକେଶ୍ୱରୀୟମୁ, ଆନ୍ଧ୍ରଶବ୍ଦ ଚିନ୍ତାମଣି, ଆନ୍ଧ୍ର ମହାଭାରତ ବିମର୍ଶନମୁ, କୁରୁକ୍ଷେତ୍ର ଯୁଦ୍ଧକାଳ ନିର୍ଣ୍ଣୟମୁ' ପ୍ରଭୃତି ଉପାଦେୟ ଗ୍ରନ୍ଥ ରଚନା କରିଛନ୍ତି। ସେ ପାରଳା ରାଜସଭାରେ ଓଡ଼ିଆ ପଣ୍ଡିତମାନଙ୍କ ସହ ବିଦ୍ୟାଚର୍ଚ୍ଚା କରୁଥିଲେ। ଓଡ଼ିଆ ଭାଷାତତ୍ତ୍ୱବେତ୍ତା ଗୋପୀନାଥ ନନ୍ଦ ରାମଶାସ୍ତ୍ରୀଙ୍କ ଠାରୁ ନାନା ଭାବରେ ପ୍ରେରଣା ପାଇଥିବା ଅନୁମିତ ହୁଏ। ରାମଶାସ୍ତ୍ରୀଙ୍କ ଆନ୍ଧ୍ରଶବ୍ଦ ଚିନ୍ତାମଣି ଓ ଆନ୍ଧ୍ର ମହାଭାରତ ବିମର୍ଶନମୁର ଛାପ ନନ୍ଦଙ୍କ ଶବ୍ଦତତ୍ତ୍ୱବୋଧ ଅଭିଧାନ ଓ ଶ୍ରୀଭାରତ ଦର୍ପଣରେ ଦେଖିହେବ। ସେହି ସମୟରେ ପାରଳାରାଜାଙ୍କ ଆଶ୍ରୟ ଲାଭ କରିଥିବା ଅନ୍ୟତମ ପ୍ରସିଦ୍ଧ ତେଲୁଗୁ ସାହିତ୍ୟିକ

ହେଲେ ମଣ୍ଡା ବେଙ୍କଟ କବି (୧୮୪୬-୧୯୦୩)। ସେ ଗଜପତିଙ୍କ ଦ୍ୱାରା ପ୍ରତିଷ୍ଠିତ ସଂସ୍କୃତ ବିଦ୍ୟାଳୟର ପଣ୍ଡିତ ଥିଲେ। ବେଙ୍କଟ କବିଙ୍କ ରଚିତ 'ଜାବଲୀଲୁ' ତେଲୁଗୁ ଦେଶରେ ସର୍ବତ୍ର ବିଶେଷ ଜନସମାଦର ଲାଭ କରିଛି। ଜାବଲୀଲୁ ବ୍ୟତୀତ ସେ କୁଶଚରିତ୍ରମୁ, ବୈଦର୍ଭୀପରିଣୟମୁ, ରୁକ୍ମିଣୀ ନାଟକମୁ ଆଦି ଅନେକାନେକ ଗ୍ରନ୍ଥ ପ୍ରଣୟନ କରି ତେଲୁଗୁ ସାହିତ୍ୟ ଭଣ୍ଡାରକୁ ଗ୍ରନ୍ଥାଢ୍ୟ କରିଯାଇଛନ୍ତି। ପାରଳାଖେମୁଣ୍ଡିର ରାଜଧାନୀ ଅଷ୍ଟାଦଶ ଶତାବ୍ଦୀରୁ ଏକ ପ୍ରଧାନ ସାହିତ୍ୟ-ସାଧନାପୀଠ ରୂପେ ଗଣ୍ୟ ହେଉଥିଲା। ସେଠାର ସଂସ୍କୃତ ବିଦ୍ୟାଳୟ ବହୁ ତେଲୁଗୁ ପଣ୍ଡିତଙ୍କର ଅଧ୍ୟାପନା ସ୍ଥଳ ଥିଲା।

ଆଧୁନିକ ଆନ୍ଧ୍ର ପ୍ରଦେଶାନ୍ତର୍ଗତ ସାଲୁର, ପାର୍ବତୀପୁର, ମାଡ଼ଗୁଳ, ସଙ୍ଗମବଳସା, ମଞ୍ଜୁଷା, ଜଳନ୍ତର ଆଦି ଜମିଦାରିର ରାଜାମାନେ ଓଡ଼ିଆ। ଏହି ରାଜାମାନେ ନିଜ ନିଜ ସମ୍ବଳ ଅନୁସାରେ ତେଲୁଗୁ କବି ଓ ପଣ୍ଡିତମାନଙ୍କୁ ସମ୍ମାନ ଦେଇ ରାଜସଭାରେ ରଖିବା ପାଇଁ ଆଗ୍ରହ ପ୍ରକାଶ କରି ଆସୁଥିଲେ। ପାର୍ବତୀ ପୁରର ରାଜା ଧନଞ୍ଜୟ ଥାଟରାଜ (୧୮ଶ ଶତାବ୍ଦୀର ଶେଷଭାଗ) ତେଲୁଗୁ ସାହିତ୍ୟର ପୋଷାକ ଭାବରେ ସୁନାମ ଅର୍ଜନ କରିଛନ୍ତି। ପାନ୍ତୁଲୁ ବ୍ରହ୍ମଦେବ ଓ କମ୍ମୋଜୁ ସୋମନାଥ ନାମକ ଦୁଇ ଜଣ ତେଲୁଗୁ କବି ତାହାଙ୍କର ରାଜସଭାରେ ଥିଲେ। 'ଇନ୍ଦୁମତୀ ପରିଣୟମୁ' ଆଦି କାବ୍ୟର କବି ବ୍ରହ୍ମଦେବଙ୍କୁ ଧନଞ୍ଜୟ 'କବି ସାର୍ବଭୌମ' ଉପାଧିରେ ଭୂଷିତ କରିଥିଲେ। କମ୍ମୋଜୁ ସୋମନାଥ ବା ସୋମୟା ଶିଳ୍ପାଚାର୍ଯ୍ୟ (ସୁନାରି) ଥିଲେ। ସେ ଓଡ଼ିଆ କବି ଡ଼ୋଙ୍କାଡ଼ ଗୋପୀନାଥଙ୍କ ଦ୍ୱାରା ରଚିତ ତେଲୁଗୁ ଗଦ୍ୟ 'ବିଚିତ୍ର ରାମାୟଣମୁ' କୁ ପଦ୍ୟରେ ରୂପାନ୍ତରିତ କରିଥିଲେ।

ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ସାଲୁର ରାଜ୍ୟର ରାଜା ବଳିଆର ସିଂହ ସନ୍ୟାସୀ ରାଜୁ ସାହିତ୍ୟାମୋଦୀ ଥିଲେ। ତାହାଙ୍କ ରାଜସଭାରେ ପୂର୍ବ କଥିତ ଆଡ଼ିଦାମୁ ସୂରକବି ସମ୍ମାନିତ ହୋଇଥିଲେ। ସୂରକବି ଗୋଟିଏ ତେଲୁଗୁ କବିତାରେ ଏହି ବଳିଆର ସିଂହଙ୍କର ପ୍ରଶସ୍ତିଗାତ କରିଛନ୍ତି। ଏହାଙ୍କର ଆସ୍ଥାନ କବି (ଅର୍ଥାତ୍ ସଭାକବି) ଥିଲେ ତଚ୍ଚିକୋଟ ବଳରାମ (ଯାହାଙ୍କ ପ୍ରସଙ୍ଗ ପରେ ଆଲୋଚିତ ହେବ)। ଖ୍ରୀ. ୧୭୭୪ରେ ସନ୍ୟାସୀ ରାଜୁଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ରାମଚନ୍ଦ୍ର ରାଜୁ ରାଜା ହେଲେ। ରାମଚନ୍ଦ୍ର ମଧ୍ୟ ତେଲୁଗୁ ସାହିତ୍ୟର ରସିକ ଥିଲେ। ତାଙ୍କ ପୃଷ୍ଠପୋଷକତା ଲାଭ କରିଥିଲେ 'ରାମଚନ୍ଦ୍ର ଶତକମୁ' ଆଦିର ପ୍ରଣେତା କବି କିମ୍ମୁରି ସନ୍ୟାସୀ ରାଜୁ। ଏହି ରାମଚନ୍ଦ୍ର ରାଜୁଙ୍କ ପୁତୁରା ଜଗନ୍ନାଥ ରାଜୁ ମଧ୍ୟ ତେଲୁଗୁ ସାହିତ୍ୟର ଜଣେ ପୃଷ୍ଠପୋଷକ ଥିଲେ। ଜଗନ୍ନାଥଙ୍କ ଆଶ୍ରୟ ଲାଭ କରିଥିଲେ ଅମଲାପୁରପୁ ସନ୍ୟାସୀ କବି (ଖ୍ରୀ. ୧୮୦୦-୧୮୬୦) ଯେ କି ସର୍ବାନ୍ତ୍ରସାର ସଂଗ୍ରହମୁ ଓ ଅନେକ ଶତକ ସମେତ ଶତାଧିକ ଗ୍ରନ୍ଥ ପ୍ରଣୟନ କରି ଅକ୍ଷୟ କୀର୍ତ୍ତି ରଖିଯାଇଛନ୍ତି।

ମାଡ଼ୁଗୁଳ ଜମିଦାରିର ଓଡ଼ିଆ ରାଜା କୃଷ୍ଣଭୂପତି (ଖ୍ରୀ. ୧୮୩୨-୧୮୭୫) ମଧ୍ୟ ତେଲୁଗୁ କବି ପଣ୍ଡିତମାନଙ୍କର ବିଶିଷ୍ଟ ପୋଷକ ଥିଲେ। ଶିଷ୍ଟୁ କୃଷ୍ଣମୂର୍ତ୍ତି ଶାସ୍ତ୍ରୀ (ଖ୍ରୀ. ୧୮୦୮-୧୮୮୦), ଆଡ଼ିଦାମୁ ବାଲଭାସ୍କର (ଖ୍ରୀ. ୧୮୦୮-୧୮୭୪), ଅଲ୍ଲମରାଜୁ ସୁବ୍ରହ୍ମଣ୍ୟମ୍ (ଖ୍ରୀ.୧୮୩୧-୧୮୯୨) ଓ ମନ୍ତ୍ରୀପ୍ରଗଡ଼ ସୂର୍ଯ୍ୟପ୍ରକାଶ ପ୍ରଭୃତି ତେଲୁଗୁ କବି ଓ ପଣ୍ଡିତ ତାହାଙ୍କ ଆଶ୍ରୟ ଲାଭ କରି ତେଲୁଗୁ ସାହିତ୍ୟକୁ ସମୃଦ୍ଧ କରି ଯାଇଛନ୍ତି। କୃଷ୍ଣମୂର୍ତ୍ତି ଶାସ୍ତ୍ରୀ ତେଲୁଗୁରେ 'ପଞ୍ଚତନ୍ତ୍ରମୁ', 'ସର୍ବକାମଦା ପରିଣୟମୁ', 'ବେଙ୍କଟାଚଳ ମାହାତ୍ମ୍ୟମୁ', 'ସ୍ତ୍ରୀ ନୀତିଶାସ୍ତ୍ରମୁ', 'ନାଟକଦିପମୁ', 'ବାୟୁପୁତ୍ର ଶତକମୁ', ଓ 'ବସୁଚରିତ୍ର ବ୍ୟାଖ୍ୟାନମୁ' ଓ ସଂସ୍କୃତରେ 'ଯକ୍ଷୋଲ୍ଲାସମ' 'ଅଶ୍ୱଶାସ୍ତ୍ରମ୍' 'ମଦନାଭ୍ୟୁଦୟମ୍' ଓ 'ନୀଳଶୈଳନାଥୀୟମ୍' ଆଦି ବହୁ ଗ୍ରନ୍ଥ ପ୍ରଣୟନ କରିଥିଲେ। ସେ ଉଭୟ ସଂଗୀତ ଓ ସାହିତ୍ୟରେ ଧୁରନ୍ଧର ପଣ୍ଡିତ ଥିଲେ। ବହୁ ରାଜସଭାରେ ଆଶ୍ରୟ ନେବାପରେ ସେ ମାଡ଼ୁଗୁଳ ଆସି କୃଷ୍ଣଭୂପତିଙ୍କ ଠାରୁ ଭୂସମ୍ପତ୍ତି ପାଇ ସେଠାରେ ରହିଗଲେ। ବାଲଭାସ୍କର 'କୃଷ୍ଣଭୂପତି ତାରାବଳୀ' ନାମକ ତେଲୁଗୁ ଗ୍ରନ୍ଥ ରଚନା କରି କୃଷ୍ଣଭୂପତିଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ। ତାରାବଳୀ ଛଡ଼ା ବାଲଭାସ୍କର ତେଲୁଗୁରେ କେତେଗୁଡ଼ିଏ ଶତକ ମଧ୍ୟ ରଚନା କରିଛନ୍ତି। ସୁବ୍ରହ୍ମଣ୍ୟମ୍ ପ୍ରଥମେ ପିଠାପୁର ରାଜସଭାର କବି ଥିଲେ। କୃଷ୍ଣ ଭୂପତି ତାଙ୍କୁ ନିମନ୍ତ୍ରଣ କରି ଆଣି ଅନେକ ଗୌରବ ପ୍ରଦାନ କରିଥିଲେ। ସୁବ୍ରହ୍ମଣ୍ୟମ୍ 'କୃଷ୍ଣଭୂପତି ଲଲାମ ଶତକମୁ'ରେ ପୃଷ୍ଠପୋଷକଙ୍କ ପ୍ରଶସ୍ତି ଗାନ କରିଛନ୍ତି। ସେ 'ଶେଷ ଧର୍ମମୁଲୁ', 'ଆତ୍ମଧର୍ମମୁଲୁ' 'ମଣିଧ୍ୱଜ ଚରିତ୍ରମୁ', 'ଭଦ୍ରାପରିଣୟମୁ', 'ଶ୍ରୀକୃଷ୍ଣଲୀଳା କଲ୍ୟାଣମୁ' ଓ ଅନେକ ଶତକ ରଚନା କରି ତେଲୁଗୁ ସାହିତ୍ୟରେ ନିଜର ସ୍ଥାନ ନିର୍ଦ୍ଦିଷ୍ଟ କରି ଯାଇଛନ୍ତି। ମନ୍ତ୍ରୀପ୍ରଗଡ଼ ସୂର୍ଯ୍ୟପ୍ରକାଶ ମାଡ଼ୁଗୁଳର ଆସ୍ଥାନ ପଣ୍ଡିତ ଥିଲେ। ତାଙ୍କର 'କୃଷ୍ଣାର୍ଜୁନ ଚରିତ୍ରମୁ' ଏକ ଶ୍ଳେଷ କାବ୍ୟ। ଏହା ପୂର୍ବେ ତେଲୁଗୁ ଏମ୍.ଏ. ଶ୍ରେଣୀର ପାଠ୍ୟ ପୁସ୍ତକ ରୂପେ ନିର୍ବାଚିତ ହୋଇଥିଲା।

ସଙ୍ଗମବଲସାର ଓଡ଼ିଆ ରାଜାମାନେ ମଧ୍ୟ ତେଲୁଗୁ ସାହିତ୍ୟ-ଯଜ୍ଞର ପୁରୋଧା ଥିଲେ। ଏହାର ଖ୍ୟାତନାମା ରାଜା ମୃତ୍ୟୁଞ୍ଜୟ ନିଃଶଙ୍କ ଭୂପାଳ ଖ୍ରୀ. ୧୯ଶ ଶତାବ୍ଦୀରେ ରାଜତ୍ୱ କରୁଥିଲେ। ମୃତ୍ୟୁଞ୍ଜୟ ନିଜେ ଜଣେ ତେଲୁଗୁ କବି ଥିଲେ (ଏ ବିଷୟ ପରେ କୁହାଯିବ)। ଦେବରାଜୁ ବେଙ୍କଟ ରାଓ, ତନିକେଲ୍ଲ ପ୍ରକାଶ ରାୟଶାସ୍ତ୍ରୀ, ପରବସ୍ତୁ ବେଙ୍କଟ ରଙ୍ଗାଚାର୍ଯ୍ୟ ଆଦି ତେଲୁଗୁର ବହୁ ପଣ୍ଡିତ ଓ କବି ତାହାଙ୍କ ଆଶ୍ରୟ ଲାଭ କରି ସାହିତ୍ୟ ସାଧନା ରତ ଥିଲେ। ବେଙ୍କଟ ରଙ୍ଗାଚାର୍ଯ୍ୟ ନିଃଶଙ୍କ ଭୂପାଳଙ୍କ ଜୀବନୀ ରଚନା କରିଛନ୍ତି। ବେଙ୍କଟ ରଙ୍ଗାଚାର୍ଯ୍ୟଙ୍କ ଷଷ୍ଠିପୂର୍ତ୍ତି ଉତ୍ସବ (୬୧ତମ ଜନ୍ମଜୟନ୍ତୀ ଉତ୍ସବ) ନିଃଶଙ୍କ ଭୂପାଳ ମହା ସମାରୋହରେ ପାଳନ କରାଇଥିବା ଜଣାଯାଏ।

ଏତଦ୍ଭିନ୍ନ ଆହୁରି ଅନେକ ଓଡ଼ିଆ ରାଜା-ଜମିଦାର ନିଜ ମାତୃଭାଷାର କବି ଓ ପଣ୍ଡିତମାନଙ୍କୁ ସମ୍ମାନିତ କଲା ପରି ତେଲୁଗୁ କବି ଓ ପଣ୍ଡିତମାନଙ୍କୁ ସମ୍ମାନିତ କରୁଥିଲେ। ଉତ୍କଳର ଶେଷ ଗଜପତି ଚାଲୁକ୍ୟ ମୁକୁନ୍ଦଦେବ (ଖ୍ରୀ. ୧୫୬୦-୧୫୬୮) ମରୁଙ୍ଗଣ୍ଟି ସିଙ୍ଗରାଚାର୍ଯ୍ୟ ନାମକ ତେଲୁଗୁ କବିଙ୍କୁ ସମ୍ମାନିତ କରିଥିଲେ। ଦକ୍ଷିଣ ଓଡ଼ିଶାରୁ ମିଳିଥିବା ଅଷ୍ଟାଦଶ ଶତାବ୍ଦୀର ତମ୍ବାପଟାଗୁଡ଼ିକ ମଧ୍ୟରେ ତେଲୁଗୁ ପଣ୍ଡିତମାନଙ୍କୁ ଓଡ଼ିଆ ରାଜାମାନେ ଦେଇଥିବା ଭୂମି ଓ ଗ୍ରାମ ଦାନର ଅନେକ ଅଭିଲେଖ ଅନ୍ତର୍ଭୁକ୍ତ।

ଅନେକ ପ୍ରାଚୀନ ଓଡ଼ିଆ କବି ତେଲୁଗୁ ଭାଷା ଓ ସାହିତ୍ୟ ଅଧ୍ୟୟନ କରିଥିବା ଜଣାଯାଏ। ଉପେନ୍ଦ୍ରଭଞ୍ଜଙ୍କ ଠାରୁ ଆରମ୍ଭକରି ନିକଟ ଅତୀତର ଲୋକନାଥ ପଟ୍ଟନାୟକ (ନୂଆଗଡ଼)ଙ୍କ ପର୍ଯ୍ୟନ୍ତ ବନ୍ଧକାବ୍ୟର ପ୍ରଣେତାମାନେ ବନ୍ଧ ମଧ୍ୟରେ (ବିଶେଷତଃ ବିଭିନ୍ନ ରଥବନ୍ଧ ଗୁଡ଼ିକରେ) ତେଲୁଗୁଭାଷାକୁ ସ୍ଥାନ ଦେଇଛନ୍ତି। ଉପେନ୍ଦ୍ରଭଞ୍ଜ ତାଙ୍କର 'ବନ୍ଧୋଦୟ'ର ମହାରଥବନ୍ଧ ସଂପର୍କରେ ଲେଖିଛନ୍ତି :- ''ଏ ବନ୍ଧେ ସଂସ୍କୃତ ବଙ୍ଗଳା ତୈଲଙ୍ଗ ଖୋରଠା ରୀତି''। ସେହି ବନ୍ଧୋଦୟର ପ୍ରାଚୀନ ରଥବନ୍ଧ ଓ ବୈଦେହୀଶ ବିଳାସର ୪୯ଶ ଛାନ୍ଦର ରଥବନ୍ଧରେ ମଧ୍ୟ ତେଲୁଗୁ ଭାଷା ପାଇଛି। ଅଷ୍ଟାଦଶ ଶତାବ୍ଦୀର ଅନ୍ୟତମ ପ୍ରସିଦ୍ଧ ଓଡ଼ିଆ କବି ବ୍ରଜନାଥ ବଡ଼ଜେନା କିଛି କାଳ ଆନ୍ଧ୍ରପ୍ରଦେଶର ଶ୍ରୀକାକୁଳମ୍‌ଠାରେ ରହି ତେଲୁଗୁ ଭାଷା ଶିକ୍ଷା କରିଥିଲେ। ଶୁଣାଯାଏ ଯେ ସେ କେତେକ ତେଲୁଗୁ କବିତା ମଧ୍ୟ ରଚନା କରିଥିଲେ, ଯାହା ସମ୍ଭବତଃ ଓଡ଼ିଶାର ଅନୁଲେଖକମାନଙ୍କର ତେଲୁଗୁ ଭାଷାଜ୍ଞ ଅଭାବରୁ ନକଲ ନହୋଇ ନଷ୍ଟ ହୋଇଯାଇଛି। ଅନ୍ୟତମ ବିଖ୍ୟାତ ଓଡ଼ିଆ କବି ବଳଦେବ୍ ରଥ ମଧ୍ୟ ତାଙ୍କର ଜଳନ୍ତର (ଆନ୍ଧ୍ରପ୍ରଦେଶ ଅନ୍ତର୍ଗତ) ରହଣି କାଳରେ କେତେକ ତେଲୁଗୁ ସଂଗୀତ ରଚନା କରିଥିଲେ। ସେହି ସମୟର ଓଡ଼ିଆ ରଚନାଗୁଡ଼ିକ ପରି ଏଗୁଡ଼ିକ ମଧ୍ୟ ସେ ତାଙ୍କର ପୃଷ୍ଠପୋଷକ ରାଜା ରାମଚନ୍ଦ୍ର ଛୋଟରାୟଙ୍କ ନାମରେ ଭଣିତ କରିଛନ୍ତି। ମୁଁ ତାଙ୍କର ଦୁଇଟି ତେଲୁଗୁ କବିତା ପାଇଛି। ତନ୍ମଧ୍ୟରୁ ଗୋଟିଏ ମୋର 'ବଳଦେବ ରଥ ଅଧ୍ୟୟନ' ପୁସ୍ତକରେ ପ୍ରକାଶିତ କରାଇଛି। ଊନବିଂଶ ଶତାବ୍ଦୀର ବିଶିଷ୍ଟ ସଂଗୀତକାର କବି ଗୌରହରି ପରିଚ୍ଛା ମଧ୍ୟ କେତେଗୁଡ଼ିଏ ତେଲୁଗୁ କବିତା ରଚନା କରିଛନ୍ତି (ତାଙ୍କର କିଛି ତେଲୁଗୁ ଗୀତ ଓ ତେଲୁଗୁ-ଓଡ଼ିଆ ମିଶା ଗୀତ ଗୌରହରି ଗ୍ରନ୍ଥାବଳୀରେ ପ୍ରକାଶ ପାଇଛି)। ଏଥିରୁ ଜଣାଯାଉଛି ଯେ ମଧ୍ୟଯୁଗର ଓଡ଼ିଆ କବିମାନଙ୍କ ମଧ୍ୟରେ ତେଲୁଗୁ ଭାଷା ଓ ସାହିତ୍ୟ ପ୍ରତି ଆଦର ଥିଲା।

କୋରାପୁଟ ଜିଲା ନନ୍ଦପୁର ନିକଟସ୍ଥ ଏକ ପଲ୍ଲୀଗ୍ରାମର ଅଧିବାସୀ ଦୀନବନ୍ଧୁ ସୋମନିଶି ଖ୍ରୀ.୧୮୦୨ରେ ତେଲୁଗୁ ଧର୍ମାଙ୍ଗଦା ପୁରାଣକୁ ଓଡ଼ିଆରେ 'ପତିଭକ୍ତା ପୁରାଣ' ନାମ ଦେଇ ଅନୁବାଦ କରିଛନ୍ତି। ତେଲୁଗୁ ଓ ଓଡ଼ିଆ ଉଭୟ ଭାଷାର ପ୍ରାଚୀନ ସାହିତ୍ୟରେ ଶ୍ରଦ୍ଧା ଓ ପ୍ରବେଶ ଥିବା ଆଲୋଚକଙ୍କ ଅଭାବ ଥିବାରୁ ଉଭୟ

ସାହିତ୍ୟ ମଧ୍ୟରେ ଦାନ ପ୍ରତିଦାନର ସ୍ୱରୂପ ଓ ପରିମାଣ କଳନା କରିବା ସମ୍ଭବପର ହୋଇପାରି ନାହିଁ।

ବହୁ ସଂଖ୍ୟକ ଓଡ଼ିଆ ଭାଷାଭାଷୀ ବ୍ୟକ୍ତି ତେଲୁଗୁ ଭାଷାରେ ପୂର୍ଣ୍ଣାଙ୍ଗ ଗ୍ରନ୍ଥମାନ ରଚନା କରି ଯାଇଛନ୍ତି। ଏହି ଗ୍ରନ୍ଥଗୁଡ଼ିକ ମଧ୍ୟରୁ ଅନେକ ଗ୍ରନ୍ଥର ଉପାଦେୟତା ତେଲୁଗୁ ସାହିତ୍ୟର ଆଲୋଚକମାନେ ସ୍ୱୀକାର କରିଛନ୍ତି। ସେହି ଗ୍ରନ୍ଥ ଓ ତାହାର ପ୍ରଣେତା ମାନଙ୍କ ସଂପର୍କରେ ସଂକ୍ଷିପ୍ତ ବିବରଣ ନିମ୍ନରେ ଦେଉଛି।

ତେଲୁଗୁରେ ଗ୍ରନ୍ଥ ରଚନା କରିଥିବା ଓଡ଼ିଆ ମାତୃଭାଷାଭାଷୀ ଲୋକଙ୍କ ମଧ୍ୟରେ ଅଧିକାଂଶ ହେଉଛନ୍ତି ଜାତିରେ କରଣ। ଉତ୍କଳର ଗଙ୍ଗବଂଶୀ ଓ ସୂର୍ଯ୍ୟବଂଶୀ ରାଜାମାନଙ୍କ ସମୟରୁ ବହୁ ଓଡ଼ିଆ କରଣ ପରିବାର ରାଜକାର୍ଯ୍ୟରେ ଯାଇ ତେଲୁଗୁ ଦେଶରେ ବସବାସ କରି ରହିଯାଇଛନ୍ତି। ଏମାନେ ପୁରୁଷାନୁକ୍ରମେ ତେଲୁଗୁ ଲୋକଙ୍କ ସଙ୍ଗରେ ଚଳି ତେଲୁଗୁ ଢ଼ଙ୍ଗର ଇଣ୍ଟିପେରୁ ବା ବାସନାମ ପ୍ରଥାକୁ ଗ୍ରହଣ କରିଛନ୍ତି ଓ ତେଲୁଗୁ ଭାଷା ଓ ସାହିତ୍ୟକୁ ଆୟତ୍ତ କରିଛନ୍ତି। ବର୍ତ୍ତମାନ ସୁଦ୍ଧା ଏମାନଙ୍କ ଘରର ଭାଷା (ମାତୃଭାଷା) କିଛି କିଛି ତେଲୁଗୁଛିଟା ଲାଗିଥିବା ଓଡ଼ିଆ। ଏମାନେ ଚିଟି (ଶିଷ୍ଟି) କରଣ, ବମାଳି କରଣ ବୋଲାନ୍ତି। ଓଡ଼ିଶାରେ ଶିଷ୍ଟକରଣ ଅଛନ୍ତି। ଶିଷ୍ଟକରଣ ଓଡ଼ିଆ କବିମାନଙ୍କ ମଧ୍ୟରେ 'ବ୍ରଜବିହାର' ରଚୟିତା ଦାସରଥି ଦାସଙ୍କ ନାମ ଉଲ୍ଲେଖଯୋଗ୍ୟ।

ଯେଉଁ ଓଡ଼ିଆମାନେ ତେଲୁଗୁରେ ଗ୍ରନ୍ଥ ରଚନା କରି ଖ୍ୟାତିମାନ୍ ହୋଇଛନ୍ତି ସେମାନଙ୍କ ମଧ୍ୟରେ ଗୋପୀନାଥ ପଟ୍ଟନାୟକ ଅଗ୍ରଗଣ୍ୟ। ସେ ଶିଷ୍ଟିକରଣ ଜାତିର ଡୋଙ୍କାଡ଼୍ ବଂଶର ଥିଲେ ବୋଲି ତେଲୁଗୁ ସାହିତ୍ୟରେ ଡୋଙ୍କାଡ଼ ଗୋପୀନାଥ ନାମରେ ସୁପରିଚିତ।

ଗୋପୀନାଥଙ୍କ ପୂର୍ବପୁରୁଷମାନେ ଆନ୍ଧ୍ରପ୍ରଦେଶର ବଦ୍ଧିଲି ରାଜ୍ୟର ରାଜକର୍ମଚାରୀ ଥିଲେ। ତାଙ୍କର ପିତାଙ୍କ ନାମ ନାରାୟଣ, ମାତାଙ୍କ ନାମ ଲକ୍ଷ୍ମୀ ଓ ଗୁରୁଙ୍କ ନାମ ଭଟ୍ଟରୁ। ଗୋପୀନାଥଙ୍କର ଓଡ଼ିଆ ଓ ତେଲୁଗୁ ଉଭୟ ଭାଷାରେ ପାଣ୍ଡିତ୍ୟ ଥିଲା। ଗୋପୀନାଥଙ୍କ ପିତା ବଦ୍ଧିଲିର ମନ୍ତ୍ରୀ ଥିଲେ। ଗୋପୀନାଥ ବଦ୍ଧିଲିକୁ ଲାଗି ଥିବା ନନ୍ଦପୁର (ପୂର୍ବତନ ଜୟପୁର ଜମିଦାରି)ର ରାଜା ବିଶ୍ୱମ୍ଭର ଦେବଙ୍କ ମନ୍ତ୍ରୀ ଥିଲେ। ଏହି ବିଶ୍ୱମ୍ଭରଙ୍କ ରାଜତ୍ୱ କାଳ ଖ୍ରୀ. ୧୭୧୩ରୁ ୧୭୫୨। ଗୋପୀନାଥଙ୍କ ଅକ୍ଷୟ କୃତି ହେଉଛି ତେଲୁଗୁ ଗଦ୍ୟରେ ଲିଖିତ 'ବିଚିତ୍ର ରାମାୟଣମୁ'। ଏହାକୁ ସେ ଓଡ଼ିଆରୁ ଅନୁବାଦ କରିଥିବା କଥା ଲେଖିଛନ୍ତି ଓ ଓଡ଼ିଆ 'ବିଚିତ୍ର ରାମାୟଣର କବି ସିଦ୍ଧେଶ୍ୱର ଦାସଙ୍କ ସଂପର୍କରେ କେତେକ ତଥ୍ୟ ଜଣାଇଛନ୍ତି। ସିଦ୍ଧେଶ୍ୱର ଦାସଙ୍କ 'ବିଚିତ୍ର ରାମାୟଣ'ର ଅସ୍ତିତ୍ୱ ଅଜ୍ଞାତ ଥିଲା। ମୁଁ ଦାଣ୍ଡି ବୃତ୍ତରେ ରଚିତ ଏହି ଗ୍ରନ୍ଥଟିକୁ ଉଦ୍ଧାର କରି ସଂପାଦିତ କରି ଖ୍ରୀ. ୧୯୮୦ରେ ପ୍ରକାଶିତ କରିଛି। ଜଣାପଡ଼ୁଛି,

ସାରଳା ଦାସ ମହାଭାରତ ରଚନା କରିବା ପୂର୍ବରୁ ସିଦ୍ଧେଶ୍ୱର ଦାସ ନାମରେ 'ବିଚନ୍ଦ୍ର ରାମାୟଣ' ଲେଖିଥିଲେ। ଗୋପୀନାଥ କୃତ 'ବିଚିତ୍ର ରାମାୟଣମୁ' ତେଲୁଗୁ ଦେଶରେ ବିଶେଷ ସମାଦର ଲାଭ କରିଛି। ଗୋପୀନାଥଙ୍କ ଭାଷା ସଂସ୍କୃତ ପ୍ରଭାବିତ। ପ୍ରାଚୀନ ତେଲୁଗୁ ଗଦ୍ୟ ସାହିତ୍ୟ ମଧ୍ୟରେ ବିଚିତ୍ର ରାମାୟଣମୁର ସ୍ଥାନ ଉଚ୍ଚରେ। ଗ୍ରନ୍ଥଟି ଖ୍ରୀ. ୧୮୯୨ରୁ ମୁଦ୍ରିତ ହେଲାଣି। ଏହା ଏତେଦୂର ଜନ ସମାଦର ଲାଭ କଲା ଯେ ଏହି ଗଦ୍ୟ କାବ୍ୟଟିକୁ ଏକାଦିକ୍ରମେ ଚାରିପାଞ୍ଚ ଜଣ ତେଲୁଗୁ କବି ଏକେତ ଗଦ୍ୟ ପଦ୍ୟାତ୍ମକ ଚମ୍ପୂ ରୀତିରେ ଅଥବା ନିରୋଳ ଗଦ୍ୟ ଶୈଳୀରେ ରୂପାନ୍ତରିତ କରିଛନ୍ତି (ମୋର ଅଦ୍ୟାବଧି ଅପ୍ରକାଶିତ ସାରଳାଦାସ ଅଧ୍ୟୟନ' ପୁସ୍ତକରେ ତୋଙ୍କାଡ଼ ଗୋପୀନାଥ ଓ ତାଙ୍କର ବିଚିତ୍ର ରାମାୟଣମୁର ରୂପାନ୍ତରକାରୀଙ୍କ ବିଷୟରେ ଅଧିକ ଆଲୋଚନା କରିଛି)। ଗୋପୀନାଥ ବିଚିତ୍ର ରାମାୟଣମୁ ଛଡ଼ା ତେଲୁଗୁ ଶତକ ପଦ୍ୟ ରୀତିରେ 'ହରିଶତକମ୍ମୁ' ମଧ୍ୟ ରଚନା କରିଛନ୍ତି।

ତେଲୁଗୁ ସାହିତ୍ୟର ଅନ୍ୟତମ ବିଶିଷ୍ଟ କବି କୁପ୍ପଲି ଅନନ୍ତାଚାର୍ଯ୍ୟ ମଧ୍ୟ ଓଡ଼ିଆ ଚିଟି (ଶିଷ୍ଟି) କରଣ କୁଳର। ତାହାଙ୍କର ବାସସ୍ଥାନ ବିଶାଖାପାଟଣା ଜିଲାର କୁପ୍ପଲି ଗ୍ରାମ। ସେ 'ରାମାନୁଜ ଶତକମୁ' କାବ୍ୟ ରଚନା କରି ଯଶସ୍ୱୀ ହୋଇଛନ୍ତି। ଅନନ୍ତାଚାର୍ଯ୍ୟଙ୍କ ସମୟ ନିର୍ଦ୍ଦିଷ୍ଟ ହୋଇପାରି ନାହିଁ। ତେବେ ତାଙ୍କ ରଚନାର ଭାଷାର ରୂପ ବିଚାରରୁ ସେ ଖ୍ରୀ. ୧୭ଶ ଶତାବ୍ଦୀର ପୂର୍ବବର୍ତ୍ତୀ ବୋଲି କୁହାଯାଏ। ଅନନ୍ତାଚାର୍ଯ୍ୟଙ୍କ ବଂଶରେ ଅନ୍ୟ କେତେକ ତେଲୁଗୁ ପଣ୍ଡିତ ଓ କବି ଜନ୍ମଗ୍ରହଣ କରିଥିଲେ ବୋଲି ବିଶ୍ୱାସ କରାଯାଏ। କିନ୍ତୁ, ସେମାନଙ୍କର କୌଣସି ରଚନା ବର୍ତ୍ତମାନ ମିଳୁନାହିଁ।

ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ସାଲୁରର ଓଡ଼ିଆ ରାଜା ସନ୍ନ୍ୟାସୀ ରାଜୁଙ୍କର ସଭାକବି ଥିଲେ ମଧୁ ମହାନ୍ତି ବଂଶର ବଳରାମ। ସେ ମଧ୍ୟ କରଣ। ତାଙ୍କର ମୂଳ ବାସସ୍ଥାନ ତଳିକୋଟି ହୋଇଥିବାରୁ ସେ ତଳିକୋଟି ବଳରାମ ନାମରେ ପରିଚିତ ହୁଅନ୍ତି। ସେ ତେଲୁଗୁ ଓଡ଼ିଆ ଓ ସଂସ୍କୃତ ଭାଷାରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ। ତେଲୁଗୁ ''ଗରୁଡ଼ାଚଳ ବିଳାସମୁ'' ନାମକ କାବ୍ୟର ସେ ରଚୟିତା। ଗରୁଡ଼ାଚଳ ବିଳାସମୁର ଭାଷା ସରସ ଓ ମନୋମୁଗ୍ଧକର। ଏହା ତେଲୁଗୁ ସାହିତ୍ୟର ଶ୍ରେଷ୍ଠ କାବ୍ୟମାନଙ୍କ ମଧ୍ୟରୁ ଅନ୍ୟତମ ବୋଲି ତେଲୁଗୁ ସାହିତ୍ୟର ଆଲୋଚକମାନେ ମତ ଦେଇଥାନ୍ତି। କବି ବଳରାମ ଏହି କାବ୍ୟରେ ଆତ୍ମପରିଚୟ ଦେଇ ଲେଖିଛନ୍ତି ଯେ ସେ ଉଲ୍ଲକେଶ ଗୋତ୍ରର ମଧୁମନ୍ତ୍ରୀଙ୍କ ବଂଶଜ, ପିତାମହଙ୍କ ନାମ ଲକ୍ଷ୍ମଣ, ପିତାଙ୍କ ନାମ ନାରାୟଣ ମହାନ୍ତି ଓ ମାତାଙ୍କ ନାମ ସୀତା। ମଧୁ ମହାନ୍ତି ବାସନାମ (ଇଣ୍ଟିପେରୁ) ବହନ କରୁଥିବା ଓଡ଼ିଆ କରଣ ପରିବାର ଗଞ୍ଜାମ ଓ ଆନ୍ଧ୍ରରେ ବର୍ତ୍ତମାନ ମଧ୍ୟ ଅଛନ୍ତି। ବଳରାମଙ୍କ ପିତୃପିତାମହ ମଧ୍ୟ କବି ଥିବା ଜଣାଯାଏ। କିନ୍ତୁ, ସେମାନଙ୍କର କୌଣସି ରଚନା ଲୋକଲୋଚନକୁ ଆସିନାହିଁ।

ସନ୍ନ୍ୟାସୀ ରାଜୁଙ୍କ ପୁତ୍ର ରାମଚନ୍ଦ୍ର ରାଜୁ (ଖ୍ରୀ. ୧୭୭୪-୧୮୦୧)ଙ୍କ ରାଜସଭାର କବି ଥିଲେ କବିଙ୍କର ଉପାଧି ମଣ୍ଡିତ କିମୂରି ସନ୍ନ୍ୟାସୀ ରାଜୁ। ସେ ତେଲୁଗୁରେ ସୀସପଦ୍ୟ ରୀତିରେ 'ରାମଚନ୍ଦ୍ର ଶତକମ୍' ରଚନା କରିଛନ୍ତି। ଏଥିରେ ଗାୟନୋପଯୋଗୀ ମନୋହର ଛଟାରେ ସମଗ୍ର ରାମାୟଣ ସଂକ୍ଷିପ୍ତ ଭାବରେ ବର୍ଣ୍ଣିତ ହୋଇଛି। ସନ୍ନ୍ୟାସୀ ରାଜୁ ସାଲୁରର ଓଡ଼ିଆ ରାଜବଂଶଜ ଥିଲେ।

ତବୀରୁ ଗ୍ରାମର ଦୁଇ ଜଣ ଓଡ଼ିଆ କରଣ ତବୀରୁ ରାଧାକୃଷ୍ଣ ଓ ତବୀରୁ ଅଚ୍ୟୁତ କବି ମଧ୍ୟ ତେଲୁଗୁରେ ଗ୍ରନ୍ଥ ରଚନା କରି ଖ୍ୟାତନାମା ହୋଇଛନ୍ତି। ରାଧାକୃଷ୍ଣ 'ବିଷ୍ଣୁବର୍ଦ୍ଧନୀୟମ୍' ଓ ଅଚ୍ୟୁତ କବି 'ଗଣନାଥାଭ୍ୟୁଦୟମ୍' ନାମକ ଦୁଇଟି କାବ୍ୟ ଲେଖି ଯାଇଛନ୍ତି।

ଊନବିଂଶ ଶତାବ୍ଦୀର ସଙ୍ଗମବଳସା ରାଜ୍ୟର ଓଡ଼ିଆ ରାଜା ମୃତ୍ୟୁଞ୍ଜୟ ନିଃଶଙ୍କ ଭୂପାଳ ମାତୃଭାଷା ଓଡ଼ିଆରେ ତଥା ତେଲୁଗୁ ଓ ସଂସ୍କୃତ ସାହିତ୍ୟରେ ରଚନା କରିଥିବା କଥା ଶୁଣାଯାଏ। କିନ୍ତୁ, ତାଙ୍କର କୌଣସି ଓଡ଼ିଆ ରଚନା ଆଲୋଚକମାନଙ୍କର ଦୃଷ୍ଟିରେ ପଡ଼ିନାହିଁ। ସେ ଜଣେ ସିଦ୍ଧହସ୍ତ ତେଲୁଗୁ କବି ଥିଲେ। ତେଲୁଗୁ ଭାଷାରେ ସେ ୧. ଭଲ୍ଲାଣ ଚରିତ୍ରମ୍; ୨. ଅରସା ବିଲ୍ଲି ସୂର୍ଯ୍ୟନାରାୟଣ ଚରିତ୍ରମ୍ ଓ ୩. ଗୁମ୍ମା ସୋମେଶ୍ୱର ଚରିତ୍ରମ୍ ରଚନା କରିଯାଇଛନ୍ତି। ସେ କାଳିଦାସଙ୍କ ନାଟକ ତ୍ରୟର ବ୍ୟାଖ୍ୟାନ ମଧ୍ୟ ତେଲୁଗୁରେ ଲେଖି ନିଜର ତେଲୁଗୁ ଓ ସଂସ୍କୃତ ଉଭୟ ଭାଷାରେ ବିଦ୍ୱତ୍ତାର ପ୍ରମାଣ ଦେଇଛନ୍ତି। ସେ ତେଲୁଗୁ କବି ପଣ୍ଡିତମାନଙ୍କର ପୃଷ୍ଠପୋଷକତା କରୁଥିବା ବିଷୟ ପୂର୍ବେ ସୂଚିତ ହୋଇଛି।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଆନ୍ଧ୍ରପ୍ରଦେଶର ପୂର୍ବତନ ପାଚିପେଟ ରାଜ୍ୟର ଦୁଇ ଜଣ ଓଡ଼ିଆ ଅଧିବାସୀ ତ୍ୟାଡ଼ା ସିଂହାଚଳ ଓ ତ୍ୟାଡ଼ା ଗୋପୀନାଥ, ଯଥାକ୍ରମେ ବରଲକ୍ଷ୍ମୀ ଶତକମ୍ ଓ ମୁକୁନ୍ଦ ଶତକମ୍ ରଚନା କରି ତେଲୁଗୁ ଶତକ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧି କରିଛନ୍ତି। ଉଭୟ କବି କରଣ ଜାତିର ଲୋକ। ମୁକୁନ୍ଦ ଶତକମ୍‌ର ରଚନା କାଳ ଖ୍ରୀ. ୧୮୬୦ ଓ ବରଲକ୍ଷ୍ମୀ ଶତକମ୍‌ର ରଚନାକାଳ ଖ୍ରୀ. ୧୮୬୨।

ଓଡ଼ିଆ ପାଠକମାନଙ୍କୁ ଜୟପୁରର ରାଜା ବିକ୍ରମଦେବ ବର୍ମାଙ୍କ ସଂପର୍କରେ ବିଶେଷ ପରିଚୟ ଦେବା ଅନାବଶ୍ୟକ। ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ଧରି ସେ ଓଡ଼ିଆ ଓ ତେଲୁଗୁ ସାହିତ୍ୟର ସେତୁ ସ୍ୱରୂପ ଥିଲେ। ତାହାଙ୍କ ଜନ୍ମ ଖ୍ରୀ. ୧୮୬୯ ଓ ମୃତ୍ୟୁ ଖ୍ରୀ.୧୯୫୧ରେ ହୋଇଥିଲା। ବାଲ୍ୟ କାଳରେ ଆର୍ଥିକ ଅଭାବ ହେତୁ ବିଦ୍ୟାଳୟରେ ବିଶେଷ ଶିକ୍ଷାରୁ ବଞ୍ଚିତ ହୋଇଥିଲେ ହେଁ ପରେ ନିଜର ଅଧ୍ୟବସାୟ ବଳରେ ସେ ଓଡ଼ିଆ, ତେଲୁଗୁ ଓ ସଂସ୍କୃତ ଭାଷାରେ ଦକ୍ଷତା ଅର୍ଜନ କରି ପାରିଥିଲେ। ସେ ଖ୍ରୀ. ୧୯୩୧ରେ ଜୟପୁର ରାଜାଙ୍କର ଉତ୍ତରାଧିକାରୀ ଭାବେ ଜମିଦାରି ପାଇଲେ। ତେଲୁଗୁ ଓ ଓଡ଼ିଆ ସାହିତ୍ୟିକମାନଙ୍କୁ ଆର୍ଥିକ ସହାୟତା ଦେଇ ସାହିତ୍ୟିକ ଉଦ୍ୟମକୁ

ଉସାହିତ କରିବାରେ ସେ ସର୍ବଦା ମୁକ୍ତହସ୍ତ ଥିଲେ। ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ତାଙ୍କର ବାର୍ଷିକ ଏକ ଲକ୍ଷ ଟଙ୍କା ଅନୁଦାନ ଆଦର୍ଶ ସ୍ଥାନୀୟ। ଆନ୍ଧ୍ର ଓ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ସାହିତ୍ୟରେ ସମ୍ମାନ ସୂଚକ ଡକ୍ଟରେଟ୍ ଉପାଧିରେ ଭୂଷିତ କରିଥିଲେ। ତାଙ୍କ ଦ୍ୱାରା ପ୍ରଣୀତ ଓଡ଼ିଆ ଓ ସଂସ୍କୃତ ଲେଖାଗୁଡ଼ିକ ସଂଗୃହୀତ ହୋଇ ''ରାଜର୍ଷି ଶ୍ରୀ ବିକ୍ରମଦେବ ବର୍ମା ରଚନାଳି' ନାମରେ ଦୁଇଖଣ୍ଡରେ ପ୍ରକାଶିତ ହୋଇଛି। ନିମ୍ନରେ ତାଙ୍କର ତେଲୁଗୁ ଗ୍ରନ୍ଥଗୁଡ଼ିକରେ ସୂଚନା ଦେଉଛି। ବିଶାଖପାଟଣାରେ ସେ ବସବାସ କରୁଥିବା ବେଳେ ସେଠାରେ ଏକ ରଙ୍ଗାଳୟ ସ୍ଥାପନ କରି ବିଭିନ୍ନ ତେଲୁଗୁ ଓ ଓଡ଼ିଆ ନାଟକ ସେହି ରଙ୍ଗାଳୟରେ ଅଭିନୀତ କରାଉଥିଲେ। ସେହି ସମୟରେ ବିକ୍ରମଦେବ କନ୍ନଡ଼ ଭାଷାରେ ରଚିତ 'ଶ୍ରୀନିବାସ କଲ୍ୟାଣ'' ନାଟକଟିକୁ ତେଲୁଗୁରେ ଅନୁବାଦ କରିଥିଲେ। ପରେ ''କୃଷ୍ଣାର୍ଜୁନ ଚରିତ୍ରମୁ' ନାମଧେୟ ଏକ ଉଚ୍ଚକୋଟୀର ପ୍ରାଚୀନ ତେଲୁଗୁ କାବ୍ୟକୁ ସେ ସଂପାଦନା କରି ବିଶଦ ବ୍ୟାଖ୍ୟା ଓ ସରଳାର୍ଥ ଯୋଗ ପୂର୍ବକ ପ୍ରକାଶ କରିଥିଲେ। ତାଙ୍କର ମୌଳିକ ତେଲୁଗୁ ରଚନା ମଧ୍ୟରେ 'ମାନବତୀ ଚରିତ୍ରମୁ' ଶ୍ରେଷ୍ଠ। ଏହା ଏକ ସୁଲିଖିତ ନାଟକ ବୋଲି ସୁଧୀବର୍ଗଙ୍କ ଉଚ୍ଚପ୍ରଶଂସା ଲାଭ କରଥିଲା ଓ ମହାବିଦ୍ୟାଳୟ ସ୍ତରରେ ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଥିଲା। ଏହା ବ୍ୟତୀତ ସେ 'ନୀତିଗୀତିତତି' (ଅନେକ ନୀତିବ୍ୟଞ୍ଜକ କ୍ଷୁଦ୍ର କବିତାର ସମାହାର), 'ଶ୍ରୀକୃଷ୍ଣ ବ୍ରତଗୀତ' ଓ ଗୋବିନ୍ଦ ମଞ୍ଜରିକାବଳୀ (ଶଙ୍କରଚାର୍ଯ୍ୟ ପ୍ରଣୀତ 'ମୋହମୁଦ୍‌ଗର'ର ଅନୁବାଦ) ସେ ତେଲୁଗୁରେ କରିଛନ୍ତି। ନୀତିଗୀତିତତି ପୁସ୍ତକଟି ସ୍କୁଲସ୍ତରରେ ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଥିଲା।

ପରିଶେଷରେ ଗୋଟିଏ ବିଷୟ ସ୍ୱୀକାର କରାଯାଇପାରେ ଯେ ଦୁଇ ପ୍ରତିବେଶୀ ଭାଷା ମଧ୍ୟରେ ଦିଆନିଆ ଯେତେ ଦୂର ଆଶା କରାଯାଇ ପାରେ ତେଲୁଗୁ-ଓଡ଼ିଆ ମଧ୍ୟରେ ଦିଆନିଆ ନିଶ୍ଚୟ ତେତେ ଦୂର ନୁହେଁ। ବଙ୍ଗଳା-ଓଡ଼ିଆ ମଧ୍ୟରେ ଆଦାନ ପ୍ରଦାନର ସ୍ତରକୁ ତେଲୁଗୁ-ଓଡ଼ିଆ ଆଦାନ-ପ୍ରଦାନ ଉଠି ନ ପାରିବାର ମୁଖ୍ୟ କାରଣ ଦୁଇ ଭାଷା ମଧ୍ୟର ଆକୃତି ଓ ପ୍ରକୃତି ଗତ ବୈଷମ୍ୟ ବୋଲି କୁହାଯାଇପାରେ। ତଥାପି, କେତେଜଣ ଓଡ଼ିଆ ବଙ୍ଗଳା ସାହିତ୍ୟକୁ ସମୃଦ୍ଧ କରିଛନ୍ତି? ଯଦି କରିନାହାନ୍ତି, କାହିଁକି କରିପାରିନାହାନ୍ତି?



---

* ଏହି ଆଲୋଚନାରେ ଉପସ୍ଥାପିତ ଅଧିକାଂଶ ତଥ୍ୟ ବିଖ୍ୟାତ ତେଲୁଗୁ ସାହିତ୍ୟିକ ସ୍ୱର୍ଗତ ପୁରୀପଣ୍ଡା ଅପ୍ପଲସ୍ୱାମୀଙ୍କ 'ତେଲୁଗୁ ସାହିତ୍ୟର ଇତିହାସ' (ଅପ୍ରକାଶିତ) ଗ୍ରନ୍ଥରୁ ତାଙ୍କରି ସଦୟ ଅନୁମତି କ୍ରମେ ନିଆଯାଇଛି।